ସଚିତ୍ର

# ଇନ୍ଦୁରେଖା

ଶ୍ରୀ ଗୋଲୋକଚନ୍ଦ୍ର ପ୍ରଧାନଙ୍କ ପ୍ରଣୀତ

ନୂତନ ସଂସ୍କରଣ

ପ୍ରକାଶକ

ଶ୍ରୀ ରବୀନ୍ଦ୍ରନାଥ ମହାନ୍ତି

କଟକ ପବ୍ଲିଶିଂ ହାଉସ

ବାଲୁବଜାର, କଟକ-୨

୧୯୮୪



ମୂଲ୍ୟ : ଟ ୫୦-୦୦ ପଚାଶ ଟଙ୍କା ମାତ୍ର

# ନିବେଦନ

ଶୈଶବକାଳରୁ କବିସମ୍ରାଟ ଉପେନ୍ଦ୍ର ଭଞ୍ଜ ଓ ଅଦ୍ୱିତୀୟ ଭକ୍ତ ମହାକବି ଅଭିମନ୍ୟୁ ଓ ଭକ୍ତ କବିବର ଦୀନକୃଷ୍ଣ ଆଦିଙ୍କର ପୁସ୍ତକମାନ ପଢ଼ି ପ୍ରଥମେ ମୁଗ୍ଧ ଓ ଚମତ୍କୃତ ହୋଇଥିଲି । କାଳକ୍ରମେ ସେମାନଙ୍କର କବିତାରେ ଏକାଧାରରେ ଯେଉଁ ସବୁ ମନୋହର ଅଳଙ୍କାର, ଭାବବହୁଳତା ଓ ପାଣ୍ଡିତ୍ୟର ସମାବେଶ ଦେଖିଲି, ତାହା ମୋତେ ଅପୂର୍ବ ବିସ୍ମୟାର୍ଣ୍ଣବରେ ବୁଡ଼ାଇ ଦେଉଥିଲା ଓ ସେହି କବିଶ୍ରେଷ୍ଠମାନଙ୍କ ଦେଶରେ ମୋତେ ଜନ୍ମ ଦେଇଥିବାରୁ ମୁଁ ପରମେଶ୍ୱରଙ୍କୁ ଧନ୍ୟବାଦ ନ ଦେଇ ରହି ପାରୁ ନ ଥିଲି ।

ମୋର ସାହିତ୍ୟାନୁରାଗୀ ଜ୍ୟେଷ୍ଠ ସହୋଦର ଅନେକ ସମୟରେ ମଧୁର-ମନୋହର ଅଳଙ୍କାର ସୁଷମାମଣ୍ଡିତ ପ୍ରାଚୀନ ଛାନ୍ଦମାନ ଆବୃତ୍ତି କରି ଓ ତହିଁରେ ଥିବା ସୌନ୍ଦର୍ଯ୍ୟମାନଙ୍କୁ ମୋତେ ଉପଲବ୍ଧି କରାଇ ମୋର ମନରେ ଚମତ୍କାରିତାକୁ ବହୁଗୁଣରେ ବଢ଼ାଇ ଦେଉଥିଲେ ଏବଂ ମୋର ପ୍ରାଣପ୍ରତିମା ପ୍ରିୟତମା ସହଧର୍ମିଣୀଙ୍କର ଯଥୋଚିତ ଧର୍ମସାହିତ୍ୟାନୁରାଗ ଓ ଭାବଗ୍ରାହିତା ହେତୁରୁ ସେ ଅଧିକାଂଶ ସମୟରେ ଭାଗବତ, ମହାଭାରତ ଓ ଗୋପାଳକୃଷ୍ଣ ଆଦି କବିମାନଙ୍କର କବିତାଗୁଡ଼ିକର ସରସ ଭାବକୁ ଆଳାପ କରିବାଦ୍ୱାରା ମୋର ମନର ସରସତାକୁ ବଢ଼ାଇ ଦେଉଥିଲେ ।

ଏହି ଦୁଇ ଜଣଙ୍କ ପ୍ରେରଣାରେ ଓ ଆଧୁନିକ ଯୁଗରେ ପୁରାତନ ସାହିତ୍ୟ ପ୍ରତି ଶିକ୍ଷିତମାନଙ୍କ ମଧ୍ୟରୁ ଅଧିକାଂଶଙ୍କର ସମଧିକ ଆସ୍ଥାର ଅଭାବ ଦେଖି ଓ ପୁରାତନ ସାହିତ୍ୟ ପ୍ରତି ସର୍ବସାଧାରଣଙ୍କ ରୁଚି ପରିବର୍ତ୍ତନ ଅଭିପ୍ରାୟରେ ଆଧୁନିକ ସାହିତ୍ୟ ରୀତି ଅବଲମ୍ବନପୂର୍ବକ ପ୍ରାଚୀନ ଛାଟାରେ ବୋଧଗମ୍ୟ ହେବା ମାନସରେ ଯଥାସମ୍ଭବ ସରଳ କରି ସମସ୍ତଙ୍କ ସମକ୍ଷରେ ଉପସ୍ଥାପିତ କରିବା ପାଇଁ ଇନ୍ଦୁରେଖା ନାମକ କ୍ଷୁଦ୍ର କାବ୍ୟଟି ସମାଧାନ କରିଅଛି ।

ଆଠମଲ୍ଲିକର ନରପତି ରାଜା **ଶ୍ରୀ ଶ୍ରୀ ଶ୍ରୀକିଶୋରଚନ୍ଦ୍ର ଦେବ** ମହୋଦୟ ପାଣ୍ଡୁଲିପି ଦେଖି ରାଜସଭାରେ ଦ୍ୱିତୀୟ ଭଞ୍ଜର ଆବିର୍ଭାବ ଆଦି ବାକ୍ୟମାନ ମୋ ପ୍ରତି ପ୍ରୟୋଗ କରି ମୋତେ ଯଥୋଚିତ ଉତ୍ସାହ ପ୍ରଦାନ କରିଥିବାରୁ ତାହାଙ୍କ ନିକଟରେ ମୁଁ କୃତଜ୍ଞତା ପାଶରେ ଆବଦ୍ଧ ରହିଲି ।

ମୋର ଗୁରୁକଳ୍ପ ସୁହୃଦ୍ ପୂର୍ଣ୍ଣଚନ୍ଦ୍ର ଓଡ଼ିଆ ଭାଷାକୋଷର ସଙ୍କଳୟିତା ପଣ୍ଡିତ ୰ଗୋପାଳଚନ୍ଦ୍ର ପ୍ରହରାଜ ଇନ୍ଦୁରେଖାର ପ୍ରକାଶ ପାଇଁ ନାନାଦିଗରେ ସାହାଯ୍ୟ ଓ ଉତ୍ସାହ ଦାନ କରିଥିବାରୁ ତାଙ୍କ ନିକଟରେ ମୁଁ କୃତଜ୍ଞ ।

ମୋର ସମ୍ମାନାର୍ହ ପଣ୍ଡିତ ଶ୍ରୀ ନୀଳମଣି ଦାଶ, ପ୍ରଫେସର ରାୟ ସାହେବ, ଶ୍ରୀ ଆର୍ତ୍ତବଲ୍ଲଭ ମହାନ୍ତି, ରାୟ ବାହାଦୁର ୰ଅଜୟଚନ୍ଦ୍ର ଦାସ, ଭାରତ ସେବକ ସମିତିର ସଭ୍ୟ ଶ୍ରୀ ଲକ୍ଷ୍ମୀନାରାୟଣ ସାହୁ ଏମ୍. ଏ., ଉତ୍କଳ ସାହିତ୍ୟର ଭୂତପୂର୍ବ ସମ୍ପାଦକ ୰ବିଶ୍ୱନାଥ କର, ଉତ୍କଳ ସାହିତ୍ୟ ସମାଜ ସେକ୍ରେଟେରୀ ଶ୍ରୀ ଶଶିଭୂଷଣ ରାୟ ଆଦି ସାହିତ୍ୟସେବୀମାନେ ପାଣ୍ଡୁଲିପି ପାଠ କରି ଯଥାଯୋଗ୍ୟ ଉତ୍ସାହ ପ୍ରଦାନ କରିବାରୁ ମୁଁ ସେମାନଙ୍କ ନିକଟରେ ଋଣୀ ।

ବୌଦ୍ଧ ରାଜ୍ୟର ଭୂତପୂର୍ବ ଦେବାନ ଶ୍ରୀଯୁକ୍ତ ବଟକୃଷ୍ଣ ମହାନ୍ତି, ଶ୍ରୀଯୁକ୍ତ ଜଗନ୍ମୋହନ ଦାଶ ଓକିଲ, ଶ୍ରୀଯୁକ୍ତ ଯୋଗମୋହନ ସ୍ୱାଇଁ ବି. ଏଲ୍., ଶ୍ରୀଯୁକ୍ତ ବିଚ୍ଛନ୍ଦଚରଣ ପଟ୍ଟନାୟକ ବି. ଏ.,

୰ ମାୟାଧର ଦାଶ ବି. ଏଲ୍., ସାମନ୍ତହିନ୍ଦୋଳ ବାଲିଆନିବାସୀ ୰ ଦାଶରଥି ପାଢ଼ିକରାୟ, ଅହିଆସ ନିବାସୀ ଶ୍ରୀଯୁକ୍ତ ତ୍ରିଲୋଚନ ରାଉତ, ବଡ଼ଶୋକନିବାସୀ କଟକ କଲେକ୍ଟର ପେସ୍କାର ଶ୍ରୀଯୁକ୍ତ ଦୀନବନ୍ଧୁ ରଥ, ମାଧବପୁର ନିବାସୀ କବି ଶ୍ରୀଯୁକ୍ତ ଭୀମ ସିଂହ ରାୟ, ମଦନପୁରନିବାସୀ ଶ୍ରୀଯୁକ୍ତ ଦୋଳଗୋବିନ୍ଦ ସମନ୍ତସିଂହ ମହାପାତ୍ର, ଯାଜପୁର ନିବାସୀ ମୁକ୍ତାର ୰ଦ୍ୱାରକାନାଥ ପଣ୍ଡା, ବସନ୍ତକୁଣ୍ଡଳର ଶ୍ରୀଯୁକ୍ତ ଅନାଦି ନାଏକ, ଶ୍ରୀଯୁକ୍ତ ଗୁରୁଚରଣ ଜେନା ବି. ଏଲ୍., ଶ୍ରୀଯୁକ୍ତ ଗଦାଧର ଜେନା ବି. ଏଲ୍., ଛତ୍ରୋଲ ଥାନାର ଅଧିନେ ନିବାସୀ ଶ୍ରୀଯୁକ୍ତ ଗୋପାଳଚରଣ ମହାନ୍ତି, ହୋମିଓ ପ୍ୟାଥିକ ଡାକ୍ତର ଶ୍ରୀଯୁକ୍ତ ଅତୁଳଚନ୍ଦ୍ର ଗୁପ୍ତ, ସତ୍ୟବାଦୀର ୰ରାମଚନ୍ଦ୍ର ରଥ ଓ ଜେଲଙ୍ଗର ଶ୍ରୀ ଭୁବନେଶ୍ୱର ମିଶ୍ର ଓ ଲକ୍ଷ୍ମଣପୁର ନିବାସୀ ପଣ୍ଡିତ ଶ୍ରୀ ଗୋବିନ୍ଦଚନ୍ଦ୍ର ତ୍ରିପାଠୀ କାବ୍ୟତୀର୍ଥ ପ୍ରମୁଖ ମୋର ବନ୍ଧୁମାନେ ଏ ବହି ପ୍ରକାଶ ପାଇଁ ସ୍ନେହ ଓ ଉତ୍ସାହ ଦାନ କରିଥିବାରୁ ମୁଁ ସେମାନଙ୍କଠାରେ କୃତଜ୍ଞତା ଜ୍ଞାପନ କରୁଅଛି ।

ଗ୍ରନ୍ଥକାର

## ଚିତ୍ର ପରିଚୟ

୧ । ସୂର୍ଯ୍ୟାସ୍ତ ସମୟରେ ତାପସୀରୂପିଣୀ ଉପଲେଖାକୁ ଦେଖି ଦେଖି ସଖୀସମଭିବ୍ୟାହାରରେ ଚନ୍ଦ୍ରଶାଳାରୁ ସୋପାନ ଦେଇ ଇନ୍ଦୁରେଖାର ଦ୍ରୁତବେଗରେ ଅବତରଣ ।

୨ । ସର୍ବରୂପଲାବଣ୍ୟସମ୍ପନ୍ନା ଇନ୍ଦୁରେଖା ଗୋଟିଏ ହସ୍ତରେ ଗୋଟିଏ ଲୀଳାକମଳ ଧରି ଦଣ୍ଡାୟମାନା ।

୩ । ସଖୀ ସହିତ ରାଜକୁମାର-ଦର୍ଶନାକାଙ୍କ୍ଷିଣୀ ସୁନ୍ଦରୀ ଭକ୍ତିମତୀ ରାଜକୁମାରୀ ଇନ୍ଦୁରେଖାର କାଶୀକ୍ଷେତ୍ରରେ ନିଶୀଥରେ ଶିବ ଦର୍ଶନ ।

୪ । ପ୍ରତ୍ୟୁଷରେ ଗୋଟିଏ ନଦୀ ନିକଟରେ ତରୁଣୀ ଇନ୍ଦିରା ବସି ନଦୀର ବିପରୀତ ତୀରରୁ ପ୍ରତ୍ୟାଗତ ଚକ୍ରବାକମିଥୁନ ନଦୀ ମଧ୍ୟରେ ପରସ୍ପର ସ୍ନେହସମ୍ଭାଷଣ ହେଉଥିବା ସମୟରେ ସେମାନଙ୍କୁ ଦେଖି ମୁଗ୍ଧ ହୋଇଥିବା ଓ ସେହି ସମୟରେ ଯୋଦ୍ଧୃବେଶଧାରୀ ସିନ୍ଧୁ ଯୁବରାଜ ଅଶ୍ୱାରୋହଣପୂର୍ବକ ପଶ୍ଚାତ୍ ଭାଗରୁ ଆସି ନଦୀର ନିକଟବର୍ତ୍ତୀ ବୃକ୍ଷ ନିକଟରେ ପ୍ରବେଶ ।

୫ । ନିଶିରେ ନିର୍ଜନ ତମ୍ବୁସ୍ଥିତ ପଲଙ୍କ ଅଙ୍କରେ ସୁଷୁପ୍ତା ଇନ୍ଦୁରେଖା ନିକଟରେ ଅଙ୍ଗରାଜ ଶିଖଣ୍ଡିରୁଳଙ୍କର ପ୍ରବେଶ ଓ ବିସ୍ମୟାବସ୍ଥା ଚିତ୍ତରେ ଦଣ୍ଡାୟମାନ ।

# ମୁଖବନ୍ଧ

ସରସ୍ୱତୀଙ୍କର ବରପୁତ୍ର ପ୍ରାଚୀନ ଓଡ଼ିଆ କବିମାନଙ୍କର କାବ୍ୟ, ଚମ୍ପୂ ଓ ପଦ୍ୟାବଳୀମାନ ପଢ଼ିଲେ ତାହା ପାଠକ ଓ ଶ୍ରୋତାମାନଙ୍କୁ ଗୋଟିଏ ଗୋଟିଏ ଅପୂର୍ବ ମନୋହର ଭାବରାଜ୍ୟକୁ ନେଇଯାଆନ୍ତି, ତାହା ବୋଧହୁଏ ଅଧିକାଂଶଙ୍କୁ ଅବିଦିତ ନାହିଁ । ବିଂଶ ଶତାବ୍ଦୀରେ ମଧ୍ୟ (ଯେତେବେଳେ କି ଉତ୍କଳ ସାହିତ୍ୟ ବିଦେଶୀ-ପ୍ରଭାବ ଦ୍ୱାରା ପ୍ରଭାବିତ) ପ୍ରାଚୀନ କବିମାନଙ୍କର ମନୋହର ରସମୟ କବିତାମାନ ଓଡ଼ିଆର ପ୍ରାଣକୁ ସରସ ଓ ମଧୁମୟ କରୁଅଛି । ସଭା, ସମିତି, ନୃତ୍ୟ ଗୀତାଦିରେ ପ୍ରାଚୀନ ଛାନ୍ଦ ଓ ଗୀତମାନ ବିଶେଷ ଭାବରେ ଶ୍ରୋତାମାନଙ୍କ ମନକୁ ହରଣ କରେ । ସେମାନଙ୍କର ଅଧିକାଂଶ କବିତା ବାସ୍ତବରେ ହିଁ ସ୍ୱଭାବ ସୁନ୍ଦର ଓ ଅଳଙ୍କାରମୟ । ଉଚ୍ଚ ଓ ନିମ୍ନସ୍ତରର ପାଠକ ଭେଦରେ ପ୍ରାଚୀନ ଲେଖାରେ ମଧ୍ୟ କାବ୍ୟ, କବିତା, ଚଉଆ ଓ ଝୁମ୍ପା ଗୀତମାନ ଦେଖାଯାଏ । ଭଞ୍ଜ, ସାମନ୍ତସିଂହାର ପ୍ରଭୃତି ମହାମନୀଷିଙ୍କର ଲେଖନୀପ୍ରସୂତ ଛାନ୍ଦ ଓ ଅଳଙ୍କାରପୂର୍ଣ୍ଣ କବିତାମାନଙ୍କୁ ଅଳ୍ପଶିକ୍ଷିତ ବା ଅର୍ଦ୍ଧଶିକ୍ଷିତମାନେ ପଢ଼ି ସେମାନଙ୍କର ଭାବ-ସମ୍ପଦକୁ ଗ୍ରହଣ କରିବା ସହଜସାଧ୍ୟ ନୁହେଁ । ସେଥିପାଇଁ ଶିକ୍ଷା, ସାଧନା ଓ ସମୟ ଦରକାର । ସବୁ ଦେଶରେ ଓ ସବୁ ସମୟରେ କବି ଓ ଲେଖକ ସଂଖ୍ୟା ସାଧାରଣତଃ ବେଶି, କିନ୍ତୁ ଉପଯୁକ୍ତ ପାଠକଙ୍କ ସଂଖ୍ୟା କମ୍; ତେଣୁ ଉପଯୁକ୍ତ ପାଠକ ହେବାପାଇଁ ସାଧନା ବିଶେଷ ଭାବରେ ବାଞ୍ଛନୀୟ ।

ପ୍ରାଚୀନ ଓଡ଼ିଆ ଶବ୍ଦବହୁଳ ଓ ଭାବବହୁଳ କବିତାମାନ ଆଦିରସପୂର୍ଣ୍ଣ ଓ କ୍ଲିଷ୍ଟ ବୋଲି ଆକ୍ଷେପ କରି କେହି କେହି ନାସିକା କୁଞ୍ଚନ କରି ଥାଆନ୍ତି ଓ ସେଗୁଡ଼ିକ ଅନୁଶୀଳନ ନ କରି ଓଡ଼ିଆ ସାହିତ୍ୟରେ ଶବ୍ଦସମ୍ପଦର ଅଭାବ ଅଛି କହି ବିଦେଶୀ ଭାଷାମାନଙ୍କରୁ ଶବ୍ଦ ଗ୍ରହଣ କରିବାକୁ ତତ୍ପର ହୋଇଥାଆନ୍ତି; କିନ୍ତୁ ଆଦିରସ ଯେ ସର୍ବତୋଭାବରେ ହେୟ, ତାହା ମନେ କରିବା ସଂସ୍କୃତ ସାହିତ୍ୟ ଓ ବିଦେଶୀ ଉନ୍ନତ ସାହିତ୍ୟରେ ଅନଭିଜ୍ଞତାର ପରିଚାୟକ ।

ଶଂସିତ ଇନ୍ଦୁରେଖା କାବ୍ୟ ପ୍ରାଚୀନ ଶୈଳୀରେ ଲେଖା ହୋଇଥିଲେ ମଧ୍ୟ ଏହା ଯୁଗରୁଚିର ଅନୁଗତ ହୋଇଅଛି । ଏଥିରେ ୨୩ଟି ଛାନ୍ଦ ଅନେକାର୍ଥ ଶ୍ଳେଷଯୁକ୍ତ ଓ ନାନା ଅଳଙ୍କାର ସମନ୍ୱିତ ହୋଇ କ୍ଲିଷ୍ଟ ହେବାସତ୍ତ୍ୱେ ଭାବୋଦ୍ଦୀପକ ହୋଇଅଛି । ଏ କାବ୍ୟର ଅନ୍ୟ ଛାନ୍ଦଗୁଡ଼ିକ ଲଳିତ ଓ ସରସ, ଏହା ପାଠକ ମାନେହିଁ ସ୍ୱୀକାର କରିବେ । ପ୍ରାଚୀନ ସାହିତ୍ୟର ଅଳଙ୍କାର ଓ ଭାବ ସୁବୋଧ ଓ ସୁଗମ ହେବା ଇଚ୍ଛାରେ କବି ଯଥେଷ୍ଟ ଚେଷ୍ଟା କରିଅଛନ୍ତି । ଅଧିକ ମଧ୍ୟ କାବ୍ୟରେ ପ୍ରସଙ୍ଗସ୍ଥଳରେ ନାନାପ୍ରକାର ଉପଦେଶ, ଧର୍ମତତ୍ତ୍ୱ, ଯୋଗ, ପ୍ରେମଭକ୍ତି, ଶବ୍ଦାଳଙ୍କାର ଓ ଅର୍ଥାଳଙ୍କାରମାନ ସନ୍ନିବେଶିତ କରି ଏହାକୁ ସୁପାଠ୍ୟ ଓ ସୁବୋଧ କରିଅଛନ୍ତି ।

ଉଦାହରଣସ୍ୱରୂପ ନିମ୍ନରେ କେତେକ ପଦ ଉଦ୍ଧୃତ ହେଲା :—

**ନାୟିକା ଶୋଭା (ବ୍ୟାଘ୍ରଗତି ନ୍ୟାୟ)**

ବଳଶୋଭ ଶୋଭିବଳ ବଳ　　　କଳ ହେବ କି ତା କଳ କଳ
ଅଳୀକ ନମାନ ଦେଖିଛି ନୟନ　　　ପଦ୍ମ ମଣି କରେ ଅଳ ଅଳ
ଗୋ କଣି ପୁଣି, ନେବ ତା କଙ୍କଣୀ କଣିକଣି ।

କବିତାରେ ଛବି କବି କବି      ଭାବି ନ ପାରିବେ ଭାବୀ ଭାବି,
ଦ୍ରବିବେ ଯା ନାମେ ହଂସାରୂଢ଼ ଭ୍ରମେ କାମ ଯିବେ ପ୍ରେମେ ଦ୍ରବି ଦ୍ରବି,
ଗୋ ସ୍ୱରପର ! ଜପିବେ ତା ନାମେ ସ୍ମର ସ୍ମର ।

× × × ×

ହଂସମାନେ ହେବେ ରତି ଲବେ      ଛଳ ନାସା ଛଳଛବି ଭାବେ
ବକ୍ଷରେ ସେ ବେଗ ଯୋଗୀଯୋଗ ଯାଗ ଭଙ୍ଗିଦେବ କମ୍ବୁ ତମ୍ବୁ ଲଭେ,
ଗୋ ସୁଲକ୍ଷଣି ! ଲକ୍ଷଶୋଭିବିଲକ୍ଷଣକାରିଣୀ । ୭ମ ଛାନ୍ଦ ।

## ପ୍ରାତଃକାଳ ବର୍ଣ୍ଣନ (ମେଷଯୁଦ୍ଧ, ବସୋଧାଭିଷ, ବନ୍ଦୋମ ଓ ସର୍ବସମକ)

ଭେନ ସୁଧୀରେ ଧୀରେ ରମ୍ୟରସ      ଖରେ ଖ-ରେ ତାରିକା ତେଜାଙ୍କ ହ୍ରାସ
ନିଶା ବିନାଶ ଊଷା ପରକଟ      ଚେକି ମୁକୁଟ ଡାକଇ କୁକ୍କୁଟ
ଊଷା ଗାୟତ୍ରୀ ଛନ୍ଦେ ଆବାହନ      କରି ପିକ ବରେ ବୀଣା ଗାୟନ
କାନ୍ତ ପଣତ ଧରେ କେ ସୁମାର      କାନ୍ତ ପଣତ ଛଡ଼େ କେ ସୁମାର ।

× × × ×

କେହୁ କୃତନା ମାନବଭଞ୍ଜନ      କାନ୍ତ ମେଷଯୁଦ୍ଧେ କରେ ମୋଚନ,
ଚିରଦାସ ରତି ରସଦା ! ରତି      ଚଲୁ ମଧ୍ୟ ସଢ଼ି ସହୁ ! ମଉଛି
ରସାସ୍ୱାଦିନୀ ଧନ୍ୟ ଧୀସ୍ୱସାର      ରଚ ହସ ନାଶ ନା ସହଚର
ପୁଣି ବନ୍ଦୋମେ କେ ମାନବତୀଙ୍କ      ରସାବେଗେ ଭିଷେ ବାଣୀତତ୍ତ୍ୱଙ୍କ
ରଖ ରଖ ନାଗର କଣାଇନ      ରସା ସଦା ଦାସ ରଙ୍କରତନ
ଭୁଜଙ୍ଗମେ ବଟପୀକ ଛଡ଼ଲେ      ଭୁଜଙ୍ଗମେ ବଟପୀକ ଲେଢ଼ିଲେ
କାନ୍ତଛବିକର ଛଡ଼େ ପଦ୍ମିନୀ      କାନ୍ତ ଛବିକର ଜଡ଼େ ପଦ୍ମିନୀ
ହେଲେ ବାସରେ ଅଛନ୍ତି ପଦ୍ମିନୀ      ହେଲେ ବାସରେ ଅଛନ୍ତି ପଦ୍ମିନୀ ।

୧୦ମ ଛାନ୍ଦ ।

## ଉପମା (ଯୁବତୀ ଶୋଭା ବର୍ଣ୍ଣନା)

ଅଙ୍ଗନା ହୋଇଲେ ସରିତ ସରି      ଅଶେଷ ରସ ଅଛି ତହିଁ ପୁରି
କର-ବୀଚ ତାର ଅତି ସୁନ୍ଦର      ଖୋଷା-ସୁଭଉଁରି କି ମନୋହର
କୋକସ୍ତନ ଯହିଁ । ଚେଳ ଶସ୍ତ୍ର ଜଳମଧ୍ୟୁଁ ଦିଶଇ ।
ବାଳମାନ ପଦ୍ମ ଭବେ ମାନସେ      ବସନ ଭଙ୍ଗି ବାମାଙ୍ଗାକୁ ଧଇଣେ
ମୀନ-ନେତ୍ର ସଲିଳରେ ଖେଳଇ      ଅନଙ୍ଗ ମକର ବସଇ ଯହିଁ
ଚକ୍ର ନଗ୍ନସ୍ତନ । କରି କରେ ସେ ମନ୍ଥର ଗମନ ।

୪୬ଶ ଛାନ୍ଦ ।

ସୁଷମା କାନନେ ମାନସ ବାତାସ୍ତୁ କରୁଥିଲେ ବିଚରଣ ଯେ
ଅନଙ୍ଗ କସ୍ତିତ ଉତ୍ସେ କଲ ଜଟ କୁଚ-ଗିରି ଅନ୍ୱେଷଣ ଯେ
ଆବେଗେ । କେବେ ବା ନିତମ୍ବେ ଖସେ ଯେ ।
ବେପଥୁରେ ପଡ଼ି ସୁପଥକୁ ହୁଡ଼ି ଲେଉଟିଲେ ସନ୍ତାପ ଶେଷେ ଯେ ।

୧୬ଶ ଛାନ୍ଦ ।

## ଅନୁରାଗ (ବିରୋଧାଭାସ)

ଇଚ୍ଛୁ ହେବାକୁ ସେ ତ ଏରୂପ ବଧିର
ନ ଇଚ୍ଛୁ ସେ ହେବାକୁ ଏରୂପ ବଧିର
ସ୍ୱାମୀ ନ ସ୍ୱବ ସେ ଧୀର ।
ଶୋକପାସୋରା ହେଲଣି ଅଶୋକପାସୋରା ।

୧୯ଶ ଛାନ୍ଦ ।

## ନବବିଧ ପ୍ରକାର ଶ୍ଳେଷ

ବିରସରତ ଯେ କାଳେ ସ୍ଥିରରେ ବହନ;
ବିପ୍ରଭଞ୍ଜନକୁ  ଶୋଭି କଳ୍ପ ଅଣି ଘନ ।

## ଉପଦେଶ

କାମକ୍ରୋଧ ବେଗ ଯେ ଅଜୀବନ    ସହିଯାଏ ଏଥି ମୋକ୍ଷ ତା ସେନ,
ହେଲେ ଅଷ୍ଟାଦଶ ଦୋଷବିହୀନ    ଶାନ୍ତିନିକେତନ ହୁଅଇ ମନ ।
ଆଚରିଲେ ବ୍ରହ୍ମଚର୍ଯ୍ୟ,
ହୁଏ ଈଶପ୍ରେମ ଲାଭ ଯାଏ ଜଣା ଅନ ଯେ ଜଗତେ ବ୍ୟାଜ ।

୨୮ଶ ଛାନ୍ଦ ।

## ସାଂଖ୍ୟଦର୍ଶନ

ଈଶ୍ୱର ତ୍ରିଗୁଣାତ୍ମିକା ପ୍ରକୃତି    ତହିଁରୁ ମହତ୍ତତ୍ତ୍ୱର ଉତ୍ପତ୍ତି
ମହତ୍ତତ୍ତ୍ୱୁଁ ଜାତ ଯେ ଅହଂକାର    ତହୁଁ ପଞ୍ଚ ମହାଭୂତ ବାହାର
କରେ ପଞ୍ଚ ଏହୁ । ଏକାଦଶେନ୍ଦ୍ରିୟ ଯୁକତ ଦେହି ।
ପଞ୍ଚ ମହାଭୂତେ ଯେ ଗୁଣ ପାଞ୍ଚ    ପଞ୍ଚ ଜ୍ଞାନେନ୍ଦ୍ରିୟ ବିଷୟ ପଞ୍ଚ
ଇନ୍ଦ୍ରିୟଙ୍କ ନାଥ ଅବ୍ୟକ୍ତ ମନ    ସଂଖ୍ୟା କର ଚତୁର୍ବିଂଶ ଏ ଘେନ
ଏହାର ତତ୍ତ୍ୱକୁ । ଜାଣଇ ଯେ ଜାଣେ ତତ୍ତ୍ୱଜ୍ଞାନକୁ ।

୬୬ଷ୍ଠି ଛାନ୍ଦ ।

## ବ୍ରହ୍ମଜ୍ଞାନ

ସତ୍ୟଲୋକ ପର୍ଯ୍ୟନ୍ତେ    ଧପଟ ଦିଅଇ ନିତ୍ୟେ
ପକାଏ ପ୍ରାଣ ଭବବନ୍ଧନେ ।
ସାଲୋକ୍ୟ ସାର୍ଷ୍ଟି ସାମୀପ୍ୟ    ସାଯୁଜ୍ୟରେ ନୋହେ ଲେପ୍ୟ
ପ୍ରକୃତିଙ୍କ ନ ଛାଡ଼େ ମୁଁ ଦିନେ ।
ପ୍ରାଣେଶ୍ୱର ! ପଞ୍ଚ ସ୍ଥାନେ ପଞ୍ଚବାଣ ବିନ୍ଧେ ।
ଫୁଲରେ ନିର୍ମିତ ବାଣ    ବଜ୍ରରୁ ଅଧିକ ଗୁଣ
ପଲକ ମାତ୍ରକେ ଯିବେ ବାନ୍ଧେ ।
ମୂଳାଧାରେ କୁଣ୍ଡଳିନୀ    ସ୍ତମ୍ଭନ ବିନ୍ଧଇ ଜାଣି
ପଡ଼ଇ ଦେବୀ ସେ ଚେଷ୍ଟାହୀନେ ।
ସ୍ୱାଧିଷ୍ଠାନେ ମଦନକୁ    ବିନ୍ଧ ଦଏ ତାପନକୁ
ସ୍ୱକାମୀ ରହଇ ଅଚେତନେ ।
ମଣିପୂରୁ, ଶୋଷଣେ ବାରିଦ ଯାଏ ଗଳି ।

ସିନ୍ଧୁରବର୍ଣ୍ଣା ଲକ୍ଷଣା                    ମୋହ ଭଜଇ ତକ୍ଷଣି
କାମପାବକ ଜଠର ଜଳ ।

୭୧ଶ ଛନ୍ଦ ।

## ଯୁଦ୍ଧଯାତ୍ରା

ଚୀର କାନନ ପୁର ସଇନ                    ଚଳଇ ଯଥା ସ୍ତନିତ ଘନ
ବାୟୁଯୋଗରେ ଏ ଅନୁମାନ ଶସ୍ତ୍ର ବିଦ୍ୟୁ ଯେ ।
କିବା ସାଗରେ ଖେଳେ ଲହରୀ                    ହସ୍ତୀଶରୀର ସେ ଶୋଭା ଧର
ବର୍ଚ୍ଛା ବନ୍ଧୁକ ନକ୍ର ମକରୀ ଖେଳନ୍ତି ମଧ୍ୟ ଯେ ।
ତାଳ ତାଳକେ ନାଚ ପଡ଼ଇ ପଦ ଯେ
ଧରେ ଘମର ନୃତ୍ୟ ଉଦ୍ଭଟଛନ୍ଦ ଯେ
ଚମୁପତିର ଆଦେଶ ଯଥା                    ମଠ ଚଞ୍ଚଳ ଗମନ ତଥା
ବୀରେ ଚଳନ୍ତି ଜମାନ ମଥା ବହି ପ୍ରମୋଦ ଯେ ।

୬୧ଶ ଛନ୍ଦ ।

## ସଖୀର ଛଳ ଉକ୍ତି

ଜଳ ଝାଳ ଛାଡ଼ ଯୋଗୀ ହୁଅଇ                    ଭାଲୁ କେଉଁକାଳେ ଶୁଣା ନ ଥାଇ
ସନ୍ଧ୍ୟା ବେଳ ଶୀତ ଖାଣି ପବନ                    ସ୍ୱାର୍ଥତ୍ୟାଗୀ କାହିଁ ହୁଏ ସଜ୍ଞାଣ
ତେମନ, କାଲୁ କାମିନୀ ସିଛ ।
ଏ ଜାଣ କଥାକୁ କଲଲ ଛଳ ।

୬୮ଷ୍ଟି ଛନ୍ଦ ।

## ମାଲଯମକ

ଝରେଲେ ଭୂଧର ଧର ଧରଣୀ କମ୍ପନ ।
ଶୁଭେ ଯଥା ଘନ ଘନ ଘନ ଗରଜନ ।
ଗୃଳଅଛନ୍ତି ତୁରଙ୍ଗ ରଙ୍ଗ ରଙ୍ଗ ବେତେ ।
ସୁମନ୍ତର କର କସି କରଣୀ ସଙ୍ଗତେ ।

୭୪ଶ ଛନ୍ଦ ।

## ଆଦ୍ୟ ଯମକ

ମାଠବୀ ମାଧବୀକୁଞ୍ଜକୁଟୀ ମଧ୍ୟେ ଶୋଇ ।
ମାନ ମାନବତୀ କରି ଅଧୋମୁଖେ ରହି ।
ବଧୂ ବିଟୂରେ ନିକୁଞ୍ଜ ହୁଅରେ ଶୋଭନ
ଥନ ଥନ ନେନେ ବନ ଯୋଗୀ ନବଘନ ।

୩୯ଶ ଛନ୍ଦ ।

## ବିରହୀର ସ୍ମୃତି (ନାୟିକାବର୍ଣ୍ଣନ)

ପୁନରୁକ୍ତବଦାଭାସ

ଇନ୍ଦୁ ବିଧୁ ଚନ୍ଦ୍ରରୁ ସେ ଶୀତଳ                    ଅବ୍ଜ କମଳରୁ ମୁଖ ମଞ୍ଜୁଳ
ବଳେ ସୁବର୍ଣ୍ଣ କନକ କାଞ୍ଚନ                    କୁନ୍ଦ ଦନ୍ତପୁଷ୍ପକୁ ତା ଦଶନ ।
ସୁଧା ଅମୃତ ପୀୟୂଷ ଉଚ୍ଚିକ                    ଶୋଭା ବିମ୍ବରେ ଦଶଇ ଅଧିକ ।

## କୌତୁକ ପ୍ରଶ୍ନ

ନୃପ କଣ୍ଠରେ ଯେଉଁ ଫୁଲ ସଙ୍ଗୀ,
ତୃତୀୟ ବର୍ଣ୍ଣ ଲୋପେ ନ କହ ଧନ,
ଧାତ୍ରୀ ଦେବକୀ ବାମେ ସୁନ୍ଦରୀ କର,
ନୋହିଲେ ଅଦ୍ୟ ହେବ ମୋ ଗଳେ ମାର ।

୫୮ଶ ଛାନ୍ଦ ।

## ଦତ୍ତଚ୍ୟୁତାକ୍ଷରରେ ୪ ପ୍ରକାର ଶ୍ଳେଷ

[ଉ] ହର ବାରେ ହେ ଦୟା କର ମଧୁହା [ସୀ]
[ଚ୍ୟୁ] ଧାତ୍ର ଭବେ ତୁ ତାପ ହେବ କି ସୁହା [ସୀ]
[ଏ] କାନ୍ତ ଭବନ୍ ଦଅ ସୁଶାନ୍ତ ରସ [ଦା]
[ଦ୍ୱ] ଯୋଗୀ ଧ୍ୟାବେ ଦଳଡଫଟହରଷ [ଦା]

## ବିରହିଣୀର ପିକକୁ ଉକ୍ତି

ଶୁଣିଲେ କୋକିଳ ଜନ ଅକାରକୁ କରେ ମେଳ,
ଯାମକ୍ ଅକାର ଘେନେ ଗଣୁଛି ବନେ ଯେ,
ଏହିପରି କାନ୍ତେ କହ ବାହୁଡ଼ିବୁ ପିକ ଭୃଙ୍ଗ,
ଜୀବନ୍ତ କି ମୋତେ କାନ୍ତ ଦେଖୁ ଉଦନ୍ତ ଯେ ।

୬୦ଷ୍ଠି ଛାନ୍ଦ ।

## ଆଧୁନିକ ଶିକ୍ଷାଗତ ବିଷୟର ସୂଚନା

ବାମନା ବ୍ୟାସାର୍ଦ୍ଧ ଦୁଃଖ ପରିଧି ବ୍ୟାସାର୍ଦ୍ଧ ବୃଦ୍ଧିରେ ପରିଧି ବୃଦ୍ଧି
ଲବେ ଧର କାମ ସୁଖ ହରତେ ହର ବୃଦ୍ଧି ଲବ ନାଶନ କରେ,
ଶାନ୍ତ ସେହିପରି—ହରେ ଲବେ ବୃଥି ନୃପକୁମାର !

୬୨ଷ୍ଠି ଛାନ୍ଦ ।

## ବେଶ

ନାନା ରତ୍ନହାର କୁମ୍ଭସ୍ତନୀର ଗଳା ଭୂଷାଇ କେ କରେ ବୁଟର,
ବାଳ ରବିକର ଧୀର ତରଙ୍ଗେ ନାଚେ କି ପଲ୍ଲବେ ସପତ ରଙ୍ଗେ
କରେ ଶଙ୍ଖଗୃପେ ତୁଳା
ଅଭ୍ରମୁ କରିଣୀକୁମ୍ଭ ସମୀପେ କି ମଧୁରେ କରଇ ଖେଳା ।

ନାସାରେ ଶୋଭଇ ଦେଖ କେ ମୋତି ଠେଲାଇ ଦେଉଛି ତରୁଣ ଦ୍ୟୁତି
ବରିବାକୁ ବଳେ ସ୍ୱବାମଙ୍କ ଶିଖାଇ ଦେବାକୁ କ୍ରମ ରଙ୍ଗ
ଅଭୁତୋପମା ପ୍ରକାଶେ
ବନ୍ଧାବେ ଶୃଙ୍ଗାର ପଥର ମାଳତି ବେପଥୁବଶେ ବଳସେ ।

୩୮ଶ ଛାନ୍ଦ ।

## ସର୍ବତୋଭଦ୍ର—

"ବ ର ହେ ବ ବ ହେ ର ବ"   ଅମ୍ବର ସଖୀର
"ର ସ ବ ହେ ହେ ବ ସ ର"   ସେ ଫୁଲଶରର
"ହେ ବ ର ସ ସ ର ବ ହେ"   ବାମେ ହେଲେ ମତ୍ତ
"ବ ହେ ସ ଦା ଦା ସ ହେ ବ"   ମାନ କଲେ ଜାତ ।

୩୯ଶ ଛାନ୍ଦ ।

## ଗୋମୂତ୍ରବନ୍ଧ

ପ ଙ୍କେ ରୁ ହ ମୁ ଖୀ ପି କ ଭୁ ଷା ର ସ ବ ଗ
ଅ ଙ୍କେ ବ ହ ସ ଖୀ ଶୁ କ ନା ସି ତୋ ଷ ପ ଛ ।

ଗୂଢ଼—   **ମଣ୍ଡୂକପ୍ଲୁତି ଗୋମୂତ୍ରବନ୍ଧ**

ମାର ପ୍ରାଣ ନାଶ ସଖି ! ହାସ ଉଙ୍କା ବାମେ
ଛର ଦାସ ଦୋଷ ଦେଖି ରୋଷ ସଙ୍କା ବାମେ ।

ଗୂଢ଼—   ଛେକାନୁପ୍ରାସ

ଦନୁଜାରିତନୁଜ ଅତନୁ ତନୁ ଘାରେ
ତନୁ ତନୁ ଦାନେ କି ସ୍ୱତନ୍ତ୍ର କେବେ ସରେ ?

୪୨ଶ ଛାନ୍ଦ ।

## ବକ୍ରୋକ୍ତି ( ଅରଣ୍ୟ ବର୍ଣ୍ଣନ )

ଦେଖ ଏଥି କଇଲାସ ଶୋଭୁରେ ଅଟବୀ
ବହେ ବୃଷଭ ପଞ୍ଚାସ୍ୟ ପୁଣି ଶ୍ୟାମାଛବି
ଅମରବତୀରେ ଶୋଭେ ବନର ଏ ଦେଶ
ଐରାବତ ଶଙ୍ଖ ସଙ୍ଗେ ସୁମନ ଅଶେଷ ।

୪୮ଶ ଛାନ୍ଦ ।

## ମିଶ୍ରଶଶାଙ୍କ ଅଳଙ୍କାର

କୁଞ୍ଚିତକେଶି ରେ ! ଘୁଞ୍ଚି ଅସ ମୋ ପାଶକୁ
ମୁଞ୍ଚ ମାନ ରଚ ରସ ସଞ୍ଚ ପ୍ରଣୟକୁ ।

## ରଶନାମାଳଙ୍କାର

ରମା ଉମା ସମା ଗ୍ରୀମା   ଅଣିମା ଲଘିମା
ନୀଲିମା ସୁଷମା ସୀମା   ମଣିମା ଗରିମା ।

ଏ ସବୁ ପଦ୍ୟମାନଙ୍କର ଅର୍ଥ ଗ୍ରନ୍ଥର ଯଥାସ୍ଥାନରେ ପଦମାନଙ୍କ କମ୍ମରେ କବ ସନ୍ନିବେଶିତ କରିଅଛନ୍ତି ।

ଅନେକ ନବ୍ୟଶିକ୍ଷିତଙ୍କର ଧାରଣା ଥିଲା ଯେ, ଆଜିକାଲି ଶିକ୍ଷିତମାନେ ପ୍ରାଚୀନ ଧାରାରେ ଅଳଙ୍କାରମୟ ରଚନା କରିବାରେ ସିଦ୍ଧହସ୍ତ ନୁହନ୍ତି । ଏ ଗ୍ରନ୍ଥର କବି ରେଭେନ୍ସା କଲେଜରେ ଆଇ. ଏ. ପରୀକ୍ଷା ଦେଇଥିଲେ ଓ ସେ ପ୍ରାଚୀନ ପଦ୍ଧତିରେ ରଚନା କରିବାରେ

କୃତିତ୍ୱ ଦେଖାଇ ଅଛନ୍ତି ଓ ପ୍ରାଚୀନ ଓଡ଼ିଆ ସାହିତ୍ୟରେ ତାଙ୍କର ବିଶିଷ୍ଟ ସାଧନା ଥିବା କଥା ତାଙ୍କ ରଚନାରୁ ଜଣାପଡ଼େ । ଆଦିରସ ସମ୍ବନ୍ଧୀୟ ଯେଉଁ ସବୁ ବର୍ଣ୍ଣନା ଏ ଗ୍ରନ୍ଥରେ ଅଛି ତାହା ଯଥେଷ୍ଟ କୌଶଳ ଓ ଆଧୁନିକ ରୁଚିର ଅବଲମ୍ବନପୂର୍ବକ ରଚିତ ହୋଇଅଛି । ଅନ୍ତତଃ ଏହା ନିଃସନ୍ଦେହ ବୋଲିଯାଇ ପାରେ ଯେ, ଆଜିକାଲି ଚଳଚ୍ଚିତ୍ର (ସିନେମା) ଆଦିରେ ହେଉଥିବା ଅଭିନୟ ଓ ଚିତ୍ର ଦର୍ଶନ ପ୍ରତି ଆଦର ଦେଖାଇବାଦ୍ୱାରା ଶିକ୍ଷିତମାନଙ୍କର ଯେଉଁ ରୁଚି ପ୍ରତି ଅନୁକୂଳ ପ୍ରମାଣିତ ହେଉଅଛି, କବିଙ୍କ ବର୍ଣ୍ଣନା ତହିଁରୁ ଅତିରିକ୍ତ କେଉଁଠାରେ ହୋଇନାହିଁ । କବିଙ୍କର ଓଡ଼ିଆ ଓ ସଂସ୍କୃତ ଶବ୍ଦ ଉପରେ ଅଧିକାର ଅଛି । ଏହି ଗ୍ରନ୍ଥର ପାଣ୍ଡୁଲିପିକୁ ଉତ୍କଳ ସାହିତ୍ୟ ସମାଜ ପରୀକ୍ଷା ଓ ମତ ପ୍ରକାଶାର୍ଥ କେତେକ ବିଶିଷ୍ଟ ସଭ୍ୟଙ୍କଠାରେ ଅର୍ପଣ କରିଥିଲେ ଓ ଏହି ଗ୍ରନ୍ଥ ଆଧୁନିକ ସାହିତ୍ୟରେ ଗୋଟିଏ ବିଶିଷ୍ଟ ସ୍ଥାନ ପାଇବା ଯୋଗ୍ୟ ବୋଲି ଉକ୍ତ ସଭ୍ୟମାନେ ମତ ଦେଇଥିଲେ । ଗ୍ରନ୍ଥର ପାଣ୍ଡୁଲିପିର କେତେକ ଅଂଶ ପାଠ କରି ବୌଦ୍ଧରାଜ୍ୟର ନରପତି ରାଜା **ଶ୍ରୀ ଶ୍ରୀ ଶ୍ରୀ ନାରାୟଣପ୍ରସାଦ ଦେବ** ମହୋଦୟ ସାତିଶୟ ପ୍ରୀତ ହୋଇ ଏ ଗ୍ରନ୍ଥ ପ୍ରକାଶର ଭାର ଗ୍ରହଣ କରିବାଦ୍ୱାରା ଉତ୍କଳ ସାହିତ୍ୟର ଉପକାର କରିଅଛନ୍ତି । ଆଠମଲ୍ଲିକର ସାହିତ୍ୟପ୍ରେମିକ ରାଜା **ଶ୍ରୀ ଶ୍ରୀ ଶ୍ରୀ କିଶୋରଚନ୍ଦ୍ର** ଏ ଗ୍ରନ୍ଥର କେତେକ ଅଂଶ ପାଠ କରି ସାଧାରଣ ସଭାରେ କବିଙ୍କୁ ଖୁବ୍ ଆଦର ଓ ସମ୍ମାନ ଦେଖାଇଥିଲେ । ମୁଁ ଭାଷାକୋଷରେ ଅଳଙ୍କାର ଆଦିର ଉଦାହରଣ ସ୍ୱରୂପ ଏହି କାବ୍ୟରୁ ଅନେକ ପଦ ଉଦ୍ଧାର କରିଅଛି ।

ଆଶା କରେଁ, ଏ ଗ୍ରନ୍ଥ ଓଡ଼ିଆ ସାହିତ୍ୟ ଓ ଭାଷା-ରସିକମାନଙ୍କଠାରେ ଯଥେଷ୍ଟ ଆଦର ଲାଭ କରିବ ।

ଭାଷାକୋଷ ଆଶ୍ରମ
କଟକ
୨୧ । ୯ । ୧୯୩୪

**ଗୋପାଳଚନ୍ଦ୍ର ପ୍ରହରାଜ**

# ପରିଚୟ

## ଇନ୍ଦୁରେଖା—

କୁରୁକ୍ଷେତ୍ର ରାଜକନ୍ୟା, ଶିଖଣ୍ଡଚୂଳଙ୍କ ପ୍ରଣୟିନୀ । ଏ ଚତୁରା, ରୂପବତୀ, ଗୁଣବତୀ, ବୁଦ୍ଧିମତୀ, ଗର୍ବଶୂନ୍ୟା, ସଖୀସଙ୍ଗକ୍ରୀଡ଼ାପରାୟଣା, ଧାର୍ମିକା, ତ୍ୟାଗିନୀ, ତତ୍ତ୍ୱଜିଜ୍ଞାସୁ, ପତିମନୋମୁଗ୍ଧକାରିଣୀ, ପତିବ୍ରତା, ସଙ୍ଗୀତଶାସ୍ତ୍ର ଓ କଳାଶାସ୍ତ୍ରରେ ଅତି ଶୁଦ୍ଧା, ପତିବିରହକାତରା, ଧୀରା, ଲଜ୍ଜାଶୀଳା ଓ ପରଦୁଃଖକାତରା ଆଦି ଭଲଗୁଣରେ ଭୂଷିତ ଥିଲେ । ଉତ୍କଣ୍ଠା ଓ ଉନ୍ମାଦରେ ସୁଦ୍ଧା ସେ ପତିଙ୍କୁ ନିନ୍ଦା କରି ନାହାନ୍ତି । ତାଙ୍କ କାୟମନୋବାକ୍ୟରେ ଅସଦାଚରଣ କଦାପି ସ୍ଥାନ ପାଇ ନ ଥିଲା । ସେ ଆଦର୍ଶ ନାରୀ ।

## ଶିଖଣ୍ଡଚୂଳ—

ଅଙ୍ଗ ଯୁବରାଜ ଓ ଅଙ୍ଗନୃପତି । ଏ ଆଦର୍ଶପ୍ରଣୟୀ ଓ ଆଦର୍ଶ ନୃପ । ରସଲେଖା ସହିତ ଆଦ୍ୟ ଦର୍ଶନରେ ଯୌବନର ସ୍ୱାଭାବିକ ଶୃଙ୍ଖଳାରୁ ଏହାଙ୍କର ମନ ଧର୍ମପଥରୁ କିଞ୍ଚିତ୍ ବିଚଳିତ ହେଉଥିଲା, କିନ୍ତୁ ସେପରି ଦୋଷ ଦ୍ୱିତୀୟ ଥର ପାଇଁ କୌଣସି ସ୍ଥାନରେ ପରିଲକ୍ଷିତ ହୋଇ ନାହିଁ । ସେ ଅନୁକୂଳ ନାୟକ, ବୀରପୁରୁଷ, ସତ୍ୟବାଦୀ, କ୍ଷମାଶୀଳ, ରାଜଐଶ୍ୱର୍ଯ୍ୟଗର୍ବବିରହିତ, ସୁଶାସକ, ଚତୁର, ଉଦ୍ୟୋଗୀ, ସାଧୁବାକ୍ୟରକ୍ଷଣଶୀଳ, ଶାସ୍ତ୍ରଦର୍ଶୀ, ପ୍ରିୟାବିରହକାତର ଓ ଅଟଳପ୍ରତିଜ୍ଞ ଥିଲେ ।

ପାରାବତଦ୍ୱାରା ଇନ୍ଦୁରେଖା ନାମରେ ନିଜର ନିଦର୍ଶନ ଦେଇ ପରିମଳା ନିକଟ ପତ୍ର ପଠାଇଥିବାରୁ ସେ ସାମାନ୍ୟ ବିବେକଶୂନ୍ୟ ବୋଧ ହେଲେ ସୁଦ୍ଧା ଇନ୍ଦୁରେଖାପ୍ରାପ୍ତିରୂପକ ମହାଦୁରୂହ କାର୍ଯ୍ୟ ସାଧନାରେ ତାହା ଉପାୟମାନଙ୍କ ମଧ୍ୟରୁ ଗୋଟିଏ ଉପାଦେୟ ପନ୍ଥା ବିବେଚିତ ହୋଇଥିବାରୁ ଓ ଚତୁର ପାରାବତ ପରିମଳା ବ୍ୟତୀତ ଅନ୍ୟ ନିକଟକୁ ନିଶ୍ଚୟ ନ ଯିବାର ବିଶ୍ୱାସ ଥିବାରୁ ସେ ଅତ୍ୟନ୍ତ ଚତୁର ବୋଲି ବୋଧ ହୁଅନ୍ତି ନାହିଁ କି ?

ରସଲେଖାର ବଚନ ସତ୍ୟ ହେଲେହେଁ ପ୍ରଥମରେ ତାର କଥାରେ ସମ୍ପୂର୍ଣ୍ଣ ବିଶ୍ୱାସ କରିଥିବାରୁ ତାହାଙ୍କୁ ଅଯଥା ଅବିଶ୍ୱାସୀ ଦୋଷରେ କେହି କେହି ଦୋଷଯୁକ୍ତ କରି ପାରନ୍ତି, କିନ୍ତୁ ସେ ସରଳପ୍ରକୃତିକ ଥିଲେ । ରସଲେଖାର ଧର୍ମଲକ୍ଷଣମାନ ହୃଦୟଙ୍ଗମ କରି ପାରି ତାର ଉଦାସୀନ ବଚନ ଓ ସରଳ ଚାହାଁଣିରୁ ସତ୍ୟ ବିଶ୍ୱାସ ପାଇଥିଲେ । ସେ ନୀତିଶାସ୍ତ୍ର ଓ କଳାଶାସ୍ତ୍ରରେ ଅତି ଶୁଦ୍ଧ, ଧାର୍ମିକ, ପ୍ରତାପବାନ୍ ଓ ଗୀତକୁଶଳ ଅଟନ୍ତି ।

## ରସଲେଖା—

ଏ ଚେଦି ଅଧୀନସ୍ଥ ବିଜୟଗଡ଼ ସାମନ୍ତରାଜାଙ୍କର ପୁତ୍ରବଧୂ । ଏ କାଶୀକେମା ଇନ୍ଦ୍ରବର ସହଚରୀ ଥିଲେ । ଏ ଅତ୍ୟନ୍ତ ଚତୁରୀ, ରୂପବତୀ, ବୁଦ୍ଧିମତୀ ଓ ଧାର୍ମିକା । ନିଜର ଚତୁରତା ଓ ବିଦ୍ୟାବଳରେ ଦୁଇବାର ପତିଙ୍କୁ ବନ୍ଦମୁକ୍ତ କରାଇଥିଲେ । ଏ ପତିଦୁଃଖର ବିନାଶପାଇଁ ସ୍ତ୍ରୀସୁଲଭ ଲଜ୍ଜା ଓ ମର୍ଯ୍ୟାଦାକୁ ଅବହେଳା କରିବାପାଇଁ କୁଣ୍ଠିତା ହୋଇ ନ ଥିଲେ । ଏ ସତୀ । ଅଙ୍ଗ ଯୁବରାଜଙ୍କର ପ୍ରଣୟକୁ ଅସ୍ୱୀକାର କରିଥିବାରୁ ଏ ଯେ ଆରାଧ୍ୟା, ଏଥିରେ ତିଳେ ମାତ୍ର ସଂଶୟ ନାହିଁ । ସ୍ୱାମୀଲାଭ ପାଇଁ ଏ ଯେତେ ପ୍ରକାର କଷ୍ଟ ଭୋଗ କରିଥିଲେ ସେଗୁଡ଼ିକ କଷ୍ଟ ବୋଲି ମନେକରି ନାହାନ୍ତି । ଏ କାର୍ଯ୍ୟକୁଶଳା ଅଟନ୍ତି ।

# ବର୍ଣ୍ଣିତ ବିଷୟ

ଅଙ୍ଗଦେଶର ଯୁବରାଜ ଦିନେ ପାରିଧି କରିବାକୁ ବନକୁ ଯାଇଥିଲେ । ଶିକାର କରିବା ସମୟରେ ଗୋଟିଏ ହରିଣଶିଶୁକୁ ଦେଖି ତାହାର ଅନୁସରଣରେ ଗୋଡ଼ାଇ ଯାଇଁ ଯାଇଁ ଅନୁଚରବର୍ଗଙ୍କୁ ଛାଡ଼ି ବନର ଗୋଟିଏ ମନୋହର ପ୍ରଦେଶରେ ପ୍ରବେଶ କଲେ ଓ ସେଠାରେ ଏକ ରୂପଯୌବନସମ୍ପନ୍ନା ତରୁଣୀକୁ ଖଣ୍ଡିଏ ମର୍ମର ପ୍ରସ୍ତରରେ ବସି ସେହି ହରିଣଶାବକକୁ ଧରିଥିବାର ଦେଖିଲେ । ଯୁବରାଜ ଯୌବନସୁଲଭ ଧୃଷ୍ଟତାରେ ଛଳୋକ୍ତିରେ ପରିଚୟ ମାଗିବା ସଙ୍ଗେ ସଙ୍ଗେ ପ୍ରଣୟଭିକ୍ଷା କରୁଥିବାର ଜାଣିପାରି ସେ ତରୁଣୀ କପଟରେ ପ୍ରଥମରେ ଯୁବରାଜଙ୍କୁ ସତ୍ୟ କରାଇ ନେଲା ଯେ, ଯଦି ଯୁବରାଜ ତାର ବାକ୍ୟକୁ ରକ୍ଷା କରିବାର ସ୍ୱୀକାର କରିବେ, ତାହାହେଲେ ସେ ତାଙ୍କୁ ଆନନ୍ଦ ଦେବାକୁ ଯଥାଯୋଗ୍ୟ ସାହାଯ୍ୟ କରି ପାରିବ । ଯୁବରାଜ ସତ୍ୟ କରିବାରୁ ସେ କହିଲା ଯେ, ସେ ଅବିବାହିତା ନୁହେଁ । ପୁନର୍ବାର ବିବାହ କରିବା ହିନ୍ଦୁଧର୍ମବିରୁଦ୍ଧ ଓ ବଂଶଗୌରବ । ତାହା ମୁକ୍ତି ଓ ଶାନ୍ତିକୁ ନଷ୍ଟ କରେ । ଚେଦି ଦେଶର ନୃପତି ତାର ସ୍ୱାମୀକୁ ବନ୍ଦୀ କରି ରଖିଥିବାରୁ ସେ ଶବ୍ଦ, ରସ, ଗନ୍ଧାଦିରେ ନିବୃତ୍ତିମାର୍ଗକୁ ଧାରଣ କରି ଏ ବନରେ ତାପସୀ ଭାବରେ ରହିଅଛି । ପୁଣି ପ୍ରକାଶ କଲା ଯେ, ଯୁବରାଜଙ୍କ ଯୋଗ୍ୟ ରାଜକୁମାରୀ କୁରୁକ୍ଷେତ୍ରରେ ଶୋଭାସମ୍ପଦରେ ଦିନକୁ ଦିନ ବଢ଼ି ନବ ତରୁଣୀ ହୋଇ ରହିଅଛି ଓ ସେ ନିଜର ଯତ୍ନଦ୍ୱାରା ଇନ୍ଦୁରେଖାକୁ ଯୁବରାଜଙ୍କ ସହିତ ବିବାହ କରାଇ ଦେବ । ପ୍ରତ୍ୟୁପକାରସ୍ୱରୂପ ଯୁବରାଜ ତାଙ୍କର ସ୍ୱାମୀଙ୍କୁ ବନ୍ଦମୁକ୍ତ କରାଇ ଦେବେ ।

ରାଜକୁମାର ପୂର୍ବରୁ ଇନ୍ଦୁରେଖାର ନୈସର୍ଗିକ ଶୋଭା ବିଷୟ ଶୁଣିଥିଲେ; ବର୍ତ୍ତମାନ ତାଙ୍କର ପ୍ରଣୟ ଇନ୍ଦୁରେଖା ଆଡ଼କୁ ପ୍ରଧାବିତ ହେଲା ।

ତଦନନ୍ତର ରସରେଖା ସନ୍ନ୍ୟାସିନୀ ବେଶରେ ଇନ୍ଦୁରେଖା ନିକଟକୁ ଯାଇ ନିଜର ଚତୁର ପଣରେ ରାଜପୁତ୍ରର ଚିତ୍ରପଟରେ ଇନ୍ଦୁରେଖାର ଅନୁରାଗ ଜନ୍ମାଇ ସେ ଚିତ୍ରପଟକୁ ଇନ୍ଦୁରେଖାକୁ ଦେଇ ଓ ଇନ୍ଦୁରେଖାର ଅନ୍ତରଙ୍ଗ ସଖୀ ଚମ୍ପଳା କର୍ତ୍ତୃକ ଇନ୍ଦୁରେଖାର ଚିତ୍ରପଟ ପ୍ରାପ୍ତହୋଇ ଫେରିଆସି ରାଜକୁମାରଙ୍କୁ ରାଜକୁମାରୀର ଚିତ୍ରପଟ ଦେଲା । ଦିନକୁ ଦିନ ନାନା କାରଣରୁ ଉଭୟଙ୍କର ଅନୁରାଗ ପରସ୍ପରପ୍ରତି ବଢ଼ିଲା । ରାଜକୁମାରୀ ତାଙ୍କର ପୋଷା ଶୁକପକ୍ଷୀକୁ ଶିଖଣ୍ଡିଚୂଳ ଓ ରାଜକୁମାର ତାଙ୍କର ପୋଷା ଶାରୀକୁ ଇନ୍ଦୁରେଖା ନାମ ପଢ଼ିବାକୁ ଶିଖାଇଥିଲେ ।

ପ୍ରତି ଦ୍ୱାଦଶ ବର୍ଷରେ କୁରୁକ୍ଷେତ୍ରରେ କୁମ୍ଭମେଳା ସଙ୍ଗରେ ଆଉ ଗୋଟିଏ ଦ୍ୱୈପାକ୍ଷିକ ମେଳା ହୁଏ । ସେ ବର୍ଷ ରାଜପୁତ୍ର ଉକ୍ତ ମେଳାକୁ ଆସିବାର ସମ୍ଭାବନା କରି ଇନ୍ଦୁରେଖା ମେଳା ନିକଟବର୍ତ୍ତୀ ପଥପାର୍ଶ୍ୱରେ ତାଙ୍କର ଥିବା ଗୋଟିଏ ହର୍ମ୍ୟରେ ସହଚରୀଗଣଙ୍କ ସହିତ ବାସ କରୁଥିଲା ।

ଘଟକୁ ଘଟ ସେହି ରାସ୍ତାଦେଇ ଅଙ୍ଗଯୁବରାଜ ଯାଉଁ ଯାଉଁ ଉକ୍ତ ହର୍ମ୍ୟ ନିକଟରେ ଇନ୍ଦୁରେଖାର ଶୁକ ଶିଖଣ୍ଡିଚୂଳ ଅର୍ଥାତ୍ ଯୁବରାଜଙ୍କ ନାମ ଧରି ଡାକିବାରୁ ରାଜପୁତ୍ର ଉକ୍ତ ହର୍ମ୍ୟକୁ ଅନାଇ ଦେଲେ; ସେହି ମୁହୂର୍ତ୍ତରେ ଦୈବାତ୍ ରାଜପୁତ୍ରଙ୍କର ସାରୀ ଇନ୍ଦୁରେଖା ବୋଲି ଡାକିଲା । ରାଜକୁମାର ଓ ରାଜକୁମାରୀ ପରସ୍ପରକୁ ଦର୍ଶନ କରି ସାତ୍ତ୍ୱିକ ବିକାରପୂର୍ଣ୍ଣ ହେଲେ ।

ତଦନନ୍ତର ରାଜପୁତ୍ର ନିର୍ଦ୍ଦିଷ୍ଟସ୍ଥାନକୁ ଫେରିଯାଇ ପଦ୍ମଲାର ପ୍ରୋତ୍ସାହନ ଦ୍ୱାରା କାଶୀ ବିଶ୍ୱନାଥ ମନ୍ଦିରରେ କାର୍ତ୍ତିକ ଦିନ ଦର୍ଶନାଶାରେ ଇନ୍ଦୁରେଖା ନିକଟକୁ ପତ୍ର ପଠାଇଲେ । ଇନ୍ଦୁରେଖା ପଦ୍ମଲା ହସ୍ତରେ ସଖୀ ନାମରେ ଛଳ ସେହି ଦିନ ଓ ସେହି ସ୍ଥାନକୁ ସଙ୍କେତ

ହିର ପାନ ହେଲେ । ଇନ୍ଦୁରେଖାର ସହଚରୀମାନେ ମଧ୍ୟ ରାଜକୁମାରୀଙ୍କ ଅନୁରାଗ ଜଣାଇ ପତ୍ର ପଠାଇଲେ । ଯେ ସନ୍ନ୍ୟାସିନୀ ବେଶରେ ଏହାପତ୍ର ଆଦାନପ୍ରଦାନ କରିଥିଲେ ତାଙ୍କର ନାମ ରସଲେଖା । ସେ ଦୂତୀକାର୍ଯ୍ୟ କରି ଅନେକ ସମ୍ବାଦ ନବା ଆଣିବା କରିଥିଲେ । ଯଥା ସମୟରେ ଦର୍ଶନ ହୋଇ ପାରି ନ ଥିଲା, କାରଣ ଉକ୍ତ ଦିନ ଅଙ୍ଗଯୁବରାଜ କାଶୀସମରରେ ବ୍ୟାପୃତ ରହିଥିଲେ । ପରଦିନ ଶିବମନ୍ଦିରରେ ଇନ୍ଦୁରେଖାକୁ ଦର୍ଶନ ଦେଇଥିଲେ । ଗାନ୍ଧର୍ବ ମତରେ ସେ ସ୍ଥାନରେ ରାଜକୁମାର ଓ ରାଜକୁମାରୀଙ୍କର ବିବାହ ସଖୀମାନଙ୍କ ସମକ୍ଷରେ ଶିବଙ୍କୁ ସାକ୍ଷୀ କରି ସମ୍ପାଦିତ ହୋଇଥିଲା । ତଦନନ୍ତର ସ୍ୱ ସ୍ୱ ପୁରକୁ ଫେରିଗଲେ ।

ତଦନନ୍ତର ଇନ୍ଦୁରେଖାର ସ୍ୱୟମ୍ବର ହେବାର ସ୍ଥିର ହେଲା । ରାଜପୁତ୍ରମାନେ ନିମନ୍ତ୍ରିତ ହୋଇ ସ୍ୱୟମ୍ବର କ୍ଷେତ୍ରରେ ଉପସ୍ଥିତ ହେଲେ । ପତିମ୍ବରା ଅଙ୍ଗଯୁବରାଜଙ୍କୁ ପତିରୂପେ ବରଣ କଲେ । ତଦନନ୍ତର ନବଦମ୍ପତି କୁରୁକ୍ଷେତ୍ର ରାଜବାଟୀରୁ ମହାସମାରୋହରେ ଅଙ୍ଗଦେଶକୁ ଗଲେ ।

କିଛି କାଳ ଅତିବାହିତ ହେଲା ପରେ ଅଙ୍ଗରାଜପଦରେ ଶିଖଣ୍ଡଚୂଳ ଅଙ୍ଗଦେଶରେ ଅଭିଷିକ୍ତ ହେଲେ ଓ ବୃଦ୍ଧ ନରପତି ବାନପ୍ରସ୍ଥାଚରଣ କଲେ ।

କେତେ ଦିନ ପରେ ଦିନେ ନବ ରାଜଦମ୍ପତି ଉପବନବିହାର କରୁଥିବା ସମୟରେ ଦୈବାତ୍ ରସଲେଖା ପତି ସ୍ମରଣ କରି ଚକ୍ରବାକର ବିରହରେ ବାହାନା ଛଳରେ ମର୍ମନ୍ତୁଦ ଦୁଃଖରେ ନିଜର ପୂର୍ବବୃତ୍ତାନ୍ତ କହୁଥିଲେ । ଏ ସମସ୍ତ ଶୁଣି ମହାରାଜ ଶିଖଣ୍ଡଚୂଳ ରସଲେଖା କରିଥିବା ଶପଥିଥିବା ସତ୍ୟକୁ ସ୍ମରଣ କରି ମହାରାଣୀଙ୍କ ସହିତ ଗୃହକୁ ଫେରିଗଲେ । ଦିନେ ଶ୍ରଦ୍ଧାରେ ପୂର୍ବୋକ୍ତ ଶୁକସାରୀଙ୍କୁ ରାଜଦମ୍ପତି ବିବାହ କରାଇ ଦେଲେ ।

ତଦନନ୍ତର ଅଳ୍ପଦିନ ମଧ୍ୟରେ ଅଙ୍ଗରାଜ ସୈନ୍ୟ ସାମନ୍ତସମଭିବ୍ୟାହାରରେ ଚେଦି ଅଭିମୁଖରେ ରଣଯାତ୍ରା କଲେ । ସେଠାରେ ନବ ନିର୍ମିତ ଦୁର୍ଗରେ ବାସ କଲା ଉତ୍ତାରୁ ରାଜଦୂତ ସମ୍ବାଦ ଦେଲା ଯେ, କାଳୀଭକ୍ତ ପରାୟଣା ମାୟାଯୁଦ୍ଧନିପୁଣା କାଶୀରାଜକନ୍ୟା ଇନ୍ଦିରା ରସଲେଖାର ସ୍ୱାମୀକୁ ଚେଦିରୁ ନେଇ ନିଜ ବନ୍ଦୀଶାଳାରେ ରଖିଅଛନ୍ତି ଓ ସେ ଶୀଘ୍ର ଆସି ଏ ଯୁଦ୍ଧରେ ଯୋଗଦାନ ଦେବେ ।

ଏ ସମ୍ବାଦ ପାଇ ରାଜା ରସଲେଖା ନିକଟକୁ ସମ୍ବାଦ ପଠାଇଲେ ଯେ, ଯେଉଁ ସନ୍ନ୍ୟାସିନୀ ମନ୍ତ୍ରବଳରେ କାଶୀ ସମରରେ ଇନ୍ଦିରାକୁ ପରାଜିତ କରିଥିଲା, ତାଙ୍କୁ ସଙ୍ଗରେ ଘେନିଆସିବା ବାଞ୍ଛନୀୟ । ତଦନନ୍ତର ଯୁଦ୍ଧ ସନ୍ଧ୍ୟା ପର୍ଯ୍ୟନ୍ତ ହେଲା ଓ ତଦନନ୍ତର ସ୍ୱ ସ୍ୱ ବାହିନୀ ସ୍ୱ ସ୍ୱ ଶିବିରକୁ ଫେରିଗଲେ ।

ରସଲେଖା ଏ ସମ୍ବାଦ ପାଇ ଉକ୍ତ ତପସ୍ୱିନୀ ସହିତ ଇନ୍ଦୁରେଖାର ଅନୁମତିକ୍ରମେ ଯୁଦ୍ଧକୁ ଗଲେ । ଇତି ମଧ୍ୟରେ ଇନ୍ଦୁରେଖା ରସଲେଖାଙ୍କୁ ଶିବବରଦ ଫୁଲକୁ ଦାନ କରିଥିଲେ ।

ରସଲେଖା ଓ ସନ୍ନ୍ୟାସିନୀ ଅଙ୍ଗରାଜଙ୍କର ଚେଦିଶିବିର ନିକଟରେ ପ୍ରବେଶ ହେଲା ପରେ ସନ୍ନ୍ୟାସିନୀ ଅଙ୍ଗନୃପତିଙ୍କୁ ଗୋଟିଏ କହ୍ଲାରଫୁଲ ଦେଇ କହିଲେ, "ମହାରାଜ, ଏ ଜୈତ୍ରପୁଷ୍ପ, ଏହାକୁ ରଖିଥିବେ । ଯୁଦ୍ଧରେ ଶାନ୍ତ ହେଲା ଦିନ ଏ ଫୁଲକୁ ନେଇ ଆମ୍ଭର ଶୟନକକ୍ଷକୁ ଲାଗି ନୂତନ ତିଆରି ହେବା ତମ୍ବୁକୁ ଯାଇ କୁଳଦେବୀଙ୍କୁ ନିଶୀଥରେ ପୂଜା କରିବେ । ସେ ତମ୍ବୁ କଞ୍ଚୁକୀବର୍ଗଙ୍କ ଦ୍ୱାରା ସୁରକ୍ଷିତ ହେଉ, ପୁରୁଷମାନଙ୍କର ଅଗମ୍ୟ ଥାଉ, କିନ୍ତୁ ସେ ଶିବିର ମୋ ଅଧିକାରରେ ଛାଡ଼ି ଦିଅନ୍ତୁ ।" ରାଜା ସେ ସମୟରେ ଜୟଲକ୍ଷ୍ମୀଙ୍କୁ କୁଳଦେବତା ବୋଲି ଭାବିଥିଲେ । ତପସ୍ୱିନୀଙ୍କ ଆଦେଶ ପାଳିତ ହୋଇ ନୂତନ ତମ୍ବୁ ପଡ଼ିଲା । ଇତି ମଧ୍ୟରେ ଇନ୍ଦିରା ରସଲେଖାର ସ୍ୱାମୀଙ୍କୁ କାଳୀଙ୍କ ନିକଟରେ ବଳିଦାନ କରି ଚେଦି ଯୁଦ୍ଧକୁ ଅଙ୍ଗରାଜଙ୍କ ବିରୁଦ୍ଧରେ ଯିବାପାଇଁ ପାଞ୍ଚ ସଖୀମାନଙ୍କ ସହିତ ଚଣ୍ଡୀ ମନ୍ଦିରକୁ

ଯାଉଥିବା ସମୟରେ ପଥରେ ଗୋଟିଏ ଭ୍ରଷ୍ଟା ନାରୀକୁ ଦେଖି ତାର ପୂର୍ବ ଅନୁତାପରୁ ତାର ସମସ୍ତ ଚରିତ ବୁଝି ପାରି ତାର ନାସିକା ଛେଦନ କରାଇ ଦେଲେ ଓ କିୟତ୍‌କ୍ଷଣ ପରେ ତାର କାମକ୍ରୋଧାନ୍ଧ ବୃଦ୍ଧପୁରୁଷକୁ ଦେଖି ତାର ମଧ୍ୟ ନାସା କର୍ଣ୍ଣ ଛେଦନ କରାଇଦେଲେ । ଏ ସମୟରେ ଜଣେ ତାପସ ସେ ସ୍ଥାନରେ ଉପସ୍ଥିତ ହୁଅନ୍ତେ ସେ ବୃଦ୍ଧପୁରୁଷ ଲଜ୍ଜାରେ ମୁଖ ଅବନତ କଲା । ଅନେକ ଦିନ ହେଲା ତାପସ ତାକୁ ଦେଖି ନ ଥିବାରୁ ଦୋଦୋଚିନ୍ତା ହୋଇ 'ତୁମ୍ଭେ ଧର୍ମପୁତ୍ର କି ?' ପଚାରିଲେ । ଧର୍ମପୁତ୍ର ଅନୁତାପ କରି ଅତିଶୟ ବିନୟ ପୂର୍ବକ କ୍ଷମା ପ୍ରାର୍ଥନା କରି ନିଜର ସମସ୍ତ ଦୋଷ ଜଣାଇଲା ଓ ତାଙ୍କର ସ୍ତ୍ରୀ ପ୍ରକୃତ ସତୀ ବୋଲି କହିଲା । ତାପସ ଧର୍ମପୁତ୍ରଠାରୁ ସମସ୍ତ ସମ୍ବାଦ ନେଇ ପତ୍ନୀର ସମସ୍ତ ସ୍ନେହ ମନେ ପକାଇ ମନେ ମନେ ଖେଦ ମାତ୍ରା ପ୍ରକାଶ କଲେ ।

ଏ ଦୁହିଙ୍କ କଥାରୁ ଇନ୍ଦିରା ତପସ୍ୱିନୀ ଚେଦିସମରକୁ ଯାଇଥିବାର ଜାଣି ଶଙ୍କିତା ହେଲେ ଓ ସେହି ତାପସୀ ତାପସଙ୍କର ସ୍ତ୍ରୀ ଥିବାର ଜାଣିଲେ । ତଦନନ୍ତର ତାପସ ଇନ୍ଦିରାକୁ ଜ୍ଞାନ ଓ ଅହିଂସାଯୋଗ ଶିକ୍ଷା ଦେଇ ରସଲେଖାର ସ୍ୱାମୀକୁ ବନ୍ଧମୁକ୍ତ କରାଇଲେ ଓ ତାପସ ରଣରେ ଶାନ୍ତି ସ୍ଥାପନ କରାଇବା ନିମିତ୍ତ ସଖୀ ସହିତ ଇନ୍ଦିରା ଓ ରସଲେଖାର ସ୍ୱାମୀକୁ ସଙ୍ଗରେ ନେଇ ରଣକ୍ଷେତ୍ରକୁ ଯାତ୍ରା କଲେ ।

ପଥରେ ଏମାନେ ଚେଦିକୁ ଯାଉଁ ଯାଉଁ ଇନ୍ଦିରା ଏକାକିନୀ ନଦୀକୁ ସ୍ନାନ କରିବାକୁ ଯାଇଥିବା ସମୟରେ ତାଙ୍କର 'ଅଙ୍ଗରାଜଙ୍କର ସ୍ନେହବନ୍ଧୁ ସିନ୍ଧୁ ଯୁବରାଜଙ୍କ ସହିତ' ଅନୁରାଗ ହେଲା । ସଖୀର ଉପସ୍ଥିତି ପରେ ଦୁହେଁ ଗାନ୍ଧର୍ବ ମତରେ ବିବାହ କଲେ । ସିନ୍ଧୁଯୁବରାଜ ଯୁଦ୍ଧକୁ ଗଲେ ଏବଂ ଇନ୍ଦିରା ଓ ତାପସ ଆଦି ଚେଦିରାଜବାଟୀରେ ପହଞ୍ଚିଲେ ।

ସଂଗ୍ରାମକ୍ଷେତ୍ରରେ ଇନ୍ଦିରା ଓ ତାପସ ଠିକ୍ ସେହି ଦିନ ରଣ ସ୍ଥଗିତ ହେବା ପୂର୍ବରୁ ସନ୍ଧ୍ୟା ସମୟରେ ପହଞ୍ଚିଲେ । ତାପସୀ ଅଙ୍ଗରାଜଙ୍କ ପକ୍ଷରୁ ଆସି ନିଜର ସ୍ୱାମୀ ତାପସଙ୍କୁ ପ୍ରଣାମ କଲେ ଓ ଇନ୍ଦିରାଙ୍କୁ ସ୍ନେହସମ୍ଭାଷଣ କରିବାରୁ ଇନ୍ଦିରା ତପସ୍ୱିନୀଙ୍କୁ ପ୍ରଣାମ କଲେ ।

ତାପସ ଅଙ୍ଗରାଜ ଓ ଚେଦିରାଜଙ୍କ ନିକଟକୁ ସମ୍ବାଦଦେଇ ଉକ୍ତ ଦିନ ରାତିରେ ସନ୍ଧି କରାଇଲେ । ରସଲେଖା ତାର ସ୍ୱାମୀକୁ ଲାଭ କଲା; ଇନ୍ଦିରା ଓ ସିନ୍ଧୁଯୁବରାଜଙ୍କର ସର୍ବ ସମକ୍ଷରେ ପୁଣି ଗାନ୍ଧର୍ବମତରେ ବିବାହକାର୍ଯ୍ୟ ସମ୍ପାଦିତ ହେଲା ।

ଅଙ୍ଗରାଜ ନିଶିରେ ତାପସୀଦତ୍ତ ଫୁଲକୁ ନେଇ ବିଜନ ତମ୍ବୁରେ ବିଜୟଲକ୍ଷ୍ମୀଙ୍କୁ ପୂଜିବାକୁ ଯାଇଥିଲେ; କିନ୍ତୁ ତାପସୀ କୌଶଳକ୍ରମେ ଇନ୍ଦୁରେଖାକୁ ତାଙ୍କର ଜ୍ଞାନଶୂନ୍ୟ ଅବସ୍ଥାରେ ରଥରେ ବସାଇ ଆଣି ଅଙ୍ଗନୃପଙ୍କ ଅଜ୍ଞାତରେ ସେ ତମ୍ବୁରେ ରଖାଇଥିବାରୁ ରାଜା ଓ ରାଣୀଙ୍କର ଶୁଭମିଳନ ହେଲା ।

ତଦନନ୍ତର ଅଙ୍ଗରାଜ ସ୍ୱପତ୍ନୀ ସହିତ ନିଜ ରାଜ୍ୟକୁ ଫେରି ଆସିଲେ । ସୁଖ ଶାନ୍ତିରେ ରାଜ୍ୟଶାସନ କରି ଶାନ୍ତିରେ ରହିଲେ । କାଳକ୍ରମେ ତାଙ୍କର ଗୋଟିଏ କନ୍ୟା ଓ ଗୋଟିଏ ପୁତ୍ର ହେଲେ ।

## ଚଞ୍ଚଳା—

**ବିରୁସେନ ନୃପତିଙ୍କ ମନ୍ତ୍ରୀର** ପୁତ୍ରବଧୂ । ଏ ସକଳ ଶାସ୍ତ୍ରଜ୍ଞା, ଚତୁରା, ଧାର୍ମିକା, **ପରଦୁଃଖକାତରା । ଏ ଇନ୍ଦୁରେଖାର** ପ୍ରଥମ ଅନ୍ତରଙ୍ଗ ସଖୀ । ଏହାଙ୍କର ବୁଦ୍ଧି ଓ **ଯତ୍ନ ପ୍ରଶଂସାର୍ହ । ନାରୀସ୍ୱଭାବସୁଲଭ** ଗୁଣରେ ଇନ୍ଦୁରେଖାର ପତିପ୍ରେମ ସମ୍ବନ୍ଧରେ **ଏ ବିଳାପ କରିଥିଲେ ।**

## ପରିମଳା—

**ଚଞ୍ଚଳାର ନଣନ୍ଦ,** ଇନ୍ଦୁରେଖାର ବାଲ୍ୟସଖୀ ଓ ଅଭିମାନୀ ପୁତ୍ରବଧୂସଖୀସ୍ନେହ ଓ **ପତିବାକ୍ୟ ରକ୍ଷା କରିବାକୁ ଏ କଦାପି** କୁଣ୍ଠିତା ନୁହନ୍ତି । ଏ ଚତୁରା ଓ ବୁଦ୍ଧିମତୀ ।

## ଭୈରବୀ—

**କାଳୀକେମା, ଏ ପ୍ରଥମେ ଚଣ୍ଡୀ** ଉପାସନା କରୁଥିଲେ । ପରେ ତାପସ ଉପଦେଶ ପାଇ **ଅହିଂସାଧର୍ମ ଗ୍ରହଣ** କରି ଭକ୍ତିପରାୟଣା ହୋଇଲେ । ଏ ରୂପବତୀ, ସଚ୍ଚରିତ୍ରା ଓ ବାଗ୍ମିନୀ । ଏ **ଅସଦାଚାରକୁ** ସଦା ଘୃଣା କରୁଥିଲେ । ଅସଦାଚାରୀ ଅସଦାଚାରିଣୀକୁ **ଦଣ୍ଡ ଦେବାକୁ ଏ କଦାପି କୁଣ୍ଠିତା** ନ ଥିଲେ । ଏ ଅଙ୍ଗନୃପତିଙ୍କର ଶ୍ରିମ୍ବାନଙ୍କ ବୀର ସିନ୍ଧୁସୁତରାଜଙ୍କର ପତ୍ନୀ ହେଲେ ।

**ରସମଞ୍ଜରୀ—**ଇନ୍ଦୁରେଖା ସଖୀ ।

**ପ୍ରଭାମଣ୍ଡଳା—** "

**ଚମ୍ପକଲତିକା—** "

**କାମକଳା—** "

**ସୁଶୀଳା—**ଇନ୍ଦୁରେଖାର ମାତା (ବଙ୍ଗ ରାଜକନ୍ୟା) ।

## ତାପସୀ—

**ଏ ସତୀ ନାୟିକା, ଦୂରରୁ ଜାରର** ଆଳାପ, ଐଶ୍ୱର୍ଯ୍ୟ ଓ କୁଟ ନୀତିକୁ ତୁଚ୍ଛ ଚକ୍ଷୁରେ ଦେଖୁଥିଲେ । **ସ୍ତ୍ରୀ ସ୍ୱଭାବ ଗୁଣରେ** ଏହାଙ୍କର ଭୂଷଣ ପ୍ରତି ଆଦର ଥିଲା । ଏ **ନାନା** ପ୍ରକାର **ଦୁଃଖ ଓ ମିଥ୍ୟାପ୍ରବାଦ** ବହନ କରି ସ୍ୱାମୀପରିତ୍ୟକ୍ତା ହୋଇ ସ୍ୱାମୀପ୍ରଣୟ ଖୋଜି ଖୋଜି **ବାକ୍ୟସିଦ୍ଧିଯୋଗ ଶିକ୍ଷା** କରିଥିଲେ । ପରର ଉପକାର କରିଥିଲେ । ସତ୍‌ଫଳର ପୁରସ୍କାରସ୍ୱରୂପ **ଶେଷରେ ପତିଙ୍କର** ଅବିଚଳିତ **ପ୍ରେମ** ଲାଭ କଲେ ।

## ତାପସ—

**ପ୍ରଥମରେ ଏ ଜଣେ ସାଧାରଣ ଲୋକ ଥାଇ** ପତ୍ନୀସୁଖାଭିଳାଷୀ ଥିଲେ । ନିଜ ପତ୍ନୀର **କୁଟ** ନିନ୍ଦାବାଦକୁ **ଅଯଥା ବିଶ୍ୱାସ** କରି ତାପସବ୍ରତ ଆଚରଣ କଲେ । ପ୍ରଥମରେ ଏ ସାଧୁ **ଅବିବେକୀ** ଥିବାର ବୋଧ ହେଉଅଛି । ପରେ ଜ୍ଞାନୀ ହେଲେ ଓ ନିଜର ସାଧୁ ଗୁଣର **ପୁରସ୍କାରସ୍ୱରୂପ** ନିଜ ପତ୍ନୀ ସତୀ ଥିବାର ପ୍ରମାଣ ପାଇ ଅନନ୍ତ ଉପଭୋଗ କରିଥିଲେ ।

## ନାସାହୀନା ପ୍ରୌଢ଼ା ନାରୀ—

ଏ **ଗୋଟିଏ କପଟୀ ସ୍ତ୍ରୀ** । ଏ **ସ୍ୱାମୀ ନିକଟରେ** ଜାରପ୍ରଣୟକୁ ଲୁଚାଇଥିଲା । **ଜାରସ୍ନେହର ବଶବର୍ତ୍ତିନୀ ହୋଇ ନିଜ ସ୍ୱାମୀକୁ** ବଧ କରିଥିଲା । ଏହାର ତରୁଣାବସ୍ଥା ଓ ଶୋଭା ଊଣା **ସଙ୍ଗେ ସଙ୍ଗେ ଜାରସ୍ନେହ ଊଣା** ହେବାରୁ ଜାରକୁ ବଧ କରିବାପାଇଁ ଉଦ୍ୟତ ହେଉଥିଲା । ପାପର **ପ୍ରାୟଶ୍ଚିତ୍ତସ୍ୱରୂପ** ଏହାର **ନାସାକର୍ଣ୍ଣ** ଛେଦନ କରାଯାଇଥିଲା । କୁଷ୍ଠରୋଗୀ **ବିକଟମୂର୍ତ୍ତି**

ଧାରଣ କରି ନାନା ଅନୁତାପରେ ସର୍ବସୁଖକୁ ଜଳାଞ୍ଜଳି ଦେଇ ପଥର ଭିକାରୁଣୀ ହେବାକୁ ପଡ଼ିଥିଲା ।

## ନାସାହୀନ ଧନୀପୁତ୍ର

ଏ ପରସ୍ତ୍ରୀହରଣକାରୀପ୍ରିୟ, କୁଟମାଟକ, ମିଷ୍ଟାଳାସୀ, ପାପାଗୃହୀ । ପରିଣାମରେ ପାପର ପ୍ରାୟଶ୍ଚିତ୍ତସ୍ୱରୂପ ଏହାର ନାସା ଓ କର୍ଣ୍ଣ ଛେଦନ କରାଯାଇଥିଲା । ଏ ପୂର୍ବ ଦୁଷ୍କୃତିର ଅନୁତାପ କରୁଅଛନ୍ତି ।

---

## ଇନ୍ଦୁରେଖା କାବ୍ୟ ସମ୍ବନ୍ଧରେ

### ଉତ୍କଳ ସାହିତ୍ୟ ସମାଜର ଅଭିମତ

କଟକ
୨୯।୧୧।୩୦

ଶ୍ରୀଯୁକ୍ତ ଗୋପେନ୍ଦ୍ରଚନ୍ଦ୍ର ପ୍ରଧାନଙ୍କ ରଚିତ **"ଇନ୍ଦୁରେଖା"** କାବ୍ୟ ସମ୍ବନ୍ଧରେ ମତ ବ୍ୟକ୍ତ କରିବାପାଇଁ ଉତ୍କଳ ସାହିତ୍ୟ ସମାଜର କାର୍ଯ୍ୟନିର୍ବାହକ ସମିତି ଶ୍ରୀଯୁକ୍ତ ବିଶ୍ୱନାଥ କର, ଶ୍ରୀଯୁକ୍ତ ଅଧ୍ୟାପକ ଆର୍ତ୍ତବଲ୍ଲଭ ମହାନ୍ତି, ଶ୍ରୀଯୁକ୍ତ ପଣ୍ଡିତ କୁଳମଣି ଦାସ ଓ ଶ୍ରୀଯୁକ୍ତ ପଣ୍ଡିତ ଆର୍ତ୍ତତ୍ରାଣ ଶତପଥିଙ୍କୁ ପରୀକ୍ଷକ ନିଯୁକ୍ତ କରିଥିଲେ । ସେମାନେ କାବ୍ୟ ସମ୍ବନ୍ଧରେ ଅନୁକୂଳ ମତ ଦେଇଥିବାରୁ ୨୩।୧୧।୩୦ ତାରିଖରେ ଅନୁଷ୍ଠିତ କାର୍ଯ୍ୟନିର୍ବାହକ ସମିତିରେ ସର୍ବସମ୍ମତିକ୍ରମେ ସ୍ଥିର ହୋଇଅଛି ଯେ "ଇନ୍ଦୁରେଖା" କାବ୍ୟ ଖଣ୍ଡି ଉତ୍କଳ ସାହିତ୍ୟକ୍ଷେତ୍ରରେ ପ୍ରକାଶିତ ହେବାର ସମ୍ପୂର୍ଣ୍ଣ ଉପଯୁକ୍ତ ଅଟେ । ଏହି କାବ୍ୟ ଖଣ୍ଡିକ ସାହିତ୍ୟ କ୍ଷେତ୍ରରେ ଅତି ଉପାଦେୟ ଗ୍ରନ୍ଥ ହୋଇ ଗୋଟିଏ ବିଶିଷ୍ଟ ସ୍ଥାନ ଅଧିକାର କରିପାରେ । କେହି ବଦାନ୍ୟ ବ୍ୟକ୍ତି ଏହାର ମୁଦ୍ରଣରେ ସାହାଯ୍ୟ କଲେ ସମାଜର ସଭ୍ୟମାନେ ସୁଖୀ ହେବେ । ଏପରି କାବ୍ୟ ପ୍ରକାଶିତ ହେଲେ ସାହିତ୍ୟର ଶ୍ରୀବୃଦ୍ଧି ହେବ ।

ଉତ୍କଳ ସାହିତ୍ୟ ସମାଜର ନିର୍ଦ୍ଧାରଣର ଅବିକଳ ପ୍ରତିଲିପି ସ୍ୱରୂପ ଏହା ଗ୍ରନ୍ଥକାରଙ୍କୁ ପ୍ରଦତ୍ତ ହେଲା ।

ସ୍ବା—ଶ୍ରୀ ଶଶିଭୂଷଣ ରାୟ
ସମ୍ପାଦକ—ଉ. ସା. ସମାଜ

---

**Utkal Sahitya Office, Cuttack**
**Dated 12th July, 1930.**

ମହାଶୟ !

ଶ୍ରୀଯୁକ୍ତ ଗୋପେନ୍ଦ୍ରଚନ୍ଦ୍ର ପ୍ରଧାନଙ୍କ "ଇନ୍ଦୁରେଖା" କାବ୍ୟର ପାଣ୍ଡୁଲିପିର ବହୁସ୍ଥଳ ମୁଁ ପାଠ କରି ଦେଖିଅଛି । ଏ ପୁସ୍ତକ ରଚନାରେ ଲେଖକ ପ୍ରଧାନତଃ ପ୍ରାଚୀନ ଉତ୍କଳୀୟ ରଚନାପଦ୍ଧତି ଅନୁସରଣ କରିବାରେ ଯଥେଷ୍ଟ ଦକ୍ଷତା ପ୍ରଦର୍ଶନ କରିଅଛନ୍ତି । ତାଙ୍କର ଅଧ୍ୟବସାୟ ମଧ୍ୟ ପ୍ରଶଂସନୀୟ । ପୁସ୍ତକଟି ପ୍ରକାଶରେ କେହି ବଦାନ୍ୟ ବ୍ୟକ୍ତି ଲେଖକଙ୍କୁ ସାହାଯ୍ୟ କରିବାର ଦେଖିଲେ ସୁଖୀ ହେବି । ସାହାଯ୍ୟ ଅପାତ୍ରରେ ବା ଅସ୍ଥାନରେ ନ୍ୟସ୍ତ ହେବ ନାହିଁ ।

ଇତି ।

ସ୍ବା—ଶ୍ରୀ ବିଶ୍ୱନାଥ କର ।

---

ମହାଶୟ,

ଆପଣଙ୍କ ତା ୨୦ । ୧ । ୩୦ ରିଖ ପତ୍ର ସଙ୍ଗେ ଶ୍ରୀଯୁକ୍ତ ବାବୁ ଗୋଲୋକଚନ୍ଦ୍ର ପ୍ରଧାନଙ୍କ ପ୍ରଣୀତ 'ଇନ୍ଦୁରେଖା' ପୁସ୍ତକର ପାଣ୍ଡୁଲିପି ପାଇ ପଢ଼ି ଦେଖିଲି ଯେ, ଲେଖକ ପ୍ରାଚୀନ ସରଣୀର ଅନୁବର୍ତ୍ତୀ ହୋଇ ଶଂସିତ କାବ୍ୟଖଣ୍ଡି ଲେଖିଅଛନ୍ତି । ଶ୍ଳେଷ, ଯୋଡ଼ଯମକ, ମେଷଯୁଦ୍ଧ, ଅନ୍ତର୍ଲାପି, ବହିର୍ଲାପି ପ୍ରଭୃତି ଶବ୍ଦାଳଙ୍କାର ବିନ୍ୟାସରେ ଲେଖକ ଯେଉଁ ଅସାଧାରଣ ଶକ୍ତିମତ୍ତା ପ୍ରଦର୍ଶନ କରିଅଛନ୍ତି, ତାହା କୌଣସିମତେ ପ୍ରାଚୀନ କବିମାନଙ୍କର ତାଦୃଶ ରଚନାବଳୀଠାରୁ ହୀନତର ନୁହେ । ପରନ୍ତୁ ପ୍ରାୟଶଃ ତାଙ୍କ ରଚନା ପ୍ରସାଦଗୁଣବିଶିଷ୍ଟ ଓ ଅକ୍ଲିଷ୍ଟ । ନବ୍ୟରୁଚିର ଅନୁବର୍ତ୍ତନରେ ସେ କାବ୍ୟଖଣ୍ଡିକୁ ବୀଭତ୍ସ-ଅଶ୍ଳୀଳତା ଦୋଷରୁ ମୁକ୍ତ ରଖିଅଛନ୍ତି । ତତ୍ପ୍ରଣୀତ ପ୍ରକୃତିବର୍ଣ୍ଣନା ତଥା ମାନବ ଚରିତ୍ରଚିତ୍ରଣ ଅନେକତ୍ର ସ୍ୱଭାବସୁନ୍ଦର ଓ ଭାବୋଦ୍ଦୀପକ ହୋଇଅଛି । ଆଜିକାଲି ଯେଉଁସବୁ ପ୍ରାଚୀନ ରଚନାମାନ ପ୍ରକାଶିତ ହେଉଅଛି, ସେ ସବୁ ତୁଳନାରେ "ଇନ୍ଦୁରେଖା" ସହସ୍ର ଗୁଣରେ ଉତ୍କୃଷ୍ଟ—ଏହା ମୁଁ ମୁକ୍ତକଣ୍ଠରେ କହିପାରେଁ । ତେଣୁ ଏ କାବ୍ୟଖଣ୍ଡି ପ୍ରକାଶର ସମ୍ପୂର୍ଣ୍ଣ ଉପଯୋଗୀ ଏବଂ 'ଉତ୍କଳ ସାହିତ୍ୟ ସମାଜ' ପକ୍ଷରୁ ଏହାର ପ୍ରକାଶରେ ଅନୁକୂଳ ମତ ଦିଆଯାଇ ପାରେ । ଇତି ।

କଟକ ଟ୍ରେନିଂ ସ୍କୁଲ
ତା ୨୫ । ୪ । ୩୦ } ସ୍ୱା—କୁଳମଣି ଦାଶ କାବ୍ୟତୀର୍ଥ

---

ମହାଶୟ !

"ଇନ୍ଦୁରେଖା"ର ପାଣ୍ଡୁଲିପି ମୂଳରୁ ଚୂଳ ଯାଏ ପାଠ କଲି । ଏହାର କବି ଉପେନ୍ଦ୍ର ଓ ଅଭିମନ୍ୟୁଙ୍କ ପଦାଙ୍କ ଅନୁସରଣ କରି ଏହି କାବ୍ୟଟିକୁ ରଚନା କରିଥିବାରୁ ସେ ଯେ ବହୁ ପରିଶ୍ରମ ଓ ଆୟାସ ସ୍ୱୀକାର କରିଅଛନ୍ତି ଏଥିରେ ଟିକେମାତ୍ର ସଂଶୟ ନାହିଁ ।

ଠାବେ ଠାବେ ବର୍ଣ୍ଣନା ଅତୀବ ଚିତ୍ତାକର୍ଷକ ହୋଇଅଛି । ଉତ୍କଳ ସାହିତ୍ୟ କ୍ଷେତ୍ରରେ ଗୋଲୋକ ବାବୁଙ୍କର ଯେଉଁ ସାମର୍ଥ୍ୟ ଅଛି, କାବ୍ୟ ମଧ୍ୟରେ ପରିଦୃଶ୍ୟମାନ ଲିପିପ୍ରମାଦ ମୁଦ୍ରଣ-ପୂର୍ବରୁ ଯେ ତାହାଙ୍କ ଦ୍ୱାରା ଅପସାରିତ ହେବ ଏହା ମୋହର ପୂର୍ଣ୍ଣ ବିଶ୍ୱାସ ।

ଅତଏବ ଉପାଦେୟତା ଦୃଷ୍ଟିରେ ଏ ପୁସ୍ତକ ଖଣ୍ଡି ପ୍ରକାଶିତ ହେବା ଏକାନ୍ତ ବାଞ୍ଛନୀୟ । ଇତି ।

କଟକ
ତା ୫ । ୯ । ୩୦ } ସ୍ୱା—ଶ୍ରୀ ଆର୍ତ୍ତତ୍ରାଣ ଶତପଥୀ

---

## ବ୍ୟକ୍ତିଗତ ଅଭିମତ

ଶ୍ରୀଯୁକ୍ତ ବାବୁ ଗୋଲୋକଚନ୍ଦ୍ର ପ୍ରଧାନଙ୍କ ବିରଚିତ "ଇନ୍ଦୁରେଖା" କାବ୍ୟର ପାଣ୍ଡୁଲେଖ୍ୟର ଅଂଶବିଶେଷ ପାଠ କରି ମୁଗ୍ଧ ଓ ଚମତ୍କୃତ ହୋଇଅଛି । କବିତାଗୁଡ଼ିକର ମାଧୁର୍ଯ୍ୟ, ଛନ୍ଦରେ ବୈଚିତ୍ର୍ୟ ଓ ଶବ୍ଦଚୟନରେ ଗୁରୁତ୍ୱ ଏଥିରେ ପୂର୍ଣ୍ଣମାତ୍ରାରେ ବିଦ୍ୟମାନ । ପଂକ୍ତିଗୁଡ଼ିକ ଅନୁପ୍ରାସମୁଖର ଓ ଅଳଂକୃତ । ଅଳଙ୍କାର ଶାସ୍ତ୍ରର ପୂର୍ଣ୍ଣମହିମା ଏ ରଚନାରେ ପ୍ରକଟିତ । ଶବ୍ଦଶିଳ୍ପ ସହିତ ଭାବର ଗୁରୁତ୍ୱ ଏପରି ରହିଅଛି ଯେ, ଲେଖକ ଅଳ୍ପବୟସ୍କ ହେଲେ-ହେଁ ଅଗାଧ ପାଣ୍ଡିତ୍ୟ ଓ ଶବ୍ଦ ଆହରଣରେ ସମ୍ପୂର୍ଣ୍ଣ ପରିଶ୍ରମର ଅଧିକାରୀ । ଆଧୁନିକ ଯୁଗରେ

ଏହି କବିଙ୍କର ସ୍ଥାନ ସାହିତ୍ୟକ୍ଷେତ୍ରର ବହୁ ଊର୍ଦ୍ଧ୍ୱରେ, ଏଥିରେ ମତଦ୍ୱୈଧର ସମ୍ଭାବନା ନାହିଁ । ସମସ୍ତଙ୍କର କରୁଣାଦୃଷ୍ଟି ଏହି ନବୀନ କବିଙ୍କ ଉପରେ ଅଜସ୍ର ଭାବରେ ପତିତ ହେଉ ଏବଂ ଗ୍ରାହକତା ପ୍ରଭୃତିରୁ ବିଶିଷ୍ଟ ବ୍ୟକ୍ତିବର୍ଗ ଏହାଙ୍କର ସମ୍ୟକ୍ ପରିଚୟ ପାଇ ଧନ୍ୟ ହୁଅନ୍ତୁ ।

କାଳିଗଳି କଟକ
ତା ୯ । ୧୧ । ୧୯୨୯ } ସ୍ୱା—ଶ୍ରୀ ଶଶିଭୂଷଣ ରାୟ

---

A. B. Mahanty M. A. Professor, Revenshaw College.
P. O. Chauliaganj, Cuttack.
Dated 27-9-1929.

ଉଦୀୟମାନ କବି ଶ୍ରୀମାନ୍ ଗୋଲୋକଚନ୍ଦ୍ର ପ୍ରଧାନଙ୍କର ଇନ୍ଦୁରେଖା କାବ୍ୟର ଅଧିକାଂଶ ସ୍ଥଳ ଦେଖି ମୁଁ ଅତ୍ୟନ୍ତ ପ୍ରୀତ ହୋଇଅଛି । ବଡ଼ ସୁଖର କଥା ସେ ପ୍ରାଚୀନ ସାହିତ୍ୟଯୁଗର ସରଳତା ଓ ମଧ୍ୟଯୁଗର ଶବ୍ଦାର୍ଥବୈଚିତ୍ର୍ୟକୁ ଆଧୁନିକ ରୁଚି ଅନୁଯାୟୀ ଭାଷାନୁବନ୍ଧରେ ସଂଯୋଜିତ କରି ଏକ ସୁନ୍ଦର କାବ୍ୟ ପ୍ରଣୟନ କରିଅଛନ୍ତି । ଶବ୍ଦାଳଙ୍କାର ଓ ଅର୍ଥାଳଙ୍କାର ଯୋଜନାରେ ଯେ ଶ୍ରମ, ଶୁଶ୍ରୂଷା ଓ ଶାସ୍ତ୍ରଦର୍ଶିତା ଲୋଡ଼ା, ତାହା ଏ କାବ୍ୟରେ ଦେଖିବାକୁ ମିଳେ । ପ୍ରାଚୀନ ସରଣୀ ସଂରକ୍ଷଣରେ ଆଧୁନିକତାର ପ୍ରଚୁର ଗୋଟିଏ ପ୍ରଶଂସାର ବିଷୟ । ଏହା ଦେଖି ମୁଁ ଅତ୍ୟନ୍ତ ପ୍ରୀତ ହୋଇଅଛି ଏବଂ ଏହି ନବୀନ କବିଙ୍କୁ ସର୍ବାନ୍ତଃକରଣରେ କଲ୍ୟାଣ କରୁଅଛି । ଏହାଙ୍କର ଏହି ଇନ୍ଦୁରେଖା ପ୍ରକାଶିତ ହେଲେ ପାଠକସାଧାରଣ ଆନନ୍ଦ ଉପଲବ୍ଧି କରିବେ ଏଥିରେ ସନ୍ଦେହ ନାହିଁ । ଇତି ।

ସ୍ୱା—ଶ୍ରୀ ଅଖିଳବଲ୍ଲଭ ମହାନ୍ତି ।

---

କଟକ
୬ । ୬ । ୨୯

କଟକ ଜିଲ୍ଲାର ଅସୁରେଶ୍ୱରବାସୀ ଶ୍ରୀମାନ୍ ଗୋଲୋକଚନ୍ଦ୍ର ପ୍ରଧାନଙ୍କର ଇନ୍ଦୁରେଖା ଚିତ୍ରକାବ୍ୟର ପାଣ୍ଡୁଲିପି ଗ୍ରନ୍ଥକାର ମୋତେ ଦେଖାଇଲେ । ମୁଁ ଉକ୍ତ ଗ୍ରନ୍ଥରୁ ଏଠାରୁ କିଛି ସେଠାରୁ କିଛି ଅଂଶ ପଢ଼ି ମତ ଦେବା ଅପେକ୍ଷା ଗ୍ରନ୍ଥର ପାଣ୍ଡୁଲିପିକୁ ଗ୍ରନ୍ଥକାରଙ୍କ ସହିତ ମୂଳରୁ ଶେଷଯାଏ ପଢ଼ିବା ଶ୍ରେୟସ୍କର ମନେକଲି । ଏହାଦ୍ୱାରା ଉତ୍କଳର ପ୍ରାଚୀନ କାବ୍ୟମାନଙ୍କରେ ପରିଲକ୍ଷିତ ଶୃଙ୍ଖଳା, ଗଙ୍ଗାସ୍ରୋତ ଶୃଙ୍ଖଳା, ଗୋମୂତ୍ରଛନ୍ଦ, ଦ୍ୱିଜ ଗୋମୂତ୍ରଛନ୍ଦ, ମଣ୍ଡୂକପ୍ଲୁତି, ଲୋମବିଲୋମ, ଦନ୍ତାକ୍ଷର, ଚ୍ୟୁତାକ୍ଷର, ଅନୁପ୍ରାସ, ଆଦ୍ୟଯମକ, ମାଳଯମକ, ସର୍ବଯମକ, ଆଦ୍ୟପ୍ରାନ୍ତଯମକ, ପ୍ରାନ୍ତଯମକ, ଯୋଡ଼ଯମକ, ନାଗବନ୍ଧ, ଚକ୍ରବନ୍ଧ, ଅନ୍ତର୍ଲିପି, ବହିର୍ଲିପି, ଯୁଗ୍ମବହିରନ୍ତର୍ଲିପି, ଆକାର ଇକାର ଉକାରାଦି ଛନ୍ଦ, ଲଘୁ ଗୁରୁ, ଗୁରୁଲଘୁ, ଅବନା, ଏକାକ୍ଷର, ସଓଷ୍ଠକ, ନିରୋଷ୍ଠକ, ପୁନରୁକ୍ତବଦାଭାସ, ବିରୋଧାଭାସ, ଅଦ୍ଭୁତୋପମା, ମାଳୋପମା, ନାମଲକ୍ଷଣା, ଦେଶଲକ୍ଷଣା, ଶକଟଲକ୍ଷଣା ଆଦି ରଚନା ମୁଁ ସମ୍ପୂର୍ଣ୍ଣରୂପେ ହୃଦୟଙ୍ଗମ କରି ସେମାନଙ୍କର ସଂଜ୍ଞା ଓ ଉଦାହରଣ ମୋ ଅବଧାନରେ ଦେବାପାଇଁ ମତେ ସୁବିଧା ମିଳିଲା । ଏହା ମୋ ପକ୍ଷରେ ଭାଗ୍ୟର ବିଷୟ ବୋଲି ମୁଁ ମନେକରୁଛି । ଗୋଟିଏ ଛନ୍ଦର ପଦମାନଙ୍କୁ ପଢ଼ିଲେ ଗୋଟିଏ ଅର୍ଥ ହେବ, ପ୍ରତି ପଦର ଆଦ୍ୟ ଅକ୍ଷର ଉଠାଇ ପଢ଼ିଲେ ଆଉ ଗୋଟିଏ ଅର୍ଥ ହେବ, ପ୍ରତି ପଦର ଆଦ୍ୟ ଦୁଇ ଅକ୍ଷର କାଢ଼ିନେଲେ ଆଉ ଗୋଟିଏ ସ୍ୱତନ୍ତ୍ର ଅର୍ଥ ହେବ । ଛନ୍ଦଟି ତମାମ ଏହି ଖଣ୍ଡରେ ରଚିତ ହୋଇଅଛି । କେତେକ ଛନ୍ଦର ଗୋଟିଏ ପଦରୁ

୨ ଅର୍ଥ, ୩ ଅର୍ଥ, ୪ ଅର୍ଥ, ୫ ଅର୍ଥ ଏହିପରି ୯ । ୧୦ । ୧୧ ସ୍ୱତନ୍ତ୍ର ଅର୍ଥମାନ ପ୍ରକାଶିତ ହୋଇଅଛି ।

ଅଜକାଲି ଯୁଗରେ ପାଶ୍ଚାତ୍ୟ ଶିକ୍ଷାପ୍ରାପ୍ତ ସାହିତ୍ୟିକମାନଙ୍କର ଏପରି ରଚନା ପ୍ରତି ସମ୍ପୂର୍ଣ୍ଣ ଆସ୍ଥା ନ ଥିଲେହେଁ ଉତ୍କଳୀୟ ପ୍ରାଚୀନ କବିମାନଙ୍କର ଏହି ରଚନାଗୁଡ଼ିକରେ ଯେ ଅଭ୍ୟାସ ଓ ଗଭୀର ପାଣ୍ଡିତ୍ୟ ଲୋଡ଼ା, ଏଥିରେ ଦ୍ୱିମତ ହୋଇ ନ ପାରେ ।

ଏହାଛଡ଼ା ପ୍ରାଚୀନ କାବ୍ୟଲକ୍ଷିତ ନାନାଦି ରାଗ ଓ ବାଣୀ ଯଥା—କାମୋଦୀ, ଚିନ୍ତା-କାମୋଦୀ, ଶୋକକାମୋଦୀ, ଚିନ୍ତାଦେଶାକ୍ଷ, ଲଳିତକାମୋଦୀ, ସାମନ୍ତଗୁଜ୍ଜରୀ, ଗୌଡ଼ୀ, ଚିନ୍ତା-ଭୈରବ ଓ ପାହାଡ଼ିଆ କେଦାରରେ ଗ୍ରନ୍ଥକାର ଛାନ୍ଦମାନ ରଚନା କରିଅଛନ୍ତି । କେତେକ ସ୍ଥଳରେ ଶବ୍ଦାଳଙ୍କାର, ଚିତ୍ରବନ୍ଧ ଓ ଅକ୍ଷରନିୟମକୁ ରକ୍ଷା କରିବାକୁ ଯାଇ ବାଧ୍ୟ ହୋଇ ଅପ୍ରଚଳିତ କ୍ଳିଷ୍ଟ ଓ ସଂସ୍କୃତ ଶବ୍ଦମାନ ବ୍ୟବହାର କରିଅଛନ୍ତି । କିନ୍ତୁ ରଚନାର ଅଧିକାଂଶ ଅଂଶ ସୁବୋଧ୍ୟ ଓ କୁରୁଚିମୁକ୍ତ ହୋଇଅଛି ଓ ଗ୍ରନ୍ଥରେ ଭୂୟୋଭୂୟଃ ପଦଲାଳିତ୍ୟ ଦେଖି ମୁଁ ମୁଗ୍ଧ ହୋଇଅଛି । ଅବଶ୍ୟ କାବ୍ୟର ପ୍ଲଟ (ବର୍ଣ୍ଣିତ ବିଷୟ) ପ୍ରାଚୀନ କବିମାନଙ୍କ ପରି ଏକ ଛାଞ୍ଚରେ ଗଢ଼ା । ଏପରି ରଚନା ଅନୁଶୀଳନ ଓ ଅଭ୍ୟାସ ଅଭାବରୁ ନବ୍ୟ ସାହିତ୍ୟରୁ ଲୋପ ପାଇବାକୁ ବସିଥିବା ସ୍ଥଳେ ଗୋଲୋକଚନ୍ଦ୍ର ଏପରି ରଚନାରେ ମନ ଦେଇ ରଚନାରୁ କ୍ଳିଷ୍ଟତା ଓ କୁରୁଚି ଯଥାସାଧ୍ୟ ଏଡ଼ିବାରେ ଯେ ସମର୍ଥ ହୋଇଅଛନ୍ତି ଏହାହିଁ ତାଙ୍କର ବାହାଦୁରୀ । ଅଧିକନ୍ତୁ ଗ୍ରନ୍ଥରେ ପାଦଟୀକା, ଅପ୍ରଚଳିତ ଶବ୍ଦମାନଙ୍କର ଅର୍ଥ ଓ ସ୍ଥଳବିଶେଷରେ ଏକାଧିକ ଅର୍ଥ ଓ ରଚନାଭଙ୍ଗୀକୁ ସ୍ପଷ୍ଟରୂପେ ବ୍ୟାଖ୍ୟା କରି ଏ ଗ୍ରନ୍ଥକୁ ପାଠ କରିବା ବ୍ୟକ୍ତିଙ୍କର ଅନୁଭୂତ କଷ୍ଟକୁ ଗ୍ରନ୍ଥକାର ସ୍ୱୟଂ ଦୂର କରିଅଛନ୍ତି ।

ଏହାଛଡ଼ା ଗ୍ରନ୍ଥକାର ଅଦ୍ଭୁତ ମେଷଯୁଦ୍ଧ ବା ସର୍ବତୋଭଦ୍ର, କର୍ଣ୍ଣମାର୍ଚ୍ଚ ଛନ୍ଦ, ଚତୁର୍ଦ୍ଦଳ, ପଞ୍ଚଦଳ, ଅଷ୍ଟଦଳ ଛନ୍ଦ, ଆଦ୍ୟନ୍ତାନ୍ତ କର୍ମ ଆଦି ଯାହା କି ପ୍ରାଚୀନ କବିମାନଙ୍କ ଗ୍ରନ୍ଥରେ ନାହିଁ ଏପରି ରଚନା କରି ନିଜର କୃତିତ୍ୱ ଓ ପାଣ୍ଡିତ୍ୟ ଦେଖାଇଅଛନ୍ତି । ଓଡ଼ିଆ ଭାଷାରେ ଗ୍ରନ୍ଥକାରଙ୍କର ବିଶେଷ ଅଧିକାର ଅଛି, ଏହା ପାଠକ ମାନେହେଁ ସ୍ୱୀକାର କରିବେ ।

ମେଷଯୁଦ୍ଧ, ବ୍ୟାଘ୍ରଗଣ୍ଡ, ସିଂହାବଲୋକନ, ଛନ୍ଦ ଓ ବାଣୀମାନଙ୍କ ଉଦାହରଣ ମୁଁ ଏହି ଗ୍ରନ୍ଥରୁ ମୋ ଅଭିଧାନରେ ଉଦ୍ଧାର କରୁଅଛି । ଏଥିରୁ ଏ ଗ୍ରନ୍ଥ ଓ ରଚନା ପ୍ରତି ମୋର କେତେ-ଦୂର ଆସ୍ଥା ଓ ସମ୍ମାନ, ତାହା ପାଠକେ ଅନୁମାନ କରିବେ ।

ପରିଶେଷରେ ଉଦୀୟମାନ କବି ଗୋଲୋକଚନ୍ଦ୍ରଙ୍କର ଏହି ଗ୍ରନ୍ଥକୁ ଆଦର କରିବା ଦ୍ୱାରା ଉତ୍କଳୀୟମାନେ ପ୍ରାଚୀନ କବିକୃତିଗୁଡ଼ିକ ଓ ରଚନାଭଙ୍ଗୀକୁ ପ୍ରଶଂସା କରିବା ସଙ୍ଗେ ସଙ୍ଗେ ଗୋଲୋକଙ୍କୁ ଉତ୍ସାହିତ କରିବେ ବୋଲି ମୁଁ ସମ୍ପୂର୍ଣ୍ଣ ଭରସା କରୁଅଛି । ଶିକ୍ଷିତ ସମାଜରେ ଏ ଗ୍ରନ୍ଥର ଅନେକ ପାଠକ ଓ ଭକ୍ତ ବାହାରିବେ ବୋଲି ମୋର ବିଶ୍ୱାସ ଓ ଆଶା ।

ସ୍ୱା—ଶ୍ରୀ ଗୋପାଳଚନ୍ଦ୍ର ପ୍ରହରାଜ ।

---

Ravenshaw College
P. O. Chauliaganj, Cuttack.
Dated 30-4-1929.

ମୁଁ ଶ୍ରୀମାନ୍ ଗୋଲୋକଚନ୍ଦ୍ରଙ୍କର "ଇନ୍ଦୁରେଖା"ର ଅନେକ ଛାନ୍ଦ ଦେଖିଅଛି । ଏହି ଗ୍ରନ୍ଥଟି ପ୍ରାଚୀନ କବିମାନଙ୍କର କବିତାଗୁଡ଼ିକରେ ପୂର୍ଣ୍ଣ । ଗୋମୂତ୍ରିଛନ୍ଦ, ମେଷଯୁଦ୍ଧ, ବ୍ୟାଘ୍ରଗଣ୍ଡ, ସିଂହାବଲୋକନ, ଚିତ୍ରବନ୍ଧ, ଲୋମବିଲୋମ, ତ୍ର୍ୟକ୍ଷର ପ୍ରଭୃତି ସମସ୍ତ ପ୍ରାଚୀନ କବିତା ଗୁଡ଼ିକରେ 'ଇନ୍ଦୁରେଖା'ର ରଚୟିତା ଯଥେଷ୍ଟ ଉତ୍କର୍ଷ ଦେଖାଇଥିବାର ପ୍ରମାଣ ମିଳେ ।

ଅଦ୍ଧର ମଧ୍ୟ ଏହି ଗ୍ରନ୍ଥରେ କେତେଗୁଡ଼ିଏ ଛନ୍ଦର ସମାବେଶ ପ୍ରାଚୀନ କବିତାମାନଙ୍କରେ କେତେଦୂର ଦ୍ରଷ୍ଟବ୍ୟ ଏହା ଅନୁସନ୍ଧିତ୍ସୁ ମାନଙ୍କେ ବୁଝିପାରିବେ ।

ପ୍ରାଚୀନ ସାହିତ୍ୟରେ ଲିଖିତ କାବ୍ୟ କବିତା ଆଧୁନିକ ଯୁଗରେ କେତେଦୂର ଆଦରଣୀୟ ହେବ, ଏ ବିଷୟରେ ମତ ଦେବା ବଡ଼ କଠିନ, ତଥାପି ଏତିକି କୁହାଯାଇ ପାରେ ଯେ, ପ୍ରାଚୀନତାର ପୁନରୁତ୍‌ଥାନ ଉତ୍କଳ ସାହିତ୍ୟର ବ୍ୟକ୍ତିତ୍ୱ ସଂରକ୍ଷଣ କରିବାରେ ଯଥେଷ୍ଟ ସାହାଯ୍ୟ କରିବାର ସମ୍ଭାବନା ରହିଅଛି ।

ପୁଣି ନବ୍ୟ ଶିକ୍ଷିତମାନଙ୍କ ମଧ୍ୟରୁ ଅଧିକାଂଶଙ୍କ ପ୍ରତି ଏ ଶ୍ରେଣୀର କବିତା ଅନେକ ସ୍ଥଳରେ ଉଜ୍ଜ୍ୱଳ କବିତାମାନଙ୍କ ପରି ଅବୋଧ ହେଲେହେଁ ଏହା ଦେଶରେ ବର୍ତ୍ତମାନ ସୁଦ୍ଧା ବିଦ୍ୟମାନ ଅନେକ ପ୍ରାଚୀନ ସାହିତ୍ୟ-ରସିକମାନଙ୍କର ଆକାଙ୍କ୍ଷା ପୂରଣ କରି ପାରିବ । ଏହି ଗ୍ରନ୍ଥଟି ଲେଖିବାରେ ଲେଖକ ଯେତେ ଧୈର୍ଯ୍ୟ ଓ ସାଧନାର ପରିଚୟ ଦେଇଅଛନ୍ତି, ସେଥିପାଇଁ ସେ ଧନ୍ୟବାଦାର୍ହ । ମୋ ମତରେ ଏପରି ଗ୍ରନ୍ଥ ପ୍ରକାଶିତ ହେଲେ ଉତ୍କଳ-ସାହିତ୍ୟର ସୌନ୍ଦର୍ଯ୍ୟ ବର୍ଦ୍ଧିତ ହେବ । ଇତି ।

ସ୍ୱା—ଶ୍ରୀ ରତ୍ନାକର ପତି ।

ଲିଙ୍ଗରାଜ ପଡ଼ିଆ
କଟକ
ତା ୧୧।୮।୧୯୩୫

'ଇନ୍ଦୁରେଖା'ର ଲେଖା ଏଠାରେ ସେଠାରେ ପାଠ କରି ମୁଁ ପ୍ରୀତ ହୋଇଅଛି । ଶ୍ରୀମାନ୍ ଗୋଲୋକ ମୋର ଛାତ୍ର ଥିଲେ । ତାଙ୍କର ରଚନାଶକ୍ତି ସେହି ସ୍କୁଲ ଅବସ୍ଥାରୁ ମୁଁ ଲକ୍ଷ୍ୟ କରିଥିଲି । କିନ୍ତୁ ଏତେ ଶକ୍ତି ସେହି ଗୋଲୋକଙ୍କ ଭିତରେ ନିହିତ ଥିଲା ବୋଲି ସେତେବେଳେ ମୁଁ ଜାଣି ପାରି ନ ଥିଲି । ତାହାର କାରଣ ମୁଁ ସେତେବେଳେ ଓଡ଼ିଆ ଭାଷାରେ ଅତ୍ୟନ୍ତ ଅନଭିଜ୍ଞ ଥିଲି ଏବଂ ଅନ୍ୟ ଭାଷାର ମୋହରେ ପଡ଼ିଥିଲି । ଅଳ୍ପ ବୟସ ଓ ଅଭିଜ୍ଞତାରୁ ଜାଣୁଛି ଯେ, ପ୍ରାଚୀନ ଓଡ଼ିଆ ସାହିତ୍ୟ ଅତି ରସପୂର୍ଣ୍ଣ ଏବଂ ସେହି ରସର ଅଧିକାରୀ ଯେଉଁମାନେ ସେମାନେ ଧନ୍ୟ । ଅଧିକ କଅଣ ଲେଖିବି । ଇନ୍ଦୁରେଖା ପାଠରେ ମାନସପଟରେ ଅଦ୍ଭୁତ ଭାବ ପ୍ରକଟିତ ହୁଏ । ଅଧିକ ଲେଖିବାର ମୋର ଶକ୍ତି ନାହିଁ । ପ୍ରାଚୀନ ଛନ୍ଦମାନ ସବୁ ପ୍ରାୟ ଏଥିରେ ନିହିତ ଅଛି । ଏହା ଯେ ସର୍ବାଙ୍ଗ ସୁନ୍ଦର ତାହା ନୁହେଁ । ପରନ୍ତୁ ବେଶି ଜାଗାରେ ମଧୁର, ସହଜ ଓ ଲଳିତ । ଅନ୍ୟ ଜାଗାରେ ପାଣ୍ଡିତ୍ୟପୂର୍ଣ୍ଣ ଏବଂ ଶବ୍ଦଶୃଙ୍ଖଳାଛଟାରେ ଗୁମ୍ଫିତ । ଲେଖକ କବିପ୍ରତିଭାପନ୍ନ ଏବଂ ଓଡ଼ିଆ ଭାଷାର ସାଧକ ଓ ସିଦ୍ଧ ଅଟନ୍ତି ।

ସ୍ୱା—ଶ୍ରୀ ଲକ୍ଷ୍ମୀନାରାୟଣ ସାହୁ
ଭାରତ ସେବକସମିତି ।

ଶ୍ରୀମାନ୍ ଗୋଲୋକଚନ୍ଦ୍ରଙ୍କର 'ଇନ୍ଦୁରେଖା' କାବ୍ୟ ଏ ଯୁଗରେ ଗୋଟିଏ ଅତ୍ୟଦ୍ଭୁତ ସାହସର ଚେଷ୍ଟା ବୋଲିବାକୁ ହେବ । କଳ୍ପନା ବିନ୍ୟାସରେ ଏହି କାବ୍ୟଟି ପ୍ରାଚୀନ ଗଢ଼ରେ ଲିଖିତ । ଏଥିରେ ନାନା ସ୍ୱାଦ ରାଗ ରହିଅଛି । ଭାଷାର ପରିପାଟୀ ସୁନ୍ଦର । ଏହି କାବ୍ୟଟି ବିରାଟ । ମୁଁ ଏହି କାବ୍ୟର କେତେକ ଅଂଶ ଛାପାରେ ଦେଖିଅଛି । ଏହା ସର୍ବଜନ ଆଦୃତ ହେଉ ଏହି କାମନା କରୁଅଛି । ମୁଁ ଯେଉଁ ରାଜ୍ୟର ପ୍ରଜା ସେହି ରାଜ୍ୟର ବଦାନ୍ୟ ରାଜା ଶ୍ରୀ ନାରାୟଣପ୍ରସାଦ ଦେଓ ଶ୍ରୀମାନ୍ ଗୋଲୋକଚନ୍ଦ୍ରଙ୍କୁ ପୁସ୍ତକ ପ୍ରକାଶ ନିମନ୍ତେ ଅର୍ଥିକ ସାହାଯ୍ୟ କରିଥିବାର ଜାଣି ସୁଖୀ ହେଲି ।

କଟକ
ତା ୧୨।୮।୧୯୩୪

ସ୍ୱା—ଶ୍ରୀ ହରିହର ମିଶ୍ର
ପ୍ଲୀଡ଼ର, ଜୟପୁର

---

CUTTACK
*The 29th. October 1929*

I have gone through several clandas of the "Indurekha", a poem on the old classic model, just completed by Sriman Golak Chandra Pradhan which unfortunately, he is unable to publish for want of funds.

There is a ring of true poetry noticeable at most places in the poem and I was really charmed with the style and the melody of the verses. The auther is a *talented young man* and richly deserves encouragement and patronage.

The work has no doubt suffered at places in quality as waa unavoidable, where expressions and words had to be hunted up to suit acrostics and like forms of versification laid down by some of our eminent ancient poets, but taken as a whole the work is a beautiful production and will repay perusal by the most fastidious critics.

I wel-come it even at this late hour of the day as like the "Bichitra Ramayan", if not for anything else, it will help in presenting to the reader specimens of the style of writing in which the ancients were adepts and would commend it to all lovers of our literature.

Sd/ Ajoy Chandra Das

---

# ସୂଚିପତ୍ର

| ଛାନ୍ଦ | ବର୍ଣ୍ଣନୀୟ ବିଷୟ | ପୃଷ୍ଠା |
|---|---|---|

ଛାନ୍ଦ | ବର୍ଣ୍ଣନୀୟ ବିଷୟ | ପୃଷ୍ଠା

# ଉତ୍ତର ଭାଗ

| ଛାନ୍ଦ | ବର୍ଣ୍ଣନୀୟ ବିଷୟ | ପୃଷ୍ଠା |
|---|---|---|

| ଛନ୍ଦ | ବର୍ଣ୍ଣନୀୟ ବିଷୟ | ପୃଷ୍ଠା |
|---|---|---|

# ଇନ୍ଦୁରେଖା

## ପ୍ରଥମ ଛାନ୍ଦ

ରାଗ—ନଳିନୀଗୌଡ଼ା

ଜୟ ସତୀ-ସୀତାପତି ତ୍ରିପୁରବିଜୟୀ,
ବନିତାସ୍ନେହୀ ଲକ୍ଷଣ ସଙ୍ଗେ ସଦା ଥାଇ । ୧ ।
ମାରୁତିର ତୁ ଜନକ ସୁହୃଦ ସରବ,
ସାମନ୍ତପଦକୁ ଯୋଗ୍ୟ ହେ ସ୍ୱୟମ୍ଭୂ ଶିବ । ୨ ।

---

### ମଙ୍ଗଳାଚରଣ

(ଏ ଗ୍ରନ୍ଥର ନାମ ଇନ୍ଦୁରେଖା । ଇନ୍ଦୁ = ଚନ୍ଦ୍ର; ଚନ୍ଦ୍ର ଶବ୍ଦ ରାମ ଓ ଶିବଙ୍କଠାରେ ଯୁକ୍ତ ଥିବାରୁ ମଙ୍ଗଳାଚରଣରେ ଇଷ୍ଟଦେବ ଶ୍ରୀରାମ ଓ ମହାଦେବଙ୍କୁ ଦୁଇଟି ଭିନ୍ନ ଅର୍ଥରେ ସ୍ତବ କରାଯାଇଅଛି । )

୧ମ ପଦ । ଶ୍ରୀରାମଙ୍କ ଅର୍ଥରେ—ହେ ସତୀ (ପତିବ୍ରତା) ସୀତା (ଜାନକୀ) ପତି, ରାମଚନ୍ଦ୍ର ! ଆପଣ ତ୍ରିପୁର (ସ୍ୱର୍ଗ, ମର୍ତ୍ତ୍ୟ ଓ ପାତାଳର) ବିଜୟୀ (ଜେତା) ଅଟନ୍ତି ଓ ଆପଣ ବନିତା (ସ୍ତ୍ରୀ) ସ୍ନେହୀ ଅଟନ୍ତି ଏବଂ ଲକ୍ଷଣ (ଲକ୍ଷ୍ମଣ) ସଦା (ସର୍ବଦା) ସଙ୍ଗେ ଥାଇ (ଆପଣଙ୍କର ସଙ୍ଗରେ ଥାନ୍ତି) । ଆପଣଙ୍କର ଜୟ ହେଉ ।

୧ମ ପଦ । ଶିବଙ୍କ ଅର୍ଥରେ—ହେ ତ୍ରିପୁରବିଜୟୀ (ତ୍ରିପୁରାରି) ! ସତୀ (ଦକ୍ଷକୁମାରୀ), ସୀତା (ଗଙ୍ଗା) ପତି ଶିବ ! ଆପଣଙ୍କର ଜୟ ହେଉ । ଆପଣଙ୍କର ସଦା (ସର୍ବଦା) ବନିତା ସ୍ନେହୀ ଲକ୍ଷଣ (ଚିହ୍ନ) ସଙ୍ଗେ ଥାଇ (ସଙ୍ଗରେ ଥାଏ), ଅର୍ଥାତ୍ ଗୋଟିଏ ସ୍ତ୍ରୀ (ପାର୍ବତୀ)ଙ୍କୁ କୋଳରେ ଓ ଅନ୍ୟ ଗୋଟିଏ ସ୍ତ୍ରୀ (ଗଙ୍ଗା)ଙ୍କୁ ମସ୍ତକରେ ଧାରଣ କରିଅଛନ୍ତି; କିମ୍ବା ଅର୍ଦ୍ଧନାରୀଶ୍ୱର ରୂପରେ ବନିତାଙ୍କୁ ସ୍ନେହରେ ନିଜର ଅର୍ଦ୍ଧାଙ୍ଗରେ ଧାରଣ କରିଅଛନ୍ତି ।

୨ୟ ପଦ । ରାମଙ୍କ ଅର୍ଥରେ—ହେ ସ୍ୱୟମ୍ଭୂଶିବ (ଶିବଙ୍କର ମଙ୍ଗଳ) ! ଜନକସୁହୃଦ (ଜନକଙ୍କର ବନ୍ଧୁ ଅର୍ଥାତ୍ ଜାମାତା ରାମଚନ୍ଦ୍ର) ! ତୁ ମାରୁତିର (ହନୁମାନର) ସରବ (ସର୍ବ) ଅଟୁ ଓ ସମସ୍ତଙ୍କର ସାମନ୍ତପଦକୁ ଯୋଗ୍ୟ (ଉପଯୁକ୍ତ) ଅଟୁ ।

୨ୟ ପଦ । ଶିବଙ୍କ ଅର୍ଥରେ—ହେ ସୁହୃଦ (ହୃଦୟବାନ୍) ସରବ (ଶର୍ବ = ଶିବ) ! ତୁ ମାରୁତିର (ହନୁମାନର) ଜନକ (ପିତା) ଅଟୁ । ହେ ସ୍ୱୟମ୍ଭୂ ଶିବ ! ତୁ ସାମନ୍ତପଦକୁ (ପ୍ରଭୁପଣକୁ) ଯୋଗ୍ୟ ଅଟୁ ।

ଦକ୍ଷ ! ଯଜ୍ଞଭଗ୍ନକାରୀ ମାରୀଚଦୁଃଖଦ,
ଚନ୍ଦ୍ରଯୁକ୍ତ ଭକ୍ତ-ହୃଦ-କୁମୁଦକୁ-ମୁଦ । ୩ ।
ଡରୁଥାଇ ତୋ ନାମରେ କାଳ ଦଣ୍ଡଧର,
ସତ୍ୟସନ୍ଧ ଦୟାନିଧି ପରମ ଈଶ୍ୱର । ୪ ।
ରତିପତିଜିଣା ରୁଦ୍ରକାନ୍ତି ସୁମଧୁର
ବଳ୍କଳଭୂଷଣ ନାଥ ଦୂଷଣ ସଂହର । ୫ ।
ବାସବଭୟଦ କେବେ ହେଉ ଦେବ ! ତୁହି,
ପଞ୍ଚାନନ ଏକମନେ ତୋ ନାମ ଜପଇ । ୬ ।

---

୨ୟ ପଦ । ଶିବଙ୍କର ଅନ୍ୟପ୍ରକାର ଅର୍ଥରେ—ହେ ସରବ ! (ସର୍ବ=ଶର୍ବ=ମହାଦେବ) ତୁ ମାରୁତର (ଭୀମର) ଜନକସୁହୃଦ (ପିତୃତୁଲ୍ୟ ବା ପିତୃ ସମ୍ପର୍କରେ ବନ୍ଧୁ ଅଟ); (ମହାଦେବ ହନୁମାନର ପିତା ଥିବାରୁ ଭୀମର ପିତୃତୁଲ୍ୟ ବନ୍ଧୁ ଅଟନ୍ତି ।) ହେ ସ୍ୱୟଂଭୁ ଶିବ ! ତୁ ସାମନ୍ତପଦକୁ ଯୋଗ୍ୟ ଅଟୁ ।

୩ୟ ପଦ । ରାମଙ୍କ ଅର୍ଥରେ—ହେ ଦକ୍ଷ (ଶୂର) ରାମଚନ୍ଦ୍ର ! ତୁ ଯଜ୍ଞ ଭଗ୍ନକାରୀ (ଋଷିମାନଙ୍କର ଯାଗ ଭାଙ୍ଗୁଥିବା) ମାରୀଚ (ମାରୀଚ ନାମକ ରାକ୍ଷସର) ଦୁଃଖଦାତା ଅଟୁ । ତୁ ଚନ୍ଦ୍ରଯୁକ୍ତ ଅଟୁ ଅର୍ଥାତ୍ ତୋ ନାମ ରାମଚନ୍ଦ୍ର (ରାମ + ଚନ୍ଦ୍ର); ତେଣୁ ତୁ ଭକ୍ତହୃଦୟକୁମୁଦକୁ (କଇଁଫୁଲକୁ) ମୁଦ (ଆନନ୍ଦ) ପ୍ରଦାନ କରୁ ।

୩ୟ ପଦ । ଶିବଙ୍କ ଅର୍ଥରେ—ହେ ଶିବ ! ତୁ ଦକ୍ଷଯଜ୍ଞଭଗ୍ନକାରୀ ଅଟୁ ଅର୍ଥାତ୍ ଦକ୍ଷର ଯଜ୍ଞ ଭାଙ୍ଗିଥିଲୁ । ଦୁଃଖଦ ( କାମ ) କୁ ମାରିଚ (ତୁମ୍ଭେ ମାରିଅଛ—ବିନାଶ କରିଅଛ) । ତୁ ଚନ୍ଦ୍ରଯୁକ୍ତ ଅଟୁ (ଚନ୍ଦ୍ର ତୋ ଶିରରେ ଅବସ୍ଥାନ କରନ୍ତି); ତେଣୁ ତୁ ଭକ୍ତହୃଦରୂପ କୁମୁଦକୁ ମୁଦ (ଆନନ୍ଦ) ପ୍ରଦାନ କରୁ ।

୪ର୍ଥ ପଦ । ରାମଙ୍କ ଅର୍ଥରେ—ହେ ରାମଚନ୍ଦ୍ର ! ଦଣ୍ଡଧର କାଳ (କାଳଦଣ୍ଡ ଧାରଣକାରୀ ଯମ) ତୋର ନାମ ଶୁଣିଲେ ଡରଇ, ଅର୍ଥାତ୍ ସେ ତୋର ଭକ୍ତମାନଙ୍କୁ ଭୟ କରେ । ତୁ ସତ୍ୟସନ୍ଧ, ଦୟାନିଧି ଓ ପରମଈଶ୍ୱର ଅଟୁ (ଏଠାରେ ଅନ୍ତର ମଧ୍ୟ ସତ୍ୟବାଦୀ ସାକ୍ଷୀଗୋପାଳଙ୍କୁ ବିଶେଷ ଭାବରେ ଲକ୍ଷ୍ୟ କରାଯାଇ ପାରିବ) ।

୪ର୍ଥ ପଦ । ଶିବଙ୍କ ଅର୍ଥରେ—ହେ କାଳ (ଶିବ) ! ତୋ ନାମରେ ଦଣ୍ଡଧର (ଯମ) ଡରୁଥାଇ ଅର୍ଥାତ୍ ତୁ ମୃତ୍ୟୁଞ୍ଜୟ ଅଟୁ । ତୁ ସତ୍ୟବାଦୀ, ଦୟାନିଧି ଓ ପରମେଶ୍ୱର ଅଟୁ ।

୫ମ ପଦ । ରାମଙ୍କ ଅର୍ଥରେ—ହେ ରାମଚନ୍ଦ୍ର ! ତୋର ରତିପତିଜିଣା (କନ୍ଦର୍ପକୁ ଜିଣିଥିବା) ସୁମଧୁର ରୁଦ୍ରକାନ୍ତି (ଅତି ମନୋହର ଶୋଭା) ଅଟେ । ହେ ବଳ୍କଳଭୂଷଣ ନାଥ ! (ବନବାସ ସମୟରେ ପାଉଁଶ ବୋଳି ହୋଇଥିବା ତୁମ୍ଭେ) ଦୂଷଣକୁ ସଂହର (ଦୂଷଣ ନାମକ ଦୈତ୍ୟକୁ ମାରିଅଛ) ।

୫ମ ପଦ । ଶିବଙ୍କ ଅର୍ଥରେ—ହେ ରୁଦ୍ର (ଶିବ) ! ତୁ ରତିପତିଜିଣା (କନ୍ଦର୍ପକୁ ଜୟ କରିଅଛୁ) ତୋର କାନ୍ତି (ଶୋଭା) ସୁମଧୁର (ଅତିଶୟ ମନୋହର) ଅଟେ । ହେ ବଳ୍କଳଭୂଷଣ ନାଥ (ହେ ଯୋଗୀ ! ତୁ ପାଉଁଶ ବୋଳି ହୋଇ ଥାଉ କିମ୍ବା ତୁ ଅଷ୍ଟବଳ୍କଳଦ୍ୱାରା ଭୂଷିତ ହୋଇଅଛୁ) ଦୂଷଣ ସଂହର (ମୋର ଦୁଷ୍କୃତକୁ ନାଶ କର ) ।

୬ଷ୍ଠ ପଦ । ରାମଙ୍କ ଅର୍ଥରେ ହେ ଦେବ (ରାମଚନ୍ଦ୍ର) ! ତୁ କେବେ ବାସବ (ଇନ୍ଦ୍ରର) ଭୟଦ (ଭୟଦାତା) ହେଉ । (ଏଠାରେ କୃଷ୍ଣାବତାରର ମନ୍ଦରଗିରି ଧାରଣ ଓ ପାରିଜାତ

ଜନକସୁତାତୋଷଦ ଅଜଗବ ଧନୁ,
କାମଯଜ୍ଞେ ଲଙ୍କାପତିବଭୂତି ବହରୁ । ୭ ।
ପୀନ-ଉରଜାର ସ୍ନେହେ ସାଗରକୁ ଖେଦ,
ଦେଇ, ପୁଣି ହେଉ ରଣେ ଦାନବଭୟଦ । ୮ ।
ଶିଖରି-ଶିଖେ କାଳିକା ବଳେକ ଵକଳେ,
ଉଦ୍‌ଗ୍ରୀବେ ସୁଗ୍ରୀବାଦଙ୍କୁ ଧରିଥିଲୁ କୋଳେ । ୯ ।

---

ହରଣକୁ ଲକ୍ଷ୍ୟ କରାଯାଇଅଛି) । ପଞ୍ଚାନନ (ମହାଦେବ) ଏକମନେ (ଏକାଗ୍ରତାରେ) ତୋ ନାମ ଜପଇ (ରାମ ନାମ ଜପ କରୁଅଛନ୍ତି) ।

୬ଷ୍ଠ ପଦ । ଶିବଙ୍କ ଅର୍ଥରେ—ହେ ଦେବ (ଶିବ) । ତୁ କେବେ ବାସବଭୟଦ ହେଉ (ଏଠାରେ ପଦ୍ମପୁରାଣୋକ୍ତ ଇନ୍ଦ୍ର ଶିବଙ୍କ ନିକଟରେ ଅପରାଧ କରିଥିବା ଓ ଶିବଙ୍କ କୋପରୁ କାଳପୁରୁଷ ଜାତ ହୋଇ ଇନ୍ଦ୍ରଙ୍କୁ ଗିଳିବାକୁ ଭୟ ଦେଖାଇଥିବା—ଇତ୍ୟାଦିକୁ ଲକ୍ଷ୍ୟ କରାଯାଇ-ଅଛି) । ହେ ପଞ୍ଚାନନ ! ମୁଁ ଏକମନେ (ଏକନିଷ୍ଠ ହୋଇ) ତୋ ନାମକୁ ଜପୁଅଛି ।

୭ମ ପଦ । ରାମଙ୍କ ଅର୍ଥରେ—ହେ ରାମଚନ୍ଦ୍ର ! ତୁ ଜନକସୁତାତୋଷଦ ଅଜଗବ (ଶିବଧନୁ) ଧରୁ ଅର୍ଥାତ୍ ଶିବଧନୁ ଭାଙ୍ଗି ସୀତାଙ୍କୁ ବିବାହ କରିଥିଲୁ । କାମଯଜ୍ଞେ (ସୀତାପ୍ରାପ୍ତି ରୂପକ କାମନା ଯଜ୍ଞରେ) ଲଙ୍କାପତି (ରାବଣର) ଐଶ୍ୱର୍ଯ୍ୟକୁ ହରଣ କରିଅଛୁ ।

୭ମ ପଦ । ଶିବଙ୍କ ଅର୍ଥରେ—ହେ ଶିବ ! ଜନକସୁତାତୋଷଦ ଅଜଗବ ଧରୁ (ଅର୍ଥାତ୍ ତୋର ଅଜଗବ ଧନୁକୁ ତୁ ସ୍ୱୟମ୍ବରରେ ପତିନିରୂପଣ ପାଇଁ ସୀତାଙ୍କ ପିତା ଜନକଙ୍କୁ ଦେଇଥିଲୁ) । ତୁ କାମଯଜ୍ଞେ (କନ୍ଦର୍ପରୂପକ ଯାଗରେ) ଲଙ୍କାପତି (ଲଙ୍କେଶ୍ୱରୀ ଚଣ୍ଡୀର) ବିଭୂତି ବହରୁ (ପାର୍ଶ୍ୱକୁ ଅପହରଣ କରୁ ବା ଚଣ୍ଡୀଙ୍କ ଐଶ୍ୱର୍ଯ୍ୟରେ ବିହାର କରୁ) ।

୭ମ ପଦ । ଶିବଙ୍କ ଅର୍ଥରେ ଅନ୍ୟପ୍ରକାର—ହେ ଲଙ୍କାପତି (ଶିବ) ! ତୁ କାମଯଜ୍ଞରେ ବିଭୂତି ବହରୁ । ତୁ କାମଯଜ୍ଞ କରି ସେହି ପାର୍ଶ୍ୱକୁ ବୋଲି ହୋଇଅଛୁ ଓ ସୀତାଙ୍କୁ ତୁଷ୍ଟ କରିଥିବା ଅଜଗବ ଧନୁ ତୋର ଅଟେ ।

୮ମ ପଦ ରାମଙ୍କ ଅର୍ଥରେ—ହେ ରାମଚନ୍ଦ୍ର ! ତୁ ପୀନଉର (ପୃଥିବୀ) ଜା (ସମ୍ଭୂତା) ସୀତାର ସ୍ନେହରେ ସାଗରକୁ ଖେଦ ଦେଇ ଅର୍ଥାତ୍ ବନ୍ଧାଇ ଥିଲୁ । ପୁଣି ରଣେ ଦାନବଭୟଦ ହେଉ (ଯୁଦ୍ଧରେ ଅସୁରମାନଙ୍କୁ ଭୟ ଦେଇ ) ।

୮ମ ପଦ । ଶିବଙ୍କ ଅର୍ଥରେ—ହେ ଶିବ ! ତୁ ପୀନଉରଜା ( ପୃଥୁଳସ୍ତନୀ ) ପାର୍ବତୀଙ୍କ ସ୍ନେହରେ ସାଗରକୁ (ସମୁଦ୍ରକୁ) ଖେଦ (ଦୁଃଖ) ଦେଇଥିଲୁ, (ଅର୍ଥାତ୍ ଦେବ ଦାନବ କର୍ତ୍ତୃକ ସାଗରମନ୍ଥନ ପରେ ପାର୍ବତୀଙ୍କ ଅନୁରୋଧ ରକ୍ଷା କରି ପୁନର୍ବାର ସାଗର ମନ୍ଥନ କରିଥିଲୁ) । ତୁ ରଣେ ଦାନବଭୟଦ ହେଉ (ଯୁଦ୍ଧରେ ଅସୁରମାନଙ୍କୁ ଭୟ ଦେଇ) ।

୯ମ ପଦ । ରାମଙ୍କ ଅର୍ଥରେ—ହେ ରାମଚନ୍ଦ୍ର ! ତୁ ଶିଖରିଶିଖେ (ମାଲ୍ୟବନ୍ତ ପାହାଡ଼ ଉପରେ) କାଳିକା ବଳେକ (ନୂଆ ମେଘ ଦେଖି) ଉଦ୍‌ଗ୍ରୀବେ (ସୀତା ବିରହୋତ୍କଣ୍ଠାରେ) ସୁଗ୍ରୀବାଦଙ୍କୁ (ସୁଗ୍ରୀବ ଆଦିକରି ଯୂଥପତିମାନଙ୍କୁ) କୋଳ କରିଥିଲୁ; ଅର୍ଥାତ୍ ସୀତାଙ୍କୁ ଫେରି ପାଇବାର ଆଶା ସେମାନଙ୍କ ନିକଟରେ ବ୍ୟକ୍ତ କରିଥିଲୁ ।

୯ମ ପଦ । ଶିବଙ୍କ ଅର୍ଥରେ—ହେ ଶିବ ! ତୁ ଶିଖରିଶିଖେ (ହିମାଳୟ ଶୃଙ୍ଗରେ) କାଳିକା ବଳେକ (ତପଃକ୍ଳିଷ୍ଟା ପାର୍ବତୀଙ୍କୁ ଦେଖି) ଉଦ୍‌ଗ୍ରୀବେ (ଉତ୍କଣ୍ଠାରେ) ସୁଗ୍ରୀବାଦଙ୍କୁ (ସୁଗ୍ରୀବ+ଆଦଙ୍କୁ) ଅର୍ଥାତ୍ ଉତ୍ତମ ଗ୍ରୀବାବିଶିଷ୍ଟା ଆଦ୍ୟମାତା ପାର୍ବତୀଙ୍କୁ କୋଳ କରିଥିଲୁ (ପତ୍ନୀରୂପେ ଗ୍ରହଣ କରିଥିଲୁ) ।

ସୁମନବନ୍ଦ୍ୟ ସହ୍ନକେ ସନ୍ନ୍ୟାସୀ ବୋଲାଇ,
ମୁନି-ଋଷି-ଯକ୍ଷ-ରକ୍ଷ-ନାଗ-ସେବ୍ୟ ତୁହି । ୧୦ ।
ମହାକାଳ-ସେବ୍ୟ ଅଟୁ ଜନକ-ଆଦର,
ବିଶ୍ୱାମିତ୍ର ସଙ୍ଗେ ରଙ୍ଗେ ସଂହରୁ ଭୂଭାର । ୧୧ ।
ତାରାପତି ତାପହର ବିଧି ଦୁଃଖ କ୍ଷମ,
ଦଣ୍ଡକେ ଭକ୍ତଜନଙ୍କ ପୂର୍ଣ୍ଣ କରୁ କାମ । ୧୨ ।
ଭୃଗୁରାମେ ଶିକ୍ଷା ଦେଇ ଦେବ ସତ୍ୟ ଶିକ୍ଷା,
ଚଣ୍ଡୀସେବା କରୁ ସ୍ୱରେ ପାଇଗଲେ ରକ୍ଷା । ୧୩ ।

---

୧୦ମ ପଦ । ରାମଙ୍କ ଅର୍ଥରେ—ହେ ରାମଚନ୍ଦ୍ର ! ତୁ ସହ୍ନକେ ସୁମନ (ଦେବତା) ଓ ଜ୍ଞାନିମାନଙ୍କର ବନ୍ଦ୍ୟ (ପୂଜ୍ୟ) ଅଟୁ । ତୁ ସନ୍ନ୍ୟାସୀ ବୋଲାଇ (ସନ୍ନ୍ୟାସୀପଦବାଚ୍ୟ ବା ସନ୍ନ୍ୟାସୀ ହୋଇ; ଏଠାରେ ବନବାସକୁ ଲକ୍ଷ୍ୟ କରାଯାଇଅଛି) ମୁନି, ଋଷି, ଯକ୍ଷ, ରକ୍ଷ ଓ ନାଗମାନଙ୍କର ସେବ୍ୟ ଅଟୁ ।

୧୦ମ ପଦ । ଶିବଙ୍କ ଅର୍ଥରେ—ହେ ଶିବ ! ତୁ ଦେବତାମାନଙ୍କର ପୂଜ୍ୟ, ତୁ ସନ୍ନ୍ୟାସୀ ଓ ତୋତେ ମୁନି, ଋଷି, ଯକ୍ଷ, ରକ୍ଷ (ଅସୁର) ଓ ନାଗମାନେ ସେବା କରନ୍ତି ।

୧୧ଶ ପଦ । ରାମଙ୍କ ଅର୍ଥରେ—ହେ ରାମଚନ୍ଦ୍ର ! ତୁ ମହାକାଳ (ମହାଦେବଙ୍କର) ସେବ୍ୟ ଅଟୁ ଓ ଜନକ (ପିତା ଦଶରଥ ବା ଶ୍ୱଶୁର ଜନକ ଋଷିଙ୍କର) ଆଦର (ସ୍ନେହପାତ୍ର) ଅଟୁ । ତୁ ବିଶ୍ୱାମିତ୍ର ସଙ୍ଗେ (ସଙ୍ଗରେ ଯାଇ) ରଙ୍ଗେ (ଛଳନାରେ) ଭୂଭାର ସଂହରୁ, (ଭୂଭାରକୁ ଦୁରାତ୍ମାମାନଙ୍କର ବିନାଶ ସାଧନ ଦ୍ୱାରା ହରଣ କରିଥିଲୁ) ।

୧୧ଶ ପଦ । ଶିବଙ୍କ ଅର୍ଥରେ—ହେ ମହାକାଳ (ଶିବ) ! ତୁ ସେବ୍ୟ ଅଟୁ (ସମସ୍ତେ ତୋତେ ସେବା କରନ୍ତି )। ତୁ ଜନକ ଆଦର ଅଟୁ (ଜନକ ଋଷି ତୋତେ ଭକ୍ତି କରନ୍ତି, କାରଣ ସେ ତୁମ୍ଭପରି ବା ତୁମ୍ଭଙ୍କୁ ଅନୁକରଣ କରି ପତ୍ନୀଙ୍କୁ କୋଳରେ ଧରି ଏକାଗ୍ରତାରେ ଭଗବାନଙ୍କ ଧ୍ୟାନରେ ନିମଗ୍ନ ରହନ୍ତି ବା ତୁମ୍ଭେ ତାଙ୍କୁ ସୀତା ସ୍ୱୟମ୍ବର ପାଇଁ ନିଜର ଧନୁ ଦେଇଥିଲ) । ବିଶ୍ୱାମିତ୍ର (ବିଶ୍ୱ+ଅମିତ୍ର) ସଙ୍ଗେ ରଙ୍ଗେ ଭୂଭାର ସଂହରୁ ଅର୍ଥାତ୍ ବିଧର୍ମୀ ବା ଦୁଷ୍ଟମାନଙ୍କ ସହିତ ଯୁଦ୍ଧ କରି ପୃଥିବୀର ଭାରକୁ ହରଣ କରୁ ଅଥବା ପ୍ରଳୟ ପାଣ୍ଡିଲକ୍ଷଣି ସମସ୍ତ ପ୍ରଳୟ କରୁ ।

୧୨ଶ ପଦ । ରାମଙ୍କ ଅର୍ଥରେ—ହେ ରାମଚନ୍ଦ୍ର ! ତୁ ତାରାପତି ବାଳିର ତାପହର (ତମକୁ ବା ନିତାପକୁ) ହରଣ କରିଅଛୁ । ତୁ ବିଧିଦୁଃଖକ୍ଷମ (କ୍ଷମାଦେଇ) ଅର୍ଥାତ୍ ତୁ ଏକମାତ୍ର ବିଧାତାର ଆଶ୍ରୟ ସ୍ଥଳ । ଦଣ୍ଡକେ (ଦଣ୍ଡକାରଣ୍ୟରେ) ଭକ୍ତଜନଙ୍କ (ସେହି ଅରଣ୍ୟବାସୀ ଋଷିମାନଙ୍କ) କାମ ପୂର୍ଣ୍ଣ କରୁ (କାମନା ପୂର୍ଣ୍ଣ କରିଅଛୁ) ଅର୍ଥାତ୍ ସେମାନେ ଗୋପକନ୍ୟାରୂପେ କୃଷ୍ଣାବତାରରେ ତୋ ସହିତ ରାସ କରିଥିଲେ ।

୧୨ଶ ପଦ । ଶିବଙ୍କ ଅର୍ଥରେ—ହେ ଶିବ ! ତୁ ତାରାପତି (ଚନ୍ଦ୍ରର) ତାପହର (ତାପକୁ ହରଣ କରୁ) ଅର୍ଥାତ୍ ବୃହସ୍ପତିଙ୍କ ଅଭିଶାପରୁ ଚନ୍ଦ୍ରଙ୍କୁ ରକ୍ଷା କରିଅଛୁ ଓ ତୁ ବିଧି (ବିଧାତା) କୁ ଦୁଃଖକ୍ଷମ (ଦୁଃଖ ଦେବାକୁ ଉପଯୁକ୍ତ ଅଟୁ ଅର୍ଥାତ୍ ବିଧାତାର ପାଞ୍ଚ ମୁଣ୍ଡରୁ ଗୋଟିଏ ମୁଣ୍ଡ ଛିଣ୍ଡାଇ ତାଙ୍କୁ କଷ୍ଟ ଦେବାକୁ କ୍ଷମ ହୋଇଥିଲୁ) । ଦଣ୍ଡକେ ( ଦଣ୍ଡକ ମଧ୍ୟରେ) ଭକ୍ତ-ଜନଙ୍କ (ତୋର ଭକ୍ତମାନଙ୍କ) କାମ (ମନୋବାଞ୍ଛା) ପୂର୍ଣ୍ଣକରୁ—କାରଣ ତୁ ଆଶୁତୋଷ ।

୧୩ଶ ପଦ । ରାମଙ୍କ ଅର୍ଥରେ—ହେ ଦେବ ରାମଚନ୍ଦ୍ର ! ତୁ ଭୃଗୁରାମେ (ପଶୁରାମଙ୍କୁ) ସତ୍ୟ ଶିକ୍ଷା ଦେଇଅଛୁ; ଅର୍ଥାତ୍ ପଶୁରାମର ଗର୍ବକୁ ଖର୍ବ କରିଅଛୁ । ଚଣ୍ଡୀ ସେବା କରୁ ସୁରେ

ବୈଦେହୀମଣ୍ଡନା ଅହା ଭୋଗିଲ ଯାତନା,
ତବ ଯୋଗୁଁ ହେ ସର୍ବଜ୍ଞ ଅମର୍ତ୍ତ୍ୟଶୋଭନା । ୧୪ ।
କୁମାରଜନକ କାଳ ଜଟାଧାର ତୋଷେ,
ଅଙ୍ଗ ଅନ୍ତମେ ମଣ୍ଡାଇ ଦେଇ ଗଙ୍ଗାରସେ । ୧୫ ।
ଅପ୍ରାକୃତ ତୁ ସହଜେ ପ୍ରକୃତିର ପ୍ରିୟ,
ରାମ ନାମ ଅଘନାଶୀ ଜପି ହୋଇ ଥୟ । ୧୬ ।
ବିଜୟୀ ! ବରାହବରେ ତୋଷେ ଧରା ଧରି,
ବଳିକି ଅଭୟ ଦାନେ ଦେଲୁ କୃପା କରି । ୧୭ ।

---

ରକ୍ଷା ପାଇଗଲେ ଅର୍ଥାତ୍ ଚଣ୍ଡୀ ସେବାକରି ରାବଣକୁ ବଧ କରିବାରୁ ସୁରେ (ଦେବତାମାନେ) ବା ଶୂରେ (ଆପଣଙ୍କ ପକ୍ଷୀୟ ଯୋଦ୍ଧାମାନେ) ବିପଦରୁ ଉଦ୍ଧାର ପାଇଲେ ।

୧୩ଶ ପଦ । ଶିବଙ୍କ ଅର୍ଥରେ—ହେ ଦେବ ! ମହାଦେବ ! ତୁ ଭୃଗୁରାମଙ୍କୁ ସତ୍ୟ ଶିକ୍ଷା ଦେଇଅଛୁ ଅର୍ଥାତ୍ ତୁ ପର୍ଶୁରାମର ଗୁରୁ ଅଟୁ । ଚଣ୍ଡୀସେବା କରୁ ସୁରେ ରକ୍ଷା ପାଇଗଲେ

ମହିଷାସୁର ବଧ ପରେ ଲହଲହ ଜିହ୍ୱା କୋପନା କାଳିଙ୍କ ପଦତଳେ ପଡ଼ି ଦେବତାମାନଙ୍କୁ ଚଣ୍ଡୀଙ୍କ କୋପରୁ ରକ୍ଷା କରିଅଛୁ

୧୪ଶ ପଦ । ରାମଙ୍କ ଅର୍ଥରେ—ହେ ସର୍ବଜ୍ଞ ରାମଚନ୍ଦ୍ର ! ଅମର୍ତ୍ତ୍ୟଶୋଭନା (ସୁରସୁନ୍ଦରୀ) ବୈଦେହୀମଣ୍ଡନା (ବୈଦେହୀ) ତବ ଯୋଗୁଁ ଯାତନା (କଷ୍ଟ) ସହିଲେ, କାରଣ ଆପଣ ପ୍ରଜାବତ୍ସଳ ହେବାରୁ ସତୀ ପତ୍ନୀ ସୀତାଙ୍କୁ ନିର୍ବାସିତା କଲ ।

୧୪ଶ ପଦ । ଶିବଙ୍କ ଅର୍ଥରେ—ହେ ସର୍ବଜ୍ଞ (ମହାଦେବ) ! ଅମର୍ତ୍ତ୍ୟଶୋଭନା ବଦେହୀମଣ୍ଡନା (ଅତି ସୁନ୍ଦରୀ କାମପତ୍ନୀ ରତି) ତବ ଯୋଗୁଁ ଯାତନା (ବହୁକଷ୍ଟ) ସହିଲେ ଅର୍ଥାତ୍ ଆପଣ କାମକୁ ଭସ୍ମ କରିଦେବାରୁ ରତି ସ୍ୱାମୀବିୟୋଗ ଯାତନା ସହିଲେ ।

୧୫ଶ ପଦ । ରାମଙ୍କ ଅର୍ଥରେ—ହେ କୁମାର ! ହେ ଯୁବରାଜ ରାମଚନ୍ଦ୍ର ! ତୁ ଜନକକାଳ ହେଲୁ ( ପିତୃ ସତ୍ୟ ପାଳି ବନବାସ କରି ଯିବାରୁ ପିତାର ମୃତ୍ୟୁର କାରଣ ହେଲୁ ) । ତୋଷେ ଜଟାଧର ହେଲୁ । ଅନ୍ତମେ ( ଶେଷ ସମୟରେ ) ଅଙ୍ଗ ( ଶରୀରକୁ ) ଗଙ୍ଗାରସେ ( ସରଯୂ ଜଳରେ ) ମଣ୍ଡାଇ ଦେଲୁ ଅର୍ଥାତ୍ ଭ୍ରାତୃସ୍ନେହରେ ସରଯୂରେ ଝାସ ଦେଲୁ ।

୧୫ଶ ପଦ । ଶିବଙ୍କ ଅର୍ଥରେ—ହେ କାଳ (ମହାଦେବ) ! ତୁ କୁମାରଜନକ (କାର୍ତ୍ତିକର) ପିତା ଅଟୁ । ତୁ ତୋଷେ ( ରାମ ପ୍ରେମରେ ) ଜଟାଧର ହୋଇଅଛୁ । ରସେ (ପତ୍ନୀ-ପ୍ରେମରସରେ) ଅଙ୍ଗଅନ୍ତମେ ( ମସ୍ତକରେ ) ଗଙ୍ଗାଙ୍କୁ ମଣ୍ଡାଇ ଦେଲୁ ( ଅଳଙ୍କାର କରି ବହିଲୁ ) ।

୧୬ଶ ପଦ । ରାମଙ୍କ ଅର୍ଥରେ—ହେ ପ୍ରକୃତିପ୍ରିୟ ( ପ୍ରଜାବତ୍ସଳ ) ରାମଚନ୍ଦ୍ର ! ତୁ ସହଜେ ଅପ୍ରାକୃତ ଅଟୁ । ତୁ ଅଘନାଶୀ ( ପାପନାଶକାରକ ) ରାମନାମକୁ ଜପି ଥୟ ହୋଇଅଛୁ; ଅର୍ଥାତ୍ ରାବଣ ବଧ ପରେ ସ୍ୱନାମକୁ ଜପି ବ୍ରହ୍ମହତ୍ୟା ପାପରୁ ମୁକ୍ତ ହୋଇଅଛୁ । ଅତଏବ ତୋର ନାମର ମହିମା ଅକଥନୀୟ ଅଟେ ।

୧୬ଶ ପଦ । ଶିବଙ୍କ ଅର୍ଥରେ—ହେ ପ୍ରକୃତିପ୍ରିୟ ( ଦୁର୍ଗାଙ୍କର ଆଦରପାତ୍ର ) ଶିବ ! ତୁ ସହଜେ ଅପ୍ରାକୃତ ଅଟୁ । ଅଘନାଶୀ ରାମନାମକୁ ଜପି ଥୟ ହୋଇ ଅଛୁ; ଅର୍ଥାତ୍ ସର୍ବଦା ରାମନାମ ଜପ କରିବାରୁ ନିବୃତ୍ତିମାର୍ଗରେ ତୋର ମନ ସ୍ଥିର ହୋଇଅଛି ।

୧୭ଶ ପଦ । ରାମଙ୍କ ଅର୍ଥରେ—ହେ ବିଜୟୀ ( ହେ ଜୟଶୀଳ ରାମଚନ୍ଦ୍ର ) ! ତୁ ବରାହବରେ ( ଶ୍ରେଷ୍ଠ ଶୂକରରୂପରେ ) ତୋଷେ ଧରା ( ପୃଥିବୀକୁ ) ଧରିଥିଲୁ । ଦାନେ ବଳିକି କୃପା କରି ଅଭୟ ଦେଇଅଛୁ ।

ବଚନ ଚନ୍ଦକୁଣ୍ଠରେ ଐନ୍ଦ୍ର, ଦେଇ କ୍ଷମା,
ଶରାଳଗତି ଦେଖିଲୁ ଅତି ମନୋରମା । ୧୮ ।
ହେ ଈଶ୍ୱର ! ତବ ରୁଚି ପଯୂର-ପଲ୍ଲବ
ବିଳସୁ ଗୋଲକଚନ୍ଦ୍ର ମାନସ-ମଣ୍ଡଳ । ୧୯ ।
ବନ୍ଦେ ଦେବୀ ବୀଣାପାଣି ବାଣି ! କୃପାମୟୀ
କୃପାସାରେ ମୋର ମତି-ଗୁତକ ଅଶାୟୀ । ୨୦ ।
ଭଞ୍ଜ ସାମନ୍ତସିଂହାର ଲେଖନୀକୁ ଦେବ !
ଦେଲେ କରେ କୃପା ବହୁ କବିତା ଲେଖିବ । ୨୧ ।
ଛନ୍ଦରାଗେ ବୀଣାପାଣି ଧରିବେ କି ବୀଣା
ବିଜ୍ଞ ଭକ୍ତ ରସିକଙ୍କ ମନ ହେବ କୀଣା । ୨୨ ।
ପ୍ରଧାନ ଭାବନା ତବ ଚରଣ-ସରୋଜ
ବିସ୍ତୁ କାମ୍ୟ ! ଦୟା ବହୁ ଦିଅ ପଦରଜ । ୨୩ ।
ରଚିବି ମୁଁ ଇନ୍ଦୁରେଖା ସୁଲଳିତ କାବ୍ୟ
ସରସ ମଧୁର ରସେ ଭାବୁକେ ମୋହିବ । ୨୪ ।
ନୂତନ ସାହିତ୍ୟ-ବିହାୟସେ ଇନ୍ଦୁରେଖା
ପ୍ରବଭାବେ ହେବ ଏ ଦ୍ୱିତୀୟା ତଥି ଲେଖା । ୨୫ ।
ବାକ୍ୟ ଭଙ୍ଗୀ ହେବ ଏଥି ନର୍ତ୍ତକୀ ସଦୃଶ
ସୁଜାଣ ରସିକଙ୍କର ମୋହିବ ମାନସ । ୨୬ ।
ଭାବ ଦେବ ଭାବଦାନେ ଯଥା ସତୀ ନାରୀ
ସଙ୍ଗୀତବିଦଙ୍କ ହେବ ଶ୍ରୁତି-ମୋଦକାରୀ । ୨୭ ।

---

୧୭ଶ ପଦ । ଶିବଙ୍କ ଅର୍ଥରେ—ହେ ଶିବ ! ତୁ ବିଜୟୀ ( ଅର୍ଜ୍ଜୁନଙ୍କ ସହିତ ) ବର ଆହବରେ ( ଶ୍ରେଷ୍ଠ ବା ଉଭୟଙ୍କର ଯୁଦ୍ଧରେ ) ତୋଷେ ଧରାଧର ହୋଇଥିଲୁ । କୃପା କରି ବଳକୁ ( ଜେତା ଅର୍ଜ୍ଜୁନକୁ ) ଅଭୟ ଦେଇଥିଲୁ ।

୧୮ଶ ପଦ । ରାମଙ୍କ ଅର୍ଥରେ—ହେ ରାମଚନ୍ଦ୍ର ! ତୁ ବଚନ ମନୋହର ଚନ୍ଦକୁଣ୍ଠରେ ଐନ୍ଦ୍ର ( କାକକୁ ) କ୍ଷମା ଦେଇ ଅତି ମନୋରମା ଶରାଳଗତି ( ହଂସଗମନା ) ସୀତାଙ୍କୁ ଦେଖିଲୁ; ଅର୍ଥାତ୍ ତୁ କ୍ଷମାଶୀଳ ଓ ପର ଦୁଃଖକାତର ଅଟୁ କମ୍ବା ସୀତା ତୋର କ୍ଷମାଗୁଣରେ ମୁଗ୍ଧ ହୋଇଥିଲେ ।

୧୮ଶ ପଦ । ଶିବଙ୍କ ଅର୍ଥରେ—ହେ ଶିବ ! ତୁ ଚନ୍ଦକୁଣ୍ଠରେ ( ବଚନ କୁଣ୍ଠ ଯୁଦ୍ଧରେ ) ଐନ୍ଦ୍ର ( ଅର୍ଜ୍ଜୁନଙ୍କୁ ) କ୍ଷମା ଦେଇ ତାଙ୍କର ଶରାଳ ( ଶର+ଅଳ ) ( ଶରସମୂହର ) ଗତିକୁ ଅତି ମନୋରମା ଦେଖିଲୁ । ଏହା ବଚନ ( ଅନ୍ତର୍ଯ୍ୟ ) ଅଟେ ଅର୍ଥାତ୍ ତୁ କ୍ଷମାଶୀଳ ଓ ଦାତା ଥିବାରୁ ଅର୍ଜ୍ଜୁନଙ୍କୁ ଉପଯୁକ୍ତ ଧାନୁଷ୍କ ମନେ କରି ପାଶୁପତଶରକୁ ଦାନ ଦେଲୁ ।

୧୯ଶ ପଦ । ଈଶ୍ୱର (୧) ଭଗବାନ୍, ରାମଚନ୍ଦ୍ର; (୨) ଶିବ ।

୨୩ । ଚରଣ-ସରୋଜ—ପାଦପଦ୍ମ । ୨୫ । ବିହାୟସେ—ଆକାଶରେ ।

ହେ ଭାରତି ! ହେଲେ ଯେବେ କରୁଣା କଳିତ
ନିର୍ବିଘ୍ନରେ ସମାପତ ହେବ ନବ ଗୀତ । ୨୮ ।
ବାମନ ହୋଇ ଚନ୍ଦ୍ରଙ୍କୁ ଧରିବାକୁ ମନ
ବସିଅଛୁ ବାନ୍ଧିବାକୁ ପାଶରେ ପବନ । ୨୯ ।
ପାଞ୍ଚୁଅଛୁ ସ୍ଥିର କରି ଧରିବି ବିଜୁଳି
ତୋଳିବି ଗଗନେ ରଙ୍ଗେ ସୁରମ୍ୟ ଅଟ୍ଟାଳି । ୩୦ ।
ପଙ୍ଗୁ ଲଙ୍ଘିଲାକୁ ଗିରି କରଇ ବିଗ୍ଭର ।
ସରସ୍ୱତି ! ଭଗବତି ! ନମେ ତୋ ପୟର । ୩୧ ।
ଅଙ୍କ ଲେଖା ବୋଲି ବାଳେ କହୁଛୁ ମଣାଇ
ନାନାରସ ଯେଣି ଦୋଷ ନ ଯେନିବେ କେହି । ୩୨ ।
ତେତିଶ ପଦରେ ଶେଷ ଏ ସୁଷମ ଛାନ୍ଦ
ଶିବରାମ ବନ୍ଦନାକୁ ଯେନିବେ କୋବିଦ । ୩୩ ।

## ଦ୍ୱିତୀୟ ଛାନ୍ଦ

### ରାଗ—ରାମକେରୀ

ଯେନ କୁରୁକ୍ଷେତ୍ର ଦେଖିବ ଭାରତରେ ସୁମନେ
ଗାଇଛନ୍ତି ବ୍ୟାସ ସାରଳା ସାରଳାର ଅର୍ଚ୍ଚନେ । ୧ ।
କ୍ଷେତ୍ର-ରାଜଙ୍କର ମୁକୁଟ କୂଟ ଯେଉଁଠାରେ ନାଶ
ତୀର୍ଥରାଜ ମଣି ସୁମନ ମନ କରନ୍ତି ତୋଷ । ୨ ।
ନାଶ ଜୟଦ୍ରଥ ରଥଟି ଯହିଁ ଦ୍ରୋଣ ରଥୀର
ବ୍ୟୁହଅନ୍ତେ ପ୍ରବେଶ ଭୁଲିବାରେ ବୀରେ ହେଲେ ଅଧୀର । ୩ ।
ଭୀଷ୍ମ ଅରିନ୍ଦମ ବିନାଶ ନାଶ ଉତ୍ତରାପତି
ଭୀମ ଗଦାଘାତେ କୌରବ ରବ କରିଅଛନ୍ତି । ୪ ।
ପାଣ୍ଡବ ସହାୟ ବିକର୍ଣ୍ଣ କର୍ଣ୍ଣ କୌରବ ରତ
ବୃକୋଦର ଦର ଜନ୍ମାଇ କଲା ଦୁଃଶା ନିପାତ । ୫ ।
ଯହିଁ ଦ୍ୱିତୀକୃଷ୍ଣ କୃଷ୍ଣର ନିନ୍ଦା ଶୁଣି କୁପିତ
ପ୍ରଶାନ୍ତିଲେ ରଙ୍ଗେ ଶ୍ରୀହରି ହରି କୋପକୁ ପାର୍ଥ । ୬ ।
ଯହିଁ ଭୀମ ଗଦା ପ୍ରହାର ହାର କରି ଉରୁରେ
ପଡ଼ିଲେ କୌରବ ନୃପତି ପରା ପରାଭବରେ । ୭ ।
ଯହିଁ ରକ୍ତନଦୀ ସନ୍ତରି ତରିଗଲା ବହନ
ଦୁର୍ଯ୍ୟୋଧନ, ହେଲା ସହାୟ ହାୟ ଲକ୍ଷ୍ମଣସେନ । ୮ ।

---

୨୮ । ଭାରତୀ—ସରସ୍ୱତୀ । ଅଟ୍ଟାଳିକା—କୋଠାଘର ।
୪ । ଉତ୍ତରାପତି—ଅଭିମନ୍ୟୁ । ୫ । ବିକର୍ଣ୍ଣ—ଧୃତରାଷ୍ଟ୍ରଙ୍କର କନିଷ୍ଠ ପୁତ୍ର ।

ଦ୍ୱାରକାରୁ ଆସି ମୋହନ ମୋହ ନରକ ହରି
ଯେ ସ୍ଥାନେ ଅରାଧ୍ୟା ରାଧାଙ୍କୁ ଥିଲେ ଦର୍ଶନ କରି । ୯
ଯହିଁ ବହି ରାଧା ମାଧବେ ଧବେ ଗୋପକୁ ନେଲେ
ଗରବକୁ ସତ୍ୟଭାମାର ମାରପିତା ଗଞ୍ଜିଲେ । ୧୦ ।
ଭରତଆ ଗଲ୍ପ ଜଙ୍ଘର ଧରି ଲାବଣ୍ୟମୂର୍ତ୍ତି
ଭକ୍ତଜନଙ୍କର ଗମନ ମନ ଯହିଁ ତୃପତି । ୧୧ ।
ଯହିଁ ଅଭିନବ ଶ୍ରୀକାନ୍ତ କାନ୍ତ ଚରିତ ଦର୍ଶି
ସ୍ମରଣେ ଦୂରିତ ଦୂରିତ ହୁଏ ରାଶିକ ରାଶି । ୧୨ ।
ତହିଁ ଥିଲେ ବହି ଭୂନାଥନାଥ ସୁଶୀଳାର ସେ
ବୀର ଚନ୍ଦ୍ରଧ୍ୱଜ ସ୍ୱନାମ ନାମ ଅବନୀ ଘୋଷେ । ୧୩ ।
କୁଶଳ ରଞ୍ଜନେ ପ୍ରକୃତ ପ୍ରକୃତିଏ ସେବନ୍ତି
ବାଣ୍ଟାନୀ ଶୂରଙ୍କ ଆଦର ଦର ପର ଲଭନ୍ତି । ୧୪ ।
ନ ଗମନ୍ତି କେହି ବିଦେଶେ ଦେଶେ ନାହିଁ ତସ୍କର
ପୂରିତ ସକଳ ବିଭବ, ଭବ ମଧ୍ୟେ ସାର । ୧୫ ।
ସଉଧମାନରେ ସେ ପୁରୀ ପୁରି ପରମା ଶୋଭା
ରତନେ ରାଜନ୍ତି ସଦନେ ଦନେ ଅଳକା ପ୍ରଭା । ୧୬ ।
ନାଗରୀବିଳାସ ସହ ସେ ହସେ ଅମରାବତୀ
ଦେବଖାତ ପରି ସରସୀ ରସି ହଂସେ ଖେଳନ୍ତି । ୧୭ ।
ବିକଚ ବାରିଜ ବିରାଜେ ରାଜେ ତହିଁରେ ଅଳି
ସେ କୁମୁଦଚକ୍ର ଚକ୍ରରେ ନବ ଶୋଭାରେ ଝଳି । ୧୮ ।
ବହୁ ଯଜ୍ଞ ହୋମେ ତୃପତ ପତି ଶଚୀର ଢାଳେ
ସୁମନରେ ବାରି ବରଷି ରସି ଭୂଖଣ୍ଡେ ପାଳେ । ୧୯ ।
ପତିବ୍ରତାଙ୍କ ମୂରତି ରତି ନିନ୍ଦଇ ହେଳେ
ସୁଷମାଲହରୀ ହରିଣୀଈକ୍ଷଣରେ ବିହରେ । ୨୦ ।
ଚକ୍‌ଚକଣି ଚକୁର ରୁଚିତ ଚିତ୍ତ ହରନ୍ତି କ୍ଷଣେ
ପରିପାଟି ବାକ୍ୟ ବାହାରେ ହାରେ ଉପମା ପଣେ । ୨୧ ।
ପ୍ରକୃତି କରନ୍ତି ଭକତି କତିପୟ ସଚିବ
ଗୁରୁ ଶୁକ୍ର ସମ ଶୋଭିତ ଭୀତ ଗ୍ରହି ବାସବ । ୨୨ ।
ସୁଶୃଙ୍ଖଳେ ରାଜ୍ୟ ଶାସିତ, ଶୀତକରେ ଯେସନ
ଧରଣୀରେ ଶାନ୍ତ ବିରାଜେ, ରାଜେ ଶାନ୍ତ ତେସନ । ୨୩ ।

---

୧୦ । ମାରପିତା—ଶ୍ରୀକୃଷ୍ଣ । ୧୧ । ଲାବଣ୍ୟମୂର୍ତ୍ତି—ମନୋହର ରୂପ, ଶ୍ରୀକୃଷ୍ଣ । ୧୪ । ଦର—ଭୟ । ୧୬ । ସଉଧ — କୋଠାଘର । ଅଳକା — କୁବେରପୁରୀ । ୧୭ । ଦେବଖାତ—ହ୍ରଦ । ୧୮ । ଚକ୍ର—ଚକ୍ରବାକ ପକ୍ଷୀ । ଚକ୍ରରେ—ସମୂହରେ ।୧୯। ଶଚୀପତି—ଇନ୍ଦ୍ର ।୨୨। ପ୍ରକୃତି—ପ୍ରଜା ।

ନୃପଙ୍କ ଅପତ୍ୟ ନ ଥିଲା ଥିଲା ସକଳ ପୂର
ସ୍ଥାପିଲେ ପୂଜିଲେ ଈଶ୍ୱର ସ୍ୱର ଉଦୟ କରି । ୨୪ ।
ଅଧା ପଢ଼ିଥିଲେ ସୁଶୀଳା ଶିଳା ଦେଉଳେ ଦାନେ
କୃପା କଲେ ହର ହରଷେ କାଶୀଠାରେ ବାଜନେ । ୨୫ ।
ତ୍ରିଶୂଳଶୋଭିତ ଶ୍ରୀଭୁଜ ଭୁଜଙ୍ଗମ ଶ୍ରୀକଣ୍ଠେ
ବୃଷଭେ ବିଜୟ ଶଙ୍କର କରଯୋଡ଼ୁ ନାକଠେ । ୨୬ ।
ବାଜେ ଡିବ୍ ଡିବି ଡମ୍ବରୁ ନନ୍ଦୀଭୃଙ୍ଗୀ ନାଚେ
ବେଦ କରେ ଧରି ତ୍ରିନେତ୍ର ନେତ୍ର ଚାଳନ୍ତି ସ୍ୱଚ୍ଛେ । ୨୭ ।
ପରଶି ଦାଅନ୍ତେ ସେ ଦଣ୍ଡ ଦଣ୍ଡବତରେ ମହିଷୀ
ହେଲା ଶମ୍ଭୁ ପଦେ ପ୍ରଣତ ନତମୁଖୀ ସୁକେଶୀ । ୨୮ ।
ବୋଇଲେ ସେବାନ୍ତେ ବତ୍ସେ ! ତୁ ତୋଷି ତୋଷି ମୋ ମନ
ମନୋବାଞ୍ଛା ସିଦ୍ଧ ଏ ବର ବରବରଣି ! ଘେନ । ୨୯ ।
ଉପବନେ କାଲି କୁସୁମ ସୁମନରେ ଲଭିବୁ
ଅଳୀ ଅଳୀ ସଙ୍ଗ ପ୍ରମୋଦ ମୋଦ ଅନୁଭବିବୁ । ୩୦ ।
ତୋ ସ୍ନେହ ସାଧନ ଉତ୍ଫୁଲ୍ଲେ ଫୁଲେକ କେହୁ ଦେବ
ଅନୁମାନରୁ ତୁ ବାଧିବେ ଧୀରେ ମୋ ବର ଭାବ । ୩୧ ।
ଯେବେ ଦେବ ରକ୍ତ ପ୍ରଥମେ ସୁକୁମାରୀ କୁମାରୀ
ଶ୍ୱେତ ଦେଲେ ହେବ ପ୍ରସୂତ ସୁତ ଅଦେୟ ସୁନ୍ଦର । ୩୨ ।
ରଖିଥିବୁ ନାରୀ-ମଙ୍ଗଳ ! ମଙ୍ଗଳବ ସେ ନାହିଁ
ମହାସିଦ୍ଧିଦାତା ସୁମନ ମନ ତୋଷିବ ସେହି । ୩୩ ।
ଶିବ ସ୍ମରି ଫୁଲ ଯେ ଧରି ଧରଣୀରେ ବସିବ
ଯାହା ମନାସିବ ଶିବ ସେ ହେବ କହିଲି ଧ୍ରୁବ । ୩୪ ।
ବାରକୁ ଦବାର କଲେ ସେ ଲେଶେ ନ ଦେବ ଫଳ
ଯତନରେ ନାରୀରତନ ରଖି ରଖି ସେ ଫୁଲ । ୩୫ ।
ଗମନ୍ତେ ଈଶାନ ସାନନ୍ଦେ ପତି ପାଶେ ଚଳିଲା
ପ୍ରତ୍ୟୁଷରୁ ବରବରଣୀ ଉପବନେ ମିଳିଲା । ୩୬ ।
ଶ୍ରୁତି-ପଥେ ଘେନ ସୁଧୀରେ ଧୀରେ ଏ ରମ୍ୟ ଛାନ୍ଦ
ବୁଲେ ଅଳୀ ଅଳୀ ସଙ୍ଗରେ ବାଳା ବହି ପ୍ରମୋଦ । ୩୭ ।
ନାଚନ୍ତି ଉଦ୍ୟାନେ ସୁମନ ମନ ମୋହନ୍ତି ରଙ୍ଗେ ।
ଦେଖଇ ଉତ୍ତମା ତମାଳକେଶୀ ସଖୀଙ୍କ ସଙ୍ଗେ । ୩୮ ।
ମଲ୍ଲିକା ମାଧବୀ ନାଅଲୀ ଅଳ କେ ଦେଖା ତହିଁ
ଦେଖ ଗୋ ଭଗିନି ! ରଙ୍ଗିଣୀ ଫୁଟିଛି କେ କହଇ । ୩୯ ।

---

ବାସବ—ଇନ୍ଦ୍ର । ୨୪ । ଈଶ୍ୱର—ଶିବ । ୨୬ । ଭୁଜଙ୍ଗମ—ସର୍ପ । ୨୭ । ତ୍ରିନେତ୍ର—ଶିବ । ୨୮ । ଶମ୍ଭୁ—ଶିବ । ୩୬ । ଈଶାନ—ମହାଦେବ । ୩୮ । ସୁମନ—ଫୁଲ ।

ବର୍ଣ୍ଣିକେ ! ଭ୍ରମରେ ଭ୍ରମରେ କଳି ପାଶେ ଗୁଞ୍ଜନ୍ତି
ଉଡ଼ନ୍ତି ଅମ୍ବରେ ଅମ୍ବରେ ତୋର କମ୍ପାଁ ବସନ୍ତି । ୪୦ ।

ଦେଖ ଏ ଶେଫାଳି ନୀହାର ହାର କରୁଛି ରଙ୍ଗେ
ମୁଚୁକୁନ୍ଦ କୁନ୍ଦ ନାଚନ୍ତି ଧୀର ଶୋଭିତରଙ୍ଗେ । ୪୧ ।

ଦେଖ ଗୋ ଫୁଟିଛି କାମିନୀ କାମିନୀଙ୍କ କେ ଚହ୍ନ
ବାସ ଚହଟରେ ବକୁଳ-କୁଳ ଭୃଙ୍ଗଙ୍କୁ ମୋହ୍ନ । ୪୨ ।

କହ୍ନକେ କବରୀ କରିବୁ ସଖି ! ଏ ଫୁଲ୍ ନିଅ
ଭୋଳିଦେଲା ରଙ୍ଗ ସୁମନ ମନ କରେ ଅଥୟ । ୪୩ ।

ବହୁଅଛି ମନ୍ଦମରୁତ ରୁତ କରେ କୋକିଳ
ମୋହୁଅଛି ବସନ୍ତ ସଂସାର ସାର ଶୋଭାରେ ମେଳ । ୪୪ ।

ସୁକରଜା ରଜାମୋହିନୀ ବିଳାସିନୀ ସହଜେ
ଲଭି କରେ ରଙ୍ଗ ଉତ୍ଫୁଲ୍ଲ ଫୁଲ୍ଲ ନାଗରୀ ହେଜେ । ୪୫ ।

ଗିରିସୁତାବର ବର ଏ ସତେ ହେଲା ପ୍ରାପତ
ବହିଗଲା କେତେ ଦିବସ ବର୍ଷ କନ୍ୟାରେ ଗତ । ୪୬ ।

ଏଥୁଅନ୍ତେ ହେଲା ସୁକାଳ କାଳବରୁଁ ତରୁଣୀ
ଲଭି ସୁକୁମାରୀ କୁମାରୀ ଧରି ଅଳକା ମଣି । ୪୭ ।

ନରପତି କଲେ ଉତ୍ସବ ନନ୍ଦନନ୍ଦନ ଯାଚି
ରୂପେ ଜିଣିବାରୁ ସେ ଇନ୍ଦୁ ଇନ୍ଦୁରେଖା ବୋଲାଇ । ୪୮ ।

ବରୁଣ ଭବନ ବନଜ-ମୁଖୀ କି ସେ କୁମାରୀ
ବଢ଼େ ଶିଶୁ କାଳେ କରି ସେ ରଙ୍ଗ ରଙ୍ଗଅଧରୀ । ୪୯ ।

ଖେଳା କଉତୁକ ଅଶେଷ ଶେଷ କହି ନୁହଇ
କୁମୁଦ-ନନ୍ଦନୀ ନନ୍ଦନୀ ଭାବେ କି ଅବା ସେହି । ୫୦ ।

ସୁଷମା ହେଉଛି, ଅଗତ ଗତ କାଳକୁ ଜାଣି
ପୂର୍ଣ୍ଣଇନ୍ଦୁ ଇନ୍ଦୁରେଖାର ପାଶେ ରେଖାଏ ଗଣି । ୫୧ ।

ଯହିଁ ସୁତା ସ୍ନେହ ଅଧିକ ଧିକ ବର୍ଣ୍ଣିବା ଅନ୍ୟ
ରାଧା ଭାବ ଭାବ ଗୋଲୋକ କଲା ଛନ୍ଦ ସମ୍ପୂର୍ଣ୍ଣ । ୫୨ ।

---

୪୦ । ବର୍ଣ୍ଣିକା—ସ୍ୱର୍ଣ୍ଣବର୍ଣ୍ଣା ସ୍ତ୍ରୀ । ଅମ୍ବରେ—ଆକାଶରେ । ଅମ୍ବରେ—ବସ୍ତ୍ରରେ । ୪୧ । ନୀହାର—ତୁଷାର । ୪୪ । ମରୁତ—ପବନ । ରୁତ—ଶବ୍ଦ । ୪୫ । ସୁକରଜ୍ଞା—ଉତ୍ତମ ନଖବିଶିଷ୍ଟ । ୪୬ । ଗିରିସୁତାବର—ଶିବ । ୪୭ । କାଳବରୁଁ—ଶିବଙ୍କ ବରରୁ । ଅଳକା—କୁବେରପୁର । ୫୦ । କୁମୁଦ-ନନ୍ଦନୀ—ଶ୍ରୀରାଧା ।

# ତୃତୀୟ ଛାନ୍ଦ

ରାଗ—ଘଣ୍ଟାରବ

କୁମାର ଚରିତ ଛାନ୍ଦ, କରିବ ଜାତ ଏ ମୋଦ
କୋବିଦେ ବିଧିରେ କର ପାନ ଧୀରେ, କି ଅବା ଆନନ୍ଦକନ୍ଦ । ୧ ।
ଅଙ୍ଗଦେଶ କି ଅଙ୍ଗନା, ଅଙ୍ଗ ଲାବଣ୍ୟ ଶୋଭନା
ଅଭିରୁଚି ସଦା ଅତୁଳ ପ୍ରମଦା, ଅବତଂସ କର୍ଣ୍ଣ ଯେନା । ୨ ।
ତଟିନୀ ମେଖଳା ବନ୍ଧି, ତନୁ ତା ଶୋଭା ଦିଶଇ
ତୁଙ୍ଗ ନଗକୁଚ ତାଳକାନ୍ତି ସ୍ମିତ ତମାଳକେଶ ମୋହଇ । ୩ ।
ବଡ଼ ବଡ଼ଭୀ ଶୋଭିତା; ବରଷ ଶୋଭୀ ବନିତା,
ବଂଶରେ ଦୀପିତା ବିଦ୍ରୁମେ ବିଜିତା, ବସନ୍ତକି ନାଗରତା । ୪ ।
ଅମରାବତୀର ଶିରୀ, ଅପସରୀ ଯିବ ହାରି
ଅତୁଳ ମାଧୁରୀ ଅଙ୍ଗରାଜ-ପୁରୀ, ଅଳକାଙ୍କ ବିଧୁ ସରି । ୫ ।
ଚନ୍ଦ୍ରଚୂଡ଼ ନୃପ ତହିଁ, ଚଞ୍ଚରୀକ ମଦ ବହି,
ଚରନ୍ତି ବିନୋଦେ ଚଳାପାଙ୍ଗୀ ମୋଦେ, ଗୃହସରୋଜିନୀ ସ୍ନେହୀ । ୬ ।
ରତିମୋହିନୀ ମହିଷୀ, ରୁଦ୍ରାଣୀ ଶୋଭା ବିଭାସି,
ରସେ ପ୍ରେମେ ଗୌରୀ, ରମ୍ୟ ହେମପୁରୀ, ରୁଦ୍ରପତି ଭାବେ ବସି । ୭ ।
କାନ୍ତାକାନ୍ତ ପ୍ରୀତି ଘନ, କୁମାର ଜନ୍ମିବ ଯେନ,
କୁଣ୍ଡିକା ସମାନ କରେ ଋତୁମାନ, କଲେ ବିଶେଷେ ପାଳନ । ୮ ।
ବାତ୍ସଲ୍ୟ ନବକୁମାର, ବଢ଼େ ଶୀତ ସୁଧାକର,
ବିଜିତଭଲ୍ଲ କାମ ବିହିଲେ ତା ନାମ, ବିନୋଦେ ଶିଖଣ୍ଡିଚୂଳ । ୯ ।
ମଧୁ ବାଲ୍ୟଖେଳା ପରେ, ମାତି ସେ ଶସ୍ତ୍ର ଶାସ୍ତ୍ରରେ,
ମନ୍ତ୍ରି ଶାସ୍ତ୍ରଅବଧି ମାନସକୁ ବୋଧି ମହାଦର୍ପୀ ଦର୍ପ ହରେ । ୧୦ ।
କାର୍ତ୍ତିବୀର୍ଯ୍ୟ ବଳ ବୀର, କରିପଣେ ବିଘ୍ନେଶ୍ୱର,
କେଳତି ରୂପକୁ କରିବେ ଜପକୁ କାମେ ଚିନ୍ତି ନିରନ୍ତର । ୧୧ ।
ଧନୁର୍ବିଦ୍ୟାରେ ଗାଣ୍ଡିବୀ, ଧର୍ମେ ଯୁଧିଷ୍ଠିର ଭାବି,
ଧର୍ଷଣ ନୀତରେ ଧରେ ନ୍ୟାୟ କରେ ଧୀରମତି ଧ୍ରୁବ ଛବି । ୧୨ ।
ଦୟାଶୀଳ ଶାନ୍ତଶୀଳ, ଦର୍ପହାରୀ ଅରି-ବ୍ୟାଳ,
ଦରଦ ଦୁର୍ଜନ ଦୟାରେ ପାବନ, ଦୁଷ୍କୃତ ବିଗତ ମନ । ୧୩ ।

---

୧ । କୁମାର—କାର୍ତ୍ତିକ; ରାଜପୁତ୍ର । ୨ । ଅବତଂସ—ଭୂଷଣବିଶେଷ । କର୍ଣ୍ଣ—କାନ; ଦାତାକର୍ଣ୍ଣ । ୪ । ବଡ଼ଭୀ—କୋଠା; ବିଶେଷ ଭିତ୍ତି । ବନିତା—ସ୍ତ୍ରୀ; ଅରଣ୍ୟ । ୬ । ଚନ୍ଦ୍ରଚୂଡ଼—ଶିବ; ଅଙ୍ଗନୃପତି । ଚଞ୍ଚରୀକ—ଭ୍ରମର । ୭ । ଗୌରୀ—ପାର୍ବତୀ; ଗୌରବର୍ଣ୍ଣା ସ୍ତ୍ରୀ । ହେମପୁରୀ—ହିମାଳୟ; ସୁବର୍ଣ୍ଣପୁର । ୧୧ । କେଳତି — କାମପତ୍ନୀ ରତି । ୧୨ । ଗାଣ୍ଡିବୀ— ଅର୍ଜ୍ଜୁନ । ୧୩ । ବ୍ୟାଳ—ସର୍ପ ।

ପୁରୋଧା-ସୁତ ସାମନ୍ତ, ପୁଣ୍ଡ ଆଦି ଗୁରୁ ମିତ୍ର,
ପାଶେ ନିରନ୍ତର ପାଳି ସୁତ-ଚିର, ପ୍ରମୋଦେ ଥାଆନ୍ତି ରତ । ୧୪ ।
ଜୀବନେ ଚନ୍ଦ୍ରମା-କଳଶି, ଯୌବନ ଧୀରେ ପ୍ରବେଶି,
ଜନ୍ମାଇ ମାଧୁରୀ ଜଗନ୍ମନ ହରି, କୁଆରଲି ରସ ବେଶି । ୧୫ ।
କୁମୁଦ ରସେ ପ୍ରକଟ, କଲା ବିଯୋଗୀ ଉଚ୍ଚାଟ,
କଞ୍ଜନ ଜାଗିଲା କାମିନୀନେତ୍ରେ କଲା କଳାକର-ମୁଖୀ ସ୍ଫୁଟ । ୧୬ ।
ବସନ୍ତ ଆଗତେ ଯେହ୍ନେ, ବନେ ଖେଳନ୍ତି ସୁମନେ,
ବାଲ୍ୟଭାବ ଯେତେ ବୟସ ଆଗତେ ବହିଲା ବିଧିବିଧାନେ । ୧୭ ।
କୁମାର ଯୁବକ ଯେଣୁ, କୁମାରୀ ପ୍ରସଙ୍ଗେ ତେଣୁ,
କାବ୍ୟ ନାଟକରେ କଉତୁକଭରେ କଲା ଆଦର ଦଉନ୍ତୁ । ୧୮ ।
ରୂପବତୀ ବାଳାଛବି, ରସେ ସୁତ ହୋଇ ଲୋଭୀ,
ରମଣୀ ସୁଲଭ ରସ ଗର୍ଭଭାବ ଚିତ୍ର ଦାନ ସାରେ ଭାବି । ୧୯ ।
ବାମା-ଦରଶନ ଶତ, ବୈଦ୍ୟୁତିକ ଶକ୍ତିବତ,
ବେର ଉଲ୍ଲାସଇ ବିରହ ଅଣାଇ, ବଳେ କରେ ଉତ୍କଣ୍ଠିତ । ୨୦ ।
ଯୁବା ନେତ୍ରର ଉତ୍ସବ, ଯୁବତୀ-ଦର୍ଶନ ଲଭ,
ଜାମ୍ବୁନଦ-ତୋଷ ଯାବକ ପୟୁଷ, ଜାଣେ ତେଣୁ ସୁତ ଭାବ । ୨୧ ।
ରାଜୀବନେତ୍ରୀ ସୁମନା, ରାଜ କରିବା କାମନା,
ରାଜିଲ ମାନସେ ରାଜ୍ୟରେ ବିଶେଷ ରସେ ଯଥା ଗୋପାଙ୍ଗନା । ୨୨ ।
ଜ୍ୟୋତିଷେ ଖନାବଚନ, ଯଥା ପରଦୃଶ୍ୟମାନ,
ଜାତ କଳ୍ପନାରେ ଜଉଘୃଷା ଶିକ୍ଷାରେ, ଜେମା ବହୁଗୁଣ ଘେନ । ୨୩ ।
ରାଧା ପରି ଭାଗବତେ, ରାଜେ ନାହିଁ କଦାଚିତେ,
ରାକା-ଇନ୍ଦୁରେଖା ରାଜବତୀ ଲେଖା ରସାବଳି ନଭ-ଚିତ୍ରେ । ୨୪ ।
ସନ୍ଦେହୀର ଅକାରଣ, ସବୁ ନୋହେ କି କାରଣ ?
ସରସ ବନିତା ସ୍ନେହେ ମଣିରତା, ସମ୍ଭ୍ରମେ କାଟଇ ଦିନ । ୨୫ ।
ଚିତ୍ରାକନ୍ୟା ବିହାରରେ, ସ୍ୱଚ୍ଛେ ହସ୍ତାବଳି ଶିରେ,
ରହିଲେ ବିମୁଖ ଚନ୍ଦ୍ରଶୋଭା ମୁଖ ଚପଳତା ହୃଦେ ଧରେ । ୨୬ ।
ଚରିତ ସ୍ୱ ଯାହାଠାରେ, ଚଞ୍ଚଳ ଦମନ କରେ,
ଚପଳ ସ୍ୱଭାବ, ଚନ୍ଦ୍ରାନନୀ ଭାବ, ଚିର ଧରମେ ବାଧିରେ । ୨୭ ।
ସ୍ୱଭାବ-ସୁଲଭ ଯେଣୁ, ଶରୀରେ ବାହାର ତେଣୁ,
ସେ ଭାବ ଅଲକ୍ଷେ ସ୍ଥିତ ଥାଇଁ ବକ୍ଷେ ସମୟେ ବିଦାହେ ସ୍ଫୁର୍ତ୍ତି । ୨୮ ।

---

୧୫ । ରସ—ନୀର; ଅଧରରସ ବା ଅମୃତ । ୧୬ । କୁମୁଦ—କଇଁଫୁଲ; ନୟନନନ୍ଦ । ବିଯୋଗୀ—ବିଶେଷ ଯୋଗୀ; ବିରହୀ । କଳାକରମୁଖୀ—ଚନ୍ଦ୍ରବଦନୀ; ଚନ୍ଦ୍ରମୁଖୀଫୁଲ । କଞ୍ଜନ—କାମ । ୨୦ । ବେର—ଦେହ । ୨୧ । ଜାମ୍ବୁନଦ—ସ୍ୱର୍ଣ୍ଣ । ୨୨ । ରାଜୀବ—ପଦ୍ମ । ୨୪ । ରାକା—ପୂର୍ଣ୍ଣିମା । ୨୬ । ଚିତ୍ରାକନ୍ୟା—ଦୁଇ ନକ୍ଷତ୍ର; ସୁନ୍ଦରୀ ବା ସୁରମାନ୍ୱିତା କନ୍ୟା ।

ବାହ୍ୟ ଶୀଳ ଗୁଣ ବନ୍ଧ, ବ୍ୟାଜରେ ଭାବ ଲଗାଇ
ବିହରେ ସୁରଙ୍ଗେ ବୟସ୍ୟଙ୍କ ସଙ୍ଗେ ବିନୋଦେ କାଳ ହରଇ । ୨୯ ।
ବାମା ଚନ୍ଦ୍ରା ଜୀବ ଶାପ, ବହେ କ୍ଷୀଣ ବିଧୁ ରୂପ
ବାମଦେବ ଅଂଶ ବଶେ ଶିବ ଘୋଷି ବିଧିରେ ବାମା ଲୋଲୁପ । ୩୦ ।
ଲଗାଇ ଦେଲେ ଅନଳ, ଲଗିବ କି ବାସଚଳ
ଲଗିଲା ତ ନାହିଁ ଲଳିତ ଭାବହିଁ ଲବେ ଜାଣିଲେ ସକଳ । ୩୧ ।
ସଖୀ ଜାଣିଲେ ସହସା, ଶଶୀ ଉଦେ ଯେହ୍ନେ ନିଶା
ସଖୀଙ୍କ ସୁହାସୀ ଯୁବତୀ ପ୍ରେୟସୀ ସର୍ବେ କୁମୁଦ ସଦୃଶା । ୩୨ ।
ଜ୍ୟୋତ୍ସ୍ନା ପରି ଜଗତରେ, ଯାମିନୀ କଳେବରରେ
ଜଡ଼ି ବିକଶିଲା ଜଗତ ଜାଣିଲା ଜାୟାବାଞ୍ଛା ସୁତ ତରେ । ୩୩ ।
କୁମର ଚିହ୍ନ ଉଦ୍‌ଯୋଗ, କଲେ ଜନକ ସବେଗ,
କହେ ଶ୍ରୀ ଗୋଲୋକ ବିବାହ-ରଚକ କରମ ଫଳନ୍ତି ଭୋଗ । ୩୪ ।

## ଚତୁର୍ଥ ଛାନ୍ଦ

ରାଗ—ବରାଡ଼ି, ଅଷାଢ଼ଶୁକ୍ଳ ବାଣୀ

ସୁଷମାମାନଙ୍କୁ ଘେନି ରଭସ କୁସୁମ ସମୟ ହେଲା ପ୍ରବେଶ
ପିକ ବାଣୀ କଲା କେଡ଼େ ମଧୁର କାମିନୀର ହେଲା କାମବିକାର
ଋତୁ ବିରାଜିତ,
ମନ୍ଦାର ରଙ୍ଗ ବାସରେ ବିଦିତ । ୧ ।

---

୩୦ । ଜୀବ—ବୃହସ୍ପତି । ବାମଦେବ—ଶିବ ।

ଏ ଛାନ୍ଦର ପ୍ରଥମ ବାର ପଦ ଦୁଇ ଅର୍ଥରେ ବର୍ଣ୍ଣନା କରାଯାଇଅଛି । ପ୍ରଥମ ଅର୍ଥରେ ବସନ୍ତ ବର୍ଣ୍ଣନ ଓ ଦ୍ୱିତୀୟ ଅର୍ଥରେ ଇନ୍ଦୁରେଖାର ପ୍ରଥମ ଋତୁ ଦର୍ଶନ ବର୍ଣ୍ଣନ ।

୧ମ ପଦ । ବସନ୍ତ ଅର୍ଥରେ :—କୁସୁମ ସମୟ ( ବସନ୍ତ କାଳ ) ସୁଷମା ( ଶୋଭା ) ମାନଙ୍କୁ ଘେନି ( ଆଣି ) ରଭସ ( ଶୀଘ୍ର ) ପ୍ରବେଶ ହେଲା । ପିକ କେଡ଼େ ମଧୁର ବାଣୀ କଲା । କାମିନୀର କାମ ବିକାର ହେଲା । ( କାମିନୀ ଫୁଲ ଫୁଟିଲା ) । ଋତୁ ଆସିଥିବାରୁ ବାସରେ ( ଦିବସରେ ) ରଙ୍ଗ ମନ୍ଦାର ବିଦିତ ହେଲା । ଗନ୍ଧହୀନ ଥିବାରୁ ଦିବସରେ ପ୍ରକାଶ ପାଇଲା ଅଥବା ମନ୍ଦାର ଫୁଟିଲା ଓ ଏହାର ବାସ ନାହିଁ ବୋଲି ପ୍ରକାଶିତ ହେଲା ।

୧ମ ପଦ । ଋତୁ ଦର୍ଶନ ଅର୍ଥରେ :—ରଭସ ( ଶୀଘ୍ର ) ସୁଷମାମାନଙ୍କୁ ଘେନି ( ସଙ୍ଗରେ ଆଣି ) କୁସୁମ ସମୟ ( ପ୍ରଥମ ଋତୁକାଳ ) ପ୍ରବେଶ ହେଲା । କାମିନୀ ( ଅଙ୍ଗନା )ର କାମବିକାର ହେଲା ( କନ୍ଦର୍ପର ଅନୁଭୂତି ହେଲା ) । କେଡ଼େ ମଧୁର ପିକବାଣୀ କଲା । ( ତାହାର ବଚନ କୋକିଳବାଣୀ ପରି ବଡ଼ ମଧୁର ଶୁଣାଗଲା ) । ଋତୁ ବିରାଜିତ ହୋଇଥିବାରୁ ମନ୍ଦାର ରଙ୍ଗ ( ମନ୍ଦାରର ରଙ୍ଗ ପରି ରଙ୍ଗ ) ବାସରେ ( ବସନରେ ) ବିଦିତ ହେଲା ( ଦେଖାଗଲା ) ।

ଅମ୍ବର ତଳେ ବାସାଚ୍ଛାଦ ଘନେ ସୁମନାଭବନେ ଅତି ପ୍ରସନ୍ନେ
ରତିଗୃହଶୋଭି ବଳି ବିଧାନେ କୁରଙ୍ଗ କରି ଅତୁର ଉସ୍ତନ୍ନେ
ବିପିନ ସୁନ୍ଦର,
ରଙ୍ଗ ବାସ ବାହରେ ନିରନ୍ତର । ୨ ।

ପଦ୍ମିନୀ ଦିଶିଲା ସୁକାନ୍ତିମୟୀ ଆସବରେ କରି ହୋଇଲା ସ୍ନେହୀ
ବସନ୍ତବାସରେ କୁରଙ୍ଗଦୃଷ୍ଟି— ଠାଣି କଲା ସର୍ବ ସୁଷମା ପୁଷ୍ଟି
ଚୁମ୍ବିଅନା ରହି,
ରସିକଙ୍କ ହୃଦେ ଚୁମ୍ବି ମାରଇ । ୩ ।

---

୨ୟ ପଦ । ୧ମ ଅର୍ଥରେ :—ସୁମନାଭବନେ ( ପୁଷ୍ପୋଦ୍ୟାନମାନେ ) ଅମ୍ବର ତଳେ ଘନେ ବାସ ଅଚ୍ଛାଦ ( ଆକାଶରେ ବା ବାୟୁରେ ସୁବାସ ଭରି ) ଅତି ପ୍ରସନ୍ନେ ( ପ୍ରସନ୍ନ ହୋଇ ରହିଲେ ) । ବିଧାନେ ରତିର ଗୃହର ଶୋଭି ( ସୁଷମା )କୁ ବଳିଲେ । କୁରଙ୍ଗ କରି ( ହରିଣ ଓ ହସ୍ତୀଆଦି ) ଅତୁର ହୋଇ ଉତ୍ସନ୍ନ ହେଲେ ଅର୍ଥାତ୍ ସେମାନେ ବସନ୍ତରେ ମୁଗ୍ଧ ହେଲେ, ବିପିନ ( ଅରଣ୍ୟ ) ସୁନ୍ଦର ରଙ୍ଗ ( ମନୋହର ବର୍ଣ୍ଣ ) ଓ ବାସକୁ ନିରନ୍ତର ( ସର୍ବଦା ) ବାହରେ ( ପ୍ରକାଶ କଲା ) ।

୨ୟ ପଦ । ୨ୟ ଅର୍ଥରେ :—ସୁମନା ( କାମିନୀ ) ଅମ୍ବରତଳେ ଘନେ ବାସ ଅଚ୍ଛାଦ ( ଲୁଗା ତଳେ ମୋଟା କରି ଲୁଗା ପିନ୍ଧି ) ଭବନେ ( ଗୃହରେ ) ଅତି ପ୍ରସନ୍ନେ ( ପ୍ରସନ୍ନ ହୋଇ ରହିଲା ) । ରତିଗୃହ ( କାମମନ୍ଦିର ) ବିଧାନେ ( ବିଧିରେ ) ଶୋଭିବଳି ( ଶୋଭାକୁ ବଳିଅଛି । ଅତୁର ଉସ୍ତନ୍ନେ ( ଅତୁରେ ଉଚ୍ଛନ୍ନ ହୋଇ ) କୁରଙ୍ଗ କରି ( ଭିନ୍ନ ଭଙ୍ଗୀ କରି ) ବିପୀନ ( ବିଶେଷ ମୋଟା ) ସୁନ୍ଦର ରଙ୍ଗ ( ଅତି ଭଲ ରଙ୍ଗ ଲାଗିଥିବା ) ବାସ ( ବସନକୁ ) ନିରନ୍ତରେ ବାହରେ ( ବାରମ୍ବାର ବାହାର କଲା ) ।

୩ୟ ପଦ । ୧ମ ଅର୍ଥରେ :—ପଦ୍ମିନୀ ସୁକାନ୍ତିମୟୀ ଦିଶିଲା ( ବସନ୍ତ ଯୋଗୁଁ ପଦ୍ମବନ ସବୁ ମନୋହର ଦେଖାଗଲେ ) । କରି ( ହାତିସବୁ ) ଆସବରେ ( ଫୁଲପେଣ୍ଡାମାନଙ୍କରେ ) ସ୍ନେହୀ ହୋଇଲେ ( ଆସକ୍ତ ହେଲେ ) । ବସନ୍ତ ବାସରେ କୁରଙ୍ଗ ଦୃଷ୍ଟିଠାଣି ସର୍ବ ସୁଷମା ପୁଷ୍ଟି କଲା ( ବସନ୍ତ ଆମୋଦରେ ହରିଣମାନଙ୍କର ଅନୁରାଗବ୍ୟଞ୍ଜକ ନୟନର ଛଟା ସମସ୍ତ ଶୋଭାର ଉତ୍କର୍ଷ ସାଧନ କଲା ) । ଚୁମ୍ବିଅନା ରହି ରସିକଙ୍କ ହୃଦେ ଚୁମ୍ବି ମାରଇ ( ଏ ସମୟରେ ଚୁମ୍ବିଅନା ବିକସିତ ନ ହୋଇଥିବାରୁ ରସିକମାନଙ୍କ ହୃଦରେ ଚୁମ୍ବି ବିଦ୍ଧ ହେଲା ପରି ସେମାନେ ଅନୁମାନ କଲେ ) ।

୩ୟ ପଦ । ୨ୟ ଅର୍ଥରେ :—ପଦ୍ମିନୀ ( ଇନ୍ଦୁରେଖା ) ସୁକାନ୍ତିମୟୀ ଦିଶିଲା ( ଅତ୍ୟନ୍ତ ସୁନ୍ଦର ଦେଖାଗଲା ) । ବରେ ଆଶ କରି ସ୍ନେହୀ ହେଲା ( ବରଲାଭ କରିବା କାମନାରେ ସ୍ନେହ କଲା ) । ବସନ୍ତବାସରେ ( ହଳଦିଆ ଲୁଗା ବା ବସନ୍ତ ଶାଢ଼ୀ ପିନ୍ଧି ) କୁରଙ୍ଗଦୃଷ୍ଟି ( ହରିଣ-ନୟନା ଇନ୍ଦୁରେଖାର ଦୃଷ୍ଟି ) ଠାଣି ( ଛଟା ) ସର୍ବ ସୁଷମା ପୁଷ୍ଟି କଲା ( ତାହାର ସମସ୍ତ ଶୋଭାକୁ ବଢ଼ାଇଲା ) । ତାହାର ଅନା (ଗୃହାଣୀ)ରେ ଚୁମ୍ବି ରହି ରସିକଙ୍କ ହୃଦକୁ ଚୁମ୍ବି ମାରିଲା ପରି ଜଣାଗଲା ।

ତୁଙ୍ଗ ପୟୋଧର ସଙ୍ଗୀ ଦୁକୂଳ ଲାଜ ଅମ୍ବରର ହେଲା ଆଦର
କୁସୁମବତୀ ତ ସଖୀ ସହଜେ ଅଶୋକ କଳି ବିକସି ବସିଲେ
ଅଳି ଗୁଣୁ ଗୁଣୁ,
ଅନୁକୂଳ କଲା କହୁ ଅତନୁ । ୪ ।
ନଆଳି କେତକୀ ମଲ୍ଲୀ ସଦଳେ ବାସ ବଦନେ ଆଚ୍ଛାଦ ହସିଲେ
ପ୍ରଜାପତି ସଙ୍ଗେ ଅହା କି ରଙ୍ଗ । ଭ୍ରମେ ଆନନ୍ଦେ କେ ବହୁ ସୁରଙ୍ଗ
ମୁଣ୍ଡ କେ ହଲାଇ,
କୁମୁଦନୀ ଗୃହୁଁ ଧୀରେ ନାଚଇ । ୫ ।
କାମିନୀ କହେ କେ ସଖୀକି ହସି ମରେ ଯା କରରେ କୁଟିଳକେଶୀ
ଜାଣ ମା-ର ପୂଜା ହେବ ଚଞ୍ଚଳେ ଲାଗିଲାଣି ନବରଙ୍ଗ ଅଞ୍ଚଳେ
ଫୁଟି ଫୁଲ ସରେ,
ଧରାମଣ୍ଡନା ଫଗୁଖେଳାଶାରେ । ୬ ।

---

୪ର୍ଥ ପଦ । ୧ମ ଅର୍ଥରେ :—ତୁଙ୍ଗ ପୟୋଧର (ପର୍ବତ) ସଙ୍ଗୀ ଦୁକୂଳ (ଲୁଗା) ଲାଜ (ଖଇ) ଓ ଅମ୍ବରର ଆଦର ହେଲା (ଏଠାରେ ଦୋଳ ମହୋତ୍ସବକୁ ଲକ୍ଷ୍ୟ କରାଯାଇଅଛି) । ସଖୀ ସହଜେ କୁସୁମବତୀ ହୋଇଅଛନ୍ତି (ସଖୀ ଫୁଲସବୁ ଫୁଟି ଅଛନ୍ତି) ଅଶୋକ କଳି ବିକସି ବସିଲେ (ଅଶୋକ କଢ଼ ସବୁ ପ୍ରସ୍ଫୁଟିତ ହୋଇଅଛନ୍ତି) । ଅତନୁ (କନ୍ଦର୍ପ) ଅନୁକୂଳ କଲା କହୁ ଅଳି (ଭ୍ରମର) ଗୁଣୁ ଗୁଣୁ କଲେ ।

୪ର୍ଥ ପଦ । ୨ୟ ଅର୍ଥରେ:—ତୁଙ୍ଗପୟୋଧର ସଙ୍ଗୀ ଦୁକୂଳ (ପୃଥୁଳ ସ୍ତନ ଘୋଡ଼ାଇଥିବା ଲୁଗା) ଓ ଲାଜ (ଲଜ୍ଜା) ଅମ୍ବାରର (ଅବଳାର) ଆଦର ହେଲା । ସହଜେ ସଖୀ ଇନ୍ଦୁରେଖା କୁସୁମବତୀ ହୋଇଅଛି । ଅଶୋକକଳୀ (କନୈକା ସଖୀ ) ବିକସି ବସିଲେ (ଆନନ୍ଦିତ ହୋଇ ଶୋଭା ପାଉଅଛି ) । ଅତନୁ (କାମ) ଅନୁକୂଳ କଲା କହୁ ଗୁଣୁ ଗୁଣୁ ଅଳି କରୁଅଛି ।

୫ମ ପଦ । ୧ମ ଅର୍ଥରେ :— ବସନ୍ତ ସମୟ ହୋଇଥିବାରୁ ସଦଳେ ନଆଳି, କେତକୀ, ମଲ୍ଲୀ ବାସ ବଦନେ ଆଚ୍ଛାଦ ହସିଲେ (ଏହି ସବୁ ପୁଷ୍ପ ଫୁଟି ବାସିଲେ) । ପ୍ରଜାପତି ଅହା କି ରଙ୍ଗ ସଙ୍ଗେ (ଅହା ପ୍ରଜାପତି କି ପ୍ରକାର କ୍ରୀଡ଼ା କରୁଅଛି) । କେ ସୁରଙ୍ଗ ବହୁ ଆନନ୍ଦେ ଭ୍ରମେ (କେଉଁ ଫୁଲ ମନୋହର କାନ୍ତି ଧାରଣ କରି ଚହଟୁଅଛି) ମୁଣ୍ଡ କେ ହଲାଇ (କିଏ ବା ମୁଣ୍ଡ ହଲାଉଅଛି) । କୁମୁଦନୀ ଗୃହୁଁ ଧୀରେ ନାଚଇ (କଇଁଫୁଲ ଫୁଟି ଧୀରେ ଧୀରେ ଖେଳୁଅଛି) ।

୫ମ ପଦ । ୨ୟ ଅର୍ଥରେ:—ନଆଳି, କେତକୀ, ମଲ୍ଲି (ସଙ୍ଗିନୀଗଣ ସଦଳେ ଏକତ୍ରିତ ହୋଇ) ବଦନେ ବାସ ଆଚ୍ଛାଦ ହସିଲେ (ମୁହଁରେ ଲୁଗା ଦେଇ ହସିଲେ) । କେ ସୁରଙ୍ଗ ବହୁ ଭ୍ରମେ ( କେଉଁ ସଖୀ କୌତୁକ ବହୁ ହସିଲା) । ପ୍ରଜାପତି ଅହା କି ରଙ୍ଗ ସଙ୍ଗେ (ବିଧାତା କି ଖେଳ ନ କରୁଛି) । କେ (ସଖୀ) କୁମୁଦନୀ (ଦୁଃଖିତା ଇନ୍ଦୁରେଖା)କୁ ଗୃହୁଁ (ଅନାଇ) ମୁଣ୍ଡ ହଲାଇ ଧୀରେ ନାଚଇ (ନାଚୁଛି) ।

୬ଷ୍ଠ ପଦ । ୧ମ ଅର୍ଥରେ:—କେ କାମିନୀ ସଖିକି ହସି କହେ (କହିଲା) ଯା କରେ କୁଟିଳକେଶୀ ମରେ (ଯା ହାତରେ କେଶୀ ନାମକ ଦୈତ୍ୟ ମରିଅଛି, ଶ୍ରୀକୃଷ୍ଣ ) ଓ ମା (ଲକ୍ଷ୍ମୀ ଅର୍ଥାତ୍ ରାଧା)ର ପୂଜା ଚଞ୍ଚଳ ହେବ ଜାଣ । ନବରଙ୍ଗ ଅଞ୍ଚଳେ (ଦେଶମାନଙ୍କରେ) ଲାଗିଲାଣି । ସରେ ଫୁଲ ଫୁଟି (ପୋଖରୀମାନଙ୍କରେ ଫୁଲ ଫୁଟିଲେଣି) । ଫଗୁଖେଳ ଆଶାରେ ଧରା ମଣ୍ଡନା ହେଉଅଛି ।

ସ୍ନାତଶୋଭା ବହି ଧରା ମୋହିଲା      କଳା ଭ୍ରମର କେଶରେ ଶୋହିଲା
ବନ୍ଧୁଲି ଶିରୀଷ ଅବ୍ଜାଦି କରି      ଯେ ଯହିଁ ଶୋଭିଲେ ସୁଷମା ଧରି
ମକରକେତନ,
ତହିଁ ମଧ୍ୟୁ, କଲା ଶର ସୁମନ । ୭ ।

ତରଣୀ କରଭ ସିଂହ ଅବର      ଶୁକ ପିକ ଚଞ୍ଚରୀକ ନିକର
ଯେଝା ସ୍ଥାନ ଧରି ମୋହିଲେ ଧରା      ସ୍ୱଭାବରେ ହୋଇ ଶୋକପାସୋରା
ଉତ୍ସନ୍ନ ରତିକି,
ଅଶେଷ ପ୍ରକାରେ ଆଣି କତକି । ୮ ।

---

୬ଷ୍ଠ ପଦ । ୨ୟ ଅର୍ଥରେ :—ହେ କାମିନୀ ସଖୀକି ହସି କହିଲା, ରେ କୁଟିଳକେଶି (କୁଞ୍ଚିତକେଶି) ! ଯା କର (ଯାହା କରୁଛ ବା ଯାହା କହୁଛ) ମରେ (ମୁଁ ମରିଯାଏ କନା) । ମାର (କନ୍ଦର୍ପ) ପୁଣ୍ଡା ଚଞ୍ଚଳ ହେବ । ଅଞ୍ଚଳେ (ବସନରେ) ନବ ରଙ୍ଗ (ଲାଲ ରଙ୍ଗ) ଲାଗିଲାଣି । ଧରାମଣ୍ଡନା (ଇନ୍ଦୁରେଖା) ଫୁଲଶରେ ଫୁଟି (କନ୍ଦର୍ପଶରବିଦ୍ଧ ହୋଇ) ଫଗୁଖେଳା ସାରୁଛ (ବ୍ୟଙ୍ଗୋକ୍ତି) ।

୭ମ ପଦ । ୧ମ ଅର୍ଥରେ:—ଧରା ସ୍ନାତଶୋଭା ବହି ମୋହିଲା (ପୃଥିବୀ ଉଜ୍ଜ୍ୱଳ ଶୋଭା ଧାରଣ କରି ସମସ୍ତଙ୍କୁ ମୋହିତ କଲା) । କଳା ଭ୍ରମର (ଭଅଁର) କେଶରେ ଶୋଭିଲା (ପୁଷ୍ପପରାଗ ରେଣୁଯୁକ୍ତ ହୋଇ ଶୋଭା ପାଇଲା ) ବନ୍ଧୁଲି, ଶିରୀଷ, ଅବ୍ଜ (ପଦ୍ମ) ଆଦି ଫୁଲସବୁ ଯେ ଯହିଁ ସୁଷମା ଧରି ଶୋଭିଲେ (କାଏ ଜଳରେ ଓ କାଏ ସ୍ଥଳରେ ଶୋଭା ପାଇଲେ) । ମକର-କେତନ (କନ୍ଦର୍ପ) ତହିଁ ମଧ୍ୟରୁ ସୁମନ ଶର କଲା (ସେହି ଫୁଲମାନଙ୍କରୁ ପାଞ୍ଚଟି ଉତ୍କୃଷ୍ଟ ଫୁଲ ଆଣି ନିଜର ଶର କଲା); ଅର୍ଥାତ୍ ଅଧିକାଂଶ ଏ ସମୟରେ କାମପୀଡ଼ିତ ହୁଅନ୍ତି ।

୭ମ ପଦ । ୨ୟ ଅର୍ଥରେ :—ସ୍ନାତଶୋଭା ବହି ( ଗାଧୋଇଥିବା ଶୋଭାକୁ ଧାରଣ କରି ଅର୍ଥାତ୍ ଋତୁସ୍ନାନ ସାରି ) ଧରା ମୋହିଲା ( ସମସ୍ତଙ୍କୁ ମୁଗ୍ଧ କଲା ) । କଳା ଭ୍ରମର କେଶରେ ( କଳା ଭ୍ରମରମାନଙ୍କ ପରି ଦେଖା ଯାଉଥିବା ଉନ୍ମୁକ୍ତ କେଶଦ୍ୱାରା ) ଶୋଭିଲା ( ଶୋଭା ପାଇଲା ) । ବନ୍ଧୁଲିଅଧର, ଶିରୀଷ ( ଦେହ ଶିରୀଷ ), ଅବ୍ଜ ( ପଦ୍ମମୁଖ ) ଆଦି ସୁଷମା ଧରି ( ଶୋଭାଯୁକ୍ତ ହୋଇ ) ଯେ ଯହିଁ ( ଯେଝା ଯେଝା ସ୍ଥାନରେ ) ଶୋଭା ପାଇଲେ । ଅର୍ଥାତ୍ ସ୍ନାନ ସାରି ବସ୍ତ୍ର ଭିଡ଼ି ଯାଇଥିବାରୁ ଓ କେଶରେ ବସ୍ତ୍ର ନ ଥିବାରୁ ଏ ସବୁ ଉଜ୍ଜ୍ୱଳ-ଭାବରେ ପ୍ରକାଶିତ ହୋଇ ମନକୁ ହରଣ କଲା ।

୮ମ ପଦ । ୧ମ ଅର୍ଥରେ :—ତରଣୀ, କରଭ, ସିଂହ ଅବର ( ଅନ୍ୟର ) ଶୁକ, ପିକ, ଚଞ୍ଚରୀକନିକର ( ଭ୍ରମରସମୂହ ) ସ୍ୱଭାବରେ ଶୋକପାସୋରା ହୋଇ ଯେଝା ସ୍ଥାନ ଧରି ଧରା ମୋହିଲେ ଓ ଉତ୍ସନ୍ନ ରତିକି ଅଶେଷ ପ୍ରକାର କତକି ଆଣିଲେ ( ସେମାନଙ୍କ ପ୍ରତି ସମସ୍ତଙ୍କର ଆସକ୍ତି ଜନ୍ମାଇଲେ ) । ଅଶେଷ ପ୍ରକାରେ ( ଶେଷ ନ ହେବା ପ୍ରକାରେ ଇତ୍ୟର୍ଥ ) । ଅଥବା ଏମାନଙ୍କୁ ଦେଖିବାରୁ ବସନ୍ତ ସମୟରେ ରତିର ଉଦ୍ରେକ ହେଲା ।

୮ମ ପଦ । ୨ୟ ଅର୍ଥରେ :—ତରଣୀ, କରଭ, ସିଂହ, ଅବର ଶୁକ, ପିକ, ଓ ଚଞ୍ଚରୀକନିକର ଯେଝା ସ୍ଥାନ ଧରି ( ଗମନ, ନୟନ, କଟି, ନାସା, କଣ୍ଠ ଓ ଚୋଳାମାନଙ୍କରେ ) ରହି ସ୍ୱଭାବରେ ଶୋକପାସୋରା ହୋଇ ( ଯାହାକୁ ସବୁ ଦେଖିଲେ ପ୍ରକୃତରେ ଶୋକ ପାସୋର ଯାଉଥିଲା ) ଧରାକୁ ମୋହିଲେ ( ସମସ୍ତ ମୁଗ୍ଧ କଲେ ) ଓ ଉତ୍ସନ୍ନ ରତିକି ଅଶେଷ ପ୍ରକାରେ ( ନାନା ପ୍ରକାରରେ ) କତକି ଆଣିଲେ; ଅର୍ଥାତ୍ ଯେ ଯେଉଁପରି ଲୋକ ତାର ମନକୁ ଅନୁରାଗ ବା ଆସକ୍ତି ସେହି ପରି ଆସିଲା ।

ଥୋପି ପଙ୍କଜ ଯେ ରଙ୍ଗେ ରଙ୍ଗିଣୀ ଦର୍ଶକ-ନୟନ-ମୁଦକାରଣୀ
ବନିତା ବାସେ ଦଣେ ପଶୁପାଟ୍ଟୀ ହଳଦବସନ୍ତ ଦେଉଛି ରଟି
ଭୃମ୍ବ ବିଶୋଭନ,
ମୋହିତ କଷ୍ମି ମନ୍ଥର ଗମନ । ୯ ।

ଦ୍ୱମାନେ ବଧାନ ଉତ୍ସବ ରଚ ନାଗରକେ କଲେ ସୁପୁଷ୍ପି ଲୁଚ
ଦ୍ୱିଜମାନଙ୍କର ଅନନ୍ଦକାଳ ହୁଳହୁଳି ଦେଲେ ଲଳନାକୁଳ
କରନ୍ତି କଳ୍ପନା,
ଦ୍ୱିଜକାମିନୀ ମଧୁ ବନ୍ଧାପନା । ୧୦ ।

---

୯ମ ପଦ । ୧ମ ଅର୍ଥରେ :—ଯେ ଦର୍ଶକନୟନ ମୁଦକାରଣୀ ( ଯେ ଦର୍ଶକଙ୍କ ନେତ୍ରକୁ ଆନନ୍ଦ ଦଏ ଏପରି ) ରଙ୍ଗିଣୀ ( ରଙ୍ଗିଣୀ ଫୁଲ ) ସେ ରଙ୍ଗେ ଥୋପି ପଙ୍କଜ ( ମନୋହର କାନ୍ତି ଧାରଣ କଲା ) । ବନିତାବାସେ ପଶୁପାଟ୍ଟୀ ଦଣେ ( ବସନ୍ତ ସବୁ ସୁବାସ ବିତରଣ କରି ମନୋହର ଦେଖାଗଲେ ) । ହଳଦବସନ୍ତ ରଟି ଦେଉଛି ( ହଳଦବସନ୍ତ ପକ୍ଷୀ ରବକଲା ) । ଭୃମ୍ବବିଶୋଭନ ମୋହିତ କଷ୍ମି ମନ୍ଥର ଗମନ କଲା ( ଭୃମ୍ବଶୋଭାଯୁକ୍ତ ବସନ୍ତମୁଗ୍ଧ କଷ୍ମିର ଗମନ ଧୀର ହେଲା ) ।

୯ମ ପଦ । ୨ୟ ଅର୍ଥରେ—ଯେ ଦର୍ଶକ (ଦେଖଣାହାରିଙ୍କ) ନୟନ ମୁଦକାରଣୀ (ନେତ୍ରକୁ ଆନନ୍ଦ ଦଏ) ରଙ୍ଗିଣୀ (ରଙ୍ଗପୂର୍ଣ୍ଣା ଇନ୍ଦୁରେଖା) ସେ ରଙ୍ଗେ ଥୋପି ପଙ୍କଜ (ଧାଡ଼ି ବାନ୍ଧି ଅତି ମନୋହର ଦେଖାଗଲା) । ଭୃମ୍ବ ବିଶୋଭନ (ଭୃମ୍ବ ପଡ଼ିଥିବା) ହଳଦବସନ୍ତ (ଶାଢ଼ୀ) ରଟି ଦେଉଛି (ପ୍ରକାଶ କରୁଛି) ଯେ ବନିତା (ଇନ୍ଦୁରେଖା) ବାସେ (ବସ୍ତ୍ରଦ୍ୱାରା) ପଶୁପାଟ୍ଟୀ ଦଣେ (ଅତିଶୟ ମନୋହର ଦେଖାଯାଉଅଛି ) ।

୧୦ ପଦ । ୧ମ ଅର୍ଥରେ:—ନାଗରକ (ନଗରବାସୀମାନେ) ଦ୍ୱମାନେ (ଦ୍ୱମାନରେ) ବଧାନ ଉତ୍ସବମାନଙ୍କୁ ରଚ (ରଚିଲେ) ସୁପୁଷ୍ପି ଲୁଚ କଲେ ( ଉତ୍ତମ ପୁଷ୍ପି ଲୁଚ କଲେ) । ଦ୍ୱିଜମାନଙ୍କର ଅନନ୍ଦକାଳ ( ଦ୍ୱିଜମାନଙ୍କର ଶୁଭ ବା ରୋଜଗାର ସମୟ ହେଲା ) ଅଥବା ବସନ୍ତକାଳ ପକ୍ଷିମାନଙ୍କର ଅନନ୍ଦ ସମୟ ହେଲା । ଲଳନାକୁଳ ହୁଳହୁଳି ଦେଲେ (କାମିନୀଗଣ ରାଧାକୃଷ୍ଣଙ୍କୁ ସମ୍ମାନ ଦେଖାଇ ହୁଳହୁଳି ନାଦ କଲେ ) । ଦ୍ୱିଜକାମିନୀ ମଧୁ ବନ୍ଧାପନାର କଳ୍ପନା କଲେ (ବ୍ରାହ୍ମଣ, କ୍ଷତ୍ରିୟ ଓ ବୈଶ୍ୟ ଘରର ସ୍ତ୍ରୀମାନେ ବସନ୍ତ କାଳୀନ ଉତ୍ସବ ବା ରାଧାକୃଷ୍ଣଙ୍କୁ ନିକଟରେ ଆରମ୍ଭ ଅଦ ସମ୍ବନ୍ଧୀୟ ନାନା ପ୍ରକାର ଗଳ୍ପ କଲେ) ।

୧୦ମ ପଦ । ୨ୟ ଅର୍ଥରେ:—କେ ନାଗରୀ ସୁପୁଷ୍ପି ଲୁଚ ଦ୍ୱମାନେ ବଧାନ ଉତ୍ସବକୁ ରଚିଲା (ଉତ୍ତମ ଘରେ ଲୁଚି କେ ଋତୁସମ୍ବନ୍ଧୀୟ ଉତ୍ସବମାନଙ୍କୁ କଲା) । ଲଳନାକୁଳ ହୁଳହୁଳି ଦେଲେ (ସ୍ତ୍ରୀମାନେ ସେଠାରେ ହୁଳହୁଳି ନାଦ କଲେ) । ଦ୍ୱିଜମାନଙ୍କର ଅନନ୍ଦକାଳ (ଏହି ଉପଲକ୍ଷରେ ନୃପଙ୍କଠାରୁ ଦାନ ପାଇ ବ୍ରାହ୍ମଣମାନେ ସୁଖୀ ହେଲେ) । ଦ୍ୱିଜ କାମିନୀ ମଧୁ ବନ୍ଧାପନାର କଳ୍ପନା କରନ୍ତି (ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ କାମିନୀମାନେ ଋତୁସମ୍ବନ୍ଧୀୟ ମନୋହର ବନ୍ଧାପନା ବିଷୟରେ ଗଳ୍ପ କଲେ) ।

ସଙ୍ଗ ସଙ୍ଗିମାକୁ ଦଅନ୍ତି ଲାଜ    କହି ଅବରେ ଖେଳା ଶେଷ ଆଜ
ପ୍ରମୋଦ କରନ୍ତି ନାନା ଆନନ୍ଦେ    କେ ଗାଉଛନ୍ତି ବସି ମଧୁର ଛନ୍ଦେ
ବରହ ସଙ୍ଗୀତ,
କଣୋଗ୍ରି ଝୁରନ୍ତି ଯହିଁରେ କାନ୍ତ । ୧୧ ।

ତଦନ୍ତେ ମୀନ ଲୋଚନେ ଦର୍ଶିଲ    ସ୍ନାନ ବଚ୍ଛେଦର ବଷାଦଲୀଳା
ମଧୁକାଳ ହେଲା ଏଣିକି ଶେଷ    ଶୁଭିଲା ଏ ଖେଦବାଣୀ ବଶେଷ
ଦେଖିବାକୁ ମନ,
ସୁଧୀବର ଯାତ୍ରା ଆରମ୍ଭ ଦନ । ୧୨ ।

ଅଙ୍ଗନା ହୋଇଲା ସରତ ସର    ଅଶେଷ ରସ ଅଛି ତହିଁ ପୁର
ଭୃଙ୍ଗ ଗୀତକର ଅତି ସୁନ୍ଦର    ଶୋଷା ପୁଭଙ୍କିଗ୍ରି କ ମନୋହର
କୋକ ସ୍ତନ ଯହିଁ,
ଚେଲ ଖସୁ ଜଳ ମଧ୍ୟୁ ଦଶଇ । ୧୩ ।

ବାଳମାନ ପରି ଭାବେ ମାନସେ    ବସନ ଭିଡ଼ି ବାମା ଜାନୁ ଦଶେ
ମୀନ ନେତ୍ର ସଲିଳରେ ଖେଳନ୍ତି    ଅନଙ୍ଗ-ମକର ବସଇ ଯହିଁ
ବନ୍ଧ ନାଗ୍ରିଷଣି,
କର କରେ ସେ ମନ୍ଥର ଗମନ । ୧୪ ।

---

୧୧ଶ ପଦ । ୧ମ ଅର୍ଥରେ :—ଅବରେ ଖେଳା ଶେଷ ଆଜ କହି କେହି କେହି ସଙ୍ଗସଙ୍ଗିଣୀକ ଲାଜ ଦଅନ୍ତି ( ଦୋଳ ମହୋତ୍ସବ ଶେଷ ହେଲା କହି ସଙ୍ଗୀ ଓ ସଙ୍ଗିଣୀମାନଙ୍କୁ ଭୋଗ ଖାଇ ଦେଲେ ) । ନାନା ଆମୋଦ ପ୍ରମୋଦ କଲେ । କେ ମଧୁର ଛନ୍ଦେ ବରହସଙ୍ଗୀତ ଯହିଁରେ କଣୋଗ୍ରି ( ରାଧା ) କାନ୍ତ ( କୃଷ୍ଣ )ଙ୍କୁ ଝୁରନ୍ତି ଗାଇଲେ ।

୧୧ଶ ପଦ । ୨ୟ ଅର୍ଥରେ :—ଗୋ ଅବାରେ ( ଗୋ ଇନ୍ଦୁରେଖା ) ଖେଳା ଶେଷ ଆଜ କହି ସଙ୍ଗସଙ୍ଗିଣୀ ଲାଜ ଦଅନ୍ତି ( କେହି କେହି ସଖୀ ଆଜଠାରୁ ଖେଳ ଶେଷ ହେଲା କହି ଇନ୍ଦୁରେଖାକୁ ଲଜ୍ଜା ଦେଲେ ) । ନାନା ଆନନ୍ଦେ ପ୍ରମୋଦ କଲେ । କେ ( କେହି କେହି ସଖୀ ) ମଧୁର ଛନ୍ଦେ ବରହସଙ୍ଗୀତ ଯହିଁରେ କଣୋଗ୍ରି ( ଯୁବତୀ ) କାନ୍ତକୁ ଝୁରନ୍ତି ଗାଇଲେ ।

୧୨ଶ ପଦ । ୧ମ ଅର୍ଥରେ :—ତଦନ୍ତେ ମୀନ ( ତା ପରେ ଚୈତ୍ର ହେଲା ) ଲୋଚନେ ( ଲୋକ ଲୋଚନକୁ ) ସ୍ନାନବଚ୍ଛେଦର ବଷାଦଲୀଳା ଦର୍ଶିଲା ( କରୁଣରସମ୍ପୂର୍ଣ୍ଣ ସ୍ନାନଲୀଳା ଦର୍ଶିଲା ) ଅର୍ଥାତ୍ ସ୍ନାନନବମୀ ଯାତ୍ରା ଚୈତ୍ର ମାସରେ ହେଲା । ଏଣିକି ମଧୁକାଳ ( ବସନ୍ତକାଳ ) ଶେଷ ହେଲା ଏ ଖେଦବାଣୀ ବଶେଷ ଭାବରେ ଶୁଭିଲା । ସୁଧୀବର ଯାତ୍ରା ଆରମ୍ଭ ଦନ ଦେଖିବାକୁ ମନ ଏହା ମଧ୍ୟ ଶୁଭିଲା ( ଉତ୍ତମ କେଉଟମାନଙ୍କର ଚଢ଼ୈୟା ଚଢ଼ୋଏୁଣୀ ଯାତ୍ରା ଚୈତ୍ର ପୂର୍ଣ୍ଣମୀରେ ଆରମ୍ଭ ହୁଏ, ତାହାକୁ ଦେଖିବାକୁ ମନ ଏହା ମଧ୍ୟ ଶୁଭିଲା ) ।

୧୨ଶ ପଦ । ୨ୟ ଅର୍ଥରେ :—ତଦନ୍ତେ ( ତା ପରେ ) ମୀନଲୋଚନେ (ମୀନନୟନା-ମାନଙ୍କର ନେତ୍ରରେ ) ସ୍ନାନବଚ୍ଛେଦର ବଷାଦଲୀଳା ଦର୍ଶିଲା ଅର୍ଥାତ୍ ସମସ୍ତେ କାନ୍ଦିଲେ । ମଧୁକାଳ ହେଲା ଏଣିକି ଶେଷ ( ମଧୁର ସମୟ ଏଣିକି ସରିଗଲା ) ଓ ସୁଧୀ ( ପଣ୍ଡିତ ) ବର ( ପାତ୍ର )ର ଯାତ୍ରା ଆରମ୍ଭ ଦନ ବବାହ ଦନ ଦେଖିବାକୁ ମନ, ଏ ଖେଦବାଣୀ ବଶେଷ ଭାବରେ ଶୁଣାଗଲା ।

ବାରଣ ନ ମାନି କରେ ଗମନ ପୁରବନିତାକୁ ଚାଳି ଈକ୍ଷଣ
କୁହୁ ନାଦ ପରି ତା ବୀଣାବାଣୀ ସଞ୍ଚାଳନ ଦେଇ ସୁନ୍ଦତରଙ୍ଗିଣୀ
ସ୍ୱଚ୍ଛ ନୀର ବେଗ,
ଭଜି ଗତି ନେଲା ଗତି ସୁନ୍ଦର । ୧୫ ।

ଜନକଙ୍କୁ ପୀନଉରଜା ପାଇ ସ୍ୱୟମ୍ବର ଦେବ କହିଲେ ଧାଇଁ
ଶିବକାଳ ହେଲେ ଅତି ପ୍ରସନ୍ନ ଧନୁରେ ବିଭାକୁ ରାଣୀଙ୍କ ମନ
ନୃପ ହେଲେ ତୋଷ,
ଗଣକଙ୍କୁ ଦେଲେ ଦାନ ବିଶେଷ । ୧୬ ।

ଜନନୀ ଆନନ୍ଦ ନୁହଇ କହି ସୁଖସ୍ୱପ୍ନ ଯେତେ ବର୍ଣ୍ଣି ନୁହଇ
ଇନ୍ଦୁରେଖା ଯହିଁ ପୂର୍ଣ୍ଣିମା ପରି ଆଶା ପାରାବାରେ ମାରେ ଭଉଁରି
ନବ ବେଶ ଭୂଷା,
କଲେ ଯା ଜେମା ଜୀବନ ଲାଳସା । ୧୭ ।

ନିୟୋଗିଲେ ଦାସୀ ଅକଟି ରାଣୀ ଜେମା ସଙ୍ଗିନୀକୁ ବୋଧିଲେ ପୁଣି
ସ୍ୱୟମ୍ବର ଯାଏ କେତକୀ ସର ଥିବ ଇନ୍ଦୁରେଖା ପୁରେ ମୋହର
ତା ମାନସ ଜାଣି,
ଜଟିଥିବ ଦାସୀ ଖଟିବେ ପୁଣି । ୧୮ ।

ଅଙ୍କୁରିବ ତାର ହୃଦେ ଯେ ଭାବ ନିଭୃତେ ଆସି ମୋ ଆଗେ କହିବ,
ନାହିଁ ସୁତ ମନେ ସେ ସୁତା ସୁତ ପଢ଼ିବ ତା ଆଗେ ଧର୍ମସଙ୍ଗୀତ,
ଜେମା ଅଜ୍ଞାତରେ,
ନିୟୋଗିଲେ ରାଣୀ ଏହି ପ୍ରକାରେ । ୧୯ ।

ଜେମାକୁ ସ୍ନେହରେ ଡକାଇ ପାଶେ ବାତ୍ସଲ୍ୟରେ କେତେ ଜନନୀ ଭାଷେ
ବୁଦ୍ଧିମତି ! ଶମ୍ଭୁ ଆଳକୁ ନିତ ଯିବୁ, ପୂଜିବୁ ଉମା ଉମାପତି,
ବସ୍ତୁ ପୂଜୁଥିବୁ,
ଧର୍ମ ଅର୍ଥ କାମ ମୋକ୍ଷ ଲଭିବୁ । ୨୦ ।

ଜାଣି ସତୀତ୍ୱ ଏ ସବୁଠୁଁ ବଳି ପତିପ୍ରାପ୍ତି ଅର୍ଥେ ପୂଜ ତ୍ରିଶୂଳୀ
ନାରୀର ସତୀତ୍ୱ ମହାଭୂଷଣ ପତିସେବା ମହାଧର୍ମରେ ଘେନ
ସଂସାର ମାର୍ଗଣ,
ଜାଣି ପିଚ୍ଛିଳ କର ଗତି ତୂର୍ଣ୍ଣ । ୨୧ ।

---

୧୫ । ପୁରବନିତାକୁ—ପୁରକାମିନୀଙ୍କୁ; ପୁର ଓ ଉଦ୍ୟାନକୁ ।
ବାରଣ—ବାଧା; ହସ୍ତୀ ।

୧୬ । ଜନକ—ପିତା; ଜନକ ଋଷି ।
ଶିବକାଳ—ଶୁଭ ସମୟ ; ମଙ୍ଗଳମୟ ମହାଦେବ ।
ଧନୁ—ଗୃଷ; ପୌଷ ।

ଅସି ମିଳେ ପରବାସୀଏ ତହିଁ ଜର ପ୍ରପୀଡ଼ିତେ ତନୁ ଥରଇ
ତହୁଁ କି ଗୁଲଇ ଯଷ୍ଟିକି ଧରି ପୁଚ୍ଛେ କାହିଁ ଜେମା ଗୋ ରାଜେଶ୍ୱର !
ଯଷ୍ଟି ଭର ଦେଇ
ଜେମାଙ୍କ ଅଙ୍କକୁ ଦେଲ ଅନାଇ । ୨୨ ।

ଚଳେ କାର୍ଯ୍ୟାନ୍ତରେ ରାଣୀ ଗମନ ମିଳାଲେ ଶ୍ୱଶୁର ସଜନୀଗଣ
ଭାଷେ ବୃଦ୍ଧା ତହିଁ ଅଳସ ହସି କେତେ ଦିନ ହେଲା ହେଲା ସୁକେଶୀ
ସତେ କି ମୁଁ ଥିବି,
ଜେମା ସ୍ୱୟମ୍ବର କେବେ ଦେଖିବି । ୨୩ ।

ବରଷାର ରସ ପାଇଲା ଭଳି ସ୍ମରେ ହେଲାଣି ଏ ଧର୍ମ ଛଇଳା
ଫୁଟି ଚମ୍ପାହାସେ ହସେ ମଧୁର ପଦ ଖସିଯିବା ଲାଗଇ ଡର
ବର ଅସାରେ ତ,
ପଢ଼ିବା ହେଲା ଧୀର ସଖୀବ୍ରାତ । ୨୪ ।

ଏହିପରି ହେଲା କଥା ବିଶେଷ ଧୀରେ ! ରମ୍ୟ ଛାନ୍ଦ ଏଠାରେ ଶେଷ
କର ଭାବ ଯେଣି ମାନସ ତୋଷ ହେବ ମଧୁଭାବ ପ୍ରାପ୍ତି ଅବଶ୍ୟ
ଶ୍ରୀ ଗୋଲୋକ କହି,
ରାଧାକୁଞ୍ଜେ ଯୋଗମାୟା କି ଏହି ? ୨୫ ।

## ପଞ୍ଚମ ଛାନ୍ଦ

ରାଗ—ବଙ୍ଗଳାଶ୍ରୀ

କୁମାର ଉତ୍ସବ କରି ଅନ୍ତ ହେଲା ହେମନ୍ତ ତରୁଣମଣି ।
ତୁଳା ବିହାରରେ ସବୁ ବଣିକର ବିଛା ବିହାରରେ ବାଣୀ । ୧ ।
ନିଶା ଆଡ଼ମ୍ବର ବଢ଼ାଇ କ୍ରମଶଃ ଦୃଷ୍ୟ ମଦ୍ୟପ ସଦୃଶ ।
ଫଳ କେଦାରର ଶୋଭା ବିବର୍ଦ୍ଧନେ ରଙ୍ଗେ ବୀରବାଳା ଦୃଶ । ୨ ।

---

୨୪ । ବରଷା ରସ—ବରଷା ପାଣି, ବର—ଶ୍ରେଷ୍ଠ ରସ । ସ୍ମରେ—ସ୍ମରଣ କରେ; କନ୍ଦର୍ପରେ । ବର ଅସାରେ ତ—ଶ୍ରେଷ୍ଠ ବା ବହୁତ ବୃଷ୍ଟି ପତନରେ; ବର କାମନାରେ ।

୧ମ ପଦ । ହେମନ୍ତ (ହେମନ୍ତ ଋତୁ) କୁମାର ଉତ୍ସବ ଅନ୍ତ କରି (କୁମାର ପୂର୍ଣ୍ଣିମା ଉତ୍ସବ ପାଳନ ପରେ ବା କୌମାର ଅବସ୍ଥାକୁ ଶେଷ କରିଥିବାରୁ) ତରୁଣମଣି (ଶ୍ରେଷ୍ଠ ତରୁଣ) ହେଲେ । ତୁଳା (କାର୍ତ୍ତିକ ମାସ ବା ତୁଳା ଦଣ୍ଡରେ) ବିହାର କରୁଥିବାରୁ ବଣିକ ଓ ବିଛା (ମାର୍ଗଶିର ବା ବୃଶ୍ଚିକ) ରେ ବିହାର କରୁଥିବାରୁ ବାଣୀ ( ସରସ୍ୱତୀ ) ହେଲେ ।

୨ୟ ପଦ । ହେମନ୍ତ ନିଶା ଆଡ଼ମ୍ବର କ୍ରମଶଃ ବଢ଼ାଇ (ରାତିକୁ କ୍ରମେ କ୍ରମେ ବଡ଼ କରି ବା ମାଦକ ଦ୍ରବ୍ୟମାନଙ୍କରେ ଆଡ଼ମ୍ବରକୁ କ୍ରମେ କ୍ରମେ ବଢ଼ାଇ) ଦୃଷ୍ୟ (ନିନ୍ଦ୍ୟ) ମଦ୍ୟପ (ମଦୁଆ) ସଦୃଶ ହେଲେ । ଫଳ କେଦାରର ଶୋଭାବିବର୍ଦ୍ଧନେ (ଫଳମାନଙ୍କର ଓ କୃଷିକ୍ଷେତ୍ରମାନଙ୍କର ଶୋଭା ବଢ଼ାଇବାରୁ ବା ଫଳକ ଅସ୍ତ୍ରଧାରୀ ପଦାତିର ଶୋଭା ବଢ଼ାଇବାରୁ) ବୀରବାଳା (ବୀରାଙ୍ଗନା) ଦୃଶ (ତୁଲ୍ୟ) ହେଲେ ।

ଦୀପାଳୀ ଦୀପ୍ତିକି ଦରଶେ କରାଇ ନୟନ ରୋଗ ହେବାର ।
କୁମୁଦିନୀରସେ ଉତ୍‌ଫୁଲ୍ଲ କରଣେ ନାଗରବର ଅବର ।୩।
ଶବଳ ଜୀବନେ ମୋଦେ ବିହରାଇ ହେବାର ସେ ଧନୁର୍ଦ୍ଧର ।
ତରଣୀ ଦୀପ୍ତିକି ନୀରସାଇବାରେ ଶୁଷ୍କ ତଟିନୀ ଅବର ।୪।
ଏମନ୍ତ ହେମନ୍ତେ ମୃଗୟାବିନୋଦେ ବାହିନେ ଶିଖଣ୍ଡଚୂଳ ।
ବାହରନ୍ତି ମୁଦେ ଟଙ୍କାରି କାର୍ମୁକ ଅବରୋଧ ସ୍ୱଦନ୍ତାବଳ ।୫।
ସମରକୁଶଳ ଅନୀକିନୀବଳ ଧାଇଁଛନ୍ତି ଅନୁସରି ।
ପଛେ ବୃଂହିତ ହ୍ରେଷା ମହାରୋଳେ ମୁଖରିତ ବନ ଗିରି ।୬।
ପ୍ରବେଶିଲେ ଯହିଁ ତରୁ ଲତା ଛାଇ ଧରଣୀରେ ହୋଇ ପୀନ ।
ତପନମୟୂଖ କରି ହେଉ କ୍ଷୀଣ ତାମସରେ ବିଦ୍ୟମାନ ।୭।
ସାନୁମାନ ଯହିଁ ନଭ ବିଭେଦାଇ ମିହିରଗତି ରୋଧିବାକୁ ।
ମଞ୍ଜୁ ଦନ୍ତାବଳ ଅସ୍ଫାଳଣି କରି ଚଢ଼ଇ ମହାଶୃଙ୍ଗଙ୍କୁ ।୮।
ବ୍ୟାଘ୍ରଶିଶୁ ଯହିଁ ପ୍ରମୋଦେ କ୍ରୀଡ଼ଇ କେଶରିଶାବକ ସଙ୍ଗେ ।
ଶରଭ ଶରଭ ବନ୍ୟ ମତ୍ତଗବ ବିହାର କରନ୍ତି ରଙ୍ଗେ ।୯।
କୁଞ୍ଜର ବିହଗ ରୋଳଯୁକ୍ତ ବନ ଦ୍ୱୀପୀ-ଗର୍ଜନେ ମୁଖରେ ।
କାହିଁ ଶାଳତରୁ ପର୍ବତକନ୍ଦରୁ କାହିଁ ବା ନିର୍ଝର ଝରେ ।୧୦।
ଦନ୍ତଶଠ ବଣୀ— ବନିତା ମାଙ୍ଗ କି ? ମୋହଇ ଅତି ସୁଷମେ ।
ବାସରେ ନିଯାମା ସଦା ପରକାଶ ଜମ୍ବୀର ମାନସ ରମେ ।୧୧।
ଉଲ୍ଲୋଳ ହିଲ୍ଲୋଳେ ପବମାନ ଖେଳେ ଛଦନରେ ଲୂତଜାଳ ।
ବୃନ୍ତଚ୍ୟୁତ ଫୁଲେ ବନଦେବତାଙ୍କୁ ଦେଉଥାଇ ପୁଷ୍ପାଞ୍ଜଳି ।୧୨।
ବସନ୍ତ ବିରହ ଚୁଙ୍ଗ ସ୍ୱନେ ତହିଁ ଗାଉଛନ୍ତି ମଧୁମଙ୍ଗଳ ।
ବିଷାଦବିଲିପ୍ତ ନୃତ୍ୟତ୍ୟକ୍ତ କେକୀ ଶୋଚଇ ପ୍ରାବୃଟ କାଳ ।୧୩।
ଗମ୍ଭୀର ଉଦାତ୍ତ ଅଦ୍ର ମହାଦ୍ରିବେ ଗୃହୁଁ ଅଟବୀ ପ୍ରକାଶ ।
ସ୍ନେହେ ବିଜନତା ଅରାଧନ୍ତି ଯହିଁ ଯତିସୀମନ୍ତିନୀବଂଶ ।୧୪।

---

୩ୟ ପଦ । ହେମନ୍ତ ଦୀପାଳି ଦୀପ୍ତିକି ଦରଶେ କରାଇ (ଦୀପାଳି ଅମାବାସ୍ୟାରେ ଦୀପ ଜଳାଇ ବା ଦୀପାଳୋକକୁ ଭୟ କରାଇ) ନୟନ ରୋଗ (ନେତ୍ର ରୋଗ) ହେଲା । କୁମୁଦିନୀରସେ ଉତ୍‌ଫୁଲ୍ଲକରଣେ (କଇଁଫୁଲମାନଙ୍କୁ ପାଣିରେ ଫୁଟାଇବାରେ ବା ବିରସବତୀ ନାୟିକାକୁ କ୍ରୀଡ଼ାରେ ତୁଷ୍ଟ କରାଇବାରୁ) ପୁଣି ଶ୍ରେଷ୍ଠ ନାଗର ହେଲା ।

୪ର୍ଥ ପଦ । ହେମନ୍ତ ଶବଳ ଜୀବନେ ମୋଦେ ବିହରାଇ (ପାଣିରେ ହଂସମାନଙ୍କୁ ଆନନ୍ଦରେ ବିହାର କରାଇ ବା ପ୍ରାଣୀମାନଙ୍କୁ ଶରବିଦ୍ଧ କରିବାର) ଧନୁର୍ଦ୍ଧର ହେଲା । ତରଣୀ ଦୀପ୍ତିକି ନୀରସାଇବାରେ ( ସୂର୍ଯ୍ୟଙ୍କ ତେଜକୁ କମାଇବାରେ ବା ନୌକାମାନଙ୍କ ଶୋଭାକୁ କମାଇବାରୁ) ଅବର (ଅଧର) ଶୁଷ୍କତଟିନୀ (ଶୁଖିଲା ନଦୀ) ହେଲା ।

୬ । ଅନୀକିନୀ—ସେନା । ବୃଂହିତ—ହାତୀର ଗର୍ଜ୍ଜନ । ହ୍ରେଷା—ଅଶ୍ୱରବ । ୮ । ମିହିର—ସୂର୍ଯ୍ୟ । ୧୦ । ଦ୍ୱୀପୀ—ବ୍ୟାଘ୍ର । ୧୧ । ଦନ୍ତଶଠ—କରମଙ୍ଗା । ବଣୀ—ବନିତା = ବନରୂପଧାରିଣୀ ସ୍ତ୍ରୀ । ଜମ୍ବୀର—ଲେମ୍ବୁ । ୧୨ । ପବମାନ—ପବନ । ଛଦନ—ପତ୍ର । ୧୪ । ଅଟବୀ—ବନ ।

ସହସା କୁମାର ବିଲୋକିଲେ ଅଗ୍ରେ ଉଭା ହୋଇଗଲା ଏକ ।
ଗଣବଣା ଭୀତ ଚକିତ ବଚନ ସୁନ୍ଦର ମୃଗଶାବକ । ୧୫ ।
ଅବତଳ ଗଜ ଲୁବ୍ଧ ନୃପସୁତ କଲେ ପଦାବ୍ଜଙ୍କେ ଗଡ ।
ଲକ୍ଷ୍ୟସାଇ ଚିତ୍ତ ପଶିଲା ଶାବକ ସବେଗେ ଯହିଁ ବ୍ରତତୀ । ୧୬ ।
ଚପଳାନୁଗାମୀ ଦମ୍ଭୋଳି ପରାୟ ନୃପଜ ଅନୁଗମନେ ।
ଗ୍ଲାନ୍ତ ସୈନ୍ୟବଳ ପ୍ରବେଶିଲେ ଯାଇ ବେଗେ ଅତି ରମ୍ୟ ସ୍ଥାନେ ।୧୭।
ବିଲୋକିଲେ ତହିଁ ସୁରଭି ନିକୁଞ୍ଜ ବିରାଜଇ ପୁଞ୍ଜ ପୁଞ୍ଜ ।
ସ୍ୱଚ୍ଛ ଶର ଦଶେ ମଣିଦର୍ପଣ କି ଥୋଇଛୁ ବଚନ କୁଞ୍ଜ । ୧୮ ।
ହେମବନ୍ଧୁ-ଦ୍ରାବା କୁସୁମ ବିକାଶ ଚାହିଁ ବା ଚହଟ ତାର ।
ହାଟକ ଝଟକ ନିନ୍ଦଇ ବା ଚାହିଁ ବୃନ୍ତେ ଥାଇ ପୁଷ୍ପସାର । ୧୯ ।
ତାହିଁ ଲତାଦୋଳେ ଦୋଳଇ ସୁରଭି କୁସୁମ ମୁଣ୍ଡ ହଲାଇ ।
କିଂପୁରୁଷବାମା ଦୋଳି ଖେଳେ ରତ ଅଳକାରୁ କି ଓହ୍ଲାଇ । ୨୦ ।
ଚକିତେ ଭୂପଜ ନୟନେ ଦେଖିଲେ ସୁନ୍ଦରୀ ରମଣୀ ଏକ ।
ମର୍ମର ପାଷାଣେ ବସି ଗୁରୁ କରେ ଧରିଛି ମୃଗଶାବକ । ୨୧ ।
ଭାବିଲେ କୁମର ଅମର୍ତ୍ତ୍ୟ ଲାବଣ୍ୟ ମର୍ତ୍ତ୍ୟେ କିପାଁ ସମ୍ଭବିଲା ।
ବନଦେବୀ ଅବା ବିପିନେ ବିହର ରଙ୍ଗେ କରୁଛନ୍ତି ଲୀଳା । ୨୨ ।
ବିତର୍କେ ମାନସେ କାନନେ କି ଅବା ରୂପସୀ ଦିବ୍ୟ ସରସୀ ।
ସୁନ୍ଦର ମୃଣାଳ ରୁଚି ମନୋହର ମୁଖତାମରସ ଦର୍ଶି । ୨୩ ।
ବାସରେ ଅଛନ୍ତି ଶୋଭି ମୃଣାଳିନୀ ଚନ୍ଦ୍ର ଉରଜ ବିଧୃତ ।
ଅପଘନେ ଖେଳେ ସୁଷମା ଲହରୀ ତରଳ ଛଟାଶୋଭିତ । ୨୪ ।
ମୀନର ସୁଢ଼ଳ ଚପଳ ନୟନ ବିଦ୍ରୁମରାଜି କଣ୍ଠରେ ।
ଲାଳାୟିତ ହେବ ତାପିତ ମାନସ ତହିଁ ମଜ୍ଜନେ ବଧୂରେ । ୨୫ ।
ସୁସ୍ଥାନେ ଯୌବନ ଭୁହାଇ ଭୁହାଇ ମଦନେ ଡାକେ କାହିଁକି ।
ପ୍ରଲୋଭନ ଯେବେ ବଳେ ବଳେ ଅସି ବିବେକ ଦିଅଇ ତାଙ୍କି । ୨୬ ।
ହରାଇ ଧଇର୍ଯ୍ୟ ନୃପତିସନ୍ତତି ବାମା ତରଳ ଭଙ୍ଗୀରେ ।
ଲଜ୍ଜା ମର୍ଯ୍ୟାଦାକୁ ଏଡ଼ି ପଚାରିଲେ ଦରବିଚଳିତ ସ୍ୱରେ । ୨୭ ।
"ଅହୋ ତୁ ସୁନ୍ଦର ! ନାସାପୁରନ୍ଦର ! ଅଟୁ କାହାର ଦୁହିତା ?
ସୁରଲୋକୁ ସ୍ନେହେ ଅବତର ଅଛୁ ମର୍ତ୍ତ୍ୟକୁ କେଉଁ ଦେବତା ?
ବିହର କାନନେ ଭାବଇ ମାନସେ ସ୍ୱର୍ଗଶିରୀ ଅପସରୀ ।
ହେବୁ କି ବଧୂର ଚିତ୍ତ ଅହ୍ଲାଦନୀ କୋଟିବ୍ରହ୍ମାଣ୍ଡସୁନ୍ଦରୀ ? ୨୯ ।

---

୧୭ । ଦମ୍ଭୋଳି—ବଜ୍ର । ୨୦ । କିଂପୁରୁଷ—କିନ୍ନର ।

ଶ୍ଳେଷ ଅର୍ଥ । ୨୯ ପଦ :—ମୁଁ ମନରେ ଭାବୁଛି, ତୁ ସ୍ୱର୍ଗର ଶୋଭା ଅପ୍ସରୀ ସଦୃଶ ଅଟୁ, ତୁ ମୋ ସହିତ କାନନରେ ବିହାର କର । ହେ କୋଟିବ୍ରହ୍ମାଣ୍ଡସୁନ୍ଦରୀ । ତୁ ବଧୂର ( କାତର ଯେ ମୁଁ ) ମୋହର ଚିତ୍ତ ଅହ୍ଲାଦନୀ ହେବୁ କି ?

ମାର ମନୋହାରୀ ହେମାଙ୍ଗୀ କିବା ତୁ ରକ୍ଷ ମାନସହାରିଣୀ ।<br>
ରମ୍ଭ ଉରୁ[illegible] ବିହରିବାର ଏ କାନନରେ ମନେ ଅଣି । ୩୦ ।<br>
ତାପକୁ ପଦ୍ମିନୀ ବନବିଳାସିନୀ ନାଶିବା ମାନସେ ଧର ।<br>
ପରମ ଅହ୍ଲାଦେ ବିହର ବିଜନେ ଏସନ ମନେ ବିଗୁର" । ୩୧ ।<br>
ଅନ୍ତର୍ଲିପି ଶ୍ଳେଷ ଅର୍ଥରୁ ନୃପଜ ହୃଦୟ ଜାଣି ସୁକେଶୀ ।<br>
ବାମ କରେ ବାସ ସମ୍ଭାଳି କହଇ ମନ୍ଦେ ବଚନ ଆଳସୀ । ୩୨ ।<br>
ତରଳ ନୟନା ସରଳ ବଚନ ଭଙ୍ଗୀ କି ମାନସେ ଅଣେ ।<br>
ଦମୟନ୍ତୀ ସତୀ ଅମିୟ ବଚନେ ତୋତେ କିବା ରତ୍ନପଣେ । ୩୩ ।<br>
"ଧୀରମଣି । ଯେବେ ମୋ ବାଣୀ ରକ୍ଷଣେ ବିହିବ ସତ୍ୟ ସମ୍ମତ ।<br>
ଯଥାଯୋଗ୍ୟ ତୋତେ ହେବାକୁ ସହାୟ ବଳାଇଥିବ ମୋ ମତ" । ୩୪ ।<br>
ଅଯାଚତ ପ୍ରେମ ବୋଲି ଦେଉଥିଲ ଲଳନା ଲଳିତ ବାଣୀ ।<br>
ବହୁଗୁଣେ ପୁଣି ରସାଣିତ କଲା କୋମଳ ସଲଜ୍ଜ ଠାଣି । ୩୫ ।<br>
କ୍ଷଣକେ ତରୁଣ ନୟନେ ଦଶିଲ ଜଗତଟି ପ୍ରେମମୟ ।<br>
ମଣିଲେ କ୍ଷଣକେ କଲେ କରଗତ ଈଶାନ ବିଭୂତଚୟ । ୩୬ ।<br>
ଭାବ ଉଦ୍‌ବେଳରେ ପୁଣି କ୍ଷଣେ କ୍ଷଣେ କରୁଥାନ୍ତି ଅନୁମାନ ।<br>
ଭ୍ରମୁ ଭ୍ରମୁ ଭାଗ୍ୟେ ଜଳ ଚଉଷେତ ଅଜ ସ୍ୱର୍ଣ୍ଣଧାରେ ସ୍ନାନ । ୩୭ ।<br>
ଯୁବତୀ ସୁନ୍ଦରୀ ପ୍ରତି ଅକାତରେ ଆସଇ ସହାନୁଭୂତ ।<br>
ବିଗୁରକୁ ଆଉ ନ କରେ ପ୍ରତୀକ୍ଷା ଏହି ଚରନ୍ତନ ରୀତ । ୩୮ ।<br>
ସୁନ୍ଦର ପଣର ଏ ଯେ ପ୍ରିୟଗୁଣ ବଳେ କରିନା ଏ ବଶ ।<br>
ଅୟୁତ୍ତ ହୃଅନ୍ତା କାହୁଁ ବନ୍ୟଦନ୍ତା ମାଇଲେ ମୁଣ୍ଡେ ଅଙ୍କୁଶ ? ।୩୯।<br>
ସୁନାଶୀର ପଦେ ସୁନାସୀର ପଦେ ଦଳିବା ବିଗ୍ଭର ମନେ ।<br>
କଲେ ସତ୍ୟ ଯାହା କହିବୁ ସୁହାସି ! ସାଧିବ ଦାସ ଜୀବନେ । ୪୦ ।<br>
ଅବନତମୁଖୀ ଦରବିକସିତ ମୃଦୁହାସ ପ୍ରକାଶିଲା ।<br>
ଲଜ୍ଜାବତୀ ଶୋକ- ପାସୋରି ଅପ୍‌ସରି- ଛବି-ଛଟା ନିନ୍ଦୁଥିଲା । ୪୧ ।<br>
ମୁଁ ତୁହେ କୁମାରୀ ବିଧିଷ୍ଣୁ ହେବାର ବିଧି ନିଷେଧ କି ନୋହି ।<br>
ବ୍ୟଭିଗ୍ଭର ପାପୁଁ ବଳି ଆଉ ପାପ ଏ ସାରି ସଂସାରେ କାହିଁ । ୪୨ ।

---

ଶ୍ଳେଷ ଅର୍ଥ । ୩୦ ପଦ :—ହେ ମନୋହାରୀ ହେମାଙ୍ଗି । ତୁ ମାର; ବା ହେ ମାନସହାରଣୀ ତୁ ରଖ, ମୁଁ ମନରେ ଅଣୁଅଛ ତୋର ରମ୍ଭାସଦୃଶ ଉରୁରେ ବସି ଏ କାନନରେ ( ଏ ବନସ୍ତରେ ) ବିହାର କରିବ ।

୩୧ । ହେ ବନବିଳାସିନୀ ପଦ୍ମିନୀ । ତୁ ମୋର କାମତାପକୁ ନାଶ କରିବୁ ଏହା ମୁଁ ଗ୍ଭହୁଁଛ, ତୁ ପରମ ଅହ୍ଲାଦରେ ଏ ବନସ୍ତରେ ମୋ ସହିତ ବିହାର କର ଏହା ବିଗ୍ଭର କରୁଅଛ ।

୩୨ । ଅନ୍ତର୍ଲିପି—ପ୍ରଶ୍ନ ପଚାରିଥିବା ପଦମାନଙ୍କର ମୂଳ ଲିପି = "ଅଶୁ ବିହେ ମାରତାପ" ଅର୍ଥାତ୍ ବର୍ତ୍ତମାନ ମୋତେ କାମଜ୍ୱାଳା ହେଉଅଛି ।

୪୦ । ସୁନାଶୀର ପଦେ—ଇନ୍ଦ୍ରପଦକୁ, ଉତ୍ତମ ନାସିକା ବିଶିଷ୍ଟ ନାରୀର ପାଦଦ୍ୱାରା ।

୪୨ । ବିଧିଷ୍ଣୁ—ଦୁଇବାର ବିବାହିତା ନାରୀ ।

ଶାନ୍ତ ସ୍ୱର୍ଗପଥ ରୁଦ୍ଧ କରନ୍ତେ ସେ ଅନନ୍ତ ତୁଙ୍ଗ ଭୂଧର ।
ତାପେ ଜାଳିବାକୁ ମତ୍ତା ଶରତ୍ଶ୍ରୀ ଉଦ୍ଦୀପିତ ବୈଶ୍ୱାନର । ୪୩ ।
ଅଶ୍ୱଥ ଉତ୍ତର ବାଟବାଳ ବ୍ରହ୍ମଚର୍ଯ୍ୟ ଛନ୍ତି ଯୋଗୀ ବନ୍ଧୁ ।
ଚେଦ୍ଧ ନରପତି ବହୁ ଏତ ଧନୀ ଏ ବନେ ତାପସୀ ମୁହିଁ । ୪୪ ।
ବହୁ ଏକ ଏକ ଅସଜ୍ଜ ପତଙ୍ଗ ଏଣୀ ଭୃଙ୍ଗ ବର୍ଦ୍ଧ ମୀନ ।
ଯେ ଦଶା ଭୋଗନ୍ତି ଦେଖିଛନ୍ତି ତାହାର ନ ଅଛିବ ତଇତନ୍ୟ । ୪୫ ।
ଶବ୍ଦ ରସ ଗନ୍ଧ ପରଶ ଲୋଚନେ ନିବୃତ୍ତି ମାର୍ଗକୁ ଧର ।
ପତି ଦରଶନ ଅଭିଳାଷିଣୀ ମୁଁ ଆଜି ଏ ବନେ ବାହାର । ୪୬ ।
ଅଛି ଧୀରମଣି ଯୋଗୀ ରାଜସୁତା କୁରୁକ୍ଷେତ୍ର ରାଜପୁରେ ।
ବାରଣ୍ଡି କଳ୍ପନା ସୀମାତେ ପ୍ରତୀତ ସୁନ୍ଦରୀ ଏ ଜଗତରେ । ୪୭ ।
ଶୁଣିଥିଲି କାନ୍ତ-ପୁରେ ଥିଲା କାଳେ ସେ ଏକେ ମଞ୍ଜୀର ଭାର୍ଯ୍ୟା ।
ଗାଅନ୍ତି ମାଗଧ ହେବ ସେ ରସିକା ରସିକ-ରସପସରା । ୪୮ ।
କମଳ କଳିକା ଫୁଟିଲି ପର୍ଯ୍ୟନ୍ତେ ଫୁଟିନ୍ତି ଲାବଣ୍ୟ ସରେ ।
ତୁଟି ନାହିଁ ତାର କାଳଭାବ ଅହା ଯୌବନ ଛୁଉଁଛି ଧୀରେ । ୪୯ ।
ଇନ୍ଦୁରେଖା ନାମ ବହନ୍ତି ଶୋଭାଙ୍ଗୀ ଲଭେ ଅକଳଙ୍କ ଇନ୍ଦୁ ।
ବାହାର ଉପାୟୁ ଅଙ୍ଗ ସୁନ୍ଦରଙ୍କୁ ଡାକିବ ସହଜେ ବନ୍ଧୁ । ୫୦ ।
ଇନ୍ଦୁରେଖା ଯୋଗେ ଶୋଭିବ ବାଞ୍ଛ ହେ ! ଉଭ ଯୋଗେ ସୁହାସିନୀ ।
ପଦ୍ମିନୀ ଯୋଗରେ ଶୋଭଇ ସରସୀ ସରସୀ ଯୋଗେ ପଦ୍ମିନୀ । ୫୧ ।
ଟଳିଲେ ବଚନ ରସଲେଖା କେତେ ତୁହର ମୁଁ ଧୀର ଧେନ ।
ପ୍ରତି ଉପକାର କରିବେ କାନ୍ତଙ୍କୁ ଭବ ବନ୍ଦୀ ବିମୋଚନ । ୫୨ ।
ଜନ ମୁଖସ୍ରୋତେ ସୌନ୍ଦର୍ଯ୍ୟ ଯାହାର ଭାସୁଥିଲା ଥିଲେ ଜାଣି ।
ରସଲେଖା ଇନ୍ଦୁ- ରେଖା କହୁଁ କହୁଁ ବଢ଼ିଲା ପ୍ରେମ ଜୁଆଣି । ୫୩ ।
ରସଲେଖା ପତି ବନ୍ଦ ମୁକ୍ତ ସତ୍ୟ ବାହିଲେ ଶିଖଣ୍ଡିଚୂଳ ।
ହେଲା ଇନ୍ଦୁରେଖା ନୃପସୁତ ହୃଦେ ଗ୍ରହବୀଜର ଅଙ୍କୁର । ୫୪ ।
ସୌନ୍ଦର୍ଯ୍ୟରୂପେ ଯା ଜନ ନେନ୍ତେ ଦଶେ ତାର ଏ ମୋହିନୀ ଶକ୍ତି ।
ସତ୍ୟ ସୌନ୍ଦର୍ଯ୍ୟର ନୋହିଥିବ କେତେ ଏ ଭାବେ କରେ କେ ରତି ।
ପତି ପତ୍ନୀ ପ୍ରେମ ବସଇ ହୃଦରେ କାମ ବାସ କରେ ମନେ ।
ଈଶ୍ୱର ପ୍ରଣୟ ସବୁଠାରୁ ଗରୁ କଏ ବାଗୁରେ ଏସନେ ।୫୬।
ଦୂତୀ ଭେଟି ଛନ୍ଦ କଶୋର ନିକଟେ ଭାଷଇ ଗୋଲୋକଚନ୍ଦ୍ର ।
ଚନ୍ଦ୍ର ଏ ସହଜେ ବାଞ୍ଛନୀ ରସିକ ହୃଦ ଚକୋର-କୁମୁଦ । ୫୭ ।

# ଷଷ୍ଠ ଛାନ୍ଦ

## ରାଗ—ଲଳିତ କେଦାର

ଏଥିଅନ୍ତେ ଘେନ ରସ ସରଲେଖା ଦୂତୀ ହେଲା ପ୍ରବେଶ
ହେ ସାଧୁଜନେ ! ଧରି ସନ୍ନ୍ୟାସିନୀ ବେଶ । ୧ ।

ପିନ୍ଧିଛି କଷା ବସନ ଗୋରି ତନୁ ତୋରି ଦିଶେ ଯତନ
ହେ ସାଧୁଜନେ ! ସର୍ବାଙ୍ଗ ଭସ୍ମ ଲେପନ । ୨ ।

କୁନ୍ତଳକୁ ଜଟ କରି ବୋଲେ ମୁଖେ କୃଷ୍ଣ ଶ୍ରୀରାମହରି
ହେ ସାଧୁଜନେ ! ଦଣ୍ଡକମଣ୍ଡଳୁ ଧରି । ୩ ।

ତୁଳସୀ ମାଳ ଭୂଷଣ କଣ୍ଠତଟ ଦିଶେ ଅତି ଶୋଭନ
ହେ ସାଧୁଜନେ ! ହାସ ବାକଶେ ଲପନ । ୪ ।

କପାଳେ ଘେନିଛି ଚିତା ଯୋଗମାୟା ପରି ଦିଶେ ଶୋଭିତା
ହେ ସାଧୁଜନେ ! ବଶ ହେବେ ଊର୍ଦ୍ଧ୍ୱରେତା । ୫ ।

ବୋଲି ବୋଲି ରାମ ହରି ନୟନ ଯୁଗଳୁଁ ଝରଇ ବାରି
ହେ ସାଧୁଜନେ ! ପୁଲକିତ ଅଙ୍ଗ କରି । ୬ ।

ଅପୂର୍ବ ପ୍ରଭତି ଭାରି ବଶ କରିପାରେ ସାରା ସଂସାର
ହେ ସାଧୁଜନେ ! ବୟସ ଷୋଳ ସତର । ୭ ।

ବିଭୁତି ଧରିଛି କରେ ଭକତ ଦେଖିଲେ ବେଗେ ବିତରେ
ହେ ସାଧୁଜନେ ! ନାନା ବର ଦାନ କରେ । ୮ ।

ନୋହୁଣୁ ଦିବସ ନାଶ ଇନ୍ଦୁରେଖା ପୁର ପାଶେ ପ୍ରବେଶ
ହେ ସାଧୁଜନେ ! କରି ହରି ହରି ଘୋଷ । ୯ ।

ଚନ୍ଦ୍ରଶାଳା ଚୂଡ଼େ ରହି ଦେଖୁଥିଲା ଇନ୍ଦୁରେଖା ସୁମୁହୀଁ
ହେ ସାଧୁଜନେ ! ସହଚରୀ ସଙ୍ଗେ ନେଇ । ୧୦ ।

ସନ୍ଧ୍ୟା ପାଟଳିମା ବେଗେ ଦିଶିଗଲା ନଭେ ବାରୁଣୀରାଗେ
ହେ ସାଧୁଜନେ ! ରାବିଲେ ବନ ବିହଗେ । ୧୧ ।

କୁମୁଦନୀ ମୁଦ ପାଇଁ ଉଠିଲେ ଆକାଶେ ତାରକାସାଇଁ
ହେ ସାଧୁଜନେ ! ଚକୋର-ଆନନ୍ଦଦାୟୀ । ୧୨ ।

କୋଟି କୋଟି ନଭେ ଫୁଟି ଅଇଁଲେ ତାରକା ଗୋଟିକି ଗୋଟି
ହେ ସାଧୁଜନେ ! ରଜନୀଗନ୍ଧା ଚହଟି । ୧୩ ।

ବହିଲା ମନ୍ଦ ପବନ କରି ମରମର ମୁରଲୀ ସ୍ୱନ
ହେ ସାଧୁଜନେ ! ହସିଲା କୁମୁଦବନ । ୧୪ ।

ଅସିବ କେହ୍ନେ ଅନ୍ଧାର ନିଶି ସଙ୍ଗେ ଚନ୍ଦ୍ର କରେ ବିହାର
ହେ ସାଧୁଜନେ ! ସୁଷମା ଦିଶେ ସଂସାର । ୧୫ ।

ସୋପାନେ ଖସିଲା ବାଳା ଗଗନୁ ଖସି କି ଅସେ ଚପଳା
ହେ ସାଧୁଜନେ ! କରୁଛି ଏ ଭାବ ଖେଳା । ୧୬ ।

ସଖୀ ସମାଜ ମଧ୍ୟରେ ଅପସରୀ ପରି ଖସନ୍ତି ଧୀରେ
ହେ ସାଧୁଜନେ ! ଝଲସେ ନେତ୍ର ଶୋଭାରେ । ୧୭ ।

ଯୋଗମାୟା ପଦେ ଯେହ୍ନେ ନମନ୍ତି ରାଧିକା, ନମେ ଏ ତେହ୍ନେ
ହେ ସାଧୁଜନେ ! ସେଠା ଲକ୍ଷ୍ୟ ମନେ ଘେନେ । ୧୮ ।

ଯାନ୍ତି ନେଲେ ସାଦରେ ଆସ ତପସ୍ୱିନି ! କହି ମୃଦୁରେ
ହେ ସାଧୁଜନେ ! ତାପସୀ ଚଳଇ ଧୀରେ । ୧୯ ।

ଆଗେ ଚଳେ ତପସ୍ୱିନୀ ପଛେ ଜେମା ଜେମା ପଛେ ସଙ୍ଗିନୀ
ହେ ସାଧୁଜନେ ! ଭକ୍ତିଭାବ ମନେ ଘେନି । ୨୦ ।

ଧୀରେ ଚଢନ୍ତେ ସୋପାନେ ସାଧନା ସଙ୍ଗେ କି ଭକ୍ତି ମଣେ
ହେ ସାଧୁଜନେ ! ପ୍ରୀତ୍ୟାଦି ଅନୁଗମନେ । ୨୧ ।

କରି ହରି ହରି ଘୋଷ ତପସ୍ୱିନୀ ବିଧୁଶାଳେ ପ୍ରବେଶ
ହେ ସାଧୁଜନେ ! ବାମାଙ୍କ ମନ ସବଶ । ୨୨ ।

ଆସନ ଦେଲେ ପକାଇ ସଖୀଙ୍କେ ଜେମାଙ୍କ ସଙ୍ଗିନୀ ଚାହିଁ
ହେ ସାଧୁଜନେ ! ତପସ୍ୱିନୀ ବସେ ତହିଁ । ୨୩ ।

ଦେବ ବସିଲେ ଲଳନା ଚମ୍ପକବଦନା ଗଜଗମନା
ହେ ସାଧୁଜନେ ! ଖେଳାଖଞ୍ଜନନୟନା । ୨୪ ।

ଜେମାପ୍ରିୟ ଶୁକ ସାରୀ ଡାକିଲେ ଏକାଳେ ମୁରାରି ହରି
ହେ ସାଧୁଜନେ ! ରାଧାପ୍ରାଣ ବଂଶୀଧାରୀ । ୨୫ ।

ସନ୍ଧ୍ୟା ଦୀପାବଳୀ ଘରେ ଜାଳିଲେ ଦାସୀଏ ଚନ୍ଦ୍ରଶାଳାରେ
ହେ ସାଧୁଜନେ ! ସେ ଶୋଭା ବଚନ ବଳେ । ୨୬ ।

ନିତ୍ୟକୃତ୍ୟ ସନ୍ଧ୍ୟା ପାଇଁ ଆୟୋଜନ କଲେ ତାପସୀ ତହିଁ
ହେ ସାଧୁଜନେ ! ଧୀରେ କୃଷ୍ଣ କୃଷ୍ଣ କହି । ୨୭ ।

ସଙ୍ଗେ ଥିବା ଚିତ୍ରମାନ ସଜାଇଲେ ତହିଁ କରି ଯତନ
ହେ ସାଧୁଜନେ ! ମୋହି କାମିନୀଙ୍କ ମନ । ୨୮ ।

ଦିଶୁଥାଏ ଯହିଁ ଜେମା ନାରୀଗଣ ମଧ୍ୟେ କି ତିଲୋତ୍ତମା
ହେ ସାଧୁଜନେ ! ପଦ୍ମବନେ ଅବା ରମା । ୨୯ ।

ରାଜଜେମା ମୁଖ ଚାହିଁ ତାପସୀ କହଇ ହୃଦୟା ବହି
ହେ ରାଜଜେମା ! ଭକ୍ତିରେ ସନ୍ତୁଷ୍ଟ ମୁହିଁ । ୩୦ ।

ଦିଶୁଛି ଏହି କଲ୍ୟାଣି ଅଙ୍ଗମଣ୍ଡନକୁ କର ମଣ୍ଡନ
ହେ ରାଜଜେମା ! ଅବଶ୍ୟ ହେଉ ଖଣ୍ଡନ । ୩୧ ।

ସ୍ମୀତପଦ ଗୁଣୀ ଶାନ୍ତ ବସ ବିଷୟରେ ଥିବେ ସାମନ୍ତ
ହେ ରାଜଜେମା ! ସମରବିଦ୍ୟା ପଣ୍ଡିତ । ୩୨ ।

---

୩୧ । ଅଙ୍ଗମଣ୍ଡନ—ସୁନ୍ଦର; ଅଙ୍ଗ ଯୁବରାଜ ।

ଜେମା ମୁଖେ ହାସ ଖେଳା — ଖେଳିଲା ନଭେ କି ଖେଳେ ଚପଳା
ହେ ସାଧୁଜନେ ! ଅବନତମୁଖୀ ବାଳା । ୩୩ ।

ସଖୀଙ୍କି ଛନ୍ଦ କହିଲ — ଶୁଣେ ରାଧାକୃଷ୍ଣ ପଢ଼ାଅ ଭଲ
ହେ ସାଧୁଜନେ ! ପ୍ରସଙ୍ଗାନ୍ତରକୁ ନେଲ । ୩୪ ।

ଚିତ୍ରପଟ ବାରମ୍ବାର — ନିରେଖେ ତାପସୀ ନେତ୍ରେ ତାହାର
ହେ ସାଧୁଜନେ ! ବଢ଼େ ଉଦ୍‌ବେଗ ବାଳାର । ୩୫ ।

ଧୀରେ କହେ ଇନ୍ଦୁରେଖା — ଦୟାବହି ଚିତ୍ର ଅମ୍ଭଙ୍କୁ ଦେଖା
ହେ ସନ୍ନ୍ୟାସିନି ! କି ହୋଇଛି ତହିଁ ଲେଖା । ୩୬ ।

ତପସ୍ୱିନୀ ହେଲ ବେଗ — ଜାଣିଲ ସେ ଯେଣୁ ଜେମା ଅବେଗ
ହେ ସାଧୁଜନେ ! ସଖୀଏ ଅତି ଉଦ୍‌ବେଗ । ୩୭ ।

ଗୋଟି ଗୋଟି କରି ଧୀରେ — ତାପସୀ ଦେଖାଏ ଯଥାବିଧିରେ
ହେ ସାଧୁଜନେ ! ବର୍ଣ୍ଣି ବିଶେଷ ଭାବରେ । ୩୮ ।

କଂସ ବନ୍ଦଘର ଏହି — ହରି ପିତା ମାତା ଅଛନ୍ତି ରହି
ହେ ରାଜଜେମା ! ଦେଖ ଶାଙ୍କୁଳ ପଡ଼ଇ । ୩୯ ।

ଦେଖ ଏ କୃଷ୍ଣ ଜନମ — ବସୁଦେବ ଖେଦେ ଦଣ୍ଡାୟମାନ
ହେ ରାଜଜେମା ! ଦେବକୀ କରେ ନନ୍ଦନ । ୪୦ ।

ଦେଖ କୃଷ୍ଣଙ୍କୁ କନ୍ଧରେ — ଏଥି ବସୁଦେବ ନେଉଛି ଗରେ
ହେ ରାଜଜେମା ! ଉଗ୍ରସେନ ପଥ ଘେରେ । ୪୧ ।

ଦେଖ ଏ ନନ୍ଦଭବନ — ଯଶୋଦାଙ୍କ କୋଳେ ହରି ଶୟନ
ହେ ରାଜଜେମା ! ଯାମଳାର୍ଜ୍ଜୁନଭଞ୍ଜନ । ୪୨ ।

ଦେଖ ପୂତନା ରାକ୍ଷସୀ — କ୍ଷୀର ସଙ୍ଗେ ପ୍ରାଣ ନେଲାକୁ ଶୋଷି
ହେ ରାଜଜେମା ! ବିକଟ ରୂପ ପ୍ରକାଶି । ୪୩ ।

ଦେଖ କୃଷ୍ଣ ବାଳଲୀଳା — ବନଭୋଜି ଅଙ୍କ ଚକ୍ଷୁ ପାଇଲ
ହେ ରାଜଜେମା ! ଗୋବତ୍ସାପହରଣ ଲୀଳା । ୪୪ ।

ଏଥି ଦେଖ ବିମ୍ବାଧରି ! — ପଦ୍ମଭବ ବତ୍ସା ନିଅନ୍ତି ହରି
ହେ ରାଜଜେମା ! ହରିଙ୍କ ମାୟା ଉପରି । ୪୫ ।

ଅଘା ବକା ତୃଣାବର୍ତ୍ତି — ଏପଟରେ ହୋଇଅଛନ୍ତି ହତ
ହେ ରାଜଜେମା ! କାଳୀୟଦମନ ଏତ । ୪୬ ।

ଏ ଗୋବର୍ଦ୍ଧନ ଧାରଣ — ଏଥି ଦେଖ ରମ୍ୟ ଏ ବୃନ୍ଦାବନ
ହେ ରାଜଜେମା ! ରାସ ଯହିଁ ବିରଚନ । ୪୭ ।

ଦେଖ ଏ ରାଧା ସୁମୁଖୀ — ସଙ୍ଗରେ ବିଶାଖା ଲଳିତା ସଖୀ
ହେ ରାଜଜେମା ! ବଂଶୀଧର ପରେ ଅଛି । ୪୮ ।

---

୩୯ । ଶାଙ୍କୁଳ—ଶୃଙ୍ଖଳ; ହାତ ଗୋଡ଼ର ବେଢ଼ ।

ଦେଖି ଦେଖି ବୋଲି କହି          ଜେମା କରେ ଦେଲ ଟେ ଛନ୍ଦ ଥୋଇ
ହେ ସାଧୁଜନେ ! ବାଳା ଦେଖେ ସୁଖୀ ହୋଇ । ୪୯ ।
ଜେମା ପୃଚ୍ଛେ ହୋଇ ଧୀର          ଦିଶଇ ଏଠାରେ ଛବି ତୁମ୍ଭର
ହେ ସନ୍ନ୍ୟାସିନି ! ଅନ୍ୟ ଚିତ୍ରଟି କାହାର । ୫୦ ।
ଭାବିଲ ହୋଇ ତାପସୀ          କହେ ପଚାରିଲୁ ଯେବେ ରୂପସି
ହେ ରାଜଜେମା ! ଶୁଣ କହିବି ବିଶେଷି । ୫୧ ।
ଆଲେଖ୍ୟଟି ଯେଉଁ ସ୍ଥଳେ          ଅଙ୍କିଥିଲି ଚିତ୍ରକର କୌଶଳେ
ହେ ରାଜଜେମା ! ଥିଲି ଦୈବେ ସେହି ସ୍ଥଳେ । ୫୨ ।
ସେ ଅଙ୍ଗ ଦେଶ ରାଜନ-          ନ୍ଦନ ଛବି ହୋଇଅଛି ଅଙ୍କନ
ହେ ରାଜଜେମା ! ଥିବାରୁ ଧୀର ରତନ । ୫୩ ।
ନ ଥିଲ ମୋ ଚିତ୍ତ ଗୋଚର          କାହିଁକି ଚିହ୍ନିଲି ସେ ଚିତ୍ରର
ହେ ରାଜଜେମା ! ଚିହ୍ନେ ସେ ନୃପକୁମର । ୫୪ ।
ଆହା କେମନ୍ତ ସୁନ୍ଦର          ମଣେ ଅବିବାହୀ ଯୁବା ସୁଧୀର
ହେ ରାଜଜେମା ! ମୂର୍ତ୍ତିମନ୍ତ ଫୁଲଶର । ୫୫ ।
ଜାଣେ ଅଗୋ ଜେମାମଣି !          ତାଙ୍କ ତାତ ନୃପ ମଉଡ଼ମଣି
ହେ ରାଜଜେମା ! ରବି ବଂଶେ ଜାତ ପୁଣି । ୫୬ ।
ତାପସୀର ଭଙ୍ଗୀ ସୃଷ୍ଟି          ଛବିରେ ଜେମାର ଅଟଳ ଦୃଷ୍ଟି
ହେ ସାଧୁଜନେ ! ଦ୍ୱିଧାଭାବ କଲା ପୁଷ୍ଟି । ୫୭ ।
ଜାଣିପାରି ଜେମା ମନ          ଚଞ୍ଚଳା ବୋଲଇ ତାପସୀ ଶୁଣ
ହେ ସନ୍ନ୍ୟାସିନି ! କଲ ଜେମାଙ୍କୁ ପ୍ରସନ୍ନ । ୫୮ ।
ଏ ଯେ ଅବିବାହୀ ବାଳା          ଯେଡ଼େ ସୁଛଇଲା ତେଡ଼େ ସୁଶୀଳା
ହେ ସନ୍ନ୍ୟାସିନି ! ରତିକି ନ କରୁ ତୁଳା । ୫୯ ।
ଦୟା ବହି ଏହି ଚିତ୍ର          ଦିଅ ଜେମାପୁରେ ସଜନୀଗୋତ୍ର
ହେ ସନ୍ନ୍ୟାସିନି ! ରଖିବୁ ଏ ଭିକ୍ଷା ମାତ୍ର । ୬୦ ।
ରାଜନନ୍ଦନରେ ରାଗ          ଜେମାର ଜାଣି ତାପସୀ ଆଗ
ହେ ସାଧୁଜନେ ! ବଢ଼ାଇଲେ ଅନୁରାଗ । ୬୧ ।
ଚିତ୍ରପଟ ରଖି ଧୀରେ          ବୋଇଲେ ପୂଜିବୁ ଭକତିଭରେ
ହେ ରାଜଜେମା ! ମା-ପତି ଚିନ୍ତି ହୃଦରେ । ୬୨ ।
ହେବ ପ୍ରେମେ କାନ୍ତେ ଲାଭ          ହେଲ ଯେବେ ଏବେ ଏ ଚିତ୍ରେ ଲୋଭ
ହେ ରାଜଜେମା ! ମାନସ ତୋ ସିଦ୍ଧ ହେବ । ୬୩ ।
କଥା ପ୍ରସଙ୍ଗରେ ତହିଁ          ନିଜେ ରସଲେଖା ଦେଲେ ସେ କହି
ହେ ସାଧୁଜନେ ! ନାମ ତାଙ୍କର ଅଟଇ । ୬୪ ।
ନିଶିରେ ଏମନ୍ତ ହେଲ          ଜେମା ଛବି ନେଇ ଯେ କାଳେ ଗଲ
ହେ ସାଧୁଜନେ ! ଚଞ୍ଚଳା ଧୀରେ ଭଣିଲ । ୬୫ ।

ଅମ୍ଭ କେମା ଯୋଗା୍ଦର  ଦଶରଥ୍ର ଏକା ଏକ୍ତ୍ଠ ସୁନ୍ଦର
ହେ ସନ୍ନ୍ୟାସିନି ! ଉଚିତ ଉପାୟ କର । ୬୬ ।
ବାଳା ଚନ୍ଦ୍ରପଞ୍ଚ ନେଇ  ସନ୍ନ୍ୟାସିନୀ ଗଲେ ଦେଖା ଦେଇ ଥୋଇ
ହେ ସାଧୁଜନେ ! ତାପସୀମୁଖେ ଅନାଇଁ । ୬୭ ।
କ୍ଷମିଲ କୋଳ ତାପସୀ  ଜେମାଙ୍କ ସଙ୍ଗିନୀ ମିଳନ୍ତି ଆସି
ହେ ସାଧୁଜନେ ! ଘ୍ରସିଲେ ତୋଷ ପ୍ରକାଶି । ୬୮ ।
ଭୋଜନ ଶୟନ ହେଲେ  ପ୍ରତ୍ୟୁଷେ ତାପସୀ ବିଦାୟ ନେଲେ
ହେ ସାଧୁଜନେ ! ଗୋଲେକ ଏ ଛାନ୍ଦ ବୋଲେ । ୬୯ ।

## ସପ୍ତମ ଛାନ୍ଦ

### ରାଗ—ଲଳିତ କାମୋଦୀ

ନୃପତିନନ୍ଦନ ପାଶେ କୁଟୀ  ରସଲେଖା କହେ ସୁଭାରତୀ
ସେ କୁମାର ଶୁଭକସ୍ତବ ସମ୍ଭ ବଶୀଭୂତ ମତି କଲା ଭୂତ
ଗୋ ଉଚାଟନ, ଦେବାକୁ ବା ନାକେ ଫୁଲବାଣ । ୧ ।
ଆନନ୍ଦପୁର କଣ୍ଟୟ ସେହୁ  ଅନନ୍ଦଦାୟିନୀ ବଡ଼େ ଯହିଁ
କଣ୍ଟକ ଦୁର୍ଗରେ କେତକୀ ଘ୍ରାବରେ କେତକୀବରଣୀ ବାଳସଇ
ଗୋ ଜେମାପ୍ରସୀ, କଞ୍ଚୁକୀଏ କରିଥାନ୍ତି ଘେରି । ୨ ।
ଦୂରନ୍ତୁ ଦଶେ ପୁଗ୍ରୀଣ ଅଗ୍ରୀ  ଅମରାବତୀ କି ମର୍ତ୍ତ୍ୟ ଚୋରି
ସହଚରୀ ଘେନି ସେ ମତ୍ତକାଶିନୀ ହ୍ରଦଲିତ କଟେ ଶଚୀପ୍ରଭୀ
ଗୋ ଭଲ ଯୋଗେ, ସୁକୃତରୁ ଗଲ ସେହୁ ଭାଗେ । ୩ ।
ଦେଖିଲି ପ୍ରେମ କି ମୂର୍ତ୍ତିମତୀ  ହୋଇ ଖେଳୁଛୁ ଏ ବସୁମତୀ
ଶାନ୍ତି ନିଷ୍ଠା ସ୍ନେହ ସହଚରୀ ସହ ଦୟା କ୍ଷମା ସଦା ସେବୁଛନ୍ତି
ଗୋ ଇନ୍ଦୁରେଖା, ଇନ୍ଦୁଗଞ୍ଜି ମୋତେ ଦେଲେ ଦେଖା । ୪ ।
ଖର୍ବ ନୋହୁ କଇ ନୋହେ ବେଣୀ  କ୍ଷୀଣ ପୀବର ନୋହେ ସୁକେଶୀ
କମନୀୟ କାନ୍ତି ପରିମଳ ଅତି କମଳକେଶର କଳା ଧରି
ଗୋ ହସେ ନାକ, ବିଶ୍ୱସାର ଶୋଭା ସୁଶ୍ରେଣୀକ । ୫ ।
ଧଳା ହରିତାଳବଳା ଦ୍ୟୁତି  ମତ୍ତମାତଙ୍ଗଗତି ସୁଦନ୍ତୀ
ପକ୍ୱ ବିମ୍ବ ଓଷ୍ଠ ଶୁକ ହୋଇ ତୁଷ୍ଟ ନାସା ଛଳେ ବଳେ କି ଅକୃଷ୍ଟି
ଗୋ ସାରସୃଷ୍ଟି, ବଚନ ରଚନ ସୁଧାବୃଷ୍ଟି । ୬ ।

---

୨ । କଞ୍ଚୁକୀ—ଅନ୍ତଃପୁରର ପହରୀ ଦେଉଥିବା ନପୁଂସକ ପ୍ରହରୀ; ସାପ ।
୩ । ମତ୍ତକାଶିନୀ—ମତ୍ତହସ୍ତିନୀ ।
୫ । ପୀବର—ମୋଟା ।

ଘନ ଜଘନ ତା ରମ୍ୟ ଅତି ଜନାଏ ମନେ ରମ୍ଭା ଭ୍ରାନ୍ତି
ହାରି କିବା ବାଦେ କରଭ ବିମୁଦେ ଗରବ ତେଜିଛି ଦେଖି କାନ୍ତି
ଗୋ ସୁଶୋଭିତା, ରସିକ ଚିତ୍ତକୁ ଦିଏ ଶାନ୍ତି । ୭ ।

ଦଶନପଂକ୍ତି ତା ଶୋଭିବଳ ମୁକ୍ତା ଶୋଭା କିବା ଅଛି ଝଳ
କି ଡାଳିମ୍ବବୀଜ ନିନ୍ଦି କାମରାଜ ଯୌବନ ଅରୁଚି ତ୍ୟାଗ ଖଳ
ଗୋ ନିତମ୍ବିନୀ, ପୀରତି ଅନନ୍ଦ ବରଧନୀ । ୮ ।

ତନୁ ସଞ୍ଚାରିଣୀ କାଳଗତି ଧୀରିହାରି ଦୁଷ୍କରଜା ସତି
ତା ଚୂର୍ଣ୍ଣକୁନ୍ତଳ ପଣ୍ଡ ଗଣ୍ଡସ୍ଥଳ ଅପୂର୍ବ ମାଧୁରୀ କରେ ଜାତ
ଗୋ ଭୃଙ୍ଗଶ୍ରେଣୀ, ଗୋଲାପେ ରାଜିବା ଶୋଭା ଜିଣି । ୯ ।

ଶୀତକରେ ଦଲେ ମୁଖ ଟେକି ପ୍ରେମର ତରଣୀ କି ସେ ଏକି
ଯୁବା ହିଆବାରିଧିରେ ବିହରିବ ଧୀରେ ସୀମନ୍ତିନୀକୁଳ ସୁତିଲକ
ଗୋ ଉକଣ୍ଠିକା, ମନସିଜ ମନେ ଦେବ ଦିକା । ୧୦ ।

କମ୍ବୁକଣ୍ଠୀ ବକ୍ଷୋରୁହ ଶୋଭା ଚକ୍ରଯୁଗ୍ମ ଲୁଚେ ବାସରେ ବା
ଏହା ଅଚମ୍ବିତ କଥା ବିଶ୍ବରେ ତ ରାମା ଶବ୍ଦେ ବିପରୀତ କିବା
ଗୋ ହେମଲତା, ଗିରି ବହିବାର ଶୋଭା ଯଥା । ୧୧ ।

ତା ଅଙ୍ଗୁଳି କରପଲ୍ଲବରେ ଚମ୍ପକ କଢ଼ିର ଶୋଭା ଧରେ
ମୁଦି ମରକତ ଅଳିକା ଯୁକତ ଅଦଭୁତ ନ ହେବା ହେବାରେ
ଗୋ କାମକୁନ୍ତ, ନଖ-ମୁକୁତାରେ ସୁବ୍ୟକତ । ୧୨ ।

ଛୁଡ଼ା ହୋଇ ଗଲେ ବ୍ରୀଡ଼ାବତୀ କ୍ରୀଡ଼ା କରେ କି ରତନଜ୍ୟୋତି
ବେଗେ ରତ୍ନୋଦଧି ଉଦରୁ ବାହାରି ଏକତ୍ରେ ନେତ୍ରକୁ ଦେଇ ଗତି
ଗୋ ଅଣିମାଦି, ବିରାଜନ୍ତି ଅବା ଅଷ୍ଟ ସିଦ୍ଧି । ୧୩ ।

ଗତି କରେ ଯେବେ ସୁକୁମାରୀ ପ୍ରୀତି ବିହରେ କି ମୂର୍ତ୍ତି ଧରି
କିବା ଶୋଭାବୀଚି ବହି ନବରୁଚି ମଧୁରେ ମନ୍ଦୁରେ ଗତି କରି
ଗୋ ନୂଆ କଥା ! ମନ୍ଦ ବାତେ ଚଳେ ସ୍ୱର୍ଣ୍ଣଲତା । ୧୪ ।

---

୭ । କରଭ—ହସ୍ତୀ ଶାବକ ।

୧୦ । ଉକଣ୍ଠିକା—( ସ୍ୱରବର୍ଣ୍ଣ ) ଉ ଅକ୍ଷର ପରି ଯାହାର କଣ୍ଠ । ମନସିଜ—କନ୍ଦର୍ପ, କାମଦେବ ।

୧୧ । କମ୍ବୁକଣ୍ଠୀର ବକ୍ଷୋରୁହ ( ସ୍ତନ ) ଶୋଭା ପାଉଅଛି, ଯେପରି ଚକ୍ରବାକ ପକ୍ଷୀପକ୍ଷିଣୀ ବସନତଳେ ଲୁଚି ଅଛନ୍ତି । ( ତର୍କଣା ) ବାସରେ—ଦିବସରେ । ଚକ୍ରବାକଦ୍ୱନ୍ଦ୍ୱ ଦିବସରେ ଏକତ୍ରିତ ନ ହେବା ଅସମ୍ଭବ ହେଲେହେଁ ଏ ( ଇନ୍ଦୁରେଖା ) ରାମା ହୋଇଥିବାରୁ ଅର୍ଥାତ୍ ରାମ ହୋଇ ନ ଥିବାରୁ ରାମଙ୍କ ଅଭିଶାପରେ ସେ ପକ୍ଷିମିଥୁନଙ୍କୁ ରାତ୍ରରେ ବିଚ୍ଛେଦରେ ରହି ଦିବସରେ ମିଳିବାର ବିପରୀତ ଘଟନା ଘଟାଇବା ଯଥାର୍ଥ ହୋଇଅଛି । ତାର ସ୍ତନ ଶୋଭା ଦେଖିଲେ ଜଣାଯାଏ ଯେ ଲତା ଗିରି ଦୁଇଟିକୁ ବହୁଛି କି ?

୧୧।୧୨ ପଦ । ଅଦ୍ଭୁତୋପମା ।

ବସିଲେ ସଧୀରେ ସୁରସିକା    ରତ୍ନପଟ୍ଟ ଖୋଟିତ କି ପତାକା
ପଞ୍ଚଶର ସନ୍ନ ଦହିବାକୁ ଦେହ ଅନେକ ଯତ୍ନ କି ଧ ଏ ଦଳା
ଗୋ ଜବ ଛବି, ନ ପାରିବେ ତାର ବସା-ଛବି । ୧୫ ।

ଶୋଇ ଥାଇ ଯେବେ ଅଣିଆଣିଁ    ପଲ୍ୟଙ୍କ ଅଙ୍କରେ ମୁଗ୍ଧମୁଗ୍ଧୀଁ
ବିରାଜେ କୁସୁମଦାମ କି ସୁଷମ ମର୍ମର ଶିଳେ କି ଶମ୍ପା ଶୋହି
ଗୋ ଶିତଘନେ ! ଶଙ୍କରୂପ କିବା ବିମୋହନେ । ୧୬ ।

ବେଶ ବସନର ଘରପାଟି    ବର୍ଣ୍ଣିବା ବାହୁଲ୍ୟ ହୋଇନ୍ତି
ନିମିଶ ନିପୁଣ ବିରଞ୍ଚି ରଚନ ସୀମା କି ବରାଙ୍ଗୀ ସରୁକଣ୍ଠୀ
ଗୋ ନୈପୁରତେ ! ନାହିଁ ନୋହିବ କେ ତା ରୂପରେ । ୧୭ ।

ସୁରକୁରଶୋଭି ସଖୀମେଳେ    ଚନ୍ଦ୍ରଶାଳାଚୂଳେ ଯାଇ ଖେଳେ
ଯେନେ ବିମ୍ବାଧରୀ, ବନ୍ଧୁ ମନୋହାରୀ ସୁରନାରୀ ସଙ୍ଗେ ରଙ୍ଗେ ଖେଳେ
ଗୋ ଅପସରୀ ! ସଙ୍ଗେ ଗୃରୁଧାରୀ କି ବିହର । ୧୮ ।

ଆଳାପ କରଇ ଅଳି ମେଳେ    ପସନ୍ଦବଚନା କୁତୂହଳେ
ମୁଖମୋଡ଼ାଭଙ୍ଗୀ ହାସ ଯାର ସଙ୍ଗୀ ଯୁବା ଦମ୍ଭ ଭାଙ୍ଗି ଦେବ ହେଳେ
ଗୋ ସୁରହିକା, ଜପାଇବ ତାର ନାମ ଏକା । ୧୯ ।

ପ୍ରେମାନନ୍ଦସିନ୍ଧୁ ମୁଖ ତାର    ଉଦେ ନିତ୍ୟେ ହାସ-ସୁଧାକର
ସୁଷମାତରଙ୍ଗ ବହି ନାନାରଙ୍ଗ ଖେଳିବାର କେଡ଼େ ଚମତ୍କାର
ଗୋ ମୃଗଦୃଷ୍ଟି, ସ୍ୱର୍ଗୀୟ ମାଧୁରୀ କରେ ବୃଷ୍ଟି । ୨୦ ।

ବିସ୍ତାର ଜଙ୍ଘନ୍ତ୍ର ନେଇ ପାଣି    ସ୍ୱଭାବେ ଚଞ୍ଚଳ ଥିଲି ପୁଣି
ହେବାରୁ ଯୁବତୀ ଲଜ୍ଜାବଶ ଗତି ମିଶି ଖଞ୍ଜରୀଟଗର୍ବ ହାଣି
ଗୋ ଦେବ ଝାଳି, ଯୁବା ଦମ୍ଭ ଭଙ୍ଗା ବଜ୍ର ଗୁଳି । ୨୧ ।

ବଳଶୋଭୀ ଶୋଭୀବଳି ବଳି    କଳି ହେବ କି ତା କଳି ଜଳି
ଅଳୀକ ନ ମାନ, ଦେଖିଛୁ ନୟନ ପଦ୍ମ ମଣି କରେ ଅଳି ଅଳି
ଗୋ କଣି ପୁଣି, ନେବ ତା କିଙ୍କିଣୀ କଣି କଣି । ୨୨ ।

---

୧୮ । ଗୃରୁଧାରୀ—ଶଚୀ ।

୨୨।୨୩।୨୪।୨୫ ପଦମାନ ଏକ ପ୍ରକାର ବ୍ୟାଘ୍ରଗନ୍ଧ ଓ ୨୬ । ୨୭ ପଦମାନ ଅନ୍ୟ ପ୍ରକାର ବ୍ୟାଘ୍ରଗନ୍ଧ ଅଳଙ୍କାରରେ ରଚିତ ହୋଇଅଛି ।

୨୨ ପଦ । ବଳଶୋଭୀ ( ନିବଳଶୋଭୀ ) ଶୋଭୀବଳୀକି ( ଶୋଭୀମାନଙ୍କୁ ) ବଳୁଛି । ତାହାକୁ କଳି କଳି ( ଯେତେ କଳନା କଲେ ସୁଦ୍ଧା ) କଳି ହେବ କି ? ଅର୍ଥାତ୍ କଳି ହେବ ନାହିଁ ।

ରମାର ମୁଖକୁ ପଦ୍ମ ବୋଲି ମଣି ଅଳି ( ଭ୍ରମରମାନେ ) ଅଳି କରନ୍ତି, ଅର୍ଥାତ୍ ତାକୁ ବେଢ଼ି ଗୁଞ୍ଜନ କରନ୍ତି । ତୁମ୍ଭେ ଏ କଥାକୁ ଅଳୀକ ( ମିଥ୍ୟା ) ନ ମାନ ( ମନେକର ନାହିଁ ), ମୁଁ ନୟନରେ ଦେଖିଛି । ପୁଣି ତାର କିଙ୍କିଣୀର କଣିକଣି ( କଣିକଣି ଶବ୍ଦ ) ଶ୍ରୋତାର ମନ କୁ କଣି ନେବ ।

କବରୀରେ ଛନ୍ଦ କର କର ଭାବି ନ ପାରିବେ ଭାବୀ ଭବ
ଦ୍ରବିବେ ଯା ନାମେ ହଂସାରୂଢ଼ ଭ୍ରମେ କାମ ଯିବେ ପ୍ରେମେ ଦ୍ରବ ଦ୍ରବ
ଗୋ ସ୍ମରପର, ଜପିବେ ତା ନାମେ ସ୍ମର ସ୍ମର । ୨୩ ।

ସାର ଶୋଭା ଏ ରସାର ସାର ତରଳ କଟାକ୍ଷ ତରତର
କରଭୋରୁ ବର୍ଣ୍ଣି କମିବ କମନ୍ତୁ ବକ୍ରତୁଣ୍ଡ ଗୁଣାକର କର
ଗୋ ବାଣୀ ଅଣି, ବର୍ଣ୍ଣି ନ ପାରିବ ବାଣୀ ବାଣୀ । ୨୪ ।

ଶିରୀଷାଙ୍ଗୀ କସେ ଶ୍ରୀର ଶିରୀ ପର କେ ତାହାର ପଣ୍ୟପର
ଧରଣୀକି ନାକ କରେ ଧୀର ଦେକ ଦ୍ରବ୍ୟ ଶୋଭା ରମ୍ୟାଧର ଧର
ଗୋ ରତ ମୂର୍ତ୍ତି, ଦର୍ଶନେ ଦିଏ ମୂରତ ରତ । ୨୫ ।

ବନ୍ଧୂକ ଅଧର ରସକଳା ସକଳ ଶାସ୍ତ୍ରଙ୍କୁ ଯୁକ୍ତିକଳା
କୁନ୍ଦ ସ୍ମିତ ହାସେ ସୁଧାରଦବାସେ ବାହ୍ୟ ବାହ୍ୟ ଯୋଷା କି ବାହ୍ଲ
ଗୋ ବାହୁତରେ, ହୃତ ନ ବରୀର ମୋହନୀରେ । ୨୬ ।

ନୟନମାନ ହେବ ରତି ଲବେ ତଳ ନାସାତଳ ଛବିଛବେ
ବିଭାରେ ସେ ବେଗ ଯୋଗୀଯୋଗଯାଗ ଭାଙ୍ଗିଦେବ ହସୁ ହସୁ ଲବେ
ଗୋ ସୁଲକ୍ଷଣୀ, ଲକ୍ଷ ଶୋଭା ବିଲକ୍ଷକାରିଣୀ । ୨୭ ।

ଯୁବକ ହୃଦକୁ ପଞ୍ଚଶର ବିନ୍ଧିବାର ସେ ତ ଷଷ୍ଠ ଶର
ଅମର ସୁନ୍ଦରୀ ହେବେ ତା କିଙ୍କରୀ ଅଳଙ୍କାରର ସେ ଅଳଙ୍କାର
ଗୋ ଅପସରୀ, ଯିବେ ତା ପ୍ରଭାକୁ ଅପସର । ୨୮ ।

---

୨୩ ପଦ । କର କର ( ଶୁଣ୍ଢଙ୍କ ପରି କର ମଧ୍ୟ ) କବରୀରେ ତା ଛବି ( ଶୋଭାକୁ ) ଭାବୀ ଭବ ( ଭବିଷ୍ୟତ୍ କାଳଯାକ ) ଭାବି ପାରିବେ ନାହିଁ । ଯା ନାମରେ ହଂସାରୂଢ଼ ( ବ୍ରହ୍ମା ) ଦ୍ରବି ଯିବେ । କାମ ( କନ୍ଦର୍ପ ) ପ୍ରେମେ ଦ୍ରବ ଦ୍ରବ (ପ୍ରେମରେ କ୍ରମେ କ୍ରମେ ବିଗଳିତ ହୋଇ) ଦ୍ରବି ଯିବେ ( ବୋହିଯିବେ ) ସ୍ମରପର ( ଶିବ ) ତା ନାମରେ ସ୍ମର ସ୍ମର ( ତାଙ୍କର ଶତ୍ରୁ କନ୍ଦର୍ପର ନାମକୁ ବାରଂବାର ) ଜପିବେ ।

୨୪ ପଦ । ସାରଶୋଭା ଏ ରସାର ସାର ( ଶ୍ରେଷ୍ଠ ) ଅଟେ । ତାର ତରତର ( ଚଞ୍ଚଳ ) କଟାକ୍ଷ ( ବାଙ୍କଚାହାଣି ) ଅଟେ । କରଭୋରୁ ( କରଭ ପରି ଉରୁବିଶିଷ୍ଟ ନାୟିକା ) କୁ ବର୍ଣ୍ଣି ( ବର୍ଣ୍ଣନା କରୁ କରୁ ) କମନ୍ତୁ ( ଦୁଃଖ ହେତୁରୁ ଅର୍ଥାତ୍ ବର୍ଣ୍ଣନା କରି ନ ପାରି ) ଗୁଣାକର ( ଗୁଣର ଖଣି ) ବକ୍ରତୁଣ୍ଡ ( ଗଣେଶ ) ଙ୍କର କର ( ହସ୍ତ ) ଥରିବ । ବାଣୀ ବାଣୀ ( ସରସ୍ୱତୀଙ୍କ ବଚନ ) ତାର ବାଣୀ ( ବଚନ ) ଅଣି ( ଛଟାକୁ ) ବର୍ଣ୍ଣି ପାରିବ ନାହିଁ ।

୨୫ ପଦ । ସେ ଶିରୀଷାଙ୍ଗୀର ( ଶିରୀଷ ଫୁଲ ପରି ମୃଦୁ ଅଙ୍ଗୀର ) ଶିରୀ ( ଶୋଭା ) କି ଶିରୀ ( ଲକ୍ଷ୍ମୀ ହେବ ) । ତା ପରି କିଏ କି ? ସେ ପରୀ ( ଅପସରୀ ) ପରି ( ସଦୃଶ ) । ରମ୍ୟାଧର ଦ୍ରବ୍ୟ ( ସ୍ୱର୍ଗୀୟ ) ଶୋଭା ଧରି ଧରଣୀକି ( ପୃଥିବୀକୁ ) ନାକର ( ସ୍ୱର୍ଗର ) ଦେକ କରିଅଛି । ସେ ରତିମୂର୍ତ୍ତି ଅଟେ । ତାର ମୂର୍ତ୍ତି ଦର୍ଶନେ ( ତାହାକୁ ଦେଖିଲେ ) ରତି ( ଅନୁରାଗ ବା ଆସକ୍ତି ) ଦିଏ ( ଜନ୍ମାଏ ) ।

୨୬ ପଦ । ରଦବାସ—ଓଷ୍ଠ ।

ବିଧି ଶେଷ ବଦନଙ୍କୁ ପାଇ — ବର୍ଣ୍ଣିଲେ ତା ଶୋଭା ନୋହେ ଇତି
ହୋଇ ସ୍ଥିର ନାରୀ ବର୍ଣ୍ଣିବ କପଟ ବର୍ଣ୍ଣନା ଅଲଣା ହେବ ଯହିଁ
ହେ ଧୀରମଣି ! ଠିକେ କହିଲ ଯା ସତ୍ୟବାଣୀ । ୨୯ ।

ତାପସୀବେଶେ ତା ପାଶେ ରହି — ଛବି ଅନୁରାଗେ ଦୀକ୍ଷା ଦେଇ
ନାରୀ ପୁରନ୍ଦରୀ ଚିତ୍ରପଟେ ଧରି ଅଣିଛୁ ଯା ଛବି କାହିଁ ନାହିଁ
ହେ ଏହା ଭୂପି ! ଦେଲ ଚିତ୍ରପଟ ଦୂତୀ ହସି । ୩୦ ।

ଚିତ୍ରପଟ ଧରୁ ଜାତ ସ୍ତମ୍ଭ — ଭାଙ୍ଗିଗଲା ନୃପସୁତ ଦମ୍ଭ
ରାଧା ଭାବେ ଭକ୍ତ ଶ୍ରୀଚୈତନ୍ୟଛବି ଗୋଲୋକର ସତେ ହେବ ସ୍ତମ୍ଭ
ହେ ନୀତ ଚିନ୍ତ ! ରହିବ କି ରାଧାପଦେ ଭକ୍ତି । ୩୧ ।

## ଅଷ୍ଟମ ଛାନ୍ଦ

ରାଗ—ଢଉଣୀକ

ପୁଂସ ବାଳା ବେନି ଚିତ୍ର ଦରଶନ ସୁଲଳିତ ଛାନ୍ଦ ମଧୁର
ହୃଦୟ କେକୀଙ୍କ ପ୍ରମୋଦ ପ୍ରଦାନେ ହେବ ନବୋଦ୍ଧତ ମୁଦିର
ବିଜ୍ଞ ସୁଧୀରେ ! ଭାବୋଦଧି ଜାତ ଚନ୍ଦ୍ରମା,
ରସିକ ଚକୋର ଉଲ୍ଲାସର ଘର କୁମୁଦର ମୁଦ ପ୍ରତିମା । ୧ ।

ନୃପତନନ୍ଦନା ବେଗେ ଚିତ୍ରେ ଦେଖେ ନୈସର୍ଗିକ ଶୋଭା ସହଜେ
ସଞ୍ଚାରିକା କଥା ହେଜି ହେଜି ମନେ ଶତ ମନୋରଥ ସରଜେ
କହେ ମତିକି ! ଭାଗ୍ୟକୁ ହେବ୍ରା ଏ ମୋହିନୀ,
କାମ ତମ ଅଙ୍ଗ ଦେଖାନ୍ତା କି କୁହି ରହିଲେ ଅମୀୟୁଦାୟିନୀ । ୨ ।

---

୧ମ ପଦ । ଏ ପୁଂସ ବାଳା ବେନି ( ଉଭୟଙ୍କର ) ଚିତ୍ରଦର୍ଶନ ସୁଲଳିତ ମଧୁର ଛାନ୍ଦ ଅଟେ । ହୃଦୟକେକୀଙ୍କ ( ହୃଦୟରୂପକ ମୟୂରଙ୍କୁ ) ପ୍ରମୋଦ ( ଆନନ୍ଦ ) ପ୍ରଦାନ କରିବାରେ ନବ ଉଦିତ ମୁଦିର ( ନୂଆ ଉଦୟ ହୋଇଥିବା ମେଘଖଣ୍ଡ ) ପରି ହେବ । ବିଜ୍ଞ ସୁଧୀରେ ( ହେ ଜ୍ଞାନୀ ପଣ୍ଡିତମାନେ ) ଭାବୋଦଧିଜାତ ଚନ୍ଦ୍ରମା ( ସମୁଦ୍ରରୁ ଚନ୍ଦ୍ର ଜାତ ହେଲା ପରି ଏ ଛାନ୍ଦ ଭାବସମୁଦ୍ରରୁ ଜାତ ଚନ୍ଦ୍ର ପରି ମନୋହର ହୋଇଅଛି ) । ରସିକଚକୋର ଉଲ୍ଲାସର ଘର କୁମୁଦର ମୁଦ ପ୍ରତିମା ( ଚନ୍ଦ୍ର ଚକୋର ପକ୍ଷୀର ଆନନ୍ଦର ସ୍ଥାନ ଓ କୁମୁଦର ଆନନ୍ଦଦାୟକ ପ୍ରତିମା ହେଲା ପରି ଏ ରସିକମାନଙ୍କୁ ଆନନ୍ଦ ପ୍ରଦାନ କରିବ ) ।

୨ୟ ପଦ । ୧ମ ଅର୍ଥରେ—ନୃପତନନ୍ଦନ ଅବେଗେ ଚିତ୍ରେ ( ଚିତ୍ରପଟରେ ) ନୈସର୍ଗିକ ( ସ୍ୱର୍ଗୀୟ ) ଶୋଭା ଦେଖିଲା । ସଞ୍ଚାରିକା ( ଦୂତୀ )ର କଥାକୁ ହେଜି ହେଜି ଶତ ମନୋରଥ ( ବହୁପ୍ରକାର ଇଚ୍ଛା ) ସର୍ଜିଲା ( କଲା ) । ମତିକି ( ମନକୁ ) କହିଲା, ଭାଗ୍ୟକୁ ଏ ମୋହିନୀ ( ମୋହକାରିଣୀ ) ହୁଅନ୍ତା କି ? ଅର୍ଥାତ୍ ଏ ମନୋହାରିଣୀକୁ ମୁଁ ଲଭନ୍ତି କି । ଅମୀୟୁଦାୟିନୀ ( ଅମୃତବର୍ଷିଣୀ ) ରହିଲେ ( ମୋ ପାଖେ ଥିଲେ ) କାମତମ ( କାମତାପ ) ଅଙ୍ଗ କି କୁହି ଦେଖାନ୍ତା ଅର୍ଥାତ୍ ମୋତେ ପୀଡ଼ା ଦଅନ୍ତା ନାହିଁ ।

ଅଙ୍ଗଦେଶ ଆହା ଅତି ମନୋହର ବିରାଜିତ ଯହିଁ ସୁଷମା
ମାଧୁରୀ କୁନ୍ତଳେ ବଶ କରେ ରଙ୍ଗେ ଧରାରେ କି ହେବ ଉପମା
ଅଣି ବିଦେହ ! କାଞ୍ଚି ଭଲ ମଲ ଭୂଷିତା,
ଅପସରୀବାଚ ଶୁଣିଛି ଶ୍ରବଣେ କେଉଁ ଗୁଣେ ହେବେ ସମ ତା । ୩ ।
ଚେଲ ପୟୂରରେ ଲୁଟି ବିସ୍ତାରିଛି ପ୍ରଭୁ ଗମ୍ଭୀରତା ଦ୍ୱିଗୁଣ
ସୁରତରଙ୍ଗିଣୀ ଅଙ୍ଗେ କରେ ଖେଳା ସୁଷମା ବଳଇ ବଚନ
ମଲ୍ଲିକଡ଼ି ତ ! ସଦା ଫୁଟି ଦଶେ ଅଞ୍ଚଳେ,
ସଞ୍ଚାରିକା କଥା ସତ ବୋଲି ଏକା ମନକୁ ଆସଇ ରଞ୍ଚଲେ । ୪ ।

---

୨ୟ ପଦ । ୨ୟ ଅର୍ଥରେ—ବେଗେ ନୃପତିନନ୍ଦନା ( ରାଜକନ୍ୟା ) ଉଦେ ସହଜେ ନୈସର୍ଗିକ ଶୋଭା ଦେଖିଲା; ଦୂତୀର କଥା ମନରେ ହେଜି ହେଜି ଶତ ମନୋରଥ ସର୍ଜିଲା । ମତିକୁ ( ମନକୁ ) କହିଲା, ଭାଗ୍ୟକୁ ଏ ମୋହନୀ ହନ୍ତା କି ( ଅର୍ଥାତ୍ ମୋ ଭାଗ୍ୟକୁ ଏ ଛବି ବିଷ୍ଣୁଙ୍କର ମୋହନୀ ରୂପ ହୁଅନ୍ତା କି ) । ଅମୀୟଦାୟିନୀ ( ଅମୃତ ପରିବେଷଣକାରିଣୀ ମୋହନୀ ) ରହିଲେ ( ମୋ ନିକଟରେ ରହିଲେ ) କାମତମ ଆଉ କି କୁଟ ଦେଖାନ୍ତା ( କାମରୂପକ ଅସୁର ଆଉ କି କପଟତା ଦେଖାନ୍ତା, ଅର୍ଥାତ୍ ଏ ଛବି ଯଦି ମାୟାକୀବନ୍ତ ରୂପ ପ୍ରାପ୍ତ ହୁଅନ୍ତା ମୋର ଅଉ କାମଭୟ ରହନ୍ତା ନାହିଁ । )

୩ୟ ପଦ । ୧ମ ଅର୍ଥ—ନୃପତିନନ୍ଦନ ଭାବିଲା :—ଅଙ୍ଗଦେଶ ( ଶରୀର ) ଯହିଁ ସୁଷମା ବିରାଜିତ, ଆହା ! ତାହା ଅତି ମନୋହର ଅଟେ । ମାଧୁରୀ କୁନ୍ତଳେ ( ମନୋହର କେଶରାଶି-ଦ୍ୱାରା ) ରଙ୍ଗେ ( ସ୍ନେହରେ ) ବଶ କରେ ( ବଶୀଭୂତ କରେ ); ତାକୁ ଧରାରେ କି ଉପମା ଅଛି ଅର୍ଥାତ୍ ଉପମା ନାହିଁ । ଶୁଣିଛି ଶ୍ରବଣେ ( କାନରେ ଶୁଣିଛି ) ଅପସରୀବାର (ଅପ୍ସରୀମାନେ) କେଉଁ ଗୁଣେ ହେବେ ସମ ତା ଅର୍ଥାତ୍ କୌଣସି ପ୍ରକାରେ ତାର ସମାନ ହେବେ ନାହିଁ । ଏ ସ୍ତ୍ରୀ କାଞ୍ଚି ଓ ଭଲ ମଲ ଭୂଷିତା ( କାଞ୍ଚି ଓ ମଲଦ୍ୱାରା ଶୋଭିତା ହୋଇଅଛି ) ଓ ବିଦେହ ( କନ୍ଦର୍ପ ) ଅଣି ( ମୋ ମନରେ ଜାତ କରୁଅଛି ) ।

୩ୟ ପଦ । ୨ୟ ଅର୍ଥରେ—ରାଜକନ୍ୟା ଭାବିଲା, ଅଙ୍ଗଦେଶ ( ଅଙ୍ଗରାଜ୍ୟ ) ଯହିଁ ସୁଷମା (ଶୋଭା) କିମ୍ବା ଏ ରାଜପୁତ୍ର ବିରାଜିତ, ତାହା ଆହା ଅତି ମନୋହର ଅଟେ । ମାଧୁରୀ କୁନ୍ତଳେ ( ମନୋହର କୁନ୍ତଳ ଦେଶକୁ ) ବଶ କରେ ( ଅଧୀନସ୍ଥ କରିଅଛି ), ଧରାରେ କି ଉପମା ହେବ ଅର୍ଥାତ୍ ଅଙ୍ଗ ଦେଶ ତୁଳନାରେ ପୃଥିବୀରେ ଆଉ ଦେଶ ନାହିଁ । ବିଦେହ ଓ ଭଲ ମଲ୍ଲ ଥିବା କାଞ୍ଚି ଦେଶର ଅଣି ( ଗର୍ବ ) କେଉଁ ଗୁଣେ ତା ( ଅଙ୍ଗଦେଶର ) ସମ ହେବେ ( ଅର୍ଥାତ୍ ସମାନ ନ ହୋଇ ) ଅପସରିବାର ( ହଟିଯିବାର ) କାନରେ ଶୁଣିଛି ।

୪ର୍ଥ ପଦ । ୧ମ ଅର୍ଥ—ରାଜପୁତ୍ର ଭାବିଲା, ଚେଲ ( ବସ୍ତ୍ର ) ପୟୂରେ ( ପାଦରେ ) ଲୁଟି ପ୍ରଭୁର ଗମ୍ଭୀରତାକୁ ଦ୍ୱିଗୁଣ ବିସ୍ତାର କରୁଅଛି । ସୁରତରଙ୍ଗିଣୀ ଅଙ୍ଗେ ( ଉତ୍ତମ କେଳି-ପରାୟଣାର ଶରୀରରେ ) ସୁଷମା ( ଶୋଭା ) ଖେଳା କରେ ( ଖେଳୁଛି ), ତା ବଚନ ବଳେ ( କଥାରେ କହି ହେବ ନାହିଁ ) । ମଲ୍ଲିକଡ଼ି ( ଅଳଙ୍କାରବିଶେଷ ) ସଦା ( ସବୁବେଳେ ) ଅଞ୍ଚଳେ ( ବସନରେ ) ଫୁଟି ଦଶେ ( ଦିଶୁଛି ) । ସଞ୍ଚାରିକା ( ଦୂତୀ )ର କଥା ସତ ବୋଲି ଏକା ମନକୁ ଚଞ୍ଚଳ ଆସଇ, ଅର୍ଥାତ୍ ସେ ଅତ୍ୟନ୍ତ ସୁନ୍ଦରୀ ଅଟେ ।

୪ର୍ଥ ପଦ । ୨ୟ ଅର୍ଥରେ—ରାଜକନ୍ୟା ଭାବିଲା, ଚେଲ ପୟୂରରେ ଲୁଟି (ଚେଲ ଦେଶ ଦାସତ୍ୱ ସ୍ୱୀକାର କରି) ପ୍ରଭୁର ଗମ୍ଭୀରତାକୁ ଦ୍ୱିଗୁଣ ବିସ୍ତାରିଛି (ପ୍ରକାଶ କରିଅଛି) । ସୁରତରଙ୍ଗିଣୀ

କାଶୀପତି ଅରି ରତିଙ୍କ ତୁଳନା ଗଜସ୍ୱାଭୂଷା ଏ ବଧୂରେ
ସୁଖ୍ୟାତି ଖାତିରେ ମୈତ୍ରୀ ପାଇଁ ବରେ ବପତି-ପତିମ୍ନୀରତରେ
କରବାଳକୁ, ଗୃହ୍ନି ବଶ ହେବେ ଭୂପାଳେ,
ହିମାଚଳବାସୀ ଭୁବନେ ରଟିବେ ନାକେ ତାହ୍ନି ନାହିଁ ଯା ତୁଲେ । ୫ ।
କାଶ୍ମୀର କାବେରୀ ରଞ୍ଜନରେ ଶିରୀ ବରଧନ ଅତି ବହୁତ
ମାଳବରେ ଲୋକେ ଗାଉଛନ୍ତି ଜଶ ଊର୍ମିକା ଦଶେ ସୁସଞ୍ଚ ତ
କନ୍ୟା କୁମାରୀ ! ଦେଶରେ କାହିଁ ବା ଯା ସରି
ପ୍ରୀତିରେ ସୁମନ ହେବାର କେରଳ ସମ୍ଭବଇ ଗୃହ୍ନି ଯା ଶିରୀ । ୬ ।

---

(ଗଙ୍ଗା) ଅଙ୍ଗେ (ଅଙ୍ଗଦେଶରେ ବା ଆଧୁନିକ ଭାଗଲପୁରରେ) ଖେଳା କରେ (ବହି ଯାଉଛି) । ତାର ସୁଷମା (ଶୋଭା) ବଚନ ବଳେ (ବର୍ଣ୍ଣି ହେବ ନାହିଁ) । ଅଞ୍ଚଳେ (ଅଙ୍ଗଦେଶରେ) ସଦା (ସର୍ବଦା ଅର୍ଥାତ୍ ସବୁ ଋତୁରେ) ମଲ୍ଲି କଢ଼ି ଫୁଟେ (ମଲ୍ଲି ଫୁଲ କଢ଼ ଧରେ ଓ ଫୁଟେ) । ସଞ୍ଚାରିକା (ଦୂତୀ)ର କଥା ସତ ବୋଲି ମନକୁ ଚଞ୍ଚଳ ଆସେ ଅର୍ଥାତ୍ ଦୂତୀର କଥା ସତ ଓ ଅଙ୍ଗ ଦେଶର ପ୍ରାକୃତିକ ଦୃଶ୍ୟ ଅତ୍ୟନ୍ତ ମନୋହର ।

୫ମ ପଦ । ୧ମ ଅର୍ଥ :—ରାଜପୁତ୍ର ଭାବିଲା, ଏ (ଇନ୍ଦୁରେଖା) ବଧୂରେ ଗଜସ୍ୱାଭୂଷା (ଉତ୍ତମବର୍ଣ୍ଣା ସ୍ତ୍ରୀମାନଙ୍କ ଭୂଷଣସ୍ୱରୂପା) ହୋଇଥିବାରୁ କାଶୀପତି ଅରି (ଶିବଙ୍କ ଶତ୍ରୁ, ଅର୍ଥାତ୍ କାମଦେବ)ର ରତି ଏହାର କି ତୁଳନା ? ଅର୍ଥାତ୍ ଏହା ସଙ୍ଗେ ତୁଳନା ଯୋଗ୍ୟ ନୁହେଁ । ସୁଖ୍ୟାତି ଖାତିରେ (ଏହାର ଯଶକୁ ବିଶ୍ୱାସ କରି) ପତିମ୍ନୀ (ପତ୍ନୀ) ରତରେ (ପ୍ରେମରେ) ମୈତ୍ରୀ (ସଙ୍ଗଲାଭ) ପାଇଁ ବପତି ବରେ (ବପତିକୁ ବରଣ କରି ଆଣିଅଛି) । ଏହାର କର (ହସ୍ତ) ଓ ବାଳ (କେଶ)କୁ ଭୂପାଳେ (ରାଜାମାନେ) ଗୃହ୍ନି ବଶ ହେବେ (ବଶୀଭୂତ ହେବେ) । ହିମାଚଳବାସୀ (ଦେବତା ଓ ଗନ୍ଧର୍ବମାନେ) ଭୁବନେ (ପୃଥିବୀରେ) ରଟିବେ (ଘୋଷଣା କରିବେ), ନାକେ (ସ୍ୱର୍ଗରେ ବା ଏହାର ନାସାର ତୁଳନାରେ) ଯା (ଏହାର) ତୁଲ (ସମାନ) କାହିଁ ନାହିଁ ।

୫ମ ପଦ । ୨ୟ ଅର୍ଥ—ଇନ୍ଦୁରେଖା ଭାବିଲା, ଏ (ରାଜପୁତ୍ର) ବଧୂରେ ଗଜସ୍ୱା (ଗୋରଚନା) ଭୂଷା (ଭୂଷିତ) ହୋଇଅଛନ୍ତି, ଅଥବା ଗୌରୀଭୂଷା=ମହାଦେବ ସଦୃଶ ହୋଇଅଛନ୍ତି । କାଶୀପତି ଅରି (କାମଦେବ) ଏହାଙ୍କର ସୁଖ୍ୟାତି ଖାତିରେ (ଏହାଙ୍କର ସୁଖ୍ୟାତିକୁ ମାନି) ମୈତ୍ରୀ (ମିତ୍ରତା ପାଇଁ) ନିରତରେ (ସର୍ବଦା) ବପତିପତି (ବସ୍ତୁ କ୍ରେ) ବରେ (ବରଣ କରୁଅଛି) । କରବାଳକୁ (ଏହାଙ୍କର ଖଣ୍ଡାକୁ ଗୃହ୍ନି) ଭୂପାଳେ (ଭୂପାଳର ବୀରମାନେ) ବଶୀଭୂତ ହେବେ । ହିମାଚଳବାସୀ ଭୁବନେ (ହିମାଚଳବାସୀ ପୃଥିବୀର ବୀରମାନେ) ନାକେ (ସ୍ୱର୍ଗରେ) ଯା ତୁଲେ (ଏହାଙ୍କ ତୁଳନାରେ) ନାହିଁ (କେହି ଯୋଦ୍ଧା ନାହାନ୍ତି) ଏହା ରଟିବେ (ଘୋଷଣା କରିବେ) ।

୬ଷ୍ଠ ପଦ । ୧ମ ଅର୍ଥ—ରାଜପୁତ୍ର ଭାବିଲା, କାଶ୍ମୀର (ହରିଦ୍ରା) ଓ କାବେରୀ (କୁଙ୍କୁମ) ରଞ୍ଜନଦ୍ୱାରା (ହଳଦୀ ଲଗାଇ ଓ କୁଙ୍କୁମ ଲେପନ ଥିବାରୁ) ଏହାର ଶିରୀ (ଶୋଭା) ବହୁତ ବର୍ଦ୍ଧନ ହୋଇଅଛି (ବଢ଼ିଅଛି) । ମାଳବରେ (ମାଳବ ରାଜରେ) ଲୋକେ (ଲୋକମାନେ) ଏହାର ଯଶ ଗାନ କରୁଅଛନ୍ତି; ଊର୍ମିକା (ମୁଦି) ସୁସଞ୍ଚ (ଅତି ମନୋହର) ଦିଶୁଅଛି । ଦେଶରେ କେହି କନ୍ୟା ବା କୁମାରୀ ଏହାର ସରି କାହିଁ ? ଅର୍ଥାତ୍ ନାହାନ୍ତି । ଯାହା ଶିରୀ (ଶୋଭା) ଗୃହ୍ନି ସୁମନ (ଦେବତାମାନେ) ପ୍ରୀତିରେ କେରଳ (ଭକମଗାକେଳା) ହେବାର ସମ୍ଭବେ (ମୁଁ ଅନୁମାନ କରୁଅଛି) ।

ସୁନ୍ଦରପଣଙ୍କୁ ପଟାନ୍ତର କାହିଁ ଜଗତରେ ନୋହୁଅଛି ନୋହିବ
ଅଙ୍ଗ ଦେଖେଶେ ସତେ ମୋତେ ଘଟାଇବ ଦଇବ ମୋ ଭାଗ୍ୟ ଦଶିବ
ଶୈଳ ଦକ୍ଷିଣୀ, ଅଙ୍ଗକୁ ଅତ୍ୟନ୍ତ ମାନଲ
ସିନ୍ଧୁର କମଳା ଅଙ୍ଗଶିରୀ ତୁଳା କଲେ ସମ ହେବ ଦାଶଲ । ୭ ।

ବୀର ଭାବେ ବାଳୀ ପରି ଅଜ ନାହିଁ ହୋଇଅଛି ଏକା ଏ ସମ୍ଭବ
ଚନ୍ଦ୍ରଙ୍କୁ ତୁଳନ୍ତି ସୁନ୍ଦର ପଣରେ ତୁଳିଲେ କି ଶୋଭା ଦଶିବ
ସେ ସକଳଙ୍କ, ଅକଳଙ୍କ ଏହୁ ମୂରତି,
ପଙ୍କେରୁହ ମୁଖ ନୟନେ ଦେଖିଲେ କିଏ ଅବା ଯିବ ବରତି । ୮ ।

କେଳିକଳା ଥିଲେ ବୋଲୁଥାନ୍ତି ବାଣୀ ସୁମନ ସମ୍ଭାରେ ପୂଜଣା
ଅହ୍ନାରେ ଦଇବ ଫାଟିଯାଏ ବକ୍ଷ ଦେଖାଇଲୁ ଛାୟା ରତନ
ଚମ୍ପାବତୀଙ୍କ, ସତେ ମନାଇବ ଭ୍ରମରେ,
ପାରଦକୁ ମୁଠା ଭିତରେ ଧରିବା ପରି ଆଶା ମୋର ବାସ୍ତୁରେ । ୯ ।

କାଟବାଡ଼ ପୁରେ ଏ ଛବି ଗୃହିଲେ ନ ଅସେ ବରାଟତନୟ
ନ ଲଭିଲେ ଗୃହେ ମହାସୁତ କାହୁଁ ହୋଇବ କଳଶି ବିସ୍ମୟ
ହରସୁତ ଯେ, ରାମସୁତ ମାଏ ନ ଗୃହି
ନାକଷାତନୁଜ ଭାବରେ ତା କାଣ୍ଡ ସତତ ହୃଦୟେ ମାରଇ । ୧୦ ।

ଧନ୍ଦ ହୋଇ ଯାର ରୂପକୁ ଗାଇବେ ବନ୍ଦନେ କ୍ରନ୍ଦର ଲଲନା
ରାମ ଲକ୍ଷଣଙ୍କୁ ବହୁଛି ସହଜେ ବରହେ ସେ ଦିଏ ଯାତନା
ଲୋଭ ବଳାବ, ଦେଖି ଏ ଅତୁଳ ଛବିକି,
ବିରଞ୍ଚି ରଚଛି ଏ ଭୀମ ସୁନ୍ଦର କାମେ ଦୁଃଶାସନ ଭାବି କି । ୧୧ ।

---

୬ଷ୍ଠ ପଦ । ୨ୟ ଅର୍ଥ—ଇନ୍ଦୁରେଖା ଭାବନ୍ତି, କାଶ୍ମୀର କାବେରୀ ରଞ୍ଜନରେ (କାଶ୍ମୀର ଓ କାବେରୀ ରାଜ୍ୟମାନଙ୍କୁ ଶାସନ କରୁଥିବାରୁ) ଶିରୀ (ଲକ୍ଷ୍ମୀ ବା ଧନ) ଅତି ବହୁତ ବର୍ଦ୍ଧିତ ହୋଇଅଛି (ବଢ଼ିଅଛି)। ଉର୍ମିକା (ମୁଦ୍ରି ବା ଲୁଗାକୁଞ୍ଚ) ଅତି ମନୋହର ଦେଖାଯାଉଅଛି। ଯୁା ସରି (ଏହାଙ୍କ ତୁଳନାରେ) କନ୍ୟାକୁମାରୀ ଦେଶରେ (ଦକ୍ଷିଣର କୁମାରୀକା ଅଞ୍ଚଳରେ) କାହିଁ? ଅର୍ଥାତ୍ କେହି ନାହିଁ। ଯାହା ଶିରୀ (ଧନ) ଗୃହି ପ୍ରୀତରେ କେରଳ (କେରଳ ଦେଶର ନୃପ) ସୁମନ (ସନ୍ତୁଷ୍ଟ) ହେବାର ସମ୍ଭବେ (ମୁଁ ସମ୍ଭବ କରୁଛି)।

୭। ଶୈଳ ଦକ୍ଷିଣୀ—ଦକ୍ଷିଣୀ ଲୁଗା ବା ଶାଢ଼ୀ, ଦକ୍ଷିଣରେ ଥିବା ଶୈଳଦେଶ। ସିନ୍ଧୁର କମଳା—ସିନ୍ଧୁଦେଶର ଧନ; ସିନ୍ଧୁରୁ ଜାତ ହୋଇଥିବା ଲକ୍ଷ୍ମୀ। ୮। ବାଳୀ—ସ୍ତ୍ରୀ; ମର୍କଟରାଜ। ୯। କେଳିକଳା—ସରସ୍ୱତୀଙ୍କ ବୀଣା; ଲେଶମାତ୍ର ପ୍ରୀତି। ଚମ୍ପାବତୀ—ଅଙ୍ଗଦେଶର ପ୍ରାଚୀନ ରାଜଧାନୀ; ଚମ୍ପାବୃକ୍ଷ। ଭ୍ରମରେ—ଭ୍ରମରମାନେ; ଭୁଲରେ।

୧୦। ନାକଷା ତନୁଜ—ବିଭୀଷଣ। ୧୧। ରାମଲକ୍ଷଣ—ମୃଗନେତ୍ର; ମୃଗଜାତୀୟ ପୁରୁଷର ଲକ୍ଷଣ।

କରିବରଗତି ଗଉରୀସେବାରେ କଲ୍ ପଣ ଥିବ ନିରତ
କୃପାମୁକଟାକ୍ଷା ଶ୍ୟାମାତୋଷବ୍ରତ ବେଖିରେ ହେବ ବିରଚିତ
ମୋହି ମୁନିକି, ଲଭିବି ବରମୁକତିକି
ଶିବନୀରତରେ ପ୍ରଣୟପଥରେ ଲଭିବି ତେବେ ମୁଗତିକି । ୧୨ ।

ଏହା ଦୁଇ ପାଇଁ ଦୁଇକି ଦେବଇଁ ଦୁଇକି କରାଇ ସ୍ୱର୍ଣ୍ଣରେ
ପାଞ୍ଚ ହେବ ସିନା ପାଞ୍ଚପତି ପୂଜା ପାଞ୍ଚ କରୁଛି ମୋ ମନରେ
ଏକ କହିବି, ଯୋଗଚରଣକୁ ବୁଝିବି
ନକ୍ଷତ୍ରରାଶିକି ଗଣାଇ ଗଣକେ ଅଠରକୁ ପୂଜି ରହିବି । ୧୩ ।

ହନୁ ଯା ନନ୍ଦନ ନନ୍ଦନ ସାନୁଜ ସଖାସୁତ କିସ କରନ୍ତା
ହରି-ସୁତ-ପତି ସୁତା-ମାତା-ସୁତ ଭାବେ ଯଦି ଏଠୁ ଗୃହାଁନ୍ତା
ଧନ୍ୟ ମଣନ୍ତି ! ଜୀବନକୁ ତେବେ ମୋହର,
ଦଣ୍ଡେ ନ ଛାଡ଼ନ୍ତି ବନ୍ଧୁଭାବ ଧେନି ତୋଷୁଥାନ୍ତି ନିଶି ବାସର । ୧୪ ।

କୁମାର ବୋଲିବା ଅଯଥାର୍ଥ ନୋହେ ଘାରି ହୋଇ ମରେ ବିରହେ
ସୁରତି ଦେଖିଲେ ସ୍ୱପନ ଦେଖିବେ ଅପସରୀ ଲୋଭେ ଶୂର ହେ
ଶୋଭା ବଦନ ! ଜାତ କରାଇବ ମଦନ,
ଯକ୍ଷନାରୀ ଲକ୍ଷ ନୋହେ ସମକକ୍ଷ ମାନିବେ ଗରଳ ଭକ୍ଷଣ । ୧୫ ।

ପ୍ରିୟ ବଦନ ତ ସ୍ୱଭାବେ ସୁନ୍ଦର ଏ ପୁଣି ସୁନ୍ଦର ସହଜେ
ସୁନ୍ଦରେ ସୁନ୍ଦର ମିଶ୍ରିତ ହେବାରୁ ଈଶ ଏ ସୁଷମା ସମାଜେ
ସତେ ଲଭିବ ! ସୁମନାବରେ ମନାଇବ
ନରସିଂହେ ବହୁ ଭାବରେ ବୁଝାଇ ଅଣିମାଦି ହେଲା କରିବ । ୧୬ ।

କବିତା ସଦୃଶ ରସପୂର୍ଣ୍ଣ ପ୍ରତେ ସବିତା ସମାନ ଶୋଭନ
ଭ୍ରୂଲତା ଅନଙ୍ଗକୋଦଣ୍ଡ ପରାୟେ ତଳ ଛଳ ପଦ୍ମଲୋଚନ
ବଙ୍କ ଗୃହାଁଣି ! ବଳେ ଦଳେ ଶଙ୍କାଭ୍ରମିଣୀ
ଅନିରୁଦ୍ଧ ଉଷା ପରସଙ୍ଗ ଏଥି ମାନସରେ ହୁଏ ଭାଳେଣି । ୧୭ ।

ସୁବଶୀକରଣ ବିମଳ ମାଧୁରୀ ଉଚ୍ଚାଟନ ବେଶଭଙ୍ଗିମା
ବଦନ ମୋହନ ନୟନ ସ୍ତମ୍ଭନ ଏ ବିଚକ୍ଷ ଚକ୍ଷ ପ୍ରତିମା
ଇନ୍ଦ୍ରଜାଲ କି, ବିସ୍ତାରିଛୁ କେଉଁ କୁହୁକୀ ?
ଅବଶ ଅବେଶ ଶିଖାଉଛି ଗୃଣ୍ଡେ କରି ପ୍ରଲୋଭନ ଭେଳିକି । ୧୮ ।

---

୧୨ । କରିବରଗତି—ଗଜରାଜଗମନା; ଶ୍ରେଷ୍ଠ ଅଶ୍ୱପ୍ର ମନେ କର । ଗଉରୀ—ସୁନ୍ଦରୀ ସ୍ତ୍ରୀ; ଦୁର୍ଗା । ଶ୍ୟାମା—ତପ୍ତହେମାଙ୍ଗୀ, ଦୁର୍ଗା, ଉତ୍ତମ ହେମବର୍ଣ୍ଣା ସ୍ତ୍ରୀ । ବିରଚିତ—ରଚିତ; ବୀରର ଚିତ୍ତ ବା ମନ । ମୋହି ମୁନିକି—ମୁନି ମୋହଗାକୁ; ମୁନି କି (କଅଣ) ମୋହି (ମୋହିତ କରି) । ମୁକତିକି—ମୁକ୍ତିକି, ମୁ'କିକଠକୁ । ଶିବନୀରତରେ—ନବୀନାର ପ୍ରେମରେ; ନିରତରେ ଶିବ । ମୁଗତି—ମୁକ୍ତି; ଉତ୍ତମ ଗତିବିଶିଷ୍ଟା ସ୍ତ୍ରୀ ।

୧୫ । କୁମାର—କାର୍ତ୍ତିକ; ମନ୍ଦ କନ୍ଦର୍ପ । ବିରହେ—ବିରହରେ, ହେ ବୀର । ଶୂର—ଯୋଦ୍ଧା; ଦେବତା । ୧୬ । ସୁମନାବରେ ଉତ୍ତମ ସ୍ତ୍ରୀକୁ; ଦେବତାଙ୍କୁ ବରଦ୍ୱାରା । ନରସିଂହ—ନରଶ୍ରେଷ୍ଠ; ନୃସିଂହ ଅବତାରଧାରୀ ବିଷ୍ଣୁ ।

ସୁକୃତ କାକୃତ ଦୂତୀ ହୋଇ ସତେ ବିରହର ହେବେ ବଇରୀ
ଭାଗ୍ୟମଗ୍ନାନ୍ତୁହେ ଲଭେ ଲଟିପିବ ସୁଯୋଗ ମଳୟ ମାଧୁରୀ
ହେବ ଚନ୍ଦନ—ସୁମନାବରକୁ ତୋଷିବ,
ଦୁଃଖକରମାଳ ଏ ଦଗ୍ଧ ବକ୍ଷକୁ ଚଞ୍ଚଳ ଶୀତଳ କରିବ । ୧୯ ।
ମନର ସ୍ୱଭାବେ ବିଚାର ଗମନ କ୍ଷଣକେ ବୁଲେ ଏ ବ୍ରହ୍ମାଣ୍ଡ
ବନ୍ଦୀ କଲା ଧରି ଏ କେଉଁ ଦେବତା ବାହାରିଲା ନୋହି ପ୍ରଚଣ୍ଡ
ଫୁଲକାଣ୍ଡ ତ, ଦେଖୁ ଦେଖୁ ହେଲା ସମ୍ଭୂତ
ବିଦେହ ହୋଇ ଯା ଦହିଦେଲା ଦେହ ଏଥିରୁ ବଳି କି ବିଚାର । ୨୦ ।
ଅନଙ୍ଗ ଯାହାର ତନୟ ବଇରୀ ସେ ବେଳାଙ୍କ କରେ ପ୍ରଣାମ
ଅଙ୍ଗ ଥିଲେ ତାର ଭେଟେ ନାରଖାର କରୁଥାନ୍ତା କାମ ନିର୍ମମ
ଉମାଧବ ହେ ! ନଗଜାନନ୍ଦକୁ ସକ୍ଷମ
ଭୁଜଗଧାରଣ କୁମାରଜନକ ଚ୍ୟୁତାକ୍ଷରେ କରେ ପ୍ରଣାମ । ୨୧ ।
ଶିଖଣ୍ଡଭୂଷଣ, ଭୂତପରମୋଦୀ ସୁତୋଷ ରତରଙ୍ଗିଣୀରେ
ଶ ବ ଅ ସ୍ୱ ଦତ୍ତାକ୍ଷର କରି ତାକେ ସୁରସ ପ୍ରାପତ କାମରେ
ଦ୍ରବ୍ୟ ପ୍ରଣୟ—ଚଳି କି ଅଛି ଏ ବ୍ରହ୍ମାଣ୍ଡେ,
ହେ ଗଜରି ସୀତାପତି ଜାଣିଥିବ ଘାରେ କାମ କେଉଁ ଉଦଣ୍ଡେ । ୨୨ ।
ଅସ୍ପଷ୍ଟରେ ଏ ତ କି କଥା କହୁଛି ମୋହୁଛି ମନକୁ ସୋହାଗେ
ସ୍ନେହମନ୍ତ୍ର ଅବା ଓଷ୍ଠା ପଢ଼ି ପଢ଼ି କାମଭୂତ ଲଗା ସରାଗେ
ଏ ତ ସୁଷମା—ବର୍ଷିଣୀ ଚନ୍ଦ୍ରିକା-ବିଗ୍ରହ
ବୋଲି ଦେଉଅଛି ଅଯାଚିତ ସ୍ନେହ ବଢ଼ାଉଛି ଭୋଗ ଆଗ୍ରହ । ୨୩ ।
ଧରମ କରମ ଦେବାସୁର କରି ଭାଗ୍ୟ-ମହୋଦଧି ମନ୍ଥିବ
ଉଦ୍‌ଯୋଗକୁ ଦଣ୍ଡ ହିତାକାଂକ୍ଷୀଙ୍କର ପରାମର୍ଶେ ରଜ୍ଜୁ କରିବ
ବିଷ ପୀୟୁଷ—ଲଭ ହେବ ଏକ ଅବଶ୍ୟ,
ଲଭ ହେଲେ ବିଷ ଗୃଣ୍ଡେ କରି ଗ୍ରାସ ଲଭିବା ଅଚିରେ ସନ୍ତୋଷ । ୨୪ ।
ସୁଷମାର ଏତ ସାଧାରଣ ଜ୍ଞାନ ସମ୍ଭବିଲା ମଣେ ବିଚାର
ଅସାଧାରଣ ଏ ହୋଇଅଛି ଯେଣୁ ନେତ୍ର ଧାରଣେ କି ସମର୍ଥ
ଜ୍ଞାନୀ ଗଣେଶ—ବର୍ଣ୍ଣି ନ ପାରିବେ ଯା ତଳେ,
ଭାରତୀ-ବାଗ୍ମିତା, ଅନନ୍ତ ବଦନ, ବିଧାତା ଅଯୁକ୍ତ ଲଭିଲେ । ୨୫ ।

---

୨୧ । ସାଧାରଣ ଅର୍ଥରେ ଶିବଙ୍କ ସ୍ତବ—ଚ୍ୟୁତାକ୍ଷର ଅଳଙ୍କାରରେ ବିଷ୍ଣୁଙ୍କ ସ୍ତବ । ଉମାଧବ—ଶିବ । ମାଧବ—ବିଷ୍ଣୁ । ନଗଜାନନ୍ଦ—ପାର୍ବତୀଙ୍କର ଆନନ୍ଦ । ଗଜାନନ୍ଦ—ହସ୍ତୀର ଆନନ୍ଦ । ଭୁଜଗଧାରଣ—ଶିବ । ଜଗଧାରଣ—ବିଷ୍ଣୁ । କୁମାରଜନକ—କାର୍ତ୍ତିକଙ୍କ ପିତା ଶିବ । ମାରଜନକ—କନ୍ଦର୍ପପିତା ବିଷ୍ଣୁ ।

୨୨ । ସାଧାରଣ ଅର୍ଥରେ ବିଷ୍ଣୁଙ୍କ ଓ ଦତ୍ତାକ୍ଷରରେ ଶିବଙ୍କ ଅର୍ଥ । ଶିଖଣ୍ଡଭୂଷଣ—ବିଷ୍ଣୁ, ଶଶିଖଣ୍ଡଭୂଷଣ—ଶିବ; ଭୂତପ୍ରମୋଦୀ—ବିଷ୍ଣୁ, ବିଭୂତି ପ୍ରମୋଦୀ—ଶିବ; ସୁତୋଷ—ସନ୍ତୋଷ;

ଭାବର ଏ ଶୋଭା ଆକାଶପଟରେ ଲେଖିଲେ ସମ୍ଭାଇ ନ ହେବ
ଧରଣୀର ରେଣୁ ଗଣି ହେଲେ ହେବ ଏ ଶୋଭା କାହୁଁ କେ ଗଣିବ
ରୂପ ନିଚୟ, ଏ କି ନବ ବିଧି ରଚିତ
ସୁଢ଼ଳ ତରଳ ନୟନ ଗୃହିଣି ହୃଦୟକୁ କରେ ବ୍ୟଥିତ । ୨୬ ।
ବକ୍ର ବଚନରେ ରାମଙ୍କୁ ଡାକିବା ହେବ ଟା ତାଙ୍କର କରୁଣା
ବିତଳକୁ ସୁରତରଙ୍ଗିଣୀ ଅହା ! ଅଣିବା କରନ୍ତି କଳ୍ପନା
ନିଷ୍ଠା ଉଦ୍‌ଯୋଗ—ବିନା କାହୁଁ ହେବ ଏ ଭୋଗ
ଚତୁର୍ଥ ପାଣ୍ଡବ ହୋଇ ଏ ନିଚୟ ଚୟ ଶାସେ ମନତୁରଗ । ୨୭ ।
ପ୍ରକୃତ ହେବାରେ ବଳେ ମନ ଯେଣୁ ରସାଧିକାରରେ ଅଙ୍କୁର
ବିଦଗଧ ଚିତ୍ତ ହରିବ କାହିଁକି ପାଞ୍ଚୁଛି ମାନସେ କୁମାର
ଗୃହିଁ ଯା ହେବ; ମଣେ ଅଶ୍ୱମୁଖ କୁବେର
ଅପବର୍ଗ ଫଳ ମିଳିବ ସହଜେ ଲଭିବ ପଦ ସୁନାସୀର । ୨୮ ।
ଏହିପରି ପୁଂସ ବାଳାର ଭାବନା କେ ପାରିବ କରି ତା ଅନ୍ତ
ଶ୍ଳେଷାଳଙ୍କାର ଏ ଅଭଙ୍ଗ ସଭଙ୍ଗ ତୋଷ ଚିତ୍ତ ଧୀର ପଣ୍ଡିତ
ଛାନ୍ଦ ସମ୍ପୂର୍ଣ୍ଣ, କହିଅଛି ବଶୀକରଣ
ଶ୍ରୀରାଧାରମଣ ପାଦପଦ୍ମ ସେବି ଗୋଲକଚନ୍ଦ୍ରର ଚିନ୍ତନ । ୨୯ ।

## ନବମ ଛାନ୍ଦ

ରାଗ—ବରାଡ଼ି ( ଅଷାଢ଼ଶୁକ୍ଳ ବାଣୀ )

ଘେନ ଏ ଛାନ୍ଦ ବିବେକୀ ସୁଧୀର
ଅନନ୍ଦ-ପଦ୍ମ ଅଶା ପ୍ରଭାକର
ସନ୍ତାପହରଣ ଅଶ୍ୱାସବାଣୀ
ମଧୁ ଘଣ୍ଟିଯୁ ପ୍ରଶସ୍ତ ସରଣୀ
ମାଧୁରୀ-ସଦନ,
କାବ୍ୟନିକୁଞ୍ଜେ ମାଧବୀ ସମାନ । ୧ ।
ଧୀରେ ଧନେ ସଖୀ କରକୁ ଧରି
ବରାଙ୍ଗୀରତନ ବିନୟ କରି
ପଚ୍ଛୁରଇ ସଖୀ ପ୍ରେମ କେମନ୍ତ
କାଠାରେ କେମନ୍ତେ ହୁଅଇ ଜାତ
ପ୍ରେମିକ ବା କିଏ,
ପ୍ରେମିକା କେମନ୍ତ ରାତକି ବହେ । ୨ ।

---

ଅଷ୍ଟତୋଷ—ଶିବ । ରତରଙ୍ଗିଣୀ—ରତନପୂର୍ଣ୍ଣା ଗୋପୀଗଣ; ସୁରତରଙ୍ଗିଣୀ—ଗଙ୍ଗା । ଗଉରୀ—ଗୌରବର୍ଣ୍ଣା, ପାର୍ବତୀ । ସୀତାପତି—ଜାନକୀପତି ରାମ, ଗଙ୍ଗାପତି—ଶିବ ।

୨୭ । ବକ୍ରବଚନରେ ରାମଙ୍କୁ ଡାକିବା—ବକ୍ରୋକ୍ତି କଥାରେ ରାମଙ୍କୁ ଡାକିବା; ରାମା ଡାକିବା । ବିତଳକୁ ସୁରତରଙ୍ଗିଣୀ ଅହା ! ଅଣିବା କରନ୍ତି କଳ୍ପନା—ବି (ସ୍ୱର୍ଗ), ତଳ (ପାତାଳ) କୁ (ମର୍ତ୍ତ୍ୟ) କୁ ଗଙ୍ଗାଙ୍କୁ ଅଣିବାର ଇଚ୍ଛା କରୁଅଛୁ; କେଳିକପୂର୍ଣ୍ଣାକୁ ନିମ୍ନସ୍ତରକୁ ଅଣିବାକୁ ଇଚ୍ଛା କରୁଅଛୁ, ଅର୍ଥାତ୍ ମୁଁ ତା ଯୋଗ୍ୟ ନୁହେ । ଚତୁର୍ଥ ପାଣ୍ଡବ—ନକୁଳ । ଶାସେ—ଶାସନ କରୁଅଛୁ ।

ଅଳପ ବୟସୀ ଅଳପେ ହସି    ଚଞ୍ଚଳା ବଗୁରି ଭଣେ ଅଶ୍ୱାସି
ବାରିଜାକ୍ଷୀ ବିମ୍ବାଧରୀ କାହିଁକି    ଛଳ ପରିହାସ ରଙ୍ଗେ ବସିଛ ।
ତାପସୀ ଭୂତକ
ଈଶ ପ୍ରଣୟକୁ ନେଲ ମତକ । ୩ ।

ସ୍ୱାବ ବକାରିଦ ଦେଉଛୁ କହୁ    ଶାନ୍ତା ଅତଥିକୁ ପୂଜିବୁ ସହୁ
ଗର୍ବୋଳସୀ ହଂସୀଗତ । ଏଣିକି    ଆଗ କଥା ଗୁଲିଯିବ କେଣିକି
ଯିବ ଅବସର,
ପ୍ରେମରୁ ଆଉ ନ ମିଳିବ ତର । ୪ ।

ପ୍ରେମ ବୁଝିବାଟି ବିଷମ ଧନ୍ଦା    ଜାଣନ୍ତି ଯେ ତାକୁ କରନ୍ତି ଫନ୍ଦା
ପ୍ରେମ ଅବ୍ୟକ୍ତ ପବିତ୍ର ନିତ୍ୟ    ଅହ୍ଲାଦଯୁକ୍ତ ଇନ୍ଦ୍ରିୟ ଅଜ୍ଞାତ
ଅକ୍ଷୟ ଭଣ୍ଡାର,
କାମଗନ୍ଧହୀନ ହୃଦ ବିକାର । ୫ ।

ପିତୃ ମାତୃ ଭ୍ରାତୃ ସଖାଦି ପ୍ରେମ    ପ୍ରେମମୟର ଲୀଳାରୁ ଜନମ
ସହଧର୍ମିଣୀର ମଧୁର ପ୍ରେମ    ଜଗତେ ତାହାକୁ ସେହି ଉପମ
ପ୍ରେମ ସଂସାର
ପ୍ରେମେ ଅଭଯାତ ବିଶ୍ୱସଂସାର । ୬ ।

ଅକୁଳତା ସରଳତାକୁ ଧରି    ଗାଢ଼ସ୍ନେହେ ଏକାଗ୍ରତା ଅଚରି
ହେଲେ ତନ୍ମୟ ଯା ହେବ ଜନମ    ପ୍ରକୃତରେ ତାର ନାମଟି ପ୍ରେମ
ନେଲେ ନୋହେ ସ୍ଥିତ,
ପୂତ ହୃଦୟ ତା ନିତ୍ୟବସତ । ୭ ।

ଜ୍ଞାନ ମସ୍ତିଷ୍କରୁ ପ୍ରେମ ହୃଦରୁ    ଯେବେ ମନେ ଭାବବତୀ ସ୍ମୃତିରୁ ।
ଭୋଗେ କାମ ତ୍ୟାଗେ ବଢ଼ଇ ପ୍ରେମ    ପ୍ରେମୁଁ ଭାବ ମହାଭାବ ଜନମ
ପ୍ରେମର ମାଧୁରୀ,
ବ୍ୟାଖ୍ୟା ବ୍ୟାଖ୍ୟାନରେ ନୋହେ ବିସ୍ତାରି । ୮ ।

ହ୍ଲାଦିନୀ ଶକ୍ତିର ସାରଟି ପ୍ରେମ    ସଂବିତ ଶକ୍ତିରୁ ଜ୍ଞାନ ଜନମ
ସନ୍ଧିନୀ ଶକ୍ତିରେ ସତ୍ତା ବିକାଶ    ପରା ଶକ୍ତିରୁ ଏ ତିନି ପ୍ରକାଶ
କ୍ଷେତ୍ରଜ୍ଞା ଅପରା,
ଅନ୍ୟ ଦୁଇ ଶକ୍ତି ଈଶଙ୍କ ଧୀରା । ୯ ।

ମହାଭାବର ମାଦନ ମୋହନ    ଏ ଦୁଇ ଅବସ୍ଥା ସଜନି । ଜାଣ
ମୋହନାଖ୍ୟା ବ୍ରଜଅଙ୍ଗନାଗଣ    ମାଦନାଖ୍ୟା ସ୍ୱୟଂ ରାଧାଙ୍କ ଯେଣ
କୃଷ୍ଣେ ରାଧା ରତି,
ବିଦୁଷେ ଏହାକୁ ପ୍ରେମ ବୋଲନ୍ତି । ୧୦ ।

ପର ସୁଖ ଲାଗି ପ୍ରେମଟି ଜାତ    ଆତ୍ମସୁଖ ସ୍ୱତଃ ଯହିଁ ନିହତ
ଆତ୍ମତୃପ୍ତି ଯାହା କାମ ସେ ହୋଇ    କୃଷ୍ଣ ତୃପତରେ ପ୍ରେମ ବୋଲାଇ
ଏ ନିତ୍ୟ ପ୍ରଣୟ,
ଯେତେ ସୁନ୍ଦର ତେତେ ମଧୁମୟ । ୧୧ ।

ସ୍ଥିତପଙ୍କ କୁଣ୍ଠାହୀନ ହୃଦରେ  ପ୍ରେମ ପ୍ରକାଶିତ ହୁଏ ଏଥିରେ
ଏ ଈଶ୍ୱରଭାବ ନୁହଇ ନାଶ  ପ୍ରଭୁସେବକ ଭାବରେ ସରସ
ନ ଯାଇ ସେ ତଳେ,
ଅପବାନ୍ଧବତା ଲେଶ ସ୍ପୃହା ଥିଲେ । ୧୨ ।

ସାତ୍ତ୍ୱିକାନୁଭାବ ପ୍ରେମ ପ୍ରକାଶେ  ଭକତ କତକ ସହଜେ ଅସେ
ଅଭୀଷ୍ଟ ଦ୍ରବ୍ୟ ପରମାବସ୍ଥତା  ରାଗ ନାମ ଧରେ ଯେନ ବନିତା
ରାଗ ହେଲେ ବୃଦ୍ଧି,
କ୍ରମେ ଜାତ ହୁଏ ପ୍ରେମ ସମୃଦ୍ଧି । ୧୩ ।

ରାଗବୀଜ ଅନୁରାଗ ଅଙ୍କୁର  ସ୍ନେହଲତା ହୋଏ ତହୁଁ ବାହାର
କେବେ ମାନ ବାତ ସ୍ୱତଃ ଅଶ୍ଳେଷେ  ମାନ ଅନ୍ତର୍ଦ୍ଧାନେ ପ୍ରେମ ବିକଶେ
ଭକତେ ହୃଦରେ,
ଯେନନ୍ତି ତାହାକୁ ଅତି ଆଦରେ । ୧୪ ।

ରାଗାତ୍ମିକା ଭକ୍ତି ଦୁଇ ପ୍ରକାର  କାମରୂପା ସମ୍ବନ୍ଧରୂପା ଧର
ଭକତ ଗୋପୀଙ୍କର କାମରୂପା  ଯାଦବ ଗୋପଙ୍କ ସମ୍ବନ୍ଧରୂପା
ହେଲେ ଅନୁମତା,
କାମାନୁଗା ସମ୍ବନ୍ଧାନୁଗା ଖ୍ୟାତା । ୧୫ ।

ଅଦ୍ଭୁତ କଥା ଏ ଯେନ ସମ୍ମତ  କାମଶାସ୍ତ୍ରରେ ନାରୀ ଚତୁର ଜାତ
ଗୁଣ ଆଚରଣ ରୂପ ଭେଦରେ  ଅଳ୍ପବେଶୀ କାମସ୍ପୃହା ବସ୍ତୁରେ
ପଦ୍ମିନୀ ଚିତ୍ରିଣୀ,
ଅନଙ୍ଗାତୁରା ଶଙ୍ଖିନୀ ହସ୍ତିନୀ । ୧୬ ।

ସୁଗୁଣ ସୁରୂପଯୁକ୍ତା ପଦ୍ମିନୀ  କିଞ୍ଚିତେ ଊଣା ତହିଁରୁ ଚିତ୍ରିଣୀ
ରତିସ୍ପୃହାକୁ ଶଙ୍ଖିନୀ ଆଦରେ  ମାତ୍ରାରେ ଅଧିକ ହସ୍ତିନୀ ଧରେ
ଆଦ୍ୟ କେନ ବନ୍ଦ୍ୟା,
ପ୍ରାନ୍ତ ବେନି ନାରୀ ସତତ ନିନ୍ଦ୍ୟା । ୧୭ ।

ନାୟିକାଭେଦେ କେ ମୁଗ୍ଧା ସାମାନ୍ୟା  ମଧ୍ୟା ପ୍ରୌଢ଼ା ପରକୀୟାରେ ଜଣା
ପ୍ରକୃତିଭେଦେ କେ ଧୀରା ଅଧୀରା  କେ ପ୍ରଗଲ୍ଭା କେ ଧୀରାଧୀରା
କଥା ପ୍ରସଙ୍ଗରେ,
କହିଲି ସୁମୁଖୀ ଯେନ ସଧୀରେ । ୧୮ ।

ସ୍ୱକୀୟା ପରକୀୟା ସାଧାରଣୀ  ଭେଦେ ନାୟିକା ତିନିଭାଗେ ଗଣି
କା କାହା ମତରେ ଚତୁର ପ୍ରକାର  ଯହିଁରେ ଶୁଦ୍ଧ ପ୍ରେମରୂପା ସାର
ସ୍ୱକୀୟା ସାମାନ୍ୟା,
ବିଟପା, ଏ ଚତୁଜାତିରେ ଯେନା । ୧୯ ।

ଅବସ୍ଥା ଭେଦେ ବିରହୋତ୍କଣ୍ଠିତା   ପ୍ରୋଷିତଭର୍ତ୍ତୃକା ପୁଣି ଖଣ୍ଡିତା
ବାସକସଜ୍ଜା ସ୍ୱାଧୀନଭର୍ତ୍ତୃକା   କଳହାନ୍ତରିତା ଅଭିସାରିକା
ବିପ୍ରଲବ୍ଧା ଜାଣି,
ଏ ଅଠ ପ୍ରକାର କାବ୍ୟେ ପ୍ରମାଣ । ୨୦ ।

ସ୍ୱକୀୟା ଯେହୁ ସମଞ୍ଜସା ସେହୁ   ନିଜ ସଙ୍ଗେ ପତିସୁଖ କାମଇ
ଦ୍ୱାରକାବାସିନୀ ନାରୀ ଏମନ୍ତ   ତେଣୁ ସମଞ୍ଜସା ନାମେ ବ୍ୟକ୍ତ
ମଥୁରାବାସିନୀ,
ନିଜ ସୁଖ ଲୋଡ଼ୁ ସେ ସାଧାରଣୀ । ୨୧ ।

ପରକୀୟା ଯେଣୁ ଦୁଇପ୍ରକାର   ଏକ ରତିପ୍ରାଣା ଅନ୍ୟ ଉଦାର
ରତିପ୍ରାଣା ଯେ କୁଟପା ବୋଲଇ   କାମଗନ୍ଧହୀନେ ସମର୍ଥା କହି
ଗୋପୀ ଏ ସମର୍ଥା,
କାମରୂପା ଭାବେ ଏକା ପୂଜିତା । ୨୨ ।

ଲୋକଲଜ୍ଜା ସମାଜସ୍ୱିତ ଛାଡ଼ି   ସମର୍ଥା ଜାତି ଶୀଳମାନ ଏଡ଼ି
ନିଜ ସୁଖ ଛାଡ଼ି ହରିରେ ଜଡ଼େ   କାମସ୍ପୃହା ହୃଦେ ନ ଧରେ ଦାଢ଼େ
କାମରୂପା ଭକ୍ତି,
ଯହିଁରୁ ମଧୁର ପ୍ରେମ ପ୍ରାପତି । ୨୩ ।

ବାତ୍ସ୍ୟାୟନମତେ ଚତୁର୍ଦ୍ଧା ପୁଂସ   ମୃଗ, ଶଶ, ଅଶ୍ୱ, ବୃଷ ବାଳୀଶ
ଅଦର୍ଶ କାମ କାମେ ମୃଗ ଶଶ   ଅଧିକ କାମେ ନିନ୍ଦ୍ୟ ବୃଷ ଅଶ୍ୱ
ଶଶୁଁ ମୃଗ ବନ୍ଦ୍ୟ
ଅଶ୍ୱ ବୃଷଠାରୁ ଅଧିକେ ନିନ୍ଦ୍ୟ । ୨୪ ।

ଦକ୍ଷିଣ ଅନୁକୂଳ ଧୃଷ୍ଟ ଶଠ   ନାୟକ ଭେଦେ କାମ ତ ଗରିଷ୍ଠ
କାର ଧୀରୋଦାତ୍ତ ଧୀରଲଳିତ   ଧୀରଶାନ୍ତ ଧୀରପ୍ରଶାନ୍ତ ଖ୍ୟାତ
ସଦା ଧୀରୋଦାତ୍ତ,
ଅନୁକୂଳ ହେଲେ ଅତି ବନ୍ଦିତ । ୨୫ ।

ସମଞ୍ଜସାର ବଇଧି ଭକତି   ଅଚରିଲେ ହୁଏ ପ୍ରେମ ପ୍ରାପତି
କୃଷ୍ଣୋଦ୍ଦେଶ୍ୟ ଶାସ୍ତ୍ରବିହିତ କର୍ମ   ଅନୁଷ୍ଠାନହିଁ ଏହାର ନିୟମ
କାମାନୁଗା ଛଳେ
ଗୋପୀଭାବ ବିନୁ ଅନ୍ୟେ ନ ମିଳେ । ୨୬ ।

ଅକ୍ରୂର କହେ ଶୁଣ ବିଧୁମୁଖୀ   ପ୍ରଣୟରୁ ପ୍ରୀତି ଊଣାରେ ଲେଖି
ବନ୍ଧୁତା ତାହାର ନୋହେ ତୁଳଣା   ସମ୍ଭୋଗ ସୁରତ ଅତି ଅଲଣା
ନିଷ୍କାମରେ ପ୍ରେମ,
କାମନାଟି ଯେଣୁ କଢ଼ିତ ଭ୍ରମ । ୨୭ ।

ପ୍ରଣୟର ସମ ଅସମ ଜ୍ଞାନ     ନାହିଁ ସ୍ୱଚ୍ଛତା ତା ଉତ୍ପତ୍ତି ସ୍ଥାନ
ବିବେକ କଲେ ଭାବ ମଧୁମୟ     ପ୍ରଣୟ ସ୍ୱତନ୍ତ୍ର ହୁଏ ଉଦୟ
ନାରୀ ପୁରୁଷରେ,
ପୁରୁଷେ ପୁରୁଷେ ନାରୀ ନାରୀରେ । ୨୮ ।

ସୁଚରିତ୍ରେ ହୁଏ ପ୍ରଣୟ ଲଭ     କୁଚରିତ୍ରେ ମୋହ ସିନା ସମ୍ଭବ
ସମ ବୟଃ ବୁଦ୍ଧି ରୂପକୁ ପାଇ     ପ୍ରଣୟବୀଜ ହୃଦେ ଅଙ୍କୁରଇ
ଚରିତ୍ର ସତୀତ୍ୱ
ପ୍ରଣୟୀ ପ୍ରଣୟିନୀ କରେ ବ୍ୟକ୍ତ । ୨୯ ।

ଅନ ଅନେ ସଦାହ୍ଲାଦ ଯେ ଜାତ     ପ୍ରଣୟ ନାମରେ ହୁଏ ଅଖ୍ୟାତ
କାନ୍ତ କାନ୍ତାଠାରେ ହେଲେ ଉଦୟ     ପୂତ ଭାବେ ହୁଏ ମଧୁ ପ୍ରଣୟ
ଅଲବ୍ଧରେ କାମ
ଲବ୍ଧ ଲଭ ଅଶେ ରାଗ ଜନମ । ୩୦ ।

ବାରଂବାର ଏକ ବସ୍ତୁକୁ ପାଇ     ଦର୍ଶନ ଶ୍ରବଣ କଲେ ସୁଦେହ !
ଏକ ଭାବ ହୁଏ ହୃଦୟେ ଜାତ     ରାଗ ନାମରେ ସେ ହୁଏ ଅଖ୍ୟାତ
ନାରୀ ପୁରୁଷରେ,
ପରସ୍ପରଠୁ ହୁଏ ସବୁ କାଳରେ । ୩୧ ।

ସେ ଭାବ ପ୍ରବୃଦ୍ଧି ହୋଇଲେ ଜାଣ     ଅନୁରାଗ ମୋହ ବେନି ପ୍ରମାଣ
ହୁଅଇ ସଚ୍ଚରିତ୍ରେ ଅନୁରାଗ     କୁଚରିତ୍ରେ ମୋହ ହୁଅଇ ବେଗ
ମୋହଠାରୁ ସ୍ନେହ
ନ ଅସେ ଅସଇ ଯୋଗି ବିଦେହ । ୩୨ ।

ଅନୁରାଗ ଯେନ ବିଧା ସୁଦନ୍ତ !     ନୀଳି କୁସୁମ୍ଭୀ ମଞ୍ଜିଷ୍ଠା ବୋଲନ୍ତି
ରାମ ସୀତା ଆଦି ପ୍ରେମୀ ପ୍ରେମିକା     ଏହି ଅନୁରାଗୁ ଯେନବୁ ଏକା
କଥା ପ୍ରସଙ୍ଗରେ
ଅଗରୁ କହିଲି ସ୍ମରିବୁ ଧୀରେ । ୩୩ ।

ଅନୁରାଗ ସ୍ନେହେ ସୁପରିଣତ     ହୁଏ ଭଲ ଗୁଣେ ହେଲେ ଯୁକତ
ସ୍ନେହୀ ସ୍ନେହୀଙ୍କ ମଣେ ଆତ୍ମା ପର     ହୁଏ ତା ବିଚ୍ଛେଦେ ବିଷମ ଘାର
ବିରହ ଯା ଶୁଣି
ବର୍ଣ୍ଣିବା ଏଠାରେ ସ୍ୱଳ୍ପ କରଣି । ୩୪ ।

ଚିନ୍ତା ଜାଗର ଉନ୍ମାଦ ତାନବ     ମଳିନାଙ୍ଗତା ପ୍ରଳାପ ହୋଇବ
ବ୍ୟାଧି ଉନ୍ମାଦ ମୋହ ମୃତ୍ୟୁ ଜାଣ     ଅନ୍ତ ଅନୁଭବେ ନ ଥାଇ ଜ୍ଞାନ
ପ୍ରେମିକ ପ୍ରେମିକା
ଅତି ଭାବେ ଅନ୍ତ ଲଭନ୍ତି ଏକା । ୩୫ ।

ଅନଳ ନୋହେ ସେ ଦହଇ ତନୁ     ଖଡ୍ଗ ନୋହେ ଶାନ୍ତ୍ର ଛେଦଇ ମନୁ
ନୁହଇ ଭଉଁରୀ ଢୁରଏ ମତ     ନୁହଇ ଦଉରୀ ବାନ୍ଧଇ ଗାତ
ନୁହଇ କଣ୍ଟକ
କି ବିଷାଦେ ଫୋଡ଼େ ହୃଦୟଯାକ । ୩୮ ।

ବିରହ ଅନ୍ତେ ପ୍ରଣୟ ବିକାଶ     ପୂର୍ବ ଦୁଃଖେ ସୁଖେ କରେ ପ୍ରକାଶ
ନିରବଚ୍ଛିନ୍ନ-ସୁଖ ସୁଖ ନୋହି     ତେଣୁ ବିରହେ ପ୍ରଣୟ ବଢ଼ଇ
ବିଘ୍ନର ଉତ୍ତମ
ଯେନ ଭଗବତ ଲୌକିକ ପ୍ରେମ । ୩୮ ।

ବିଚ୍ଛେଦୁଁ ହୁଏ ସେ ବିରହ ଜାତ     ସଂଯୋଗେ ଅକାଳେ ମାନ ସମ୍ଭୂତ
ସୌଭାଗ୍ୟ ରୂପାଦରେ ହେଲେ ହେଳା     ମାନ ଏକ ମନେ କରଇ ଲୀଳା
ହେଲେ ସେହୁ ହତ
ପ୍ରଣୟ ସ୍ୱତନ୍ତ୍ର ହୁଅଇ ଜାତ । ୩୮ ।

ଜାୟାପତିଙ୍କ ମାନ ବିବରଣ     କହଇ ସାଦରେ ସଜ୍ଜନ ! ଯେନ
ଦାମ୍ପତ୍ୟ ଭାବ ବୈଷମ୍ୟରୁ ଜାତ     ଶାମ ଦାନ ଦଣ୍ଡ ଭେଦରେ ହତ
ଯୋଟେ ପ୍ରେମାମ୍ବୁଧି
ବେଳୁଁ ବେଳ ପୁଣି ହୁଅଇ ବୃଦ୍ଧି । ୩୯ ।

ହାବ ଭାବ ବିକାର ଆଦ ଜାଣ     ସ୍ନେହ ଅନୁବର୍ତ୍ତୀ ସ୍ୱଭାବ ଗୁଣ
କମ୍ପ ପୁଲକ ଅଶ୍ରୁ ବରଷଣ     ଏମାନ ଅଟନ୍ତି ପ୍ରେମ ଲକ୍ଷଣ
ବୈରାଗ୍ୟ ତା ଦାସ
ପ୍ରେମ ପୂର୍ବୁ ଜ୍ଞାନ ଭକ୍ତି ପ୍ରକାଶ । ୪୦ ।

କାମନା ଶାନ୍ତି ଦେବା ଯୋଗ୍ୟ ନୋହି     କାମନାଟି ନିଜେ ଦୁଃଖ ବୋଲାଇ
ନିଷ୍କାମରେ ଯେବେ ପବିତ୍ର ଭାବ     ତେବେ ତହିଁରେ ପ୍ରଣୟ ସମ୍ଭବ
ଏ ଭାବେ ଯା ରତି
ପ୍ରଣୟୀ ପ୍ରଣୟିନୀ ସେ ବୋଲନ୍ତି । ୪୧ ।

ପ୍ରଣୟୀ ପ୍ରଣୟିନୀ ହୃଦ ଜାଣ     ଅଟଇ ସ୍ୱଭାବେ ସ୍ୱଚ୍ଛ ଦର୍ପଣ
ଅଙ୍କୁରିଲେ ଏକ ହୃଦରେ ଭାବ     ଅନ୍ୟ ହୃଦରେ ତା ପ୍ରତିଫଳିବ
କଇତବହୀନ
କର୍ମେନ୍ଦ୍ରିୟ ଜ୍ଞାନେନ୍ଦ୍ରିୟ ସମାନ । ୪୨ ।

ପ୍ରକୃତିକୁ ବଶ କରେ ପ୍ରଣୟ     ଦ୍ୱିଧା ଶଙ୍କା ଆଦ କରଇ କ୍ଷୟ
ସୁଖ ଶାନ୍ତି ବଳେ ଅସନ୍ତ ପାଶେ     କାମପରିକର ପଳାଏ ବଶେ
ସେହି ନିତ୍ୟାନନ୍ଦ
ଭକ୍ତଭୋଗୀ ଜାଣେ ପ୍ରେମ ସୁଆଦ । ୪୩ ।

ତୃତୀୟରେ କାମପ୍ରେମ ବିଚାର | ପ୍ରେମକୁ ଲୌକିକ ସାତ୍ତ୍ୱିକ ଧର
ସତ୍ତ୍ୱ ରଜ ତମ ତିନି ଗୁଣରେ | ପ୍ରକାଶ ହୁଅନ୍ତି ତିନି ପ୍ରକାରେ
ବର୍ଣ୍ଣିବି ଦେଖ ପ୍ରେମ
ରାଧାଙ୍କରୁ ନାହିଁ ଭାବ ଉତ୍ତମ । ୪୪ ।
ଶୁଣି ଇନ୍ଦୁରେଖା ଚଞ୍ଚଳାଭାଷ | ସୁମରଇ ମନେ ରାଧା ବିଶେଷ
ଗୋପଗୋବିନ୍ଦଙ୍କ ଚରିତ ଚିତ୍ତେ | ଗୋଲୋକ ବିରଚେ ଏ ରମ୍ୟ ଗୀତେ
ରାଧାକୃଷ୍ଣ ପ୍ରେମ
ଯେଉଁ ରସିକେ ଅତି ମନୋରମ । ୪୫ ।

## ଦଶମ ଛାନ୍ଦ

ରାଗ—ଦେଶାଖ । ଚକ୍ରକେଳି ବାଣୀ

ଘେନ ସୁଧୀରେ ଧୀରେ ରମ୍ୟରସ । ଖରେ ଖରେ ତାରକା ଜ୍ୟୋତି ହ୍ରାସ ॥
ନିଶା ବିନାଶ ଉଷା ପରକଟ । ଟେକି ମୁକୁଟ ଡାକଇ କୁକ୍କୁଟ । ୨ ।
ଉଷା ଗାୟତ୍ରୀଛନ୍ଦେ ଆବାହନ । କରି ପିକ କରେ ବୀଣା ଗାୟନ । ୩ ।
କାନ୍ତ ପଣତ ଧରେ କେ ବାମାର । କାନ୍ତପଣ ତ ଛାଡ଼େ କେ ବାମାର । ୪ ।
ବନ୍ଦି ସୁରସୁତ କାମବନ୍ଦିନୀ । ନିନ୍ଦେ ସୁରସୁତ କାମବନ୍ଦିନୀ । ୫ ।
କେହୁ ବିପରୀତରତା ସୁକେଶୀ । ଖସି ତଳପୁ ବସେ ମନ୍ଦେ ହସି । ୬ ।
କୋକ ଶୋକରେ କାନ୍ତ କେ ତେଜଇ । କୋକସ୍ତ୍ରୀ ଶୋକ କହୁ ନୁହଇ । ୭ ।
କେହୁ ନୂତନା ଦୁର୍ଲ୍ଲଙ୍ଘ୍ୟ ଗୁମାନ । କାନ୍ତ ମେଷଯୁଦ୍ଧେ କରେ ମୋଚନ । ୮ ।
ଚିରଦାସ ରତ ରସଦା ରତି । ଚିରୁ ମଣ୍ଡି ସଢ଼ି ସଖୁ ମରୁଛି । ୯ ।
ରସାରାଧିନୀ ଧନୀ ଧୀରସାର । ରଚ ହସ ନାଶ ନା ସହଚର । ୧୦ ।
ପୁଣି ବିଳମ୍ବେ କେ ମାନବତୀଙ୍କ । ରସାବେଗେ ଭାଷେ ବାଣୀତତିଙ୍କ ॥
ରଖ ରଖ ନିଜର କିଣାଜନ । ରସା ସଦା ଦାସ ରଙ୍କରତନ । ୧୨ ।

---

୫ । କାମରେ ବନ୍ଦୀ ହୋଇଥିବା କୌଣସି କାମିନୀ ସୁରସୁତ (ଯମକୁ) ବନ୍ଦୁଛି । କାମବନ୍ଦିନୀ (କାମକୁ ପ୍ରଶଂସା କରୁଥିବା କାମିନୀ) ସୁରସୁତ (ସୂର୍ଯ୍ୟଙ୍କ ସାରଥିକୁ) ନିନ୍ଦା କରୁଅଛି ଅର୍ଥାତ୍ ସୂର୍ଯ୍ୟଙ୍କ ଉଦୟରେ ଦୁଃଖ ପ୍ରକାଶ କରୁଅଛି ।

୯ ଓ ୧୦ । ହେ ରସଦା (ରସଦାୟିନୀ) ଚିର ଦାସ (ସଦା ଅନୁଗତ ଯେ ମୁଁ) ରତି ରତି (ରତୁଅଛି) ସ୍ନେହ କରୁଅଛି । ହେ ସଖୁ (ସଖି) ତୁ ମଣ୍ଡି ଚିରୁଛୁ ଓ ସଢ଼ି (ମୁଁ ଦୁଃଖରେ ସଢ଼ି) ମରିଯାଉଛି ।

ହେ ରସ ଆରାଧିନୀ ଧନୀ ଧୀରସାର (ଶ୍ରେଷ୍ଠ) ହସ ରଚ (ହାସ୍ୟ ରଚନା କର) କିନ୍ତୁ ସହଚର (ତୋର ସଙ୍ଗୀକୁ) ନାଶ ନା (ମାର ନାହିଁ,) ଏହା ଅନୁନୟ କରି କହୁଅଛି ।

୧୨ । ଶ୍ଳେଷ ବିଳେଷ—ରେ ରଙ୍କରତନ ନିଜର କିଣା ଜନକୁ ରଖ । ସଦା ଦାସ (ସେବକ)କୁ ରସାଅ । ବିଳେଷରେ 'ନିତ ରଙ୍କ ରସଦା ଦାସ ସାର । ନ ଜଣା କ ରଙ୍କା ଖର ଖର ।'

ଭୁଜଙ୍ଗମେ ବାଟପାଁକ ଘୃଷ୍ଟଲେ । ଭୁଜଙ୍ଗମେ ବାଟପାଁକ ଲେଷ୍ଟଲେ ॥
କାନ୍ତ ଛବ କର ଘଡ଼େ ପଦ୍ମଗ୍ନୀ । କାନ୍ତ ଛବ କର ଜଡ଼େ ପଦ୍ମଗ୍ନୀ ॥
ହେଲା ବାସରେ ଅଛନ୍ତି ପଦ୍ମଗ୍ନୀ । ହେଲା ବାସରେ ଅଛନ୍ତି ପଦ୍ମଗ୍ନୀ ॥
ଦେବଅଲେ କମ୍ବୁ ଧ୍ୱନି ପ୍ରକାଶ । ଅମ୍ବୁଜାକ୍ଷୀ ସୁରକର୍ମେ ଅବଶ ।୧୬।
ରଙ୍ଗେ ସୁମନ ସୁବାସେ ନାଚଲେ । ମନ୍ଦ ଜୀବନେ କେ ଜୀବନେ ଭଲେ ॥
କେତ୍ତୁ ମେଧାବନ୍ତ ମେଧାବନ୍ତୀର । ତାକେ, ତାକେ ହରର ନ ଅନ୍ତର ॥
ସୁଖହର ଶୁକେ ନନ୍ଦେ କେ କୋପେ । ଶଙ୍କସୁତେ ବଙ୍କନେତ୍ରୀ କେ ଶମ୍ପେ ॥
ଅସି ବଧୂକୁ କେ ବୃଦ୍ଧା ଡାକଇ । ଅଭୂଷଣ ତୋ କାନ୍ତା ନ ଭାଙ୍ଗଇ ॥
ଶିଶୁମୁଖରୁ ସ୍ତନକୁ ଓଟାର । ବେଗେ ଗମଇଁ କେଉଁ ପ୍ରୌଢ଼ାନାରୀ ॥
ମୃଗମଦ ପର ରଞ୍ଜକରଣ । କଲା ପ୍ରକୃତର ଦେହ ମଣ୍ଡନ ।୨୨।
ହେଲା ପ୍ରାତଃକୃତ୍ୟ ନୃପତନୟୁ । ବସି ମଣ୍ଡପେ କଟେ ବାଳା ଲୟୁ ॥
ଏଣେ ପରମଲାର ପ୍ରିୟଦାସୀ । ମନ୍ତ୍ରୀପୁତ୍ରଙ୍କ ମଣ୍ଡପ ପାଶେ ଆସି ॥
ହୋଇ ଅଜଣା ପର୍ଯ୍ୟେ ପ୍ରକାଶେ । ତପିବର ଶୋଭାବହ ବିଶେଷେ ।୨୪।
କେଉଁ ନାମ ଭଜନେ ଅନୁରାଗ ? । କେଉଁ ରୂପ ଧ୍ୟାନେ ଚିତ୍ତ କାଯ୍ୟୋଗ ? ।୨୫।
କାହା ଅଧରାମୃତ ପାନ ଇଚ୍ଛୁ । କାହା ଭାବରେ ମତ୍ତ କାନ୍ତ ସ୍ୱଚ୍ଛ ? ।୨୬।
ସୁନାଶୀର ବଲ୍ଲଭ କ ବର୍ଣ୍ଣର ? । କେଉଁ ତାରକ ମନ୍ତ୍ରକୁ ଉଚ୍ଚାର ? ।୨୮।
କବା ପୀନଜରଜା ପତ ଭାବ ? । କହ ବ୍ରହ୍ମଗୃହୀ ତେଜ କୈତବ ।୨୯।
ଶୁଣି ଏ ବାଣୀ ନୃପସୁତ କହ । ଶ୍ୟାମାପକ୍ଷଭାବେ ମତ୍ତ ବଳଇ ।୩୦।
କୁକ୍ଷଣେ ଯେ ଅନାସକ୍ତ ଯୋଗ । ଦେଲେ ଶିକ୍ଷା ତାଙ୍କୁହିଁ ଅନୁରାଗ ।୩୧।
ରାମାଧରାମୃତ ପାନେ ଲାଳସା । ମିନ୍ଦ ତାରକ କରଇ ଭରସା ।୩୨।
ବାଣାର୍ଜୁନ ଭୃତକ ମତ ଥାଇ । ଧନ ଅଲଙ୍ଗନେ ମନ ବଳଇ ।୩୩।
ଶୁଣି ହସି ଭାଷେ ଛଳୀ ଚତୁରୀ । କାମେ ତରଣୀ ତରୁଣୀ ବର୍ଣ୍ଣର ।୩୪।
ମିନ୍ଦ ତାରକ ଧର ଲଭେ ସୁରୀ । ମିନ୍ଦ ତାରକ ଧର ଲଭ ଗୋରୀ ।୩୫।
ମର୍ତ୍ତ୍ୟେ ସମ୍ଭବଲଣି ସୁରେଶ୍ୱରୀ । ରମ୍ଭା ଉର୍ବଶୀ ହେବେ ଯା କିଙ୍କରୀ ।୩୬।
ଅଭ୍ୟେପେକେ କ ବାଳା ଇଚ୍ଛି ମନ । କୁଚ ସୁସଞ୍ଚ କଳସୀ ଶୋଭନ ।୩୭।
କରୀ ପଯୃରେ ଖଟି ଅଛୁ ରହ । ଦ୍ୱିଜରାଜ ମୁଖଶୋଭା ବହଇ ।୩୮।
ଘନ ଜଘନ ପ୍ରେମ ସିଂହାସନ । ମୋତ ନାସାର ନତ୍ତିକା ଶୋଭନ ।୩୯।
କଣ୍ଠ କମ୍ବୁ ଦିଶୁଅଛୁ ସୁନ୍ଦର । ଭୂଷା କାଞ୍ଚଣ ପଞ୍ଚହ ସୁସ୍ୱର ।୪୦।
ଦେହେଁ ତାର ଅଷ୍ଟଗନ୍ଧ ଶୋଭନ୍ତ । ଏତେ ବିଭାରେ ରାଜେ କୁନ୍ଦଦନ୍ତୀ ।୪୧।
ଏକା ସାମନ୍ତ ବନା ସେ ସମସ୍ତ । କର ଅମର୍ତ୍ତ୍ୟ ଶିରୀ ଚୂର୍ଣ୍ଣୀଭୂତ ।୪୨।
ଚକ୍ର ବକ୍ରକୁ ବର୍ଣ୍ଣର ଚିତ୍ତରେ । ଚକ୍ରବକ୍ରେ ଅର୍ଧୀରେ ସ୍ତବ କରେ ।୪୩।

---

ହେ ରସଦା (ହେ ରସଦାୟିକା) ଦାସ ସାର (ଯେ ମୁଁ) ନତ ହୋଇଅଛ ଓ ରଙ୍କ ହୋଇଅଛ । ରାଜ ଶୀଘ୍ର ଗୃହଯାଉଛ । ତୁମ୍ଭେ ଜାଣି ପାରୁ ନାହିଁ କି ?

ରମାବାନ୍ଧବ ! ବିନାଶୁ ତୁ ମୁର । ରମ ତୁ ସୁନାଙ୍ଗୀ ରାଧା ରାସର ।୪୪।
ରସ ରାଧା ରାଗ ରସଶେଖର । ରଖ ସେ ଶରଣେ କାଳ କାତର ।୪୫।
ରତ କାଳକାନ୍ତ ଈଶ ତୋହର । ରହ ତୋଷଇ ଭାନୁଜା କୁଞ୍ଜର ।୪୬।



**ଚକ୍ରବନ୍ଧ**

---

୪୪ ରୁ ୪୭ ପଦ ପର୍ଯ୍ୟନ୍ତ ଚକ୍ରବନ୍ଧ ।

୪୪ ପଦ । ହେ ରମାବାନ୍ଧବ ! (ରମାକାନ୍ତ !) ତୁ ମୁର (ମୁର ନାମକ ଦୈତ୍ୟକୁ) ବିନାଶ (ବିନାଶ କରିଅଛୁ); ତୁ ରାସର ସୁନାଙ୍ଗୀ (ହେମାଙ୍ଗୀ) ରାଧାକୁ ରମ (ରମଣ କରୁ) ଅର୍ଥାତ୍ ରାସେଶ୍ୱରୀ ରାଧାଙ୍କ ସହିତ ତୁ ବିହାର କରୁ ।

୪୫ । ତୁ ରାଧାର ରାଗ (ସ୍ନେହ)ରେ ଆସକ୍ତ ହେଉ । ସେ କାତର କାଳ (ନାଗ) ଶରଣ ପଶିବାରୁ ତାକୁ ରଖୁ ବା ଦୁର୍ଗାଙ୍କ ମହିଷାର ଶେତ ଯୁଦ୍ଧରେ କାତର ସମୟରେ ରକ୍ଷା କରିଅଛୁ ।

୪୬ । କାଳକାନ୍ତ (ଉମାପତି) ଈଶ (ଶିବ) ତୋର ରତ (ଅନୁଗତ) ବା ତୋ ଠାରେ ଆସକ୍ତ । ଭାନୁଜାକୁଞ୍ଜର (ଯମୁନାତଟସ୍ଥ କୁଞ୍ଜରେ) ରହ (ଏକାନ୍ତ କେଳି) ତୋଷଇ (ତୋତେ ତୋଷ ପ୍ରଦାନ କରେ) ।

ରଞ୍ଜ କୁଜା ନୂତନା ରସୁଁ ଖର । ରଖ ସୁରନାଶ ବନ୍ଧ ବାମାର ।୪୭।
ପଦ୍ମମଳା ତା ମନ ତୁରଙ୍ଗମେ । ତଦ୍ଧ ପ୍ରେମହଟରେ ବନ୍ଧାଇଛୁ ଶ୍ରମେ ।୪୮।
ଅଶ୍ୱ ନ ଫେରିବ ଅବଳା ଜାଣି । ବିଯୋଗିନୀ ହେବାକୁ ବସିଲଣି ।୪୯।
ଚଣ୍ଡ ପ୍ରଚଣ୍ଡ ସ୍ମର ବନାସିବ । ମହ୍ୱପକୁ ଆଉ ଚିନ୍ତା ନ ଥିବ ।୫୦।
ଶମଶାନ ବାହାରେ ଚିତ୍ର ଯିବ । ଯୋଷାଭୂଷା ଭୂଷାମାନ ଫିଙ୍ଗିବ ।୫୧।
ଥାଉ ବଳମ୍ବେ ପ୍ରଳମ୍ବକୁନ୍ତଳା । ବୈବର୍ଣ୍ଣ୍ୟରେ ତେଜିବ ଗତ ଲୀଳା ।୫୨।
ପଦ୍ମମଳାର ଅଶଙ୍କା ଉପୁଜେ । ତେଣୁ ଅଇଲ ଅଙ୍ଗଦେଶ ବ୍ୟାଜେ ।୫୩।
ଅଛୁ ସବୁ ସମ୍ପଦ ଦେବ ପୂର । ଏଣ୍ଣା କୋଳରେ ନାହିଁ ଧରାଶିରୀ ।୫୪।
ଲଭି ଅବନୀଶିରୀ କ୍ଷବା ଯଶ । ଧରାମଣ୍ଡନା ବିନା ତା ନୀରସ ।୫୫।
ସାର ସାରସନୟନା ଜଗତେ । ବରବରଣୀ କାମ ମରୁ ପଥେ ।୫୬।
ଠିକେ ଧର ଧରଣୀଶୋଭାଶୋଭା । ଶୁକ ଶୁକର ଦଳେ ନାକ ପ୍ରଭା ।୫୭।
ଇନ୍ଦୁ ଇନ୍ଦୁରେଖା ମୁଖ ଧିକ୍କାରେ । ତେଣୁ ବିଧୁଶୋଭା ମୃଗ ବିକାରେ ।୫୮।
ଯେବେ ବିହ୍ୱ ବହିଲ ତା ମାଧୁରୀ । ମଣେ ଜଳାଏ ଗଲା ଅପସରି ।୫୯।
କିପିଷ୍ଟପେ ବୁଲିଲ କନ୍ଦ କନ୍ଦ । ଦେଲା ଉଛାଟ୍ଟ କଲା ସୁରବନ୍ଦୀ ।୬୦।
କେହୁ ନ ପାଇ ତହିଁରୁ ଉବୁର । କଲେ ବେଧା ପାଣେ ଯାଇ ବାସ୍ତୁର ।।
ତେଣୁ ବିଧି ସରଜେ ରମ୍ଭା ପରୀ । ବାଳା ଉରୁଶୋଭାକୁ ନୋହେ ସରି ।୬୨।
ବରାଙ୍ଗନା ସେ ନୋହିଲ ଯୁକତ । ବାରାଙ୍ଗନାରୂପେ ଅଚରେ ନୃତ୍ୟ ।୬୩।
ପର ପରୀକେ ଏ କରିଗମନା । କଲା ମୀଚ ଜଉ କୁଚ ଶୋଭନା ।୬୪।
ମଣେ ଏ ଶୋଭା ତବ ଲାଗି ସିନା । ଅଛ ପ୍ରୀତିଭାବେ କ୍ଷୀଣ ନବୀନା ।୬୫।
ଯାହା ଅଦେୟ ପ୍ରଦେୟ କର୍ତ୍ତବ୍ୟ । କଲେ ହେଲା ନାଶ ଯାଇ ସରବ ।୬୬।
ଶୁଣି ବାହ୍ୟଶିଳ ନୃପତନୟ । ଭଣେ ଭାଗ୍ୟେ ଥିଲେ ହେବ ନିଶ୍ଚୟ ।।
ଶୁଣି ଫଗୁରୀ ହସେ ମନ୍ଦ ମନ୍ଦ । ଭାଷେ ବୁଦ୍ଧିକି କାଏ ଦେଲା ଛନ୍ଦ ।୬୮।
ଏକ ଚକରେ ରଥଗତ କାହିଁ ? ଭାଗ୍ୟ ଉଦ୍‌ଯୋଗକୁ ସଦା ଲୋଡ଼ଇ ।୬୯।
ଶୁଣି ତନୟ ଭାଷେ ଭାଗ୍ୟ ସତ । ଗୁଲେ ଏକ ଚକରେ ରବିରଥ ।୭୦।
ପୁଣି ସଙ୍ଖାରିକ କହେ ବିଧୁରେ । ପ୍ରକାଶିବାକୁ ବାଳାକୁ ମଧୁରେ ।୭୧।
ଭାବ ତା ପ୍ରୀତ ରହିଛୁ ଏ ଜୀବ । ହେଲେ ପାଷାଣ ଅଜ କି ରହିବ ।୭୨।
ହେଲା ଚତୁରେ ! ରମ୍ୟ ଛାନ୍ଦ ଶେଷ । ଭାବେ ଶ୍ରୀଗୋଲୋକ ରାଧା ବିଶେଷ ।।

---

୪୭ । କୁଜା (ମଥୁରାର କୁବୁଜା ନାମ୍ନୀ) ନୂତନା (ନାୟିକା) ତୁମ୍ଭଙ୍କୁ ରସୁ (ରସିବାରୁ) ଖର (ଶୀଘ୍ର) ରଞ୍ଜ (ତାକୁ ରଞ୍ଜିଅଛ) ସୁର ରଖ (ଦେବତାମାନଙ୍କୁ ରକ୍ଷା କର) ବା ମାର ବନ୍ଧ (ବାଧା ବନ୍ଧନକୁ) ନାଶ କର ବୋଲି ପ୍ରାର୍ଥନା କରୁଅଛ ।

## ୧୧ଶ ଛାନ୍ଦ

ରାଗ—ରାମକେରୀ

ମନ ଦେଇ ଶୁଣ ସୁଧୀରେ । ଧୀରେ ନୃପଙ୍କ ବଦନେ
ନବବାଳୀ ଅଳିଅଳିଙ୍କି ଯେନି ଭ୍ରମେ ଉଦ୍ୟାନେ । ୧ ।
ଦିଶଇ ପ୍ରଭାତ ସୂଚକ ରଚି କୁଙ୍କୁମକାନ୍ତି
ଅସ୍ତାଚଳ ଚୂଳେ ଚଞ୍ଚଳେ ବିରୋଚନ ବିଭ୍ରାନ୍ତି । ୨ ।
ସୁଲେହିତ ପ୍ରାଚୀ ଦିଶିକି ରହି ଶଶୀ ଉଦିତ
ବେନି ଦିଗେ କିବା ଏ ବେନି ରକ୍ତଚନ୍ଦନ ପୋତ ? ୩ ।
ଅସ୍ତମୁଖ ରବି ଅନାଇ କହେ ସଖୀ କେ ହସି
ଦିଶନ୍ତି ଅପୂର୍ବ ସୁନ୍ଦର ଦେଖ ତପନ ଶଶୀ । ୪ ।
ପ୍ରାଚୀ ଦିଗଙ୍ଗନା କୁନ୍ତୀ କି ଧର୍ମସୁତ ଚନ୍ଦ୍ରମା
ପ୍ରସବିଛି ଯଥା କାଳରେ ଦିଶେ ଅତି ସୁଷମା । ୫ ।
ରବିଛବି ଗୁହି ପ୍ରତୀତ ହୁଏ ମନେ ଏପରି
ଗର୍ଭପାତ କିବା କଲାଣି ପଶ୍ଚିମାଶା ଗାନ୍ଧାରୀ । ୬ ।
ଅକାଳକୁଷ୍ମାଣ୍ଡ ସଦୃଶ ଦେଖ ରବି ପ୍ରତୀତ
ଏ ଉଦରକୁ କୁରୁକପୁର ଶୋଣ୍ଡରେ ଦୀପ୍ତ । ୭ ।
ଆନ କହେ ସତେ କୁଷ୍ମାଣ୍ଡଛବି ଫାଟିଲି ପରି
ରବି ଦିଶେ ପାଦ ପ୍ରହାର କିବା କଲି ଗାନ୍ଧାରୀ । ୮ ।
ପୁଣି କେ ବୋଇଲି ଦେଖ ସେ ଛବି ହେଉଛି ଅସ୍ତ
ଶତ ସୁତ ପରି ତାରକା କରି ନଭେ ବିଦିତ । ୯ ।
କାମକଳା କହେ ଜାଣିଲି ଦେଖି ମନ୍ଦ ପବନ
କୁନ୍ତୀ ସଙ୍ଗ ପାଇଁ କରୁଛି କି ଏ ମଧୁ ଗମନ । ୧୦ ।
କେ ବୋଇଲି ଅନୁମାନୁଛି ବ୍ୟୋମକେଶ-ଅରି
ମୋହିବାକୁ ଧରି ଚଞ୍ଚଳେ ଥିଲି ମାୟା ବିସ୍ତାରି । ୧୧ ।
ପ୍ରକୃତିର ଶ୍ରୁତିତଟେ କି ଦେଖି ରୁରୁ ତାଟଙ୍କ
ରାଗେ ହରି ହଟେ ଫିଙ୍ଗିଲି ତହୁଁ ସମୁଦ୍ରେ ଏକ । ୧୨ ।

---

୫ ରୁ ୧୦ ପଦ—ସଙ୍କେତ । ଶିବଙ୍କୁ ଉପାସନା କରି କୁନ୍ତୀ ଓ ଗାନ୍ଧାରୀ ଏକ ସମୟରେ ଗର୍ଭବତୀ ହୋଇଥିଲେ । ଉପଯୁକ୍ତ ସମୟ ଉପସ୍ଥିତ ହେବାରୁ କୁନ୍ତୀ ଯୁଧିଷ୍ଠିରଙ୍କୁ ଜନ୍ମ କଲେ । କୁନ୍ତୀଙ୍କ ପୁତ୍ର ଜ୍ୟେଷ୍ଠ ହୋଇ ରାଜା ହେବେ ଗାନ୍ଧାରୀ ଏହି ଆଶଙ୍କା କରି ସ୍ୱଇଚ୍ଛାରେ ଗର୍ଭପାତ କଲେ । କିନ୍ତୁ ଗର୍ଭରୁ ସନ୍ତାନ ଜନ୍ମ ନ ହୋଇ ଗୋଟିଏ ଅକାଳକୁଷ୍ମାଣ୍ଡ ବାହାରିଲା । ଗାନ୍ଧାରୀ ଏଥିରେ ଦୁଃଖିତା ହୋଇ ଗୋଇଠା ମାରି ଉକ୍ତ ଅକାଳକୁଷ୍ମାଣ୍ଡକୁ ଫଟାଇଦେଲେ ଓ ଦୁର୍ଯ୍ୟୋଧନାଦି ଶତ ପୁତ୍ର ହଠାତ୍ ତହିଁରୁ ଗୋଟି ଗୋଟି ହୋଇ ବାହାରିପଡ଼ିଲେ ।

ଏ ବାଣୀକି ଶୁଣି ମଲ୍ଲିକା ଭଣେ ଚଞ୍ଚଳ ଭାବ
ବେଣୀ ଧରେ ବେଣୀ ଉମ୍ଭ କି କଦ୍ରୁ ଥିଲା ପ୍ରସବ । ୧୩ ।
ଅସ୍ତିକ୍ୟଙ୍କୁ ଗୃହି ମଣଇ ତାର ଭ୍ରାତ୍ରେୟ ଅସି
ମାତ ପରି ଭ୍ରାନ୍ତିଦ୍ୱେଷରେ ଏକ ଦେଉଛି ଗ୍ରାସି । ୧୪ ।
ଭଣିଲା ଏ କାଳେ ନୃପଜା କାମ ପ୍ରେମ ସେ ବେଣୀ
ଧରଥିଲେ ଏଇ ସ୍ୱରୂପ ମନେ ଅସେ ମିତଣି । ୧୫ ।
ପ୍ରେମ ସମ ନୋହି କାମ ସେ ଥିଲ୍ଲମଙ୍କନେ ଗଲା ।
ପବନ ପ୍ରଣୟ ବାଧିରେ ତନୁପୁର ମୋହିଲା । ୧୬ ।
ସାଧୁ ସାଧୁ କଲେ ସକଳ ସଖୀ ଏ ବାଣୀ ଶୁଣି
ଉଦ୍ୟାନେ ବୁଲଇ ସୁକେଶୀ ସଙ୍ଗେ ସବ ମିତଣୀ । ୧୭ ।
ନବ ପୁଷ୍ପବତୀ ମାଳତୀ ବୋଲେ କେଉଁ ସୁନ୍ଦରୀ
ବାସଇ କି ରଙ୍ଗେ ନାଚଇ ତାଲ ଅପୂର୍ବ ଶିରୀ । ୧୮ ।
କେ ବୋଲେ ଦେଖ ମୋ କାମିନୀ ପରେ ଭ୍ରମର ବସି
ଟୁମ୍ଭି ବିପରୀତ ଶୋଭାକୁ ଅଛି ରଙ୍ଗେ ପ୍ରକାଶି । ୧୯ ।
'ମଲି, କହେ ହସି ନୃପଜା ଯାର ପ୍ରଣୟେ ରସି
କାମିନୀ ତା ବିପରୀତରେ ନ ହୁଅନ୍ତା କି ତୋଷି' । ୨୦ ।
କେ ସଖୀ ପଚ୍ଛରେ କେଉଁ 'କ' ଭାଷୁ ଧୀରିରତନ
ପ୍ରିୟଭାବ ବହି ସୁମନା ସିନା ମୋହେ ଏସନ । ୨୧ ।
କାମପ୍ରିୟା କହେ ତରକି ସେ ତ ସୁମନା ଇଜ
ମଧୁକରସଙ୍ଗ ଲଭନ୍ତୁ ସଦା ହୁଏଟି ସଜ । ୨୨ ।

---

୧୩ । କଦ୍ରୁ—ନାଗମାତା ।

୧୪ । ଅସ୍ତିକ୍ୟ—ତାପସଶ୍ରେଷ୍ଠ, ସର୍ପ ଓ ଗରୁଡ଼ର ମାମୁଁ । ସେ ସର୍ପମାନଙ୍କ ବିପଦ-କାଳରେ ସେମାନଙ୍କୁ ଉଦ୍ଧାର କରନ୍ତି (ସେ ଜନମେଜୟଙ୍କ ସର୍ପଯଜ୍ଞରୁ ନାଗମାନଙ୍କୁ ରକ୍ଷା କରିଥିଲେ) ।

୧୯ ରୁ ୨୫ ପଦ—(ସଖୀଙ୍କ ତର୍କଣା) ।

କେଉଁ ସଖୀ କହିଲା, ଦେଖ ମୋ କାମିନୀ ଫୁଲ ଉପରେ ଭ୍ରମର ବସି ତଳକୁ ଓଲଟି ପଡ଼ିବାରୁ ବିପରୀତ ରତିର ଶୋଭାକୁ ଧାରଣ କରିଅଛି । ଏଥିରେ ନୃପସୁତା କହିଲା, ମୁଁ ମରିଯାଏଁ କିନା; କାମିନୀ ଫୁଲ ଯା ପ୍ରଣୟରେ ରସିଛି ତା ସହିତ ବିପରୀତ ରତିରେ ତୁଷ୍ଟ ହୁଅନ୍ତା ନାହିଁ କି ? ଏ କଥା ଶୁଣି ସଖୀ ପଚାରିଲା, ହେ ସଖି ! ତୁମ୍ଭେ କେଉଁ 'କ' କହିଲ ଅର୍ଥାତ୍ ବର୍ଗ୍ୟ 'କ' ନା ଅବର୍ଗ୍ୟ 'ଯ' । (ଶ୍ଳେଷ) (ଫୁଲ) ପ୍ରିୟଭାବ ବହିଲେ (ଜାର) ବିଟପ ଭ୍ରମରକୁ ଏହିପରି ମୋହେ । କମ୍ଭା (ଯ ହେଲେ) ଯାର ପ୍ରଣୟରେ ରସେ ତା ପ୍ରତି ପ୍ରିୟଭାବ ବହିଲେ ସାଧାରଣ ନାଗରୀ ବିପରୀତ ରତି କରି ତୁଷ୍ଟା ହୁଏ । କମ୍ଭା ବିଟ ପୁରୁଷପ୍ରତି ପ୍ରିୟଭାବ ବହିଲେ ବିଟପୀ ବିପରୀତ ରତିରେ ତୁଷ୍ଟା ହୁଏ । କମ୍ଭା ଜାର ବିପରୀତ ରଜା । କାମିନୀ ଅର୍ଥାତ୍ କାମନା ପରିପୂର୍ଣା ରାଜକୁମାରୀ ତୋହପରି ରଜାର ପ୍ରଣୟରେ ରସିବା ସମ୍ଭବପର ଓ ବିପରୀତ ରତି କରି ତୁଷ୍ଟ ହେବା ସ୍ୱାଭାବିକ ଅଟେ । ତୁମ୍ଭେ କେଉଁ କ କହିଲ ?

ଜାର ବିପରୀତ ପାଇଁକି ତାର ମନ ବଳୁଛି
ତାର କି ଭାବନା ଏଥିରୁ ଯେନ ସଜନୀବ୍ରାତ । ୨୩ ।
'ଜ' ଶିରରୁ ଚନ୍ଦ୍ର ରାଗରେ କାମପ୍ରିୟା ଖାଇଲା
ଚଞ୍ଚଳା କହଇ ତେଣୁ ତ ଏତେ ତର୍କ ଉଠିଲା । ୨୪ ।
ଧରିଲେ ହୋଇବ କାମର ଅରି ଅନ୍ତ୍ୟ ଜଜ;
ଏତେ ତର୍କରେ କି ହୋଇବ ସେ ତ କହୁଛନ୍ତି ଜ ଯ । ୨୫ ।
ଏ ବାଣୀରେ କ୍ଷଣେ ମଉନେ ବସି ନୃପଜା ଭାଷେ
ଦେଖ ଦେଖ ସୂର୍ଯ୍ୟମୁଖୀକି ବରନ୍ତେ କି ବିରସ । ୨୬ ।
କେ କହେ ଦେଖ ମୋ ନିଆଳୀ ଅଳି ଚୁମ୍ବିଲା ଭଳି
ଯୌବନସୁଲଭ ଠାଣିରେ ଅଣି କରେ ଛଇଳୀ । ୨୭ ।
ନୃପସୁତା ଭାଷେ ନ ହେଲା ଯେତେକ ଭୃଙ୍ଗ ଯୁକତ
କେତକୀକି ଡାକ ପାରକୀ ଅଙ୍କୁଁ ସଜନୀବ୍ରାତ । ୨୮ ।
ଜାଣି ତା ଗୂଢ଼ତ୍ୱ ଶ୍ରେଣୀକି ପୁଣି ଭଣେ କେ ସଖୀ
ନ ରଖିବା ତାର କଣ୍ଟକ ଭୃଙ୍ଗ ପ୍ରେମ ଯୋଗାଇ । ୨୯ ।
ଯାଇ ଚନ୍ଦ୍ରମୁଖୀ ପାଶକୁ ଧୀରେ ନୃପଜା କହି
ଦୂରେ ଥାଇ ପ୍ରୀତି ପାଳଇ ସତୀ ନାଗରୀ ଏହି । ୩୦ ।
ଏ ଭାବେ କରନ୍ତି ପ୍ରମୋଦ ମିଳି ସଖୀ ସଙ୍ଗାତ
ବାରି ନ ହୋଇଲେ ଉଦ୍ୟାନ ପୁଣି ସଜନୀବ୍ରାତ । ୩୧ ।
ମଲ୍ଲୀହାସ କର୍ଣ୍ଣ ଶେଫାଳି ଜବା ଅଧରଛବି
ସୁକର ପଲ୍ଲବ-ପଲ୍ଲବ ଦନ୍ତ କୁନ୍ଦ ସୁରଭି । ୩୨ ।
ବକ୍ଷୋରୁହ ରୁଚି ଦାଡ଼ିମ୍ବ ବଢ଼ି ଆସିଲା ଭଳି
ଅଙ୍ଗୁଷ୍ଠି ଚମ୍ପକ, କନକ-ଲତା ଶୋଭା ଛଇଳୀ । ୩୩ ।

---

ଉଜ ଅର୍ଥ ଶ୍ରେଷ୍ଠ ଥିବାରୁ କାମପ୍ରିୟା ନାମକ ସଖୀ ତର୍କ କରି କହିଲା, ସେ ଅର୍ଥାତ୍ ରାଜକୁମାରୀ ନାଗରୀ ଶ୍ରେଷ୍ଠା ବା କାମିନୀ ଫୁଲଶ୍ରେଷ୍ଠା ନାଗରୀ ଅଟେ । କାମିନୀ ଫୁଟିଲେ ମଧୁକର (ଭ୍ରମର) ସଙ୍ଗ ଲାଭ କରିବା ନିମିତ୍ତ ସଜ (ପ୍ରସ୍ତୁତ) ହୋଇଥାଏ । ଏଠାରେ ରାଜକୁମାରୀ ଋତୁମତୀ ହୋଇଥିବାରୁ ମଧୁକର (ନାଗରର) ସଙ୍ଗ ଲାଭକୁ ସଜ ହୋଇଥାଅ ବୋଲି ସଖୀ ସୂଚନା କରୁଅଛି ।

୨୩ । ଜାର ବିଟପ ଭ୍ରମର ସହିତ ବିପରୀତ କରିବାପାଇଁ ତାର (କାମିନୀର) ଫୁଲର ମନ ବେଶୀ ବା ଜାରର ବିପରୀତ (ଜାରର ଓଲଟା ରଜା) ପାଇ କି (ପାଇବା ନିମିତ୍ତ) ତାର ଅର୍ଥାତ୍ ଅମ୍ଭ ସଖୀର, ମନ ବେଶୀ—ଏଥିରୁ ଯାହାର ଇଚ୍ଛା ଯାହା ହେଉଛି, ବୁଝ । ଜ ଅର୍ଥ ଶିବ ଓ ଜ ଅର୍ଥ ଶିବ ଥିବାରୁ ଚଞ୍ଚଳା ନାମକ ସଖୀ କହିଲା ଶିବ କାମକୁ ଅତନୁ କରିବାରୁ କାମପ୍ରିୟା (ରତି) ରାଗରେ ଜ (ଶିବଙ୍କ) ଶିରରୁ ଚନ୍ଦ୍ରକୁ ବୋଧହୁଏ ଖାଇଲା ପରି ଏ କାମପ୍ରିୟା ସଖୀ ଜ ଶିରରୁ ଚନ୍ଦ୍ରବିନ୍ଦୁ ଉଠାଇ (ଲୋପ କରି) ତର୍କ ଆରମ୍ଭ କରିବାରୁ ଏତେ ତର୍କ ଉଠିଲା । (ଜ ଜ = ଶିବ) ତର୍କ କରି ସେ ପୁଣି କହିଲା ଯଦି 'ଜ ଜ' କଏ ଏକଥା ପଚାର ତାହାହେଲେ କାମର ଶତ୍ରୁ ଶିବ; ଏହାପରି ତର୍କ କରୁଥିଲେ ବହୁତ ତର୍କ ହେବ । ଆଉ ତର୍କରେ ପ୍ରୟୋଜନ ନାହିଁ; ସେ ଜଜ୍ ବର୍ଣ୍ଣବିପରୀତ ଅଟେ, ତେଣୁ ବର୍ଗ୍ୟ ଜ ଓ ଅନ୍ତସ୍ଥ ଯ ସେ ଦୁହିଁଙ୍କି କହୁଛି ।

ମାଧବୀ ମରୁଆ ସେବତୀ ଶୋଭି ବାସରେ ପରି
ସୁବର୍ଣ୍ଣ କେତକୀକାନ୍ତିରେ ବାମା ଦିଶନ୍ତି ତୋରି । ୩୪ ।
ପୁଣି ହୋଇ ନବ ସରସୀ ତହିଁ ଶୋଭିଲେ କ୍ଷଣେ
କାନ୍ତି ସ୍ୱଚ୍ଛ ନୀର ନୟନ ଇନ୍ଦୀବର ବଖାଣେ । ୩୫ ।
ଗମନ ପ୍ରମତ୍ତ ମରାଳୀ ଶଇବାଳ ଚିକୁର
ଶୈବଳିକ ମୁକୁତା ଦଶନପଂକ୍ତି ଅତି ରୁଚିର । ୩୬ ।
ବୁଲି ଖେଳି ଖେଳି ଉଦ୍ୟାନେ ତୋଷ ବହି କାମିନୀ
ବସିଲେ କୁଆଳୀମଣ୍ଡପେ ରଙ୍ଗେ ଚନ୍ଦ୍ରବଦନୀ । ୩୭ ।
ନୃପସୁତା କହେ କୁଆଳୀ ନବ କୁସୁମବତୀ
ତରୁଣ ଧାତୁକୀ ମିଳାଇ କରାଇବା ସୁମତି । ୩୮ ।
ପାଣିଗ୍ରହଣକୁ କୁଆଳୀ ମୋର କଲଣି ମନ
ଯଥାକାଳେ ଯୋଗ୍ୟପାତ୍ରରେ ଦେବା ଅଛୁ ବିଧାନ । ୩୯ ।
କିଟପ ଭ୍ରମର ଚୁମ୍ବିବା ପାଇଁ ହେବ ଉତ୍ସନ୍ନ
କିଟପୀ ବାଦରେ ସୁମନା ନ ହେବ କି ବିମନ । ୪୦ ।
ପ୍ରଜାପତି ଯାହା କରଇ କଷ୍ଟେ ଘଟଇ ତାହା
କିଛି ନ ଥିଲେ ତ କୋଷ୍ଠୀରେ ମିଳେ ଉତ୍ତମ ନାହା । ୪୧ ।
ଆନ କହେ ଶୁଣ ସଜନି ଏ ତ ଶୁଭ ସମୟ
ଶୁଭଦିନେ କୁଞ୍ଜଦିନରେ ହେଉ ଏ ପରିଣୟ । ୪୨ ।
କଳିଙ୍ଗଭୃଙ୍ଗଙ୍କ କାକଳି ନୃତ୍ୟ ନ ହୁଏ କଳି
କଳି କରି କଳି ପାଶରେ ଅଳି କଳିଅ ମିଳି । ୪୩ ।
ବସନ୍ତ ଦ୍ରୁମରେ ବସନ୍ତ ପକ୍ଷୀ ବହେ ବସନ୍ତ
ବସନ୍ତ ବାସରେ ସଖୀଏ ଅବଶରେ ବଶ ତ । ୪୪ ।
ଅଧିବାସଯୋଗ୍ୟ ଏ କାଳ ଆନ କହେ କେ ହସି
ନ ଦେଖ କି ଦ୍ୱିଜେ ବିବାହ ଭାବିଅଛନ୍ତି ବସି । ୪୫ ।
ବାଏ ଉଚେ ଯୋଡ଼ି ନାଗରି ବସି ଏ କୁମ୍ଭାଟୁଅ
ଧରି ଗୋଣ୍ଡବାଣ ପାନସ ରଙ୍ଗେ ହେଲଣି ଠିଆ । ୪୬ ।
ଦେଖ ଏ ମଧୁପ ଶଙ୍ଖୁଆ ଶଙ୍ଖ ବାଉଛୁ ଧୀରେ
କୋକିଳବୁଢ଼ାକୁ ପରି ଗୋ ପିକ ଡାକେ ମଧୁରେ । ୪୭ ।

---

୩୮ । କୁସୁମବତୀ—ପୁଷ୍ପବତୀ, ଋତୁମତୀ । ଧାତୁକୀ—ଧାଇଫୁଲ ଗଛ, ଧାତୁ ବିଶିଷ୍ଟ (ତରୁଣ) ।

୩୯ । ପାଣିଗ୍ରହଣ—ଜଳଗ୍ରହଣ; ବିବାହ । ପାତ୍ର—ଜଳପାତ୍ର; ବରପାତ୍ର ।

୪୩ । କଳିଙ୍ଗଭୃଙ୍ଗ—କଜଳପାତୀ । କାକଳି—ପକ୍ଷୀଙ୍କ କୋଳାହଳ ଶବ୍ଦ । କଳି—କଳନା କରି, କଳହ, ଫୁଲର କଢ଼ ।

୪୪ । ବସନ୍ତଦ୍ରୁମ—ଅମ୍ବଗଛ । ବସନ୍ତପକ୍ଷୀ—କୋଇଲି । ଦ୍ୱିଜ—ବ୍ରାହ୍ମଣ, ପକ୍ଷୀ ।

ନବଭାବେ ଶୋଭା ଗଣିକା ନୃତ୍ୟେ ହୋଇଛନ୍ତି ରତ
ଦନ୍ତାବଳ ଭେରୀ ବଜାଇ ନବ ଉତ୍ସବେ ମତ୍ତ । ୪୮ ।
ଧାଉକା କି ଗୃହିଁ କେ କହୁ ବରପାଶ ଧାଇଁଲା
ମଣ୍ଡୂକପ୍ଲୁତରେ ମଲ୍ଲିକା ନୃପଜାକୁ ଭାଷିଲା । ୪୯ ।
ବରରୁଚି, ବରବର୍ଣ୍ଣୀ, ବର, ସୁବର ବର
ଅକର କରକରତନ୍ନ ! କର ତାଙ୍କର କର । ୫୦ ।
କରକର ହସି ହସି କେ ସଖୀ କହେ ମଧୁରେ
ମଧୁରେ ମଧୁରେ ସୁମନା ମନାଇବ ବିଧୂରେ । ୫୧ ।
ନ ହୁଏ କି ଲଜ ପୀବର ବର ଲଭିବାକାଳେ
ବିବାହେ ନୃପଜା କେମନ୍ତ ହେବ ଦେଖିବା ତୋଳେ । ୫୨ ।
ଶୁଣି କହେ ନୃପନନ୍ଦନୀ ସଖି ! ଚଳାଇ କେତେ
କୁହ ମୋ ଅଙ୍ଗକୁ ଠେଲାଇ ଦେଇ ମସ୍ତକ ନତେ । ୫୩ ।
ବଳାଇ ମାନସ ପଳାଇ ଅଜ ପାରେ କେ ନାରୀ
ଜାଣିଲି ଦୁରାଶା ହେଲାଣି ମୋର ସୁଖେ ଉଗାରି । ୫୪ ।
ବୟସ କେତେ ତାଙ୍କର ଗୋ ! କହ ଜାଣ କି କେହି
ଘାଣ୍ଟି ହେଲଣି ଏ ହୃଦୟୁ, ବକ୍ଷ ଥର ଉଠଇ । ୫୫ ।
ଦେଇଛନ୍ତି ଏ ପିଣ୍ଡ ପରାଣ ବିଭୁ ପଦରାଜୀବେ
ସେବିବି କି ସତେ ଉପତେ ବସି ସେବିକା ଭାବେ । ୫୬ ।
ସତେ କି ମୋ ଶିବ ଦାଶିବ କାଳେ ଲଭିବି ତାଙ୍କୁ
ହେବି ସେବାଯୋଗ୍ୟ ଭକ୍ତିରେ ପଦ୍ମପାଦ ତଳକୁ । ୫୭ ।
ଅଦ୍ୟ ମାର୍ଗଶିରେ କେଶବ, ପୌଷେ ଶ୍ରୀନାରାୟଣ,
ମକରେ ମାଧବ, କୁମ୍ଭରେ ଗୋବିନ୍ଦଙ୍କ ଚରଣ । ୫୮ ।
ମୀନେ ବିଷ୍ଣୁ, ବଇଶାଖରେ ଦେବ ମଧୁସୂଦନ,
ବୃଷ ମାସେ ତ୍ରିବିକ୍ରମଙ୍କୁ; ମିଥୁନରେ ବାମନ । ୫୯ ।
କର୍କଟେ ଶ୍ରୀଧର, ସିଂହରେ ପ୍ରଭୁ ହୃଷୀକେଶଙ୍କୁ,
ପୂଜି ପଦ୍ମନାଭ କନ୍ୟାରେ, ତୁଳେ ଦାମୋଦରଙ୍କୁ । ୬୦ ।
ନିଷ୍ଠା କାଷ୍ଠା କରି ପୂଜିବି ଯାହା ହେବାର ହେବ
ପାଳନ୍ତି ବ୍ରହ୍ମାଣ୍ଡ ଯେ ନାଥ ସେ ତ ଜାଣନ୍ତି ସର୍ବ । ୬୧ ।
ଏଥିଅନ୍ତେ ଘେନି ସଙ୍ଗିନୀ ଖରେ ନବକାମିନୀ
ତୋଳିଲେ କୁସୁମ ସୁବାସେ ମହକଇ ଅବନୀ । ୬୨ ।

---

୪୯ । ଏକପ୍ରକାର ମଣ୍ଡୂକପ୍ଲୁତ । ଅନ୍ୟ ଏକପ୍ରକାର ମଣ୍ଡୂକପ୍ଲୁତ ।
୫୦ । ଅକର—ଏହା କର । ବରରୁଚ—ଅନ୍ଧଣାୟୁ ରମଣୀୟ ।

କରି ଗୋବିନ୍ଦଙ୍କୁ ଉଦ୍ଦେଶ୍ୟ ମୂଢ଼େ ଗୁନ୍ଥିଲି ହାର,
ଚଳିଲି ଭବନେ ସୁକେଶୀ ସଙ୍ଗେ ସଖୀନିକର । ୬୩ ।
ରାଧାଙ୍କ ମାନସ ହରନ୍ତି ଯେଉଁ ରସଶେଖର
ପଶଇ ଶରଣ ଗୋଲୋକ ସେ ଗୋବିନ୍ଦ ପୟର । ୬୪ ।

## ୧୨ଶ ଛାନ୍ଦ

ରାଗ—କଳସା (ଲୋମବିଲୋମ)

ନନ୍ଦନର ବିଚାର ସୁରତ ବିଭୂଷଇ
ନ ମଣେ ରସ ସୁରଦା ବିଭୁସେ ବନ୍ଧଇ । ୧ ।
ନଳିନ ବସରେ ଭାବେ ଦାସ ରତ ନବ
ନ ଦଂଶ ରସେ ରସୁଁ ମୁଁ ସୁର କି ବନ୍ଧିବ । ୨ ।
ନତନୁର ଶରରେ ସରସଇ କି ରାବ
ନମ ସୁକେଶୀ ନାକ ସୁମନା ରମାଧବ । ୩ ।
ରସାଳସାର ସରବ ସରସେ ହେବି କି
ରତି ସେ ବନ୍ଧିବ ଯାମେ ରମଣୀ ପୁଣି କି । ୪ ।

---

ଏ ଛାନ୍ଦ ଲୋମବିଲୋମ; ଅର୍ଥାତ୍ ଛାନ୍ଦର ଆଦ୍ୟରୁ ପଢ଼ିଲେ ଯାହା ଛାନ୍ଦର ଶେଷରୁ ଓଲଟାଇ ପଢ଼ିଲେ ସେହି ଛାନ୍ଦ ହେବ ।

୧ମ ପଦ । ନନ୍ଦନର (ନୃପକୁମାରର) ବିଚାର (ବିହ୍ୱଦନର) ସୁରତ (ପ୍ରୀତିକି) ବିଭୂଷଇ (ବିଶେଷରୂପେ ପ୍ରକାଶ କଲି) । ସେ ସୁରଦା (ସୁଦନ୍ତୀର) ବିଭୁ (ବିବାହ ବା ଶୋଭା) ବନ୍ଧଇ (ବନ୍ଧିଥିବାରୁ) ଅର୍ଥାତ୍ ତହିଁରେ ତାହାର ମନ ଆକର୍ଷିତ ହୋଇଥିବାରୁ, ରସ ନ ମଣେ (ରସ ବିଷୟକ ଯାବତ କଥା ତାକୁ ଭଲ ଲାଗିଲି ନାହିଁ) ।

୨ୟ ପଦ । ନବ ରତ ଦାସ (ନୂଆ ଅନୁରକ୍ତ ନାଗର) ଭାବେ ଭାବିଲେ ନଳିନରସରେ (ପଦ୍ମିନୀ ପ୍ରୀତିରେ) ମୁଁ ରସେ ରସୁଁ (ଆନନ୍ଦରେ ମଜ୍ଜିବାରୁ) ସୁର ବନ୍ଧିବ କି ? (ଉତ୍ତମ କାମ ବନ୍ଧିବ କି ? ବା ମୁଁ ସୂର୍ଯ୍ୟ ବୋଲି ସେ ଭାବିବ କି ?) ନ ଦଶେ (ମୋତେ ଦିଶୁ ନାହିଁ, ଅର୍ଥାତ୍ ଏ କଥା ମୋ ମନକୁ ଆସୁ ନାହିଁ) । ପଦ୍ମ ପ୍ରତି ସୂର୍ଯ୍ୟଙ୍କ ଯେଉଁ ସମ୍ପର୍କ, ସେ ପଦ୍ମିନୀ ପ୍ରତି ମୋର ସେହି ସମ୍ପର୍କ; ସେ ଏହା ଭାବିବ କି ? ଇତ୍ୟର୍ଥ ।

୩ୟ ପଦ । ନତନୁ (କନ୍ଦର୍ପ)ର ଶରରେ (ଶରବିଦ୍ଧ ହେବାରୁ) କି ରାବ (କଥା) ସରସଇ (ପାଟିରୁ ବାହାରଇ), ଅର୍ଥାତ୍ ଏହି କଥା ବାହାରୁଛି :—ହେ ସୁକେଶି ! ନାକ (ସ୍ୱର୍ଗର) ସୁମନ (ଦେବୀ) ରମା (ଲକ୍ଷ୍ମୀଙ୍କ) ଧବ (ସ୍ୱାମୀ) ଅର୍ଥାତ୍ ହେ ହରି ! ନମ (ମୁଁ ତୁମ୍ଭଙ୍କୁ ନମସ୍କାର କରୁଅଛି)—ଅର୍ଥାତ୍ ତୁମ୍ଭ ସୁତ କାମ ମୋତେ ପୀଡ଼ା ନ ଦେଉ ଇତ୍ୟର୍ଥ ।

୪ର୍ଥ ପଦ । ହେ ବନ୍ଧୁ ! ମୁଁ ସରସେ (ଆନନ୍ଦରେ) ରସାଳସା (ରସମୁଗ୍ଧା)ର ସରବ (ସବୁ) ହେବି କି ? (ମୁଁ କଣ ତାର ସର୍ବସ୍ୱ ଅର୍ଥାତ୍ ପତି ହେବି); ପୁଣି ଯାମରେ (ରାତିରେ) ସେ ରମଣୀ ରତି ବନ୍ଧିବ (ଗ୍ରହଣ କରିବ) କି ?

ରସାରତରେ କହିବ ହରଷେ ଅସୁ କି
ରସ ବାସିନୀ ଧନୀ ସହି ଦେବୁ ବଞ୍ଚି କି ? ୫ ।
ବଞ୍ଚି ଭାବି ସରସରେ ଭାବେ ରହି ଦେବି
ବିଶେଷେ ରାଗବତୀର ଦାସ ରତି ଭୁବି । ୬ ।
ରିପୁ ଶର ତୁ ତ ହାଦେ ସୁଛଇ ନବୀନ
ରିହ ବହେ ନତନୁରେ ଭାବତ ନନ୍ଦନ । ୭ ।
ରମାଦରଦ ସୁନାଙ୍ଗୀ ଭରସା ବଞ୍ଚିବ
ରସାରେ କଞ୍ଜରନୟନ ରଞ୍ଜକ ଭାବି । ୮ ।
ବିଞ୍ଚିବ ବରଦ ସୁରସଦା ତରେ ରସା
ବୀଥିରେ ବରସଙ୍ଗୀର ବା ହେବ ଭରସା । ୯ ।
ଶରଧା ସୁବାଞ୍ଛି ଶିଖିପଦେହା ବହିବ
ସରମ ତା, ନେବ ଜାଣି ଯା ନୀରବ ରବ । ୧୦ ।

---

୫ମ ପଦ । ରସାରତରେ (ରସଜନିତ ଅଭିରେ) କହିବ, ହରଷେ ଅସୁ କି ? (ଆନନ୍ଦିତ ହୋଇ ଆସିଲ କି ?) ରସବାସିନୀ (ରସରେ ବାସ କରୁଥିବା ଅର୍ଥାତ୍ ରସବତୀ) ଧନୀ, ସହି ବଞ୍ଚି ଦେବୁ କି ? (ତୋର ଯାହିବା ପ୍ରକାଶ କରିବୁ କି ?) ଅର୍ଥାତ୍ ରସ ବର୍ଣ୍ଣିବୁ ଇତ୍ୟର୍ଥ ।

୬ଷ୍ଠ ପଦ । ବିଶେଷେ ରାଗବତୀର (ଅନୁରାଗିଣୀର) ଭୁବି (ପୃଥିବୀରେ) ରତିଦାସ (ଅନୁଗତ ଭୃତ୍ୟ ହୋଇ) ବଞ୍ଚ ଭାବ (ତାର ଶୋଭାକୁ ଅତିଶୟ ବଢ଼ାଇ) ସରସରେ ରହି (ଏକାନ୍ତ ପ୍ରୀତି) ଦେବି, ଏହା ଭାବେ (ମୁଁ ଭାବୁଅଛି) ।

୭ମ ପଦ । ନତନୁରେ (କନ୍ଦର୍ପରେ) ରିହ (ଈର୍ଷା) ବହେ (ବହିଲି) ନନ୍ଦନ ଭାବତ (ରାଜକୁମାର ଭାବଲ); ହାଦେ (ନିଷ୍ଟୟ) ତୁ ତ ରିପୁଶର (କନ୍ଦର୍ପର ଶର) ସୁଛଇ ନବୀନ (ମୋଠାରେ କନ୍ଦର୍ପଶର ବିଦ୍ଧ ହେବାପାଇଁ ମୁଁ ନୂତନ ସୁଛିବ ବା ଠାଣି କହୁଅଛି) ।

୮ମ ପଦ । ରସାରେ (ପୃଥିବୀରେ) ତାର କଞ୍ଜର (ହୃଦର) ଓ ନୟନ ରଞ୍ଜକ ଭାବ (ମନୋମୁଗ୍ଧକର ଥିବାର ପାଞ୍ଚି) ରମା ଦରଦ ସୁନାଙ୍ଗୀ (ରମାଙ୍କୁ ବର୍ଣ୍ଣରେ ଭୟ ଦେବ, ଏପରି ଯେଉଁ ସ୍ୱର୍ଣ୍ଣବର୍ଣ୍ଣ) ତାର ଭରସା ବଞ୍ଚିବ (ତାକୁ ମୁଁ ଭରସା କରିଅଛି) ।

୯ମ ପଦ । ସୁରସଦା (ସୁରସଦାୟିନୀ) କୁ ବରଦ (ବରଦାତ୍ରୀ ରୂପେ) ବିଞ୍ଚିବ (ବିଶେଷରୂପେ ଭାବ) ରସା ତରେ (ପୃଥିବୀରେ ଚଳି ଯାଉଛି ବା ଦିନ କଟାଉଅଛି) । ସେ ବୀଥିରେ (ସଂସାର ପଥରେ) ବରସଙ୍ଗୀର (ଶ୍ରେଷ୍ଠ ସଙ୍ଗୀର ଅର୍ଥାତ୍ ମୋର) ବା ଭରସା ହେବ (ଆଶ୍ରୟ ହେବ କି ?)

୧୦ମ ପଦ । ଶିଖିପଦେହା (ଶିଖିପାଙ୍ଗୀ) ଶରଧା ସୁବାଞ୍ଛି (ମୋତେ ବିଶେଷ ଶ୍ରଦ୍ଧା କରି) ତା ସରମ ବହିବ (ଲଜ୍ଜା ବହିବ) । ଯା ନୀରବ ରବ ଜାଣିନେବ, ଅର୍ଥାତ୍ ସେ ମୋତେ କଥା କହିବ ନାହିଁ ସତ, କିନ୍ତୁ ଭାବବ୍ୟଞ୍ଜକ ନୀରବ ଲଜ୍ଜାଦ୍ୱାରା ମୋତେ ଜାଣି ନେବ ।

ଶରଦ ଅଭେ କି ହିମକର ତା ସେ ହାସ
ଶଙ୍କା ହରଇ ସୁନିଦେଖି ସ୍ମରତାମସ ।୧୧।
ରଙ୍ଗୀ ଭଙ୍ଗୀର ସୁନାସୀ ସେବା କି ବରିବ
ରଙ୍ଗୀ ସଙ୍ଗୀର ହେବ କି ରସଦା ବାରିବ ।୧୨।
ବରିବା ଦାସ ର ବିହେ କି ରଙ୍ଗୀ ସଙ୍ଗୀର
ବରିବ କି ବା ସେ ସିନା ସୁରଙ୍ଗୀ ଭଙ୍ଗୀର ।୧୩।
ସମତାର ସ୍ମର ହେବ ସୁବର ସଙ୍କାଶ
ସହାସେ ତାରକ ମହୀ କି ସେ ଆଦରଶ ।୧୪।
ବରବରଣୀ ଜାଣି କି ବନେ ତାମରସ
ବହିବ ହାଦେ ସରି ସିଞ୍ଚିବ ସୁଧାରସ ।୧୫।
ସାର ଭବ ହେବା ରଙ୍ଗୀ ସରବରେ ଥିବ
ସାରରେତ ଦାସର ସୁଦରବ ବିଭବ ।୧୬।

---

**୧୧ଶ ପଦ** । ତା ସେ ହାସ ( ତାର ସେ ମଧୁର ହାସ ) ଶରଦ ଅଭେ ( ଶରତକାଳୀନ ମେଘମାନଙ୍କରେ ) ହିମକର (ଚନ୍ଦ୍ର) କି ? ସ୍ମରତାମସ ( କାମାନ୍ଧକାର ) ସୁନିଦେଖି ( ଉତ୍ତମରୂପେ ଦେଖି ) ମୋର ହରଇ ( ହରେ ) ଶଙ୍କା ( ଭୟ ) ହୋଇଅଛି ଅର୍ଥାତ୍ ମୋର କାମାନ୍ଧକାରକୁ ନାଶ ପାଇଁ ତାର ମଧୁର ହାସ ଚନ୍ଦ୍ରସ୍ୱରୂପ ।

**୧୨ଶ ପଦ** । ଭଙ୍ଗୀର ରଙ୍ଗୀ ( ଭଙ୍ଗୀମାନଙ୍କରେ ଯେ ରଙ୍ଗନିପୁଣା ) ସୁନାସୀ ( ଉତ୍ତମ ନାସିକାଯୁକ୍ତା ) ସେବା ବରିବ କି ? ( ମୋର ସେବାକୁ ଗ୍ରହଣ କରିବ କି ? ) ରଙ୍ଗୀସଙ୍ଗୀର ହେବ ( ରଙ୍ଗନିପୁଣାର ମୁଁ ବଶ ହେବ ); ରସଦା ( ରସଦାୟିନୀ ) ବାରିବ କି ? ( ମୋତେ ତାହାର ହେବା ବିଷୟରେ ବାରଣ କରିବ କି ? ) ।

**୧୩ଶ ପଦ** । ର ( କାମାଗ୍ନି ) କୁ ବରିବା ଦାସ ( ବରଣ କରିଅଛି ଯେଉଁ ଅନୁଗତ ଦାସ ଅର୍ଥାତ୍ ମୁଁ ) ରଙ୍ଗୀସଙ୍ଗୀ ( ରଙ୍ଗନିପୁଣା ) ର କି ବିହେ ( କି ବିଧାନ କରିଅଛି ) । ସେ ସିନା ଭଙ୍ଗୀର ସୁରଙ୍ଗୀ ( ସେ ସିନା ଭଙ୍ଗୀ ବିଷୟରେ ରଙ୍ଗନିପୁଣା ) ବରିବ କି ବା ? ( ନାଗର ଆଶଙ୍କା କରି ତର୍କଣା କରୁଛି, ସେ ମୋତେ ବରିପାରେ ବା ବରି ନ ପାରେ ) ।

**୧୪ଶ ପଦ** । ସହାସେ ସେ ( ହାସ ସହିତ ବିଦ୍ୟମାନ ଥାଇ ସେ ) ମହୀର ( ପୃଥିବୀର ) ତାରକ ଓ ଆଦର୍ଶ ହୋଇଅଛି, ଅର୍ଥାତ୍ ଉଦ୍ଧାରକାରିଣୀ ଓ ଶୋଭାର ଆଦର୍ଶ ହୋଇଅଛି । ଅତଏବ ତାର ସମ ସ୍ମର ( ତା ସମାନ ହେବାକୁ ପାଞ୍ଚି ପାଞ୍ଚି ) ସୁବର ସଙ୍କାଶ ହେବ ( ଉତ୍ତମ ବର ତୁଲ୍ୟ ହେବ ) ।

**୧୫ଶ ପଦ** । ଜାଣି କି ( ମୁଁ ଜାଣିଛି ) ବରବରଣୀ ( ଶ୍ରେଷ୍ଠବର୍ଣ୍ଣା ଇନ୍ଦୁରେଖା ) ବନେ ତାମରସ ( ପାଣିରେ ଥିବା ପଦ୍ମ ପରି ) । ହାଦେ ବହିବ ( ମୁଁ କଷ୍ଟେ କଷ୍ଟ ସ୍ୱୀକାର କରି ପାଇବ ); ସରି ସୁଧାରସ ସିଞ୍ଚିବ ଅର୍ଥାତ୍ ତା ପ୍ରତି କୋମଳ ବ୍ୟବହାର କରି ସ୍ନେହ କରିବ ।

**୧୬ଶ ପଦ** । ସାରରେ ( ସାର ପଦାର୍ଥମାନଙ୍କରେ ) ଦାସର ( ଅନୁଗତର ) ସୁଦରବ ( ସୁଦ୍ରବ୍ୟ ) ବିଭବ ( ବିଶେଷରୂପେ ଭବ ) ସାର ଭବ ( ପୃଥିବୀରେ ଉତ୍କୃଷ୍ଟ ) ହେବା ( ହୋଇଥିବା ) ରଙ୍ଗ ( ରଙ୍ଗନିପୁଣା ) ର ସରବରେ ( ସର୍ବଦା ସେବାରେ ) ଥିବ ( ରହିବ ) ।

ଶୋଭା ଜଠରନୟନ ରଞ୍ଜକରେ ସାର
ବାଞ୍ଛେ ସାରଙ୍ଗୀ ନାଶୁ ଦରଦ ମାର ।୧୭।
ନନ୍ଦନ ତ ବାସ୍ତରେ ନୂତନ ହେବ ହର
ନବୀନ ଇନ୍ଦୁ ସୁଦେହା ତୁ ତ ରସ ପୁରୀ ।୧୮।
ବାଳୁ ତ ରସଦା ରତୀବ ଗରସେ ସେବ
ବିଦେହର ବେଳରେ ସରସ ବାଞ୍ଛ ଭାବ ।୧୯।
କି ଭାବବୁ ଦେଇ ସନ୍ନିଧି ନିଶିବାସର
କି ସୁଅଂଶେ ରନ୍ଧ୍ର ବାନ୍ଧି ଦରେ ତ ରସାର ।୨୦।
କଣି ପୁଣି ମରମେ ଯା ବହିବ ସେ ତୀର
କି ବଢେ ସେ ରସବରଷ ରସାଳସାର ।୨୧।
ବଧ ମାର ନାମ ଶୁକନାସିକେ । ସୁମନ
ବରାଙ୍ଗୀଇଶ ରସରେ ଶର ନୂତନ ।୨୨।

---

୧୭ଶ ପଦ । ଜଠର (ଉଦର) ଓ ନୟନର ଶୋଭା (ଶୋଭା) ରଞ୍ଜକରେ (ମୋହିତ କରିବା ପଦାର୍ଥମାନଙ୍କରେ) ସାର (ଶ୍ରେଷ୍ଠ) । ବାଞ୍ଛିବ (ମୁଁ ଇଚ୍ଛୁଛି) ସାରଙ୍ଗୀ (ଶ୍ରେଷ୍ଠ ଠାଣିବିଶିଷ୍ଟା ଇନ୍ଦୁରେଖା) ଦରଦ ମାର (ଭୟ ଦେଉଥିବା କନ୍ଦର୍ପକୁ) ମାରୁ (ନାଶ କରୁ), ଅର୍ଥାତ୍ ସେ ମୋର ବଶୀଭୂତ ହେଲେ ମୋର କନ୍ଦର୍ପଭୟ ରହିବ ନାହିଁ ।

୧୮ଶ ପଦ । ନନ୍ଦନ (ରାଜକୁମାର ଅର୍ଥାତ୍ ମୁଁ) ତ ନୂତନ ହର (ନାୟକ) ହେବ । ରେ ସୁଦେହା ! ତୁ ତ ରସପୁରୀ (ରସର ଭଣ୍ଡାର ଅଟୁ) । ନବୀନକୁ (ନୂତନ ନାୟକ ପ୍ରତି) ରସ ।

୧୯ଶ ପଦ । ବାଳୁଙ୍କୁ ସମ୍ବୋଧନ କରି କହୁଛି । ହେ ବାଳେ ! ରସଦା ସେବ (ରସଦାୟିନୀ ଦୂରରେ ଥାଇ ମୋର ସେବିକା ହୋଇ) ରତୀବ (କାମ ପତ୍ନୀ ରତିପରି) ମୋତେ ଗ୍ରାସ କରୁଅଛ । ମୁଁ ବିଦେହ (କନ୍ଦର୍ପ)ର ବେଳରେ (ବିଧାନରେ) ସରସ (ରସଯୁକ୍ତ) ବାଞ୍ଛ ଭାବ (ବିବାହ ଇଚ୍ଛୁଅଛି), ଅର୍ଥାତ୍ ସେ ରତି ହେଲେ ମୁଁ କାମ ହେବି ।

୨୦ଶ ପଦ । ରାଜପୁତ୍ର ବାଳିପ୍ରତି ଚତୁରାରେ କହିଲେ—ହେ (ହେ ସଖି) ! କି ଭାବବୁ (ଆଉ କିଛି ଭାବିବାର ଦରକାର ନାହିଁ), ନିଶି ବାସରେ (ଦିନ ଓ ରାତି ସବୁବେଳେ) ସନ୍ନିଧି ଦେଇ (ତୋର ସାନ୍ନିଧ୍ୟକୁ ମୋତେ ଦିଅ) ଅର୍ଥାତ୍ ମୁଁ ତୋ ନିକଟରେ ରହେ । କି ସୁଅଂଶେ (କି ଭଲ ଅଂଶରେ) ବିଧି (ଧାତା) ରସାର ରନ୍ଧ୍ର କରେ ତ (ପୃଥିବୀରେ ଏକାନ୍ତ କେଳିକୁ ସର୍ଜିଅଛନ୍ତି) ବା ରସାର, ଅର୍ଥାତ୍ କାମାର୍ତ୍ତିକୁ ତୃପ୍ତି କରାଏ ଯେଉଁ ରନ୍ଧ୍ର (ଏକାନ୍ତ କେଳି ତାକୁ) କରେ (ସର୍ଜିଅଛନ୍ତି) ।

୨୧ଶ ପଦ । ସେ ରସାଳସାର ରସ ବରଷ କି ବଢେ (ସେ ରସାଳସାର ଯୌବନ ସମୟ ମୋତେ କେତେଦୂର ମୁଗ୍ଧ କଲଣି) କଣି ପୁଣି ମରମେ ଯା ତୀର ବହିବ, (ସେ ମୋତେ କଣିଅଛ ପୁଣି ମୋ ହୃଦୟରେ ତୀର ବାଜ କରିବ, ଏହା ମୁଁ ଜାଣି ନ ଥିଲି; ଅର୍ଥାତ୍ ସେ ମୋଠାରେ କପଟତା ବା ନିଷ୍ଠୁରତା ବହିବ ଏ କଥା ମୋତେ ଅଜଣା ଥିଲା) ଇତ୍ୟର୍ଥ ।

୨୨ଶ ପଦ । ହେ ଶୁକନାଶିକେ ! ସୁମନ (ପ୍ରସନ୍ନ) ହୋଇ ମାର (କନ୍ଦର୍ପର) ନାମକୁ ବଧକର ଅର୍ଥାତ୍ ମୁଁ ଯେପରି ଆଉ ମାର ମାର ଶବ୍ଦ ନ କହେଁ । ହେ ବରାଙ୍ଗୀଇଶ ! (ହେ ନାରୀଶ୍ରେଷ୍ଠ) ତୁ ରସରେ (ପ୍ରୀତିରେ) ନୂତନ (ନୂଆ) ର (କାମାଗ୍ନି) ଶର ହୋଇଅଛୁ; ଅର୍ଥାତ୍ କାମ ମୋ ପ୍ରତି ଶରରୂପେ ତୋତେ ପ୍ରୟୋଗ କରୁଛି ।

ବହ୍ନିବ କି ରସୁଁ ମୁଁ ସୁର ସେ ରସେ ମ୍ଳାନ
ବନଜ ରସଦା ବେଷ୍ଟରେ ସର ନଳିନ । ୨୩ ।
ଇହି ବଶେ ଭାବୀ-ଦାର ସୁଶରଣେ ମନ
ଈଶ ଭାବି ତର, ସୂରଚି ବୀରନନ୍ଦନ । ୨୪ ।

## ୧୩ଶ ଛାନ୍ଦ

ରାଗ—ସାମଗୁଜ୍ଜରୀ ।

ପ୍ରମୋଦେ ରସାଇ ରତ୍ନାକୂଳସାଇଁ କାଳେ ତେଜିବାରୁ ଧରା ଯେ
ମହାଖରତର କରମାଳିକର ଅନଳ ଦାହିଲା ଭୂରି ଯେ
ବାଞ୍ଛିଲା । କି ଅବା ଅନଳଗୁଣ୍ଡି ଯେ,
ଅନ୍ତଳ ଅପିତ୍ତ ପରାୟେ ଉପତ, ରାଜିଲା ସିନ୍ଦୁରମୁଣ୍ଡୀ ଯେ । ୧ ।
ଢଳଢଳ ବାମା ନୟନନୀଳିମା ଜିଣି ମରୀଚିକା ଦିଶେ ଯେ
ତପତ ଧରାରେ ପଥିକ ଖରାରେ ନାଚି ନାଚି ଦୁଃଖୀ କ୍ଲେଶେ ଯେ
ତଟିନୀ । ଅତି କୃଶକଳେବରୀ ଯେ,
ଦିଶେ ଶିରୀହୀନା ଭୂଷଣବିହୀନା ଯଥା ବିଧବା ଅଧୀରୀ ଯେ । ୨ ।
ହେଲା ଜନଙ୍କର ଚନ୍ଦ୍ରମା ଗ୍ରୀଷ୍ମର ନୀରରେ ଆଦର ଅତି ଯେ
ଥିଲା ଜନେ ଭଳେ ଚନ୍ଦନ ମଣ୍ଡିଲେ ଅଙ୍ଗ କଲେ ତୁଷ୍ଟମତି ଯେ
ମଧୁରେ । ଫୁଟିଲେ କୁଟଜ ବନେ,
ଲଜ୍ଜାଶିଳା ଧୀରାକୁଳ ବାଳା ପରି ମୋହିଲେ ମାନସ ଗୁଣେ । ୩ ।

---

୨୩ଶ ପଦ । ରସଦା (ରସଦାୟିକା) ବେଷ୍ଟରେ (ବନ୍ଧରେ) ସର ନଳିନ (ପୋଖରୀରେ ଫୁଟିଥିବା ପଦ୍ମପରି ହୋଇଅଛି) । ସେ ରସରେ ମ୍ଳାନ (ସେ ରସ ବିଚ୍ଛେଦରେ ଦୁଃଖୀ ହୋଇ) ମୁଁ ରସୁଁ (ମୁଁ ତାକୁ ରସିଲେ) ସେ ସୁର ବହ୍ନିବ କି ? (ସେ ମୋତେ ସୂର୍ଯ୍ୟ ବୋଲି ଭାବିବ କି ? ଅର୍ଥାତ୍ ତାକୁ ପଦ୍ମ ମନେ କରି ମୁଁ ରସିଲେ ସେ ମୋତେ ସୂର୍ଯ୍ୟ ବୋଲି ଭାବିବ କି ? )

୨୪ଶ ପଦ । ଇହି ଏଠାରେ ଅର୍ଥାତ୍ ଏ ଛାନ୍ଦରେ ବଶେ (ବଶୀଭୂତ ହୋଇ) ଭାବୀ ଦାର (ଭବିଷ୍ୟତ ପତ୍ନୀ) ସୁଶରଣେ ମନ (ନାୟିକାର ଉତ୍ତମ ଶରଣ ନେବାକୁ ମନ କଲା ଅର୍ଥାତ୍ ତାଠାରେ ଶରଣ ପଶିବା ପାଇଁ ଭାବିଲା) । ବୀରନନ୍ଦନ (ବୀରଭଦ୍ର ପ୍ରଧାନଙ୍କର ପୁତ୍ର, ଏ ଗ୍ରନ୍ଥକାର) ସୂରଚି (ଏ ଛାନ୍ଦକୁ ରଚନା କଲେ) । ଈଶ ଭାବି ତର (ହେ ଜନେ ! ଈଶ୍ୱରଙ୍କୁ ଚିନ୍ତା କରି ଏ ସଂସାରରୁ ତର) ।

ଏ ଛାନ୍ଦରେ ନୃପସୁତର ଅତି କାମାସକ୍ତ ହେବାରୁ ପ୍ରଳାପରେ ବିକ୍ଷିପ୍ତ ଚିନ୍ତା ହୋଇଅଛି ଓ ଏ ଛାନ୍ଦ ତଦନୁଯାୟୀ ଶ୍ଳେଷ ବିଶ୍ଳେଷ ହୋଇଅଛି, ଅର୍ଥାତ୍ ଆଗରୁ ଯାହା କହି ଯାଇଅଛି, କାବ୍ୟାଳଙ୍କାରରେ ଓଲଟାଇ ମଧ୍ୟ ସେହି କଥା ପୁଣି କହିଯାଉଅଛି ।

୧ । କରମାଳିକର—ସୂର୍ଯ୍ୟକିରଣ; ସିନ୍ଦୁରମୁଣ୍ଡୀ—ପକ୍ଷିବିଶେଷ । ୩ । କୁଟଜ—ବଣମଲ୍ଲୀ ।

ବନେ ଦାବାନଳ ସଞ୍ଚରି ପ୍ରବଳ ତପ୍ତଇଲା ବନଚର ଯେ
ଭୂଚର ଖେଚର ଜଳଚରଙ୍କର ଅନ୍ତୁରତା ହେଲା ଧର ଯେ
ବୃକ୍ଷଙ୍କେ । ଜଳଶାୟୀ ଭଲେ ଶିବେ ଯେ,
ଋତୁ ଅବା କେହ୍ନ ଆରମ୍ଭିଲେ ଯାହିଁ ପୁରନ୍ଦର ତୋଷ ଭାବେ ଯେ । ୪ ।
ଗ୍ରୀମ ଦୂର ପଥପ୍ରାନ୍ତେ କେହ୍ନ ସଭକ୍ତେକ ଦେଲେ ଜଳଛନ୍ଦ ଯେ
ଧ୍ୟୋମା ସୁଚରିତ୍ରା ଶୀତଳକ ବୋଲ ମୋହିଲେ ପ୍ରଣୟୀ ଚିତ୍ତ ଯେ
ଚମକ । ବାସେ କାନ୍ତ ତୋଷ ଦଶେ ଯେ,
ତରଣୀର ସ୍ନେହେ ତରଣୀ ବିସ୍ନେହେ ସବୁ ମତ ରହେ ଶେଷେ ଯେ । ୫ ।
ଏକାଳେ ପ୍ରଦୋଷେ ଦନେ ବନ୍ଧାସ୍ତଦେ ଶୀତାଂଶୁ ଉଇଁଲେ ରଙ୍ଗେ ଯେ
ଇନ୍ଦୁରେଖା ଧୀରେ ବଧୂଭବନରେ ଖେଳେ ସଖୀଗଣ ସଙ୍ଗେ ଯେ
ବିନୋଦେ । ଖେଳଲ୍ଲେଲଖଞ୍ଜନାକ୍ଷୀ ଯେ,
ହାସ କଉତୁକ କଚନ୍ତେ ଅନେକ କେ କାହିଁରେ ହୋଇ ସୁଖୀ ଯେ । ୬ ।
କେ କା ପୟୋଧରେ ନୀର ପିଚକାରେ ଲଚ ଲଚ ପ୍ରହାରଇ ଯେ
କେ ସେ ସଞ୍ଚ କୁଚେ ଚନ୍ଦନ ବିରଚେ ହସେ କହି ଶିବ ଏହି ଯେ
ଚଞ୍ଚଳେ । କେ କ୍ଷେପେ ପୁଷ୍ପାଞ୍ଜଳି ଯେ,
ଲୀଳାଭୂମି ରଙ୍ଗ କେ ଅତର ସଙ୍ଗେ କୁଙ୍କୁମ ଦଅଇ ବୋଲ ଯେ । ୭ ।
କେ କା ରଙ୍ଗାଧରେ ଚୁଆ ଦେଇ ଧୀରେ କହେ ଦେଖ ମଧୁକର ଯେ
କେ ବୋଲେ ଅଧୁ ପିଇବାକୁ ମଧୁ ବସିଲାଣି ମାର ମାର ଯେ
ଉଦ୍ଭ୍ରାନ୍ତେ । କେ ତହିଁ ପିଚକା ମାରେ ଯେ,
କେ ଗ୍ରହେ ଗ୍ରୀମର ଗ୍ରହେ କେ ଅମ୍ବର କେ ମୁଖସମୀର କରେ ଯେ । ୮ ।
ଖସାଇ କେ ବାସ ପଦ୍ମିନୀ ବିଶେଷ ହୋଇଅଛୁ ଲୀଳାଭୂମି ଯେ
ବାଧା ବିଧାନରେ କେ କା କର ଧରେ ହସଇ କେ ବିମ୍ବାଧରୀ ଯେ
ମଧୁରେ । କେ ସିଞ୍ଚେ କଳସୀ ବାରି ଯେ,
ମଲ୍ଲିକା ସୁମନେ ଧରି କେ ସୁମନେ ଭୂଷାଏ କେଉଁ ନାଗରୀ ଯେ । ୯ ।
କେ ଧରି ରସାଳ ବୋଲେ ଏ ରସାଳ ରସାଳସା ଯେହ୍ନ ଘେନ ଯେ
କେ ନେଇ ତା କନ୍ଥ ବୋଲେ ରେ ଉମୋରୁ ଏ ବକ୍ଷୋରୁହ ସମାନ ଯେ
ଚହଟେ । ମୋହେ ଏ ତାପିତ ମନ ଯେ,
ଆନ କହେ ମୋହ୍ନୁ ସହଜରେ ଦହୁ ମଝଟି ଅତ ପାଷାଣ ଯେ । ୧୦ ।
କେ ବାମନସ୍ତନା କେ ଗଜଗମନା କେ ମନ୍ଦହାସିନୀ ଧନୀ ଯେ
କେ ସୁଦଶୀ ଧୀରା ବଧୂଲିଅଧରା କୋଟୀ ସୃଷ୍ଟି-ବିମୋହିନୀ ଯେ
ଏକାନ୍ତେ । ଆନନ୍ଦେ କରନ୍ତି ଲୀଳା ଯେ,
ବଳାରିତପୁରମଣୀନା ନିକର ନୋହିବେ ଏହାଙ୍କ ତୁଳା ଯେ । ୧୧ ।

୪ । ଧର—ପର୍ବତ । ଋତୁ—ଯଜ୍ଞ । ୭ । ପୟୋଧର—ସ୍ତନ । ୮ । ମଧୁକର—ଭ୍ରମର । ଅମ୍ବର—ଲୁଗା । ୧୦ । ରସାଳ—ଆମ୍ବ । ୧୧ । ବଳାରିତ—ଇନ୍ଦ୍ର ।

ଖେଳା ମଧ୍ୟେ କେମା ଦଶେ ମନୋରମା ମୁଖ ନିନ୍ଦେ ସୁଧାକର ଯେ
ନୟନ ଅୟନ ବଳେ କୋଟି ମନ ଭୁଲଇବ ବାର ବାର ଯେ
ଚିକ୍‌କଣ । କୁନ୍ତଳ ଜଳଠ ଅହି ଯେ,
କନକ ବଲ୍ଲରୀ ଶିରରୁ ବାହାରି ପଦକୁ ଆସେ ଓହ୍ଲାଇ ଯେ । ୧୨ ।
କମଳ କାନନେ କମଳା ସୁମନେ କ୍ରୀଡ଼ଇ କି ମୋଦ ବହି ଯେ
ନିଧି ଅଧିଦେବୀ ଅବା ରଙ୍ଗେ ଦ୍ରବ ନିଧି ସଙ୍ଗେ ବିଳସଇ ଯେ
ପ୍ରମୀଳା । କିବା ବରାଙ୍ଗନାପୂତେ ଯେ,
ଅବା ଗୃଦ୍ଧଧାରୀ ସୁରନେନ୍ଦକାରୀ ଖେଳେ ପଦ୍ମିଙ୍କ ସଙ୍ଗତେ ଯେ । ୧୩ ।
କିବା ସୁରଧୁନି ମଣ୍ଡିୟର ତଟିନୀ ସଙ୍ଗେ ରଙ୍ଗେ ବିହରଇ ଯେ
ଅବା ପାରିଜାତ ଭବେ ହୋଇ ଜାତ ପୁଷ୍ପବନେ ବିଳସଇ ଯେ
ନତ୍ତୁବା । ମଧୁର ସ୍ୱପନାନନ୍ଦ ଯେ,
ଉପଲକ୍ଷାନନ୍ଦ ଗଣ ସଙ୍ଗେ ମୁଦ ବହି କରେ ରସାସ୍ୱାଦ ଯେ । ୧୪ ।
ଏକାଳେ କେମାର ତାକେ ପୋଷା କୀର ମଧୁରେ ଶିଖଣ୍ଡେତ୍ତୁଳ ଯେ
ଶୁଭିଲା ସାରିକା ତାକେ ଇନ୍ଦୁରେଖା ପଥରୁ ଅତି ଚଞ୍ଚଳ ଯେ,
ନୃପଜା । ପ୍ରେମେ ହାରିଲା ସ୍ୱାତନ୍ତ୍ର୍ୟ ଯେ,
ହାସ କଉତୁକେ ହରିଲା ପଲକେ ବଳେ କି ମୋହନମନ୍ତ୍ର ଯେ । ୧୫ ।
ବାହ୍ୟ ଶିଳା ଗୁଣେ ନୃପଜା ବିଧାନେ ପୁଣି କ୍ରୀଡ଼ା କରଚଇ ଯେ
ତା ନାମ ଉଚାରି ଥିଲା ଯେଉଁ ସାରି ଖୋଜେ ପଥେ ଦୃଷ୍ଟି ଦେଇ ଯେ
ଚକିତେ । ନାନା ଭାବ ହୃଦେ ଖେଳେ ଯେ,
ଭାବେ ତା କଳ୍ପିତ କାନ୍ତ କି କପଟ ମେଳା ଦରଶନେ ଚଳେ ଯେ । ୧୬ ।
ଶୁଣି ସାରି ଡାକ ଏକଲୁ ଅନେକ ସଖୀ ପଶୁରକ୍ତ କାହିଁ ଯେ
ବିଧାତା ବିଧାନ ସେ ଯେ ଅଘଟନ ଘଟନ ସଦା କରଇ ଯେ
ସାରିକା । କାହିଁ ତ ନାହିଁ ଦେଖିଲା ଯେ
ଏ ଦଇବୀ ବାଣୀ ବୋଲି କେତେ ଭଣି ପୁଣି କ୍ରୀଡ଼ା ବିରଚିଲା ଯେ । ୧୭ ।
କୁମ୍ଭମେଳା ସଙ୍ଗେ କୁରୁକ୍ଷେତ୍ରେ ରଙ୍ଗେ ହୁଏ ଦ୍ୱିପାକ୍ଷିକ ମେଳା ଯେ
ଅଙ୍ଗ ନୃପସୁତ ମଧୁ ଲୀଳାକ୍ଷେତ୍ର ଦରଶନେ ଯାଉଥିଲା ଯେ,
ସୁଜନେ । କେମା କୋଠି ପାଶ ଦେଇ ଯେ,
ଅଚମ୍ବିତେ ଶୁକ ନିଜ ସାରି ଡାକ ଶୁଣି ବିହ୍ୱଳିତ ହୋଇ ଯେ । ୧୮ ।
ଭାବେ ଶିବ ହେବ ମୋ ଶିବ ଦର୍ଶିବ ଲଭିବ କିଶୋରୀମଣି ଯେ
କୀର ଡାକେ ନାମ ସ୍ଫୂର୍ତ୍ତି ହେଲା କାମ ବାମ ହେଲା କାମ ଜାଣି ଯେ,
ନୃପଜ । ବିସ୍ମୃତେ ବିରସେ ଅତି ଯେ,
ନବ ରମ୍ୟ ପୁରେ କୀର ତାକେ ଧୀରେ ଥିବ ଅବା ରସବନ୍ତୀ ଯେ । ୧୯ ।

---

୧୨ । ସୁଧାକର—ଚନ୍ଦ୍ର । ଅହି—ସର୍ପ । କନକ—ସ୍ୱର୍ଣ୍ଣ । ବଲ୍ଲରୀ—ଲତା ।
୧୩ । କମଳା—ଲକ୍ଷ୍ମୀ । ୧୫ । କୀର—ଶୁକପକ୍ଷୀ । ୧୯ । ଶିବ—ମଙ୍ଗଳ ।

କେଉଁ ତପଫଳେ କେଉଁ ପୁଣ୍ୟବଳେ ଶୁକେ ସାରୀ ଅନୁରାଗ ଯେ
ଅପବର୍ଗଦାମୀ ନାମ କଲ ପୁଣି ଦାସ ନାମ ସଙ୍ଗେ ଯୋଗ ଯେ
ବିଗ୍ରହ । ଗୃହୁଁ ଦ୍ୱିତଳ ପ୍ରାସାଦ ଯେ,
ହୋଇ ବିଚଳିତ ଦେଖେ କ୍ରୀଡ଼ାମତ୍ତ ଗୃହସୁହାସିନୀବୃନ୍ଦ ଯେ । ୨୦ ।

କେ ହୋଏ ଗେହ୍ଲାଇ କେ ହୋଏ ଫୁଲାଇ ଆନ କେ ମୁଣ୍ଡ ହଲାଇ ଯେ
ଶିରୁ ବାସ ଧରି ଅଣୁ କେ ଓଟାରି ସାଗରୁ କି ଚନ୍ଦ୍ର ଶୋହି ଯେ
ଯମୁନା, କାଜଳ କୁନ୍ତଳ ରୁଚି ଯେ,
ଉରଜ ମାଧୁରୀ ମହେଶ ବିଗ୍ରହ ବେନି କି ଅଭୟ ପାଞ୍ଚି ଯେ । ୨୧ ।

ମୃଦୁ କେକାନେହ କରାଇ ବ୍ୟଥିତ ଉପମାମାନଙ୍କୁ ଦଳି ଯେ
ମଲ୍ ମଲ୍ ଭାବେ ମଲ୍ଲିକା ବିକସେ ଅନଙ୍ଗ ବୋଲେ ବଞ୍ଚିଲି ଯେ
ମୋହନେ । ସୁଧା ଝରେ ବିନ୍ଦୁ ବିନ୍ଦୁ ଯେ,
ଅଯାଚିତ ପ୍ରେମ ଦେବାକୁ ସକ୍ଷମ ସେହି ସେ ସୁଷମା ସିନ୍ଧୁ ଯେ । ୨୨ ।

ପ୍ରମୋଦରେ ମତ୍ତ ଚଳାପାଙ୍ଗୀବ୍ରାତ ନୃପଜା ତହିଁ ବିରତ ଯେ
ସାରି ତାକ ସ୍ୱାତୀନୀରବୃଷ୍ଟି ମତ ଚିନ୍ତାମଣି କଲା ଜାତ ଯେ
ଗୁଣରେ । ବଜ୍ରକୁ ସହଜେ ବଳେ ଯେ,
ତା ଲୀଳା ଭୂଧର ବଂଶ ନାରଖାର ମୈନାକସ୍ତନୀ ବିକଳେ ଯେ । ୨୩ ।

ଶତ ମନୋରଥ ଗଢ଼ିଲ ସନ୍ତତ ପୁଣି ଭରେ ଆନ ଆନ ଯେ
କ୍ଷଣକେ ସୁଖରେ କି ରଙ୍ଗେ ବିହରେ ଭରେ ପୁଣି ମତ ଯୂଳା ଯେ
ବଧିରେ । ଉତ୍କଣ୍ଠା ଅଣିଛି ଧ୍ୱାନ୍ତ ଯେ,
ବିଧୁନୁଦବତ, ବିଧୁମୁଖୀ ରତ ବିଧୁହାସ କରି ଅନ୍ତ ଯେ । ୨୪ ।

ସୁମନକୁ ଯଥା କୀଟ କରେ ତଥା ଉତ୍କଣ୍ଠା ରାଗବତୀକି ଯେ
ହେଲେ ଶୋଭାବତୀ ତା ଶୋଭାରେ ଅତି ଲଗାଇଦିଏ ଭେଳିକି ଯେ
ବିରସେ । ସରସତା ବହି ଅତି ଯେ,
ଭାବେ ଯେବେ ଅଙ୍ଗପତିସୁତସଙ୍ଗ ଦେବ ଅଯାଚିତ ଗତି ଯେ । ୨୫ ।

ଅଗସ୍ତି ଉଦୟ କରେ ଯଥା କ୍ଷୟ ନୀରର କଳୁଷଚୟ ଯେ
ତଥା ପତି ଭାବେ ଭାବବତୀ ଲବେ ତାପରାଶି କଲା କ୍ଷୟ ଯେ
ଏକାଳେ । କୀର ସଙ୍ଗେ ଡାକେ ସାରୀ ଯେ
ପୁଂସ ନାରୀନାମ ନାରୀ ପୁଂସନାମ ଶୁଣୁ ଚିତ୍ତ ଗଲା ଥିର ଯେ । ୨୬ ।

---

୨୧ । କାଜଳ—କଳା । ଉରଜ—ସ୍ତନ । ୨୨ । ଅନଙ୍ଗ—କନ୍ଦର୍ପ । ସିନ୍ଧୁ—ସମୁଦ୍ର । ୨୩ । ସ୍ୱାତୀନକ୍ଷତ୍ରରେ ବୃଷ୍ଟି ହେଲେ ଶାମୁକ ଉକ୍ତ ଜଳବିନ୍ଦୁକୁ ପାନ କଲେ ଶାମୁକ ଗର୍ଭରେ ଉକ୍ତ ଜଳବିନ୍ଦୁ ମୁକ୍ତା ହେବାର ପ୍ରବାଦ ଅଛି । ୨୪ । ଧ୍ୱାନ୍ତ—ଅନ୍ଧାର । ବିଧୁନୁଦ—ରାହୁ ।

୨୬ । ଅଗସ୍ତି—ନକ୍ଷତ୍ର ବିଶେଷ (ଶରତ୍‌କାଳରେ ଏହି ନକ୍ଷତ୍ର ଉଦୟ ହେଲେ ଜଳର ଆବିଳତା ନଷ୍ଟ ହୁଏ) ।

ସମବେଦନାରେ ସଖୀ କେ କେମାରେ ଠାଣ ଯାନ୍ତୀ ଦେଖାଇଲ ଯେ
ନୃପସୁତ ଚନ୍ଦ୍ର ଦରଶନେ ସାନ୍ଦ୍ର ଧୀଗ୍ରମଡ ବଧୂଣିଲା ଟେ
ନୃପଜା । ବମୋହନୀ ଭତାବେଣୀ ଯେ,
ଦେଖିଲେ ଧନେଶ ଯଥା ତାମରସ ତଥା ତହିଁ ଗଲ ଦାଣ ଯେ । ୨୭ ।
କୁବଳୟ ଯଥା ବହୁରୂପ ତଥା ଭ୍ରବେ ଏ ନାଗଗ୍ରମଣି ଯେ
ଦମ୍ଭ ଭାଙ୍ଗିଗଲ ସ୍ମୃତି ରଖିଲ ମର୍ଯ୍ୟାଦା ସେ କାଳ ଜାଣି ଯେ
ବଧାନେ । ଭୁଲ୍ ଭୁଲ୍ ରୂପ ଯଥା ଯେ,
ବଭନ୍ନ ରତୁରେ କୁମାର ମନରେ ଭାବ ଜାତ ହେଲ ତଥା ଯେ । ୨୮ ।
ନୃପସୁତ ଚିତ୍ତ ହେଲ ଲୋହବତ ନୃପସୁତା କାନ୍ତମଣି ଯେ
ଏକକୁ ଅନେକ ଯେଣୁ ଶୋଭ୍ରୁ ଟେକ ହେଲେ ପ୍ରେମେ ଟଣାଟଣି ଯେ
ମୋହନେ । ଚେତାହୃତ ଘନକେଶୀ ଯେ,
ପୁଂସମାର୍ଗେ ସ୍ତମ୍ଭ ବହୁ ଗଲ ଦମ୍ଭ ବଷାଦ ଘୋଟିଲ ଆସି ଯେ । ୨୯ ।
ଚାବଟେ ଶିଗ୍ରୀ ଥିଲ ଯେଣୁ ପରଚିତ ବେନି ଜଣଙ୍କର ଯେ
ପ୍ରେମ ଅମ୍ବୁବର କାମ ବାଜିଗର ଖେଳାଇଲ ତଉତର ଯେ
ଫଳିଲ । ମିଳନର ବଳେ ସ୍ୱତଃ ଯେ,
ଅସ୍ତୁ ମୂର୍ଚ୍ଛା ଘୋଟି ସଖା ସଖୀ କୋଟୀ ଉପଗୁରେ ଦେଲେ ଚିତ୍ତ ଯେ । ୩୦ ।
ବାଳାକୁ ଏକାଳେ ସଜନୀଏ ଦେଲେ ପଲ୍ୟଙ୍କ ଅଙ୍କେ ମଣ୍ଡାଇ ଯେ
ନୃପତିନନ୍ଦନ ବେଗେ ସଖାଗଣମେଳାକୁ ନେଲେ ଚଳାଇ ଯେ
ନୃପଜ । ମେଳାରେ ଲଭିଲ ଚେତା ଯେ,
ଶ୍ରୀ ଗୋଲୋକଚନ୍ଦ୍ର ଭାବେ କୃଷ୍ଣଚନ୍ଦ୍ର ଯେ ବଧାତାର ବଧାତା ଯେ । ୩୧ ।

## ୧୪ଶ ଛାନ୍ଦ

### ରାଗ—କାମୋଦୀ

କୁମାର ମାରପ୍ରାସେ ଭଲେ ଅବଶେ ବସେ ଆଳା ପ୍ରସଙ୍ଗ ସଙ୍ଗ ଛଡ଼ି ।
ସୁକୁମାରୀ କୁମାରୀ ଭାରତୀ ରତ ଶିଗ୍ରୀ ଶୋଭ୍ରୀ ଆରମ୍ଭା ରମ୍ଭା ଛଡ଼ି ସେ
ନବବାଳୀ । କାମଦ ମଦବବର୍ଦ୍ଧିନୀ । ପ୍ରମାଦ ମାଦକଦାୟିନୀ ।
ଅଣେ ଅବେଶ ବେଶ ସୁବାସ ବାସ ବଶ ସବସ ରସବାଣୀ ଠାଣି । ୧ ।
ମହୋଦଧିରେ ଧୀରେ ଦେବ ସୁଖରେ ଖରେ ଜୀବନ ବନଜନୀ ଭାବ ।
ଧାୟି ଶିବର ବରବଲ୍ଲଭୀ ଲଭିବାର ଉଜାଗରେ ଜାଗରେ ଥିବ ସେ ।
ପ୍ରସ୍ଥାଗରେ । ବଧିରେ ଧୀରେ ଅବଗାହି । ପୂଜିବ ତରତର ଦେଇ ।
ସୁଅତୁଳା ତୁଳାରେ ଦୀପାବଳୀ ବଳିରେ ଡାକ ଡାକ ଅ କା ମା ବଇ । ୨ ।

---

୨୭ । ବଧୂଶିଲା—ଚନ୍ଦ୍ରକାନ୍ତମଣି । ୩୦ । ଅମ୍ବୁ—ସର୍ପ ।
୧ । ଭାରତୀ—ସରସ୍ୱତୀ । ୨ । ମହୋଦଧି—ସାଗର ।

ସହଚରଙ୍କ ରଙ୍କୁ-ନୟନ ଶୋଭା ଶୋଭାକୁ ବାର ବାରସେ ପୁଣି କହେ ।
ସେ ଶୋଭାବଳୀ ନଳି ବଳେ ଝଂଝାଳ ଝାଳ ଧୃତସ୍ତମ୍ଭ ସ୍ତମ୍ଭନେ ମୋହେ ହେ ।
ସହଚର । ଝୁଣ୍ଟିଅ ଝୁମ୍ପୁଝୁମ୍ପୁ ନାଦ । ବିଷମ ରଣରଣ ବାଦ୍ୟ ।
କହେ କି ମାତ ମାତ ଭଙ୍ଗ ନାଗଭଗର ମୋଠାରେ ଠାବେ କର ସାଧ । ୩ ।
ସାର ସାରସାକ୍ଷୀରେ ସଂସାର ସାର କରେ ଧୃଅନେ ଅନେ ନ ମନାସି ।
ଜବାଅଧରା ଧରାଂଶୋଭା ଶୋଭାପସରା ନବୀନା ବିନା ହେବି ନ୍ୟାସି ହେ ।
ସହଚର । ତା ନାମ ନାମ ତୁଣ୍ଡେ ଗାଇ । ପ୍ରଣୟ ନୟୂକୁ ବଜାଇ ।
ବୁଲି ବୁଲି ବ୍ରହ୍ମାଣ୍ଡେ ମାଗିବି ଦାଣ୍ଡେ ଦାଣ୍ଡେ ଭିକ୍ଷା ଭିକ୍ଷାଣୀ ଗୃହେ ହୋଇ । ୪ ।
ଜୀବନ ବନଜନୀ ଜୀବଜୀବନଯୁମା ନବୀନା ବିନା ଯିବ ମୋର ।
ଅତନୁ ତନୁ ଦହେ ସୁତନୁ ତନୁ ମୋହେ ବିବାଶ ଖଣହାସ ଛାର ହେ ।
ସହଚର । ବସୁଧାଙ୍କୁ ସୁଧାଙ୍କୁ ଅଣେ । ଶତ ଶତ ସୋହାଗେ ଝାଣେ ।
ସେ ଧବଳିମା ଝରା ଶୋଭା ଅସରା ସରା କୁସୁମଶର ଶର ଜାଣେ । ୫ ।
ବିହାର ହାର ଦେଖି ମନାସେ ନାଶେ ସଂଗୀ ଶୋଭାଙ୍ଗୀ ଭାଙ୍ଗି ଦେଇ ଦମ୍ଭ ।
ରମଣୀମଣି ଭାଷ୍ଟୁ ଜଙ୍ଘେ ସୀତା ସୀତାଂଶୁ ବିଲକ୍ଷ ଲକ୍ଷ ଅଣେ ସ୍ତମ୍ଭ ହେ ।
ସହଚର । ତା ଝଲକ ଝଲକମାଳ । କ୍ଷଣପ୍ରଭା ପ୍ରଭା କି ଝଲ ।
ତାକଇ ଅନା ଅନା ଚେତକ ଦାସ ବାସନା ଯୁବକ ଦକ ହୁଅ ଭାଳ । ୬ ।
ହେବେ ଅଲକ୍ଷ ରକ୍ଷ ଅମର ନର ଯକ୍ଷ ବଳୟୁ ଲୟୁ କର କାମେ ।
ଜର ଜରକ ଜଙ୍ଘା ଅଙ୍ଗିବ ଶିବ ଭାବି ସ୍ତବିବ ରଣରଣ ଭ୍ରମେ ହେ ।
ସହଚର । ତା ଅଳକ ଅଳକନନ୍ଦା; ମୁକ୍ତ କଣ୍ଠରେ ଛା ବନ୍ଦା ।
ବିଭୂତ ଭୂତ ସେହ୍ନ ଅଗାଢଗତଦାୟୀ ବିଯୋଗିବର ବର ଫନ୍ଦା । ୭ ।
ନିଦବେଶ ବେଶ ନାସତ୍ୟ ସତ୍ୟଭାଷ ହୋଇ ଅନବରତ ରତ ।
ଗୃହିଁ ଗୃହିଁ ଜଙ୍ଘାକ୍ଷ ତୁରଙ୍ଗରଙ୍ଗ ମୁଖ ପଲକହୀନ ହୀନ ନେଇ ହେ ।
ସହଚର । ସଂକନ୍ଦନ କନ୍ଦନରତ, ଲଭିଲ ଶତ ଶତ ନେଇ ।
ବିଧୁ ବିଧୁର ହୋଇ ପକ୍ଷେ ପକ୍ଷେ ଛୁଡ଼ଇ ଅପିତ୍ତ ପିତ୍ତ ଶ୍ରେଣୀବତ ସେ । ୮ ।
ଛାର ତାରକାଛବି ଗୃହିଁବ ଭାବି ଭାବି ଶରଜନ୍ମା ଜନ୍ମାଇ କୋହ ।
ଅନ ଅନ ସୁମନେ ବାଗୁରେ ମନେ ମନେ ଅବଳାବଳା ଦେବ ମୋହ ହେ ।
ସହଚର । ସୁଷମା ସମାନ କେ ତାର, ଗୃହୁଧାରା ଧାରା ମାତର ।
ସୁନ୍ଦରୀ ଦରୀଶାୟୀ ବିତଳ ତଳ ରହ୍ନ ନାଗର ଗରଳ ଅହାର ସେ । ୯ ।
କଳ୍ପେ କଳ୍ପେ ବାଗୁରି ସୁଯୋଗ ଧରି ଧରି ସାର ସାରସାକ୍ଷୀଙ୍କି ଧାର ।
ବସି ବଶୀକରଣେ ମନ୍ତ୍ରୀ ମୋହନମୋହନେ ପ୍ରେମାନୁରାଗ ରାଗ ଭର ହେ ।
ସହଚର । ପୀରତ ରତରୁ ସୁଷମା, ଅବ୍ଜ ଅବ୍ଜରୁ ମଧୁରମା ।
ନୂଆ ନୂଆର ଅଣି ବହି ବହିଲ ମଣି ବରବରଣୀ ମନୋରମା ସେ । ୧୦ ।

---

୩ । ରଙ୍କୁ—ମୃଗ ବିଶେଷ । ୬ । କ୍ଷଣପ୍ରଭା—ବିଜୁଳି । ୭ । ରଣରଣ—କନ୍ଦର୍ପ; କାମଦେବ, ୮ । ନିଦବେଶ—ଦେବତା । ସଂକନ୍ଦନ—ଇନ୍ଦ୍ର । ଅପିତ୍ତ—ଅଗ୍ନି । ୯ । ଶରଜନ୍ମା—କାର୍ତ୍ତିକ । ୧୦ । ଅବ୍ଜ—ପଦ୍ମ, ଚନ୍ଦ୍ର ।

ଅଶେଷ ଶେଷ ଆସ୍ୟ କବି କବିତାଭୂଷ୍ୟ ଭାରତୀ ନିନ୍ଦାଲେ ।
କର କରଜ ଦୃଶ୍ୟ ନ ପାରି ଲେଶ ଲେଶ ବର୍ଣ୍ଣି ବର୍ଣ୍ଣିବେ ନିନ୍ଦା ଭାଲେ ହେ ।
ସହଚର । ଗଣେଶ ଗଣେଶ ଲେଖାରେ, ପଣ୍ଡିତ ପଣ୍ଡିତ ପଟରେ ।
ବର୍ଣ୍ଣ ବର୍ଣ୍ଣନ ଥାଉଁ କହିବେ ଗୃହୁଁ ଗୃହୁଁ ଏ ଲଗି ଗୁରୁ ଗୁରୁଭାବରେ ସେ । ୧୧ ।
ସୁବର୍ଣ୍ଣ ବର୍ଣ୍ଣ ସମ ନ ହେଉ ହେଉ ଭ୍ରମ ଦହନ ଦହନ ଲଙ୍ଘଇ ।
ପ୍ରତିଭା ପ୍ରତିଭାରେ ହାରି ହାରି ବଧୂରେ ଅଧୀରେ କ୍ଷଣେ କ୍ଷଣେ ରହି ହେ ।
ସହଚର । ରହି ପଦ୍ମକେଶର ସର, ତୁଷାରେ ସାରେ ମ୍ଳାନ ତାର ।
କଣ୍ଠା ବାସରେ ସରେ ଅପ୍ରଶଂସା ସଂସାରେ ଲଭି କେତକୀ ବାର ବାର । ୧୨ ।
ହେଲା ଖଞ୍ଜ ଖଞ୍ଜନ ଗୃହିଁ ଗୃହିଁ ନୟନ ଦଳେ ଯେ ଇନ୍ଦୀବର ବର ।
ଛଳ ଛଳ ଲୋଚନେ ଲୁଚିଲେ ବନେ ବନେ ମୀନ କୁରଙ୍ଗ ଥରଥର ହେ ।
ସହଚର । କଞ୍ଜ ଧରାଧର ରୋହିଲେ, ସାରସ ତହରେ ଲୁଚିଲେ ।
ଗତ ଗତି କି ହାରୁ କଟ କଟକି ଉରୁ ଦୁଃଖରେ ଖରେ ସନ୍ଧି ଭଲେ । ୧୩ ।
ଶୁକ ସୁକରଜାର ନାସିକା ବାରବାର ଗୃହିଁ ତାକେ କି ହର ହର ।
ତହାରୁ ଶୁକ ସୁକବଳେ ବଳେ ଅନେକ ଭାବ ଭାବନା ଦେଲେ ଘାରି ହେ ।
ରାଜସୁତ । ବୋଲେ ବିଭ୍ରମେ ଭାଳିଭାଳି, ପଥକ ପଥର ଯା ହେଲି ।
ସୁବୟସୀ ବୟସୀ ପ୍ରମୋଦେ ମୋଦେ ରସି ଥିଲି ଗୃହିଁ ଗୃହିଁ ନ ମଲି ସେ ॥
ପୁରୋଧା ସୁତସୁତ ଅଟେ ବହୁତ ହିତ କହେ ଏକାଳେ ଢାଳେ ଧର ।
ବରବରଣୀ କର ବଲ୍ଲକୀ ଲଭିବାର ବିଷକଣ୍ଠେ ତଣ୍ଠେ ଉଛାର ହେ ।
ରାଜସୁତ । ଅଶିବ ଶିବ କାମ୍ୟା ବହି, ବିଷ ବିଷୟ କି ପୁଚ୍ଛଇ ।
ଶ୍ରବଣେ ଥରଥର ଜଡ଼ିର ସାରସାର ଭୂସୁର ଭାବି ଭାବି ତହି ହେ । ୧୫ ।
ରସ ସରସ ରସ ନାଶ କଲ୍ମଷ ବିଷ ଏ ସତ୍ୟ ସତ୍ୟଯୁଗ ଗିର ।
ସୁମନ ମନ କରି ସୁଦନ ଦନ ଧରି ଡାକି ଅସୁର ଶୂରବର ସେ ।
ଅକୂପାର । ମନ୍ଥନେ ହେଲେ ଥରଥର, ତ୍ରିଲୋକ ହେଲା ଥରଥର ।
ଦଣ୍ଡ ସଂସାର ସାର ନଗ, ଅବର ବର ରଜ୍ଜୁ ଅନନ୍ତ ଅନନ୍ତର ସେ । ୧୬ ।
ବିବୁଧ ଧାଇଁ ଧାଇଁ ଦାନବ ସାଇ ସାଇ ଫଣୀ ଧରି ଧରି ମନ୍ଥିଲେ ।
ଲକ୍ଷ୍ମୀଁ ଗୃହୁଁ ସେକ୍ଷଣି ବାରରମଣୀମଣି ଅପସରୀ ଅପସରିଲେ ସେ ।
ଉଚ୍ଚୈଃଶ୍ରବା । ଐରାବତ ସ୍ଥିର ଉଦନ୍ତ, ସୁଧା ସୁଧାକର ବିଦିତ ।
ଆସୁ ଆସୁ ବାହାରି ଇନ୍ଦିରା ଶିରୀ ଶିରୀ ଭୂଷିତ ପାରିଜାତ ଜାତ ସେ । ୧୭ ।
ଅଚ୍ୟୁତ ଚ୍ୟୁତ କରି କରିଲେ ମନୋହାରୀ ରମାରେ ମାରେ ପାଇ ଗ୍ରାସ ।
ଆନ ଆନ ଯେ ଥିଲେ ବାସବ ସବୁ ନେଲେ ଦେଲା ଦାନବ ନବତ୍ରାସ ସେ
ସୁରଦ୍ୱିଷ । ବେଗେ ଆକର୍ଷି ରୁଣ୍ଡି ରୁଣ୍ଡି, ପୁର ବସୁଧା ସୁଧାଭାଣ୍ଡ ।
ପାଞ୍ଚି ସୁମନ ମନ ସୁଧାଭକ୍ଷଣେ କ୍ଷଣେ ହେବେ ଅମର ମରଚଣ୍ଡ । ୧୮ ।

---

୧୧ । କରଜ—ନଖ । ଗୁରୁ—ବୃହସ୍ପତି । ୧୫ । ବିଷକଣ୍ଠ—ମହାଦେବ । ଭୂସୁର ବ୍ରାହ୍ମଣ । ୧୬ । ଅକୂପାର—ସମୁଦ୍ର । ୧୭ । ବିବୁଧ—ଦେବତା । ଫଣୀ—ସର୍ପ । ୧୮ । ରମା ଲକ୍ଷ୍ମୀ । ସୁରଦ୍ୱିଷ—ଅସୁର ।

ଫୁଲେ କବରୀ ବର ଭଙ୍ଗୀର ଚିର କର ସବୁର ମନ ହର ହର ।
ମୋହ ମୋହନୀରୂପେ ଅସୁ ଅସୁ ସମୀପେ ଦୈତ୍ୟେ ଫଗଡ ଗଡ ଧର ସେ ।
ଦଉସୁତେ । ପ୍ରେମରେ ହେଲେ ଜର ଜର, ଭ୍ରୂଭଙ୍ଗୀ ଦେଖି ଥର ଥର ।
ବୋଲନ୍ତି ବିମ୍ବାଧର ! ଧରନ୍ତି ଶିଘ୍ର ଶିଘ୍ର ଚଉ ହୁଅଇ ଥର ଥର ସେ । ୧୯ ।
କର ରହସ ହସ ବୋଲନ୍ତି ବସ ବସ ଅସୁର ସୁର ଭିନ୍ନ ଭିନ୍ନ ।
ସୁଧା ବିଶେଷ ଶେଷ ନୋହିବ ଗ୍ରାସ ଗ୍ରାସ ନ କର ମନ ଛନ ଛନ ସେ ।
ମୋହ ଦେଲେ । ଦାନବଙ୍କ ଦୁର୍ଦ୍ଦିନ ଦିନ, ତୁଷ୍ଟ କଲେ ସୁମନ ମନ ।
ସବୁ ପିଇ ପୀୟୂଷ ଚଟକେ ଚଟକେ ବିନାଶ ସେ ଅମୃତ ଅମୃତ ଗୁଣ ସେ । ୨୦ ।
କର କର୍ଦ୍ଦମ୍ବା ଦମ୍ବା ଶ୍ରୀହରି ହର ବାସ୍ପା ଅନ୍ତର ଅନ୍ତର ଧ୍ୟାନରେ ।
ଅକୁଳେ କୂଳେ ଚଉ୍ତେ ଅଦ୍ଭୁତ ଦଉସୁତେ ଲୋଡ଼ିଲେ ବୃଥା ଖରେ ଖରେ ସେ
ଭାବଗ୍ରାହୀ । ଭକତ କଉକ ଅପିଲେ, ପୂର୍ବଦେବ ଦେବ ମୋହିଲେ ।
ବିଦଶା ଦଶା ହର ଦେବାର ବାର ହର ସୁଗ୍ର ସୁଗନ୍ଧି ଚିନ୍ତା ଦେଲେ ସେ । ୨୧ ।
ଗମନ ମନ କଲେ ଅମର ମର ଚଳେ ଗୃହଁ ଗୃହଁ ଯେ ଯାହା ଘର ।
ହୋଇ ଉଚ୍ଛନ୍ନ ଛନ୍ନ ଲୋଚକ ଥନଥନ ଭ୍ରମା ଧଟେ ଶଙ୍କର କର ସେ ।
ମହାଦେବ । ନ କଲେ ସେ ସୁମନାମନା, ଜାଣି ଚଣ୍ଡୀ ଚଣ୍ଡୀ ବାସନା ।
ପୁଣି ନାଗ ନାଗରେ ମନ୍ଥୁ ମନ୍ଥୁ ସାଗରେ ଅଶେଷ ଶେଷର ଯାତନା ସେ । ୨୨ ।
ସାଗର ଗରଯୁକ୍ତ ତ୍ରିଲୋକଲୋକ ଜସ୍ତ ଭାଳୁ ଅଶିବ ଶିବ ଭ୍ରମ ।
ଭକ୍ଷୁ ସୁଖରେ ଖରେ ଶୀତକଣ୍ଠ କଣ୍ଠରେ ସେ ବିଷ, ବିଷକଣ୍ଠ ନାମ ଯେ ।
ସୁତ ତୋଷ । ଭାବେ ଭାବେ ଈଶାନଈଶ, ଧୀଅନ ଆନ ନାହିଁ ଲେଶ ।
କରେ ବିଗ୍ରହର ଗ୍ରହ ପେଷି ନଗନଡର ପୂଜିବା ମହେଶ ମହେଶ ଯେ । ୨୩ ।
ଆନ ଆନ ଚିନ୍ତାରେ ଚେଜି ଦୁଃଖରେ ଖରେ ସୁତ ହର ହରଷେ ଚିନ୍ତ ।
ଗୋଲୋକ ଲୋକନାଥ ଭାବେ ଭାବେ ନିରତ ନମଇ ହରିପଡପଡ ହେ ।
ମୃତ୍ୟୁଞ୍ଜୟ । ଅଗତଗତ ଆଶୁତୋଷ, ହର ହର କଲ୍ମିଷବିଷ ।
ବିଭୂତଭୂତ ଯେଣୁ ଦେବଦେବ ଚରଣୁ ମାଗଇ ରେଣୁ ଦାସଦାସ ହେ । ୨୪ ।

## ୧୬ଶ ଛାନ୍ଦ

ରାଗ—ଗଡ଼ମାଳିଆ

ଯଗବତୀ ଜବାଧସ୍ତୀ । ଇନ୍ଦୁରେଖା ସଖୀ କରକ୍ତୁ ଧର ଗୋ,
ଧନେ ଘନେ ଙ୍କହ ରସାଭୁଷ୍ଟ ସଜନୀ ଗୋ । ୧ ।
କ୍ଷେଣେ ମେଳ ହେଲା ଦନୁ । କ୍ଷଣେହେଁ ପାଶୋର ନ ଯାଏ ମନୁ ଗୋ
ଅଙ୍ଗଦେଶ ନରପଡ ସୁନୁ, ସଜନି ଗୋ । ୨ ।

---

୨୧ । ପୂର୍ବଦେବ—ଅସୁର । ୨୩ । ଶୀତକଣ୍ଠ—ମହାଦେବ; ଈଶାନ—ମହାଦେବ ।
୨୪ । କଲ୍ମିଷ—ପାପ ।

ଜନ୍ମ ଯୋଗେ ତାଙ୍କ ଛବି । ନୟନେ ଦେଖିଲ ପ୍ରାଣୀମାତ୍ରଙ୍କ ଗୋ
ସେ ତ ତରଳାଇ ଦେବ ମନ୍ତ୍ରୀ, ସଜନି ଗୋ । ୩ ।
ମନରେ ତାଙ୍କ ଗୁହାଁଣି । ମଞ୍ଜିଲେ ହୃଦୟ ଦଅଇ ହାଣି ଗୋ,
କେବଣେ ନ ଚଳର ପାଦ ପାଣି, ସଜନି ଗୋ । ୪ ।
ଥିଲେ କା ହୃଦ ପଥର । ଦେଖିଲେ ସେ ରୂପ ନେତ୍ରପଥର ଗୋ,
ବଳେ ହୃଦକୁ ଅସିବ ଥର, ସଜନି ଗୋ । ୫ ।
ବନ୍ଧୁର ହୃଦ ଯାଠାରେ । ତେବେ ଡାକିବ ସେ ପଡ଼ି ଲୋଭରେ ଗୋ,
ଲାଜ ସରମକୁ ଫିଙ୍ଗି ଦୂରେ, ସଜନି ଗୋ । ୬ ।
ଥିଲେ କେ ପତିବରତୀ । ରତିଲୋଭେ ତାର ବଳିବ ମତି ଗୋ,
ଦେଖି ମୂର୍ତ୍ତିମନ୍ତ ମାରଭୂତ, ସଜନି ଗୋ । ୭ ।
ନୟନମୋହନ ଠାଣି । ଗୁହିଁ ଫେରିବ କା ମନ ଭଜାଣି ଗୋ,
ବଶ କରିବ କୁସୁମପାଣି, ସଜନି ଗୋ । ୮ ।
ଛଇଲ ରୂପକୁ ଦେଖି । କେଉଁ ଛଇଳୀ ତ ଯିବ ଉପେକ୍ଷି ଗୋ,
ସୁଷମାରେ ନ ରହିବ ଲକ୍ଷି, ସଜନି ଗୋ । ୯ ।
ଶୀନପଠ ଦେଖି ଯାର । ଲଭିଥିଲି ସ୍ନେହେ ମୁଦ ଅପାର ଗୋ,
ସେ ତ ସ୍ୱଭାବେ ରସସାଗର, ସଜନି ଗୋ । ୧୦ ।
ସୁଷମାଲହରୀ ତହିଁ । ଖେଳୁଅଛୁ ନବରଙ୍ଗକୁ ବହି ଗୋ,
ନାରୀ ମତି ବୁଡ଼ାଇବା ପାଇଁ, ସଜନି ଗୋ । ୧୧ ।
ଭୃଷାଗତ ସ୍ରୋତ ତହିଁ । ଅବଳା ଧୃତିକି ନେବ ଭସାଇ ଗୋ,
ତାଙ୍କ ପ୍ରଣୟ-ନୀରେ ମିଶାଇ ସଜନି ଗୋ । ୧୨ ।
ଲୁହିଁ ତାଙ୍କ ରୂପରଶ୍ମି । ଅଟନ୍ତି ଅଧିକେ ନିଦାରୁ ଖସି ଗୋ,
ନାରୀ ମନ-ମୀନର ବଡ଼ଶୀ, ସଜନି ଗୋ । ୧୩ ।
ବଳେ ହେବେ ଦାସୀ ଅସି । ଅପ୍ସରୀ ସୁନାସୀରେ ନ ରସି ଗୋ,
ଶୋଭା ଲୋଭରେ ପଡ଼ି ସୁନାସୀ, ସଜନି ଗୋ । ୧୪ ।
କିନ୍ନର କାମିନୀଗଣ । ପଲକେ ତେଜିବେ ପତିଙ୍କି ପୁଣ ଗୋ,
ପତି ସ୍ୱଭାବେ ଅଶ୍ୱବଦନ, ସଜନି ଗୋ । ୧୫ ।
ଦେବଙ୍ଗନା ହେବେ ବଶ । ଦେଖିଲେ ତାହାଙ୍କ ମୋହନ ବେଶ ଗୋ,
ଶଚୀ ଦେଖିବେ ସ୍ୱପ୍ନ ଅବଶ୍ୟ, ସଜନି ଗୋ । ୧୬ ।
ସୁରତରେ ହେବେ ଋଣୀ । ନାଗନାଗରୀ ସୁରତରଙ୍ଗିଣୀ ଗୋ,
ସୁଧାକରେ ତେଜିବେ ରୋହିଣୀ, ସଜନି ଗୋ । ୧୭ ।
ଦେଖି ତାଙ୍କ ରୂପ ଥରେ । ସତି ଯାଉଅଛୁ ମନମଥରେ ଗୋ,
ମୁଁ ତ ଗମିଲିଣି କୁପଥରେ, ସଜନି ଗୋ । ୧୮ ।
ପ୍ରେମର କେତେ ମାଦକ । ଗୁହିଁ ନ ଗୁହିଁଲେ ଘୋଟଇ ଦକ ଗୋ,
ଘାତ କରୁଥାଏ ଦକ ଦକ, ସଜନି ଗୋ । ୧୯ ।

ମନକୁ କଲେ ଆକଟ । ନ ମାନି ମୋ ବୋଲ କରୁଛି ହଠ ଗୋ,
  ବାଦ ସାଧିଲ୍ କରି କପଟ, ସଜନି ଗୋ । ୨୦ ।
ମୋ ମନ ନୋହିଲା ମୋର । କହିବି କାହାକୁ ଏ କଥା ଦୁସ୍ତର ଗୋ,
  କେଉଁ ଅଜଣା ରାଜ୍ୟ ଚୋର, ସଜନି ଗୋ । ୨୧ ।
ବିଷମ ଦଶାକୁ ଦେଇ । ମଣେ ଭଗାରିଙ୍କି ଦେବ ହସାଇ ଗୋ,
  ଜାତି କୁଳ ଶୀଳକୁ ଭସାଇ, ସଜନି ଗୋ । ୨୨ ।
ତାଙ୍କ ନେତ୍ର ମୋର ନେତ୍ର । ହେବାକୁ ଦଇବ ଯୋଗେ ଏକତ୍ର ଗୋ,
  ମୋତେ ଗ୍ରାସିଲା ବିଦେହ ଭୂତ, ସଜନି ଗୋ । ୨୩ ।
ନୟନ ରହିଲା ଜଡ଼ି । ବଳେ ଛଡ଼ାଇଲେ ନ ହେଲା ଛାଡ଼ି ଗୋ,
  ପାଦେ କିଏ ଆଣି ଦେଲା ବେଢ଼ି, ସଜନୀ ଗୋ । ୨୪ ।
ଧ୍ୟାନଭଙ୍ଗ ଯତି ପରି । ଚମକି ଉଠି ମୁଁ ହେଲି ଅଧୀରି ଗୋ,
  ତାଙ୍କ ମୂରତିମୋହନ ଚାରି, ସଜନି ଗୋ । ୨୫ ।
ଦେଖି ହାସଚନ୍ଦ୍ର ଖେଳା । ଗଳିଗଲା ମତି-ସୁଧାଂଶୁଶିଳା ଗୋ,
  କାମ ସରିତେ ଯାଇ ମିଶିଲା, ସଜନି ଗୋ । ୨୬ ।
ଧୃତିକି ହଜାଇ କେଣେ । ବୃଥାରେ ସଜନି । ଭ୍ରମୁଛି ଏଣେ ଗୋ,
  ଦମ୍ଭ ଭାଙ୍ଗିଲା କେ ଅଣ୍ଟୁପଣେ, ସଜନି ଗୋ । ୨୭ ।
ତାଙ୍କ ମିଳନରେ ମତି । କରୁଛନ୍ତି ଛାଡ଼ି କେଳତପତି ଗୋ,
  ନାରୀମାରଣେ ନ କରି ଭୀତି, ସଜନି ଗୋ । ୨୮ ।
ସଜନି ନ କର ମନା । ଛାଡ଼ିଲିଣି ଜାତି କୁଳ ଭାବନା ଗୋ,
  ତାଙ୍କ ସ୍ନେହ ମୋ ସମ୍ବଳ ବିନା, ସଜନି ଗୋ । ୨୯ ।
ଗଲଣି ତ ସବୁ ତମ । ବାଜୁ ପଛେ ଅପବାଦ-ଡିଣ୍ଡିମ ଗୋ,
  ତେଜି ନ ପାରିବି କାମଧାମ, ସଜନି ଗୋ । ୩୦ ।
ଭଗାରି ପଛକେ ଅଳୀ, ଦେଇ କରତାଳି ନାଚନ୍ତୁ ମିଳି ଗୋ,
  ତାଙ୍କୁ କରିଛି ପ୍ରେମସଙ୍ଗାଳି, ସଜନି ଗୋ । ୩୧ ।
ସଖି ! ତୁ ବୋଧ ନ କର, ଏ ଅବୋଧ ମନ ହୋଇଲା ପର ଗୋ,
  ନିନ୍ଦାହାଟକୁ ନାହିଁ ମୋ ଡର, ସଜନି ଗୋ । ୩୨ ।
ଦମ୍ଭ ନ ପାରୁଛି ଧରି, ପାଇଲା ପଦାର୍ଥ ହାରିଲା ପରି ଗୋ,
  କର ଚରଣ ହେଉଛି ଭାରି, ସଜନି ଗୋ । ୩୩ ।
ଉଡ଼ୁ ପଛେ ନିନ୍ଦା-ନେତ, କହୁଛି ତୋ ଆଗେ ସଜନି ସତ ଗୋ,
  ବୁଝି ନ ହୁଏ ମୋର ଆକୂତ, ସଜନି ଗୋ । ୩୪ ।
ସ୍ମୃତି ଏକା ସେହି ନାମ, ଜାଣିଲି କରମ ହେଲାଣି ବାମ ଗୋ,
  ବଳେ ଟାଣି ନେଲା ମନ କାମ, ସଜନି ଗୋ । ୩୫ ।
ନିକଟେ ଦେଖିଲି ସତ, ଦୂରେ ଥିଲା ପରି ହୁଏ ପ୍ରତୀତ ଗୋ,
  ଭାବି ନ ପାରିଲି ଏତେ ମାତ, ସଜନି ଗୋ । ୩୬ ।

ସଜନି ଏତିକି କର, ଭେଟାଅ ସେ ଅଙ୍ଗନୃପକୁମର ଗୋ,
ମୋର ଏ ଅଧିକ କହିବାର, ସଜନି ଗୋ । ୩୭ ।
ତାଙ୍କ ପାଶେ ମୋର ମାନ, ହେବ ସଖୀ ଗୁଞ୍ଜାଫଳ ସମାନ ଗୋ,
ସ୍ନେହଯୁକ୍ତ ମୁଖେ କୋପମାନ, ସଜନି ଗୋ । ୩୮ ।
ମନେ ନାହିଁ କାହିଁ ଠାବ, ଜାଗି ରହିଅଛି ତାଙ୍କର ଭାବ ଗୋ,
ଝୁରି ଝୁରି ଦିନ ସରିଯିବ, ସଜନି ଗୋ । ୩୯ ।
ନେତ୍ର ନ ହେଉଛି ତୃଷା, ନିଶିରେ ସଜନି ଦେଖିଲେ କି ଦଶା ଗୋ,
କର୍ମେ ଅଛି ମୋ ଭଗାରହସା, ସଜନି ଗୋ । ୪୦ ।
ସଖୀ ପର ପ୍ରାଣ ପର, ଏ ବିପଦେ ଯେବେ ହେବ ଭଗାର ଗୋ,
ତୁମ୍ଭ ସ୍ନେହକୁ ଢେଙ୍କବ କାପର, ସଜନି ଗୋ । ୪୧ ।
କଥା କହୁଛି କେବଳ, ସହିବାକୁ ଆଉ ନାହିଁ ମୋ ବଳ ଗୋ,
ଚିନ୍ତା କରନ୍ତି ବଳେ କବଳ, ସଜନି ଗୋ । ୪୨ ।
କରିବି ନାନା ଭୂଷଣ, ନ ସହିବି ଆଉ ଅପକର୍ଷଣ ଗୋ,
ଭାରି ହେଲା ବସନ ଭୂଷଣ, ସଜନି ଗୋ । ୪୩ ।
ଦେଖି ମୋର ଏ ଅବସ୍ଥ, ନ ହୁଏ କି ସଖି ! ଗ୍ଲାନି କରନ୍ତ ଗୋ,
ବୁଡ଼ିଲଣି ଯେମନ୍ତ ପୀରନ୍ତ, ସଜନି ଗୋ । ୪୪ ।
ତାଙ୍କ ବିନା ଦିଗ ଶୂନ୍ୟ, ଦିଶୁଛି ସଜନି ଏତିକି ଯେଣ ଗୋ,
ଶଶୀ ଆଶା ଶଶା ପରି ମନ, ସଜନି ଗୋ । ୪୫ ।
ମାତା ବୁଝାଇଲେ ଅଳି, ସତୀର ଧରମ ମୁକତି ବଳି ଗୋ,
ସେ ତ ହେଲେ ମୋ ନେତ୍ରସଙ୍ଖାଳି, ସଜନି ଗୋ । ୪୬ ।
ତେଜିବି ଜୀବନ ମୂଳ, ଅସତୀ ହେବା କି ହେବ ସୁନ୍ଦର ଗୋ,
ବର ମାନସେ ହେଲି ବିକଳ, ସଜନି ଗୋ । ୪୭ ।
ସାବିତ୍ରୀଙ୍କି କରେ ଜପ, ପତିଠାରେ ମୋର ମତି ଲୋଲୁପ ଗୋ,
ଅଙ୍ଗରାଜସୁତ ରସକୂପ, ସଜନି ଗୋ । ୪୮ ।
କୃଶତା ଲଭୁଛି ତନୁ, ତାଙ୍କ ଲାଗି ସଖି ! ଦିନକୁ ଦିନୁ ଗୋ,
ଲଜ୍ଜା ପଳାଇ ଯାଉଛି ମନୁ, ସଜନି ଗୋ । ୪୯ ।
ଜୀବ ଯିବାକାଳେ ମୋର, ସହାସଙ୍ଗାତଙ୍କ ଧରୁଛି କର ଗୋ,
କର୍ଣ୍ଣେ କହିବ ଶିଖଣ୍ଡିଚୂଳ, ସଜନି ଗୋ । ୫୦ ।
ତାଙ୍କ ଚିତ୍ରପଟ ଥରେ, ଦେଖାଇ ଦେବ ମୋ ନେତ୍ରପଥରେ ଗୋ,
ସ୍ୱପ୍ନ ଦେଖିବି ଚରଣଦ୍ୱାରେ, ସଜନି ଗୋ । ୫୧ ।
ଅଣି ତାଙ୍କ ପଦରଜ, ବୋଳିବ ମୋ ଶିରେ ସଜନି ହେଜ ଗୋ,
କାଳେ ଲଭିବି ରସିକରାଜ, ସଜନି ଗୋ । ୫୨ ।
ଧ୍ୱଂସ ପ୍ରେମରେ ଅବେଶ, କହୁଁ କହୁଁ ବାଳା ହେଲା ବିଶେଷ ହେ,
ଚିନ୍ତେ ଗୋଲୋକ କିଶୋରୀବେଶ, ସୁଜନ ହେ । ୫୩ ।

## ୧୬ଶ ଛାନ୍ଦ

ରାଗ—ସାମଗୁଜ୍ଜରୀ

ନବ ଅନୁରାଗ ନାଗରବରର ହୋଇଥିଲା ନବାଙ୍କୁର ଯେ
ଛଦପଟ ଶୋଭା ଦରଶନ ତେଜେ ହେଲା ବଢ଼ି ଲତାସାର ଯେ
ବାକଶେ—ଶୋଭା ଯଶୋଗାଥା ରସେ ଯେ,
କୁସୁମପାଣିର ତୂଣୀର ସୁମନେ ବଳି ମହକେଲେ ବାସେ ଯେ । ୧ ।
ଦିନେ ବଡ଼ଭାବେ ଗୃହୁ ଗବାକ୍ଷରେ ଥିଲା ମୀନନେତ୍ରୀ ଗୃହିଁ ଯେ
ଏକାଳେ ବୀଥିରାବରହାଣୀ ରସିକ ନୟନ ପଡ଼ିଲା ଯାଇଁ ଯେ
ଜଡ଼ିଲା—ଘୁଞ୍ଚିଲା ନାହିଁଟି ତଳେ ଯେ,
ଘୁଞ୍ଚିଲା ନାହିଁ ଯେ ବଦନ ଲାବଣ୍ୟ-ସଙ୍କଟେ ବୁଡ଼ିଲା ଗାଳେ ଯେ । ୨ ।
ସୁନ୍ଦରୀ ସହଜେ ହୋଇଥିଲା ଦିବ୍ୟ ଅଭିନବ ବନ୍ଧୁଘର ଯେ
ନେତ୍ରରସେଙ୍କରୁ ଶୋଭା ଜୁର ଦୂରୁ କାମ ବାନ୍ଧେ ତୋଟି ଶର ଯେ
ଲଖିଲେ—ଦେହେ କି ରୋମାଞ୍ଚ ବ୍ୟାଜେ ଯେ,
ବମୋହନ ଶର ବଳେ ବନ୍ଧାଲେ ଲଖାଇଲା ବାନ୍ଧକାର୍ଯ୍ୟେ ଯେ । ୩ ।
ମନ ଛନ ଛନ ନେଲା ପର ପରଧନ ତା ମୁଖରେ ଦ୍ରବ ଯେ
ପଡ଼ିଲା ପାନ୍ଥରେ ଜଡ଼ ହେଲା କିବା ନାଗରୀମୋହିନୀ ଛବ ଯେ
ବୀଥିରେ—ତରଙ୍ଗିଣୀ ଶୋଭାଗ୍ରଣୀ ଯେ,
ମଙ୍କୁ ତହିଁ ମନ ଅବଶେ ଆବେଶେ କ୍ଷଣେ ଗଲା କେଣେ ଭାସି ଯେ । ୪ ।
ସୁଷମା କାନନେ ମାନସ-ବାତାପୂ କରୁଥିଲା ବିଚରଣ ଯେ
ଅନଙ୍ଗ-କାତର ଭୟେ କଲା ଉଇ କୁଚ ଗିରି ଆରୋହଣ ଯେ
ଆବେଗେ—କେତେବା ନାଭମ୍ରେ ଖସେ ଯେ,
କେ ପଥୁରେ ପଡ଼ ସୁପଥକୁ ଦୁଢ଼ ଲୋଡ଼ିଲା ସନ୍ତାପ ଶେଷେ ଯେ । ୫ ।
ରସିକାରେ ମନ ରସିକଶିଖର ରଖିଗଲା କାର୍ଯ୍ୟାନ୍ତରେ ଯେ
ଉଦ୍‌ବେଗେ କପଟେ ଆସି ତା ନିକଟେ ଦରଶନ ଲମ୍ପଟରେ ଯେ
ସଙ୍ଗକୁ—ପାଞ୍ଚୁ ପାଞ୍ଚୁ ମନେ ମନେ ଯେ,
ସଖୀ ସଙ୍ଗେ କେବେ କରଇ ଆଳାପ ବାଳାଚିତ୍ତ ଆକର୍ଷଣେ ଯେ । ୬ ।
ପରକର ପରୀ କରାଇ ନିଜକୁ ଲୋଡ଼ୁଥାଇ ବାମା ସଙ୍ଗ ଯେ
ଇଙ୍ଗିତେ ଜଣାଇ ତା ଛଡ଼ା କୁସୁମେ ମଣ୍ଡୁଥାଇ ନିଜ ଅଙ୍ଗ ଯେ
ପୁଲକି—ତା ସ୍ନାନ ଘାଟରେ ମିଳେ ଯେ,
ପୁଣି ଗତାଗତ ପଥରେ ମନ୍ଦରେ ବୁଲୁଥାଇ ଅବହେଳେ ଯେ । ୭ ।
ସଙ୍ଗ ସଙ୍କଳ୍ପରେ ରହିଲା ରସିକ ଲଭିବାକୁ ବାଳା ପ୍ରେମ ଯେ
କପଟ ଦର୍ଶନଲମ୍ପଟ କୌଶଳେ ଉଜାଇବାକୁ ତା କାମ ଯେ
ରଚଇ—ବଶୀକରଣକୁ ଜପ ଯେ,
ବାଞ୍ଛାବଟତଳେ ଏଙ୍ଗ ମନାସଇ ଶିବେ ବସି କରେ ତପ ଯେ । ୮ ।

ବଳେ ଛଳେ ଅଳୀ ସଙ୍ଗେ ଯାଇ ମିଳି କହଇ ବିନୟ ଭାଷା ଯେ
ଅଳିଙ୍କି ଜଣାଇ ଅଣିବ ମଣାଇ ଗଣବଣା ଏଣୀଦୃଶା ଯେ
ଶ୍ଳେଷରେ—ସଖୀଙ୍କି କହଇ ବାଣୀ ଯେ,
ଦୟାବତୀ ଦୟା କରିବାକୁ ମାୟାଦୂତୀ ବରଗଇ ପୁଣି ଯେ । ୯ ।

ବାଳା ପ୍ରେମଲଭ ଅଣା ଜାଗ୍ରତରେ ଶତ୍ରୁ ସଦା ଛନ ଛନ ଯେ
ଝିଙ୍କାରି ନିସ୍ୱନ ପ୍ରତେ କରେ ସତେ ରସିକା ନୂପୁରସ୍ୱନ ଯେ
ନୟନେ—ନାଚୁଥାଇ ବାଳା ଛନ୍ଦ ଯେ,
ଇତର ରମଣୀବାଣୀ ଶୁଣି ମଣି ଭଣେ କି ପ୍ରାଣବାନ୍ଧବୀ ଯେ । ୧୦ ।

ସ୍ୱପନରେ ବାଳାସଙ୍ଗ କରି ଲଭି ଆଳାପେ କାଟଇ ଦିନ ଯେ
ଦିବା ଯାମିନୀରେ ବସି ଏକାନ୍ତରେ ନେଣୁ ସଦା ସେହି ଧ୍ୟାନ ଯେ
ଉତ୍ସୁକ—ଦୂତୀ ଆଗମନେ ମନ ଯେ,
ଦୂତୀ ହର୍ଷମୁଖ ସୁଧାବାଣୀ ଲଭେ ଜାଗ୍ରତ ନେଇ ଶ୍ରବଣ ଯେ । ୧୧ ।

କ୍ରମେ କ୍ରମେ ଜାତ ଅଙ୍ଗ ଅସୌଷ୍ଠବ ବିଜନ୍ମିତ ତାପ ଅତ ଯେ
ଶରୀର ପାଣ୍ଡୁର ଦିଶଇ ନିକର ଲୁଚିଯାଇ ପୂର୍ବକାନ୍ତି ଯେ
ଅରୁଚି—ବେଶ ବାସ ଅଶନରେ ଯେ,
କୃଶତା ସହଜେ ଭଜେ ଅପଘନ ରହିଁ ନ ହେବ ବାଧିରେ ଯେ । ୧୨ ।

ଜଷ୍ଟୀଷ ଶିରକୁ ହେଲା ଅତି ଗରୁ ଉତ୍ତରୀୟ ଗଲା ବଳି ଯେ
ଅଙ୍ଗୁଷ୍ଠିରୁ ବେଗେ ଅଙ୍ଗୁରୀୟ ରଙ୍ଗି ସହଜେ ପଡ଼ଲେ ଗଳି ଯେ
ନୂତନ—କାମ-ରାହୁଗ୍ରସ୍ତ ବିଧୁ ଯେ,
ଛବି ରହିଁ କଲେ ଚତୁରୀ ନାରୀ ସେ ମୋହିନୀଙ୍କ ସାଧୁ ସାଧୁ ଯେ । ୧୩ ।

ପରେ ଅରତରେ ରହି ଏକାନ୍ତରେ ଘୂଡ଼ଇ 'ହା ପ୍ରିୟେ' ଡାକ ଯେ
ବିରାଗୀ ପରାଏ ବିକଳ ହୁଅଇ ଅଧିକରେ କରି ଶୋକ ଯେ
ଭାଗ୍ୟକୁ—ନିନ୍ଦ କରେ କେତେ ଠାହି ଯେ,
ସୁନ୍ଦରୀ ହୃନ୍ଦରୀ ନାରୀପୁରନ୍ଦରୀ ଖୋଜେ ବୋଲି 'କାହିଁ କାହିଁ' ଯେ । ୧୪ ।

ପିକକୁ ପଞ୍ଜୁରେ ପିକବଚନାକୁ ଦେଖିଛୁ କି କହି ଖରେ ଯେ
ଖଞ୍ଜନେ ପଞ୍ଜୁରେ କଞ୍ଜନେତ୍ରୀ କାହିଁ ବସନ୍ତ ପକ୍ଷୀଙ୍କି ଧରେ ଯେ
ବିକଳେ—ଭାଷୁଥାଇ ବାଣୀ କେତେ ଯେ,
ବସନ୍ତବସନା ବାଳା ବାମା କିପାଁ ପର ପରି କଲା ମୋତେ ଯେ । ୧୫ ।

ବାଳାରେ ତନୟ ହେଉଁ ଅତିଶୟ ଲଜ୍ଜା ଚିତ୍ତୁ ହେଲା ଦୂର ଯେ
ଅଣି ଚିତ୍ରପଟ ଅତି ସମାଦରେ ଦେଖୁଥାଇ ବାରମ୍ବାର ଯେ
ଲଯ୍ୟରେ—ଗୁରୁ ଗୌରବ ନ ମାନି ଯେ,
ହୃଦୟରେ ବହି ଶୟନ କରଇ ଜାଗ୍ରତେ ବୁଲଇ ଘେନି ଯେ । ୧୬ ।

ଦନେ ଦନେ ପୁଣି ସଖୀଗଣଙ୍କ ଭଣି ଅଣି ପାଶେ ରସବତୀ ଯେ
ମଞ୍ଜିଷ୍ଠା ରାଗରେ ବନ୍ଧ ସଂଯୋଗରେ ତୋଷିବ କାମିନୀ ମତୀ ଯେ
ଚନ୍ଦ୍ରମା—ଦେବ ଗୁଳା ଡଥି ରେ ଯେ,
ଦ୍ୱାଦଶାଲିଙ୍ଗନ କେତେ ଚୁମ୍ବଦାନ ଅଷ୍ଟ ନଖକ୍ଷତ କର ଯେ । ୧୭ ।
ଅସିଲା ଉନ୍ମାଦ ଗ୍ରାମିଲ ପ୍ରମାଦ ଭ୍ରମିଲ ବାଗୁଳ ବଡ ଯେ
ବସ୍ତ୍ରଡରେ ଲବେ ଅଭ୍ୟାସ ପ୍ରଭାବେ କାଳା ନାମ ଉଚ୍ଚାରନ୍ତ ଯେ
ବିକଳେ—ବଳମି ପୁଣି ହସଇ ଯେ,
ମଜ୍ଜନରେ କେବେ କଜ୍ଜନ ଶୋଭାରେ ପୁରୀ ମୁକ୍ତାକୁ ବନ୍ଧ ଯେ । ୧୮ ।
ପୁଣି କେବେ କହ ସଖୀଗଣେ ଗୃହୀ କେଉଣେ ଗଲ କାହିଁ କାହିଁ ଯେ
ଅସ ଅସ ବୋଲି ପଲକ୍ଷଣେ ଭଣି ଭୂଷଣକୁ ଦଏ ନଗ୍ନର ଯେ
ବକ୍ଷରେ—କରାଘାତ କରୁଥାଇ ଯେ,
ପୁଣି ଭାବେ କିବା ଗଲେ ଗୃହୀ-ଗୃହ ଲଲି ଗୃହମୁହାଁ ଯେ । ୧୯ ।
କେମେ କେମେ ମୋହ ଅସିବାରୁ କୋଦ ଜଲେ ସବ ସଂଗ୍ରାମ ଯେ
ଏଙ୍କୁ ଅରେକ ଅନାଇ ପୁଚ୍ଛନ୍ତି ଆଜ ଏ ବ୍ୟାଧିର ମୂଳ ଯେ
କି ହେବ—ଅସିଗଲେ ଅନ୍ତଦଶା ଯେ,
ଚେତନା ଭରାନ୍ତି ନାନା ଉପଗ୍ରରେ ଶୁଣାଇ ଅଶ୍ୱାସ ଭାଷା ଯେ । ୨୦ ।
ଧମନୀ ସ୍ପନ୍ଦନ ଦେଖି କେ ମଜନ କହଇ ସଖୀଙ୍କୁ ଠାର ଯେ
କେ କର୍ଣ୍ଣେ ସମୀର ମୁଖେ କରେ ଜାତ କେ ବାଞ୍ଛେ ବ୍ୟଜନ ଧର ଯେ
ଗୋଲୋକ—ରାଧାକୃଷ୍ଣ ଚିନ୍ତ ମନେ ଯେ,
ବାରବେ ଛାନ୍ଦରେ ନବ ଦଶା ସ୍ପଷ୍ଟେ ଅନ୍ତକୁ ଅତ ଗୋପନେ ଯେ । ୨୧ ।

---

## ୧୮ଶ ଛାନ୍ଦ

### ରାଗ—ଚିନ୍ତା ଦେଶାକ୍ଷ

ସଖୀଗଣେ ଡାକ ଦନେ ନୃପତନୟ ।
ପୁଚ୍ଛେ ବିଶ୍ୱବିମୋହନୀ ଲଭ ଉପାୟ । ୧ ।
ସେ ସୁନ୍ଦରୀଶିରୋମଣି ସଂସାରେ ସାର ।
ନାହିଁ ନ ଥିବ ନୋହିବ ଏ ଭଳି ପୁର । ୨ ।
ରତ୍ନାକରେ ରତ୍ନ ପରା ଲୁଚ ରହଇ ।
ଦିନକର କର ଦନେ ପରଶେ ନାହିଁ । ୩ ।
ଭୁଲା କୋମଳାଙ୍ଗୀ ବାଳା ଲାବଣ୍ୟନିଧି ।
ଦେଖି ନାହିଁ ନେତ୍ର କେବେ ତେଡ଼େ ସମୃଦ୍ଧି । ୪ ।
ଶୁଣିଛୁ ରମ୍ଭା ଉର୍ବଶୀ ବଡ଼ ସୁନ୍ଦରୀ ।
ହେବେ ନାହିଁ ଏହା ଶୋଭା ଲେଶକୁ ସରି । ୫ ।

ଶେଷ କବି ବାଣୀ ବର୍ଣ୍ଣି ନ ପାରେ ଯାର ।
ସୁଷମା ତା ସମ କାହିଁ ଥିବ ସଂସାର । ୬ ।
ଏମନ୍ତ ସୁନ୍ଦରୀ ଲଭିବାର ଉପାୟ
ମନକୁ ନ ଆସେ କିଛି ସଖାନଚୟ । ୭ ।
ନ ଜାଣିବେ ତାତ ମାତ ଲଭିବ ଧୀର ।
ପାରଦ ମୁଠାରେ ଯେବେ ରହିବ ପର । ୮ ।
କଞ୍ଚୁକିଏ ଜଗିଛନ୍ତି ରକ୍ଷ ସମାନ ।
ପୁର ରହିଛନ୍ତି ବେଢ଼ି ଶୂର ସଇନ । ୯ ।
କୃତାନ୍ତ ସମାନ ଦଣ୍ଡଧାରୀ ସହଳେ ।
ଶିଖାଗ୍ନି ଶିଖେ ଫୁଟିବେ ସତେ ସରୋଜେ । ୧୦ ।
ପାର୍ଥିବ ହସ୍ତୀରେ ଅଞ୍ଜନା କି ବସିବ ।
ଶୀତାଂଶୁ କି ସରୋଜିନୀ ମନ ତୋଷିବ । ୧୧ ।
ଶୁଣି ଏ ବାଣୀକି ଭଣେ ପୁରୋଧାସୁତ ।
କନ୍ୟା ଯେବେ ବଶୀଭୂତା ହୋଇଛି ସ୍ୱତଃ । ୧୨ ।
କାର୍ଯ୍ୟସିଦ୍ଧିରେ ଏ ବାଧା ନ ହେବେ ଗଣା ।
ଅନୁବର୍ତ୍ତିଣୀର ସ୍ନେହ ନ ହେଉ ଊଣା । ୧୩ ।
ଦୂତୀ ଯାଉ ପନ୍ଦ ଦେଖି ଦେଉ ଦର୍ଶନ ।
କର କାଶୀ ଶିବପୁର ସଙ୍କେତ ସ୍ଥାନ । ୧୪ ।
ସାମନ୍ତସୁତ କହଇ ଏ କି ଉଚିତ ।
ନାରୀମର୍ଯ୍ୟାଦାକୁ ନ ଲଙ୍ଘିବ ବିହିତ । ୧୫ ।
ପିତା ସନମତ ବିନା ନୃପନନ୍ଦନୀ ।
ହୋଇଛି କେ ଅବା କାହିଁ ସ୍ୱେଚ୍ଛାଚାରିଣୀ । ୧୬ ।
ପ୍ରମାତା ଅଇଲେ ସୁତା ସଙ୍ଗେ ମନ୍ଦିରେ ।
ସଙ୍କେତସ୍ଥଳରେ ଅବା କି ହୋଇ ପାରେ ? ୧୭ ।
ବିଧିରେ ଉପାୟ କର ସ୍ୱୟମ୍ବରକୁ ।
ବରିବ ବରବରଣୀ ଯେଉଁନେ ସଖାଙ୍କୁ । ୧୮ ।
କହୁ ଅଳସୁତ କହେ ହୋଇ ବିନୟୀ ।
କନ୍ୟା ଲଭିବାର ଏ ସୁଉପାୟ ନୋହି । ୧୯ ।
ଯଦି ନ ବରନ୍ତି ନୃପସଖାଙ୍କୁ ସତ ।
ରାଜନନ୍ଦନୀ ହୋଇବ କାହୁଁ ପ୍ରାପତ ? ୨୦ ।
ବଳେ ଜିଣି ଆଣିବାକୁ ଅଛି ଶକତ ।
ରଣ ଉତ୍ସାହରେ ଗୁଳ ଭିଡିବା ମାତ । ୨୧ ।
ଉଚିତ ମଣଇ ନରପତି ଉରାଇ ।
କୁରୁକ୍ଷେତ୍ରକୁ ଆଣାଇବା କନ୍ୟା ମଣାଇ । ୨୨ ।

ଶୁଣି ଭାଷେ ନୃପସୁତ ଅତି ତ୍ୱରିତ ।
ସମରସଜ୍ଜା ଏ କାଳେ ନୋହେ ଉଚିତ । ୨୩ ।
କାମୁକ ବୋଲି ମୋ ନାମେ ବାଜିବ ଢକ୍କା ।
ରଣ ଅନଶ୍ଚିତ ଫଳ, ଦ୍ୱିତୀୟେ ଦକ୍ଷା । ୨୪ ।
ବୃଥାରେ ନରଶୋଣିତ ସମର ଚଣ୍ଡୀ
ପିଅଏ ଯେ, ନୋହେ ସେହି ପ୍ରକୃତ ଦଣ୍ଡୀ । ୨୫ ।
ପ୍ରଜା ହିତସାଧନରେ ସମର ସୃଷ୍ଟି ।
ଅନ୍ୟଥା ସ୍ୱାର୍ଥପରର ପିଆସା ପୁଷ୍ଟି । ୨୬ ।
ଅହିଂସା ପରମ ଧର୍ମ ଶାସ୍ତ୍ରବଚନ ।
କର ଉପାୟାନ୍ତରରେ ଯା ନିରୂପଣ । ୨୭ ।
କନ୍ୟାଭାବ ଜଣାଇଲେ ବାଂଭଗୁରଣୀ ।
ବୋଲିବେ ନବ ବାଳାକୁ ସଭଲେ ଶୁଣି । ୨୮ ।
ପୀରତିବତ୍ସଳା କଷ୍ଟେ ତେଜିବ ପ୍ରାଣ ।
କେଉଁ କୀର୍ତ୍ତି ଅରଜିବ ହୀନ ପାଷାଣ । ୨୯ ।
କନ୍ୟାଗ୍ରିତ ଦୂତୀ ଜାତ ପ୍ରକାଶେ ଯେତେ ।
କରତେ ମୋ ହୃଦ ତେତେ ତୀକ୍ଷ୍ଣ କରତେ । ୩୦ ।
ଉପାୟ ନ ଦିଶେ ଅଜି ତା ଭାବ ଭାବ ।
ସତେ ନୟନେ ଦେଖିବ ପ୍ରାଣବାନ୍ଧବୀ । ୩୧ ।
ସ୍ୱଜନ ଭବନେ ଯାଇଁ କରିବ ବାସ ।
ଡାକିବ ଭକ୍ତିଭାବରେ ଉମା ମହେଶ । ୩୨ ।
ନ ହେଲେ କୃପା ଏ ମୁଣ୍ଡେ ଗୁଣ୍ଡେ ସନ୍ତୋଷେ ।
ଚଣ୍ଡେ ଦେବୀ ଚଣ୍ଡୀ ମୁଣ୍ଡମାଳିନୀ ପାଶେ । ୩୩ ।
ମନ୍ତ୍ରିଜ ଶୁଣି ଏ ବାଣୀ କହଇ ହସି ।
ଅଦ୍ଭୁତରେ ସିଦ୍ଧି ବେଗେ ପଳାଏ ଖସି । ୩୪ ।
ଯେଉଁ ନାରୀ ଶିରୋମଣି କୁରୁକ୍ଷେତ୍ରରେ ।
ପ୍ରିୟସହଚରୀ ତା ଚଞ୍ଚଳା ନାମରେ । ୩୫ ।
ପ୍ରିୟ ନଣନ୍ଦ ତାହାର ପ୍ରେୟସୀ ମୋର ।
ଉପାୟ ସେ କଲେ ବାଳା ବରିବ ବର । ୩୬ ।
ଆଗହୁଁ ଉପାୟମାନ କଲଣି କେତେ ।
ଶୁଭେ ବରିବ ସଖୀଙ୍କୁ କନ୍ୟା ଯେମନ୍ତେ । ୩୭ ।
ସ୍ୱରସରେ ହାସ ରଙ୍ଗେ ମିଶିଲ କ୍ଷଣେ ।
ଚପଳା ଶୋଭିଲ କିବା ନୀଳ ଗଗନେ । ୩୮ ।
ଦୁରାଶାରେ ଅଶାରେଖା ହେଲା ଉଦୟ ।
ନିଦାଘରେ ଯଥା ବେଳେ ବେଳେ ମଳୟ । ୩୯ ।

ବିଷାଦେ ଅନାଦ ଘଟଣି ହେଲା ପ୍ରକାଶ ।
ଅଶିଷ୍ଟ ହୃଦୟେ ଭୟେ ଶିଷ୍ଟତା ଦୃଶ । ୪୦ ।
ଅସନ୍ତୋଷେ ସୁସନ୍ତୋଷ ବିରାଜେ ଲବେ ।
ମରୁରେ ଅକାଳେ ଘନ ହୃଦୟୁ ଭ୍ରାବେ । ୪୧ ।
ପରିମଳା ଅଙ୍ଗେ ଯିବା ବ୍ୟଙ୍ଗେ କେ ଜନ୍ତୁ ।
ଅବ୍ୟଙ୍ଗେ ସର୍ବେ ବୋଇଲେ ତାହାହିଁ ହେଉ । ୪୨ ।
ସଚିବସୁତ ବୋଇଲା ହେଲା ତା ଅୟୁ ।
ଭାବୀ କି ହେବ ଯା ଭାବ କର ନିର୍ଣ୍ଣୟୁ । ୪୩ ।
ମନ୍ତ୍ରଣାରେ କଲେ ସାର ଏହୁ ଶଙ୍କର ।
ଯାଉ ସେ ଠେଲାଞ୍ଜ ବାଳା ମନ ସତ୍ୱର । ୪୪ ।
ମଣାଉ ଜନନୀ ଶୁଭେ କନ୍ୟାକୁ ସେହି ।
ଶିବ ଦରଶନେ କାଶୀ ଦେବେ ପଠାଇ । ୪୫ ।
ମାତା ସୀତ୍କାରେ ପିତା ହେବେ ସମ୍ମତ ।
ଶୁଭ ଫଳିବ ଚଞ୍ଚଳା ଦେଲେ ଇଙ୍ଗିତ । ୪୬ ।
ପରିମଳା ଆଗମନେ ନୋହୁଁ ବିଳମ୍ବ ।
ଦମ୍ଭ ଦେବାକୁ ସେ ହେବ ସୁଦୃଢ଼ ସ୍ତମ୍ଭ । ୪୭ ।
ପରିମଳା ପିତା ପୂର୍ବୁ ଯେ ପାରିବତ ।
ଅଣିଛୁ ସେ ଯିବ ଗୃହେ ନେଇ ଉଦନ୍ତ । ୪୮ ।
ଏଥୁଅନ୍ତେ ଯେହାପୁରେ କଲେ ଗମନ ।
ଶିବେ ଯାଚଲେ ହପାନ ନୃପନନ୍ଦନ । ୪୯ ।
ମନ୍ତ୍ରିସୁତ ଜାୟା ପାଶେ ସର୍ବବୃତ୍ତାନ୍ତ ।
କହି ପଠାଇଲେ ରଙ୍ଗେ ଅଙ୍ଗେ ଭୂଷିତ । ୫୦ ।
ପରିମଳା ରାଜପୁରେ ଗୋଲୋକ ଭଣି ।
ତୋଷେ ଚତୁରୀ ଚତୁରୀ ସୁତା ଜନନୀ । ୫୧ ।

## ୧୮ଶ ଛାନ୍ଦ

### ରାଗ—ନଳିନୀଗୌଡ଼ା

ପ୍ରକଟିଲା ବିରୋଧ ବଚନ ମଧୁକାଳେ ।
ସର୍ବ ବହିଲେ ଶିରୀକି ମଳୟ ଅନିଳେ । ୧ ।

---

**୧ମ ପଦ** । ମଧୁକାଳ ପ୍ରବେଶ ହୋଇ ବିରୋଧ ବଚନ (ବିରୋଧାଭାସ) ପ୍ରକଟ କଲା ।

(ବସନ୍ତ ଅର୍ଥ)—ମଳୟ ଅନିଳେ (ମଳୟ ପବନରେ) ସର୍ବ (ଚରାଚର; ସମସ୍ତେ) ଶିରୀକି (ଶୋଭାକୁ) ବହିଲେ (ଧାରଣ କଲେ) ।

ବିରୋଧ ଅର୍ଥ—ସର୍ବ (ଶିବ) ମଳୟ ପବନରେ ଶିରୀକି (ଲକ୍ଷ୍ମୀକି) ବହିଲେ (ଧାରଣ କଲେ) ।

ମଧୁହାସୀ ବିହରିଲେ ତା ଗୃହିଁ ପୁଷ୍କରେ ।
ଅନନ୍ତ ସୁମନେ ବାସ ବିତରିଲେ ଖରେ । ୨ ।
ଅବିରତେ ପୁଂନାଗେ ଭ୍ରମରେ ହେଲେ ସ୍ନେହୀ ।
ନାଗେଶ୍ୱର ତୋଷେ ହସି ସୁନାସୀ ମୋହଇ । ୩ ।
କଞ୍ଜ ଫୁଟିଲା ଭଞ୍ଜନ ଫୁଟିଲା ବିଧୁରେ ।
ପିକ ଗାଇଲା ପଞ୍ଚମେ ବିଧୁରେ ମଧୁରେ । ୪ ।
ହରି ବୃକୋଦର ଅଶା ଅଚଳ ଶିରୀକି ।
ସମୀରଣ ପ୍ରସରିଲା ବିମୋହି କ୍ଷିତିକି । ୫ ।

---

୨ୟ ପଦ । ବସନ୍ତ ଅର୍ଥ—ତା ଗୃହିଁ ( ବସନ୍ତ ଶୋଭା ଗୃହିଁ ) ମଧୁହାସୀ ( ଭ୍ରମରମାନେ ) ପୁଷ୍କରେ ( ପଦ୍ମଫୁଲମାନଙ୍କରେ ) ବିହରିଲେ । ଅନନ୍ତ ସୁମନ ( ଅସଂଖ୍ୟ ଫୁଲ ) ଖରେ ( ଆକାଶରେ ) ସୁବାସ ବିତରଣ କଲେ ।

ବିରୋଧ ଅର୍ଥ—ତା ଗୃହିଁ ମହାଦେବ ଲକ୍ଷ୍ମୀଙ୍କ ବହିବା ଦେଖି ମଧୁହାସୀ ( ମଧୁସୂଦନ ବିଷ୍ଣୁ ) ପୁଷ୍କରେ ( ଆକାଶରେ ) ବିହରିଲେ । ଅନନ୍ତ ( ବାସୁକି ) ସୁମନେ ( ଦେବତାମାନଙ୍କୁ ବା ସୁମନ ହୋଇ ) ବାସ ( ଲୁଗା ) ବିତରିଲେ ( ବାଣ୍ଟିଲେ ) ।

୩ୟ ପଦ । ବସନ୍ତ ଅର୍ଥ—ଅବିରତେ ( ସର୍ବଦା ) ପୁଂନାଗେ ( ପୁନ୍ନାଗ ଫୁଲରେ ) ଭ୍ରମରେ ( ଭ୍ରମରମାନେ ) ସ୍ନେହୀ ହେଲେ ( ଆସକ୍ତ ହେଲେ ) । ନାଗେଶ୍ୱର ( ଫୁଲ ) ତୋଷେ ( ତୋଷ ହେଲା ) । ସୁନାସୀ ହସି ( ସୁନାସୀ ଫୁଲ ଫୁଟି ) ମୋହଇ ସମସ୍ତଙ୍କୁ ମୁଗ୍ଧ କଲା ) ।

ବିରୋଧ ଅର୍ଥ—ଭ୍ରମରେ ( କାମଜନିତ ବିଭ୍ରମରେ ) ପୁଂନାଗେ (ଅଣ୍ଡିରା ସାପମାନେ) ଅବି ( ଛେଳି ) ରତିରେ ( ସୁରତିରେ ) ସ୍ନେହୀ ହେଲେ ( ଅତ୍ୟଧିକ ଇଚ୍ଛା ପ୍ରକାଶ କଲେ ) । ନାଗେଶ୍ୱର ( ହସ୍ତୀ ) ତୋଷରେ ହସି ସୁନାସୀ ( ଉତ୍ତମ ନାସିକୁ ) ମୋହଇ ( ମୁଗ୍ଧ କଲା ) ।

୪ର୍ଥ ପଦ । ବସନ୍ତ ଅର୍ଥ—ବସନ୍ତରେ କଞ୍ଜ ( ପଦ୍ମ ) ଫୁଟିଲା । ଭଞ୍ଜନ ( କାମ ) ବିଧୁରେ ଫୁଟିଲା ଅର୍ଥାତ୍ ପ୍ରାଣୀମାନଙ୍କର ବସନ୍ତରେ କାମ ଇଚ୍ଛା ଜାତ ହେଲା । ପିକ ( କୋଇଲି ) ପଞ୍ଚମ ତାନରେ ବିଧୁରେ ମଧୁରେ ଗାଇଲା ଅର୍ଥାତ୍ ବିଯୋଗୀକୁ ଦୁଃଖ ଓ ସଂଯୋଗୀକୁ ସୁଖ ଦେଲା ।

ବିରୋଧ—ବିଧୁରେ କଞ୍ଜ ଫୁଟି ପୁଣି କଞ୍ଜ ନ ଫୁଟିଲା । ପିକ ପଞ୍ଚମେ ( ଅଣଶଯୁ ସ୍ୱରରେ ) ବିଧୁରେ ( ଦୁଃଖରେ ) ଗାଇଲା । ପଞ୍ଚମେ ( ପଞ୍ଚମ ତାନରେ ) ମଧୁରେ ( ମନୋହର ସ୍ୱରରେ ) ଗାଇଲା ।

୫ମ ପଦ । ବୃକୋଦର—ଯମ, ଭୀମ । ଅଶା—ଦଗ, ଅଶା । ସମୀରଣ—ପବନ, ଭୀମପିତା ।

ବସନ୍ତ ଅର୍ଥ—ବୃକୋଦର ଅଶା-ଅଚଳ ( ଦକ୍ଷିଣ ଦଗରେ ମଳୟଗିରି )ର ଶିରୀକୁ ( ଶୋଭାକୁ ) ହରି ( ହରଣ କରି ) ସମୀରଣ ( ପବନ ) କ୍ଷିତିକୁ ( ପୃଥିବୀକୁ ) ବିମୁଗ୍ଧ କରି ପ୍ରସରିଲା ( ବହିଲା ) ।

ବିରୋଧ ଅର୍ଥ—ଭୀମର ଅଶା ରୂପକ ଅଚଳ ଲକ୍ଷ୍ମୀକୁ ହରଣ କରି ଅର୍ଥାତ୍ ପୁତ୍ରର ଆଶାକୁ ନାଶ କରି କ୍ଷିତିକୁ (ପୃଥିବୀବାସିଙ୍କୁ) ମୁଗ୍ଧକରି ପବନ ପ୍ରସରିଲା ( ବହିଲା ) ।

ବିଟପୀ ମଣ୍ଡି ସୁମନେ ଦଶିଲେ ସୁନ୍ଦର ।
ଶକ୍ର ପ୍ରକାଶେ ପ୍ରମୋଦ ମଧୁର ରୁଚିର । ୬ ।
ମୁଚକୁନ୍ଦେ ଗଣିକାଏ ମୋହିଲେ ଆନନ୍ଦେ ।
ପୁଷ୍ପବତୀ ସୁମନାଏ ହସିଲେ ପ୍ରମୋଦେ । ୭ ।
ଏ ଋତୁରେ ଦୁର୍ଦ୍ଦଣ୍ଡ କୁସୁମକାଣ୍ଡେ ଭସ୍ମ
କରି ନବ ପୁଷ୍ପବାଣ ହୋଇଛନ୍ତି ଅଥୟ । ୮ ।
ଦିନେ ଉପବନେ ବସି ଗୁରୁ ଲମ୍ପାଗୋଷ୍ଠୀ ।
ସଖୀ ସଙ୍ଗେ ଜଳପନା କରେ କୃଶୋଦରୀ । ୯ ।
ସଖୀ ହେ କହେ ଖେଳାଇ ନୟନ ଅମ୍ବୁଜ ।
ଅତନୁ ହେବାରେ କାମେ କଲେ ପନସିଜ । ୧୦ ।
"ସୃଷ୍ଟି ସ୍ଥିତ ଲୟେ" ଆଦ୍ୟ ବିନା କେଉଁ ମୂଳ ।
ନ ସମ୍ଭବେ କାମ ବିନା ଅଦ୍ୟ ସ୍ଥିତ କାହିଁ ? ୧୧ ।
ତେଣୁ ବିଶ୍ବରେ ସଂସାର ସଦା କାମମୟ ।
କାମ ବିନା ସବୁ ହେଲେ ଜଗତ ପ୍ରଳୟ । ୧୨ ।
ଖଗ ବୃଷ ହଂସ ପଣ୍ଡ ନାରୀ ପ୍ରେମେ ମତ୍ତ ।
କାମିନୀ ନାମକୁ ନାରୀ ବହନ୍ତି ଯଥାର୍ଥ । ୧୩ ।
ନିଜେ ଯେ ଜଗତପତି ତାଙ୍କ ସୁତ କାମ ।
ଗୃହୀ ଭକ୍ତିଭରେ କାମେ କରିବା ପ୍ରଣାମ । ୧୪ ।
ସଖୀ ହେ ପଗୁରେ କାମେ ନିନ୍ଦନ୍ତି କାହିଁକି ?
ଆନ ସଖୀ ବୋଲେ ଶୁଣି ବୋଲିବା ତହିଁକି । ୧୫ ।
ବନ୍ଦନ୍ତି କାମୁକ କାମେ ନିନ୍ଦେ ନପୁଂସକ ।
ନିନ୍ଦନ୍ତି ବନ୍ଦନ୍ତି ପୁଣି ସୁରର୍ଷି ଅନେକ । ୧୬ ।
ପ୍ରଜ୍ଞାବଳେ ଅନ୍ତର୍ବୃତ୍ତି ବହିର୍ବୃତ୍ତି କରି ।
ରଖିବା କାମକୁ ଏହା ଉଚିତ ବିଗୁରି । ୧୭ ।

---

**୬ଷ୍ଠ ପଦ** । ବସନ୍ତ ଅର୍ଥ—ବିଟପୀ ମଣ୍ଡି ( ବୃକ୍ଷମାନଙ୍କୁ ମଣ୍ଡନ କରି ) ସୁମନେ ( ଫୁଲମାନେ ) ସୁନ୍ଦର ଦିଶିଲେ ( ଶୋଭା ପାଇଲେ )। ଶକ୍ର ( ମଲ୍ଲୀଫୁଲ ) ମଧୁର ରୁଚିର ( ମନୋହର ) ପ୍ରମୋଦ ( ଆନନ୍ଦ ) ପ୍ରକାଶେ ( ପ୍ରକାଶ କଲା )।

ବିରୋଧ ଅର୍ଥ—ସୁମନେ ( ଦେବତା ବା ପଣ୍ଡିତମାନେ ) ବିଟପୀ ( ଭ୍ରଷ୍ଟା ସ୍ତ୍ରୀମାନଙ୍କୁ ) ମଣ୍ଡି ( ମଣ୍ଡନ କରି ) ମନୋହର ଦେଖାଗଲେ—ଏଥିରେ ଶକ୍ର ( ଦେବରାଜ ଇନ୍ଦ୍ର ) ମଧୁର ( ମନୋହର ) ଆନନ୍ଦ ପ୍ରକାଶ କଲେ ।

**୭ମ ପଦ** । ବସନ୍ତ ଅର୍ଥରେ—ମୁଚୁକୁନ୍ଦ ( ମୁଚୁକୁନ୍ଦ ଫୁଲ ) ଗଣିକାଏ (ଯୁଇଫୁଲମାନେ) ଆନନ୍ଦେ ( ଆନନ୍ଦିତ ହୋଇ ) ମୋହିଲେ ( ଲୋକମାନଙ୍କୁ ମୁଗ୍ଧ କଲେ )। ପୁଷ୍ପବତୀ ସୁମନା ( ଫୁଟିଥିବା ଫୁଲମାନେ ) ପ୍ରମୋଦରେ ହସିଲେ ( ମହକ ଚହଟିଲେ )।

ବିରୋଧ ଅର୍ଥ— ମୁଚୁକୁନ୍ଦ ଋଷିଙ୍କୁ ଗଣିକାଏ ( ବେଶ୍ୟାମାନେ ) ଆନନ୍ଦରେ ମୋହିଲେ । ପୁଷ୍ପବତୀ ସୁମନା ( ପ୍ରାପ୍ତରଜସ୍କା କାମିନୀମାନେ ) ଖୁସି ହୋଇ ( ଆନନ୍ଦରେ ) ହସିଲେ ।

କୂର୍ମ ଅଙ୍ଗ ପ୍ରତ୍ୟାହାର ସ୍ଥିତ ମାତ୍ର ବନ୍ଧୁ ।
ବଶୀଭୂତ କଲେ କାମ ଅସାଧ୍ୟ ସାଧଇ । ୧୮ ।
'ସଙ୍କଳ୍ପ କାମନା' କର ତ୍ୟାଗ ଦୁଇ ଧର୍ମ ।
ହେଲେ ମୁନିଗଣଙ୍କ ପ୍ରାପ୍ତି ସୁଖ ଅନୁପମ । ୧୯ ।
ଭକ୍ତିବଳେ କଲେ କାମ ଆପଣା ଅଧୀନ ।
ଅସାଧ୍ୟ ତାହାଙ୍କୁ ଅନ୍ୟ ନୋହିବ ଜଗତ । ୨୦ ।
ମୋକ୍ଷମାର୍ଗ ରୋଧନ୍ତି ଯେଣୁ କାମଦେବ ।
ନିବୃତ୍ତିମାର୍ଗ ଧରିବା ଋଷିଙ୍କ ସ୍ୱଭାବ । ୨୧ ।
ଶୁଣ ଏ ବାଣୀକି ଭଣେ ନୃପତିନନ୍ଦନୀ ।
କହିଲ ଏଠାରେ ଯାହା ଉଚିତ ଭଗିନୀ । ୨୨ ।
ଅଭୀର ବାମନୟନା ବିରଚିଲେ ରସ ।
କଲେ ଲାଭ ପ୍ରେମ କାମ ନ ଥିବାରୁ ଲେଶ । ୨୩ ।
ଏକାଳେ ସୁବୋଧାସୁନ୍ଦରୀ ଜେମା ପାଶେ ଆସି ।
ଜଣାଇଲା ଶ୍ରୀଘ୍ରମୁଖେ ମୃଦୁ ମଞ୍ଜୁଭାଷୀ । ୨୪ ।
ପିତା ମାତା ସ୍ୱୀକାର କଲେ ଶୁଭ କାଳ ।
ଖଞ୍ଜନାକ୍ଷି ! ଯିବ ଶିବ ପୂଜି ନମୁଅଳେ । ୨୫ ।
ସଙ୍ଗେ ଯିବେ ସହଚରୀ ପରିଚାରୀଗଣ ।
କରିଲେଣି ପିତା ତବ ଯଥା ଆୟୋଜନ । ୨୬ ।
ମନ୍ଦିର ଶୋଧନ ଲାଗି ଯିବେ କେତେ ଗୁରୁ ।
ଶିବରାତ୍ରି କାଶୀକ୍ଷେତ୍ରେ ମାନବ ବିସ୍ତର । ୨୭ ।
ତୁଷିଲେକୁ ମାନ୍ଦୋନା ଏ ବାଣୀ ହୋଇଲା ।
ଦ୍ୱିଜପୁତ୍ରୀକି ଆଦରେ ପାଶେ ବସାଇଲା । ୨୮ ।
ଏ ବାଣୀ-ଅଗସ୍ତି ଖରେ ଆଶା ଉଛୁଳାଇ ।
ଦେଲା ନବବାଳୀ ମୁଖେ ହାସ ପ୍ରକଟାଇ । ୨୯ ।
ଇଙ୍ଗିତରୁଁ ଜାଣି ସଖୀ କେ ପେଟିକାରୁ କାଢ଼ି ।
ସୁବୋଧାସୁନ୍ଦରୀକି ଦେଲା ଆଣି ଦିବ୍ୟ ଶାଢ଼ୀ । ୩୦ ।
ରତ୍ନ ଅଳଙ୍କାରେ କଲେ ଦ୍ୱିଜସୁତା ତୋଷ ।
ସକଳ ତରୁଣୀ ରଙ୍ଗେ ହୋଇ ହସ ହସ । ୩୧ ।
ଅନ୍ତରଙ୍ଗ ସଖୀ କେହି ଏକାଳେ ଭଣିଲା ।
ଶମ୍ବରକୁ ମାରି କାମ ରତି ବିଭା ହେଲା । ୩୨ ।
ମୀନକେତନକୁ ଲଭି ମୀନଗର୍ଭୁ ରତି ।
ପାଳିଲା ବହୁ ଯତନେ ସେ ବର ଯୁବତୀ । ୩୩ ।
ଯେ ଯାହାର ସେ ତାହାର ଘଟଇ ଅବଶ୍ୟ ।
ମାତ୍ର ରହିଥାଇ ବିଘ୍ନ ଉଦ୍ୟମେ ବିଶେଷ । ୩୪ ।

କର ସତର୍କତା ଅବଲମ୍ବନ ବିଶେଷ ।
ତୋଷି ଅବେଶବତୀଙ୍କ ଲଭିବା ପୌରୁଷ । ୩୫ ।
ଇକ୍ଷୁ କଲେ ଖଣ୍ଡ ଖଣ୍ଡ ଯଥା ସ୍ୱାଦୁ ଥାଇ ।
କଣ୍ଠିତ କାନ୍ତ ପ୍ରସଙ୍ଗେ ତୋଷ ଶୁଦ୍ଧମୂର୍ତ୍ତି । ୩୬ ।
ଜେମା ପ୍ରସନ୍ନତା ଜାଣି ସକଳେ ସନ୍ତୋଷ ।
ସହଚରୀଗଣ କଲେ ଶିବ ଶିବ ଘୋଷ । ୩୭ ।
ଅରୁଣ ଅମ୍ବୁଜ ମୁଖେ ସୁହାସ ଖେଳାଇ ।
କରନ୍ତି ସଖୀଏ ମିଳି ତୋଷ ଶୁଦ୍ଧମୂର୍ତ୍ତି । ୩୮ ।
ଏ କାଳେ ଗଗନୁ ଖସେ ଏକ ପାରାବତ ।
ପରିମଳା ପାଶେ ବସେ, ସର୍ବେ ଅଚମ୍ଭିତ । ୩୯ ।
ପୁଷ୍ପମାଳ୍ୟବୃତ ବିହଙ୍ଗମ ଧରି କରେ ।
ଚୁମ୍ବିଲା ତା ମୁଖ ପରିମଳା ସ୍ନେହଭରେ । ୪୦ ।
ତଦନ୍ତେ ତା ପଦୁ ପତ୍ର ଫିଟାଇ ଦେଖଇ ।
ଅଙ୍ଗ ଯୁବରାଜ ଜାଦର୍ଶନ ଅଛି ବହି । ୪୧ ।
ସ୍ମିତହାସୀ ଦେଲା ନେଇ ରାଜସୁତା କରେ ।
ବୋଇଲା ଦେଖ ଅସିଛି ପତ୍ର କା ନାମରେ । ୪୨ ।
ଅଙ୍ଗ ଯୁବରାଜ ଜାଦର୍ଶନରେ ବ୍ୟକତ ।
ପତ୍ରିକା ଦେଖେ ନନ୍ଦନୀ ସ୍ୱନାମେ ଲିଖିତ । ୪୩ ।
ପ୍ରେମପୁଲକେ କମ୍ପିଲା ସେ ନାଗରୀହୀରା ।
କରରୁ ଖସି ପଡ଼ିଲା ପ୍ରଣୟ-ପତ୍ରିକା । ୪୪ ।
ପ୍ରଭାମଞ୍ଜୁଳା ତା ଗ୍ରହି ପତ୍ରିକାକୁ ନେଇ ।
ପଢ଼ି ଆରମ୍ଭିଲା, ସ୍ୱନ ପଞ୍ଚମ ଜଣାଇ । ୪୫ ।
"ରାଜସୁତା ପ୍ରଣୟରେ ମତ୍ତ ଜାତ ଥାଉ ।
ବିମ୍ବାଧରୀ ଭାବନାରେ ଏ ଜୀବନ ଯାଉ । ୪୬ ।
ଉତ୍ତରୀଏ ସଖୀ ବିରହ ବ୍ୟାଧିଗତ କରି ।
କରିଗତ ଗଲି ସରି ଗତ କରି କରି । ୪୭ ।
ଛଳଗ୍ରାହୀ ଛଳେ ଦୁଏ ନେତ୍ର ଛଳ ଛଳ ।
କଳନାଦ । ଦୁଃଖ ନଦୀ ହେଲା କଳ କଳ । ୪୮ ।
ସାରସଗତ ସଂଗତ ଏ ସଂସାର ସାର ।
ମାରି କରି କରିଗତ ଜାତ ମାର ମାର । ୪୯ ।
ଅହା କେହୁ ନାହିଁ କହିବାକୁ ଅହା ଅହା ।
ବାହାଶୋଭି । ବାହା ବାହାରେ କି ବାହା ବାହା । ୫୦ ।
କ୍ଷଣଦାରେ ରସଦାରେ ମୋହ କ୍ଷଣ କ୍ଷଣ ।
ଅନନ୍ଦଦାୟିନୀ ଗତ ଭାବ ଅନ ଅନ । ୫୧ ।

ଧରଣୀମଣ୍ଡନା ଦଣ୍ଡ-ପୟୋଧରଧର ।
ଥରଇ ଲେଖି ଏ ଚକ୍ଷୁ ନାଡ ଥର ଥର । ୫୨ ।
ମନ୍ଦାକିନୀମୋହିନୀ ଛବି ବିମ୍ବାଧର ଧରି ।
କରୁଣାରେ ରଖ ପାଦେଶ ଭ୍ରାନ୍ତି କର ଡରି । ୫୩ ।
ଦାସର କି ଅଛି ଦୋଷ ଭାଷ ଦାସ ଦାସ ।
ରସବତି ! ପିଇ ଜୀବ ଇନ୍ଦ୍ର ରସ ରସ । ୫୪ ।
ଶିଖିଥିଲେ ସତେ କି ବା ମୋ ଦଶିବ ଶିବ ।
ନବନୀତଅଙ୍ଗୀ ଭଙ୍ଗୀ ଦେଖି ନବ ନବ । ୫୫ ।
ଆଦ୍ୟ ପ୍ରାନ୍ତ ଚମ୍ପାଙ୍ଗୀ ଶୁଣିଲା ହେଲା ଦାହ ।
ମୋହନଅବେଣୀ ଦଣ୍ଡେ ମୋହାବେଶେ ରହ । ୫୬ ।
ସଖୀ କରୁ ଚମ୍ପାଙ୍ଗୀକୁ ନେଲା ଧାଡଦ୍ୱାରେ ।
ଶିରରେ ଲଗାଇ ଗୁଣ୍ଡେ ଚୁମ୍ବିଲ ସାଦରେ । ୫୭ ।
ଏଥୁଅନ୍ତେ ପାରାବତେ ଧରି ବିମ୍ବାଧରୀ ।
ଭୁଞ୍ଜାଇଲ ନାନା ଶସ୍ୟ ଅତି ଯତ୍ନ କରି । ୫୮ ।
ଏକାଳେ ରବିଙ୍କି ନେଲା ନିଯାମା ଆକର୍ଷି ।
ପ୍ରାଚୀକୁ ଲୋହିତ କରି ବଧୂ ଇନ୍ଦେ ହସି । ୫୯ ।
ସ୍ଫଟିକ ପେଟୀରେ ରଙ୍ଗେ ମଞ୍ଜିଷ୍ଠା କି ଧରି ।
ନବାଙ୍ଗନା ସମ୍ମୋହନେ ଘୋରେ କାମନାରୀ । ୬୦ ।
ଖଚୁଆ ତାରା ଚଅଁଲେ ବାରୁଣୀକୁ ରସି ।
ଅରୁନ୍ଧତୀ ସହ ଦୀପ୍ତ ଗଗନେ ସପ୍ତର୍ଷି । ୬୧ ।
ହସିଲ ସୁନ୍ଦର ନବ ତାରତାଗୁମ୍ଫିତ ।
କାମ ଗୁରୁ ଚନ୍ଦ୍ରାତପ ପରି ବିରାଜିତ । ୬୨ ।
ନବ ଭାବ ଧରି ରଙ୍ଗେ ନବାଙ୍ଗନାଗଣ ।
ଗୃହୀ ନାରୀ ପୁରେ କଲେ ମଧୁରେ ଗମନ । ୬୩ ।
ତୋଷୁ ଏ ସରସ ଛାନ୍ଦ ସୁଜନଙ୍କ ଚିତ୍ତ ।
ରାଧାଭାବ ଭାବ ଭାବ ଗୋଲୋକ ରଚିତ । ୬୪ ।

## ୧୯ଶ ଛାନ୍ଦ

### ରାଗ—ଶଙ୍କରାଭରଣ

ମାଧବୀ ମଣ୍ଡପେ ଦିନେ ଭ୍ରମର ସରସେ
ବାଲାଭାବ ଭାବୁଥିଲା ରସଲେଖା ଅସେ ।
ଧୀରେ ଭ୍ରମର ପୁଚ୍ଛଇ । କି ଚିନ୍ତା କରୁଛୁ ଦୂତୀ କହ ଗୁଢ଼ମୁହିଁ । ୧ ।

ହସି ଦୂତୀ ଭଟେ ପ୍ରେମ-କୋପେ ଦରାଗତ
ବିହ୍ୱଳିତମତି ବାଳୀ ବାଳୀଶ ସମ୍ଭ୍ରାନ୍ତ ।
ତବ ଚିତ୍ରପଟ ଧରି । ନିରନ୍ତରେ ଚାହେଁ ନେତ୍ର ଥନ ଥନ କରି । ୨ ।

ଅଳୀ ଅଳୀ ଛଳ କେବେ ହେଉଅଛି ଅନ୍ତର
ବିଜନେ କି ନିତ ବସି ଭାବେ ରମାବର ।
କମ୍ପ ପୁଲକ ବହୁଛି । ଅଭିନବ ବିକାର ତା ଚିତ୍ତେ ଉପୁଜନ୍ତି । ୩ ।

ବେଳେ ବେଳେ ଅଙ୍ଗେ ଚାହିଁ କି ଇଙ୍ଗିତ ପାଇ
ଧରିକୁ ଚାହୁଁ ଲୋତକ ନେତ୍ରୁ ବରଷଇ ।
ପୁଣି ସେ ନବଛଇଳୀ । ବିଧୂରେ ସଙ୍ଗୀତ ଗାଉଅଛି ଦେଖି ଅଳି । ୪ ।

କେତକୀକି ବୋଲେ ଥିଲୁ ତୁ ଏଡ଼େ ପାତକୀ
ଯୁଇ ମଲ୍ଲିକା ପରୁ ତୁ ଦୟା କରିବୁ କି ?
ଧରି ମଲ୍ଲିକା ସୁମନେ । ତବ ଚିନ୍ତା କର୍ଣ୍ଣେ କିସ କହେ ଘନେ ଘନେ । ୫ ।

ଦେଖିଛି ମୟୂରପୁଚ୍ଛ ଧରିଥାଏ କରେ
କବରୁ ଚାହିଁଲେ ମୁଦ ବଢ଼େ କି କ୍ଷଣରେ ।
କେବେ ସଖୀକର ଧରି । ଦରସ୍ମିତେ ଭାସୁଥାଇ ପ୍ରଭୃତେ ଗୋରୀ । ୬ ।

ସଜନୀଙ୍କି କେକୀ ନୃତ୍ୟ ଦେଖାଇ ସୁମୁହାଁ
କୋଳ କରିବାକୁ ବାହୁଯୁଗ ପ୍ରସାରଇ ।
କେବେ ନିଃଶ୍ୱାସ ପ୍ରଖରେ । ମୁକ୍ତା ଛିଡନ୍ତି ଉରହାର ଲୋତକଧାରରେ । ୭ ।

ରଖିଲୁ ମୁକୁରେ ନେଇ ଚିତ୍ରପାଶେ ଧନୀ
ନିଜ ପ୍ରତିବିମ୍ବେ ଚାହିଁ ବୋଲେ ଅଭିମାନୀ ।
ଧିକ ପୋଷିଅଛୁ ଆଶା ! ଛୁଇ ଧରିବାକୁ ପୁଣି ବଳିଲା ଲାଳସା । ୮ ।

ଚଞ୍ଚଳା ନଣନ୍ଦ ଦିନେ ପରିମଳା ଜାଣି
ଏହା ଦେଖ ମନ୍ତ୍ରୀପୁରୁ ନରେନ୍ଦ୍ର ଭବନ ।
ଯାଇଥିଲା ସେ ଦଇବେ । ଜେମା ଦେଖା କରିବାକୁ ଡାକି ସଖୀଭାବେ । ୯ ।

ତାକୁ ଚାହୁଁ ଦେହେ ଗଲା ପୁଲକ ସଞ୍ଚରି
ଝାଙ୍କୁରିଲା ଲୋମରାଜି ଅନୁରାଗେ ଭରି ।
ଲଭେ ନ ତେଜ ମିତଣୀ । କଜ୍ଜଳୁକେ ଅଙ୍ଗ ଶୋଭା ଶୁଣେ ବାଳାମଣି । ୧୦ ।

ହିଙ୍ଗୁଳଶୋଭା ଛଇଳୀ ଧରି ତାର ପାଣି
ହାହାକାରେ ଭାସୁଥାଇ କେତେ ବାଳାମଣି ।
ସତେ ନିର୍ଜୀବ ତା କର । ଉଠି ବସି ନ ପାରଇ ଥରେ କଳେବର । ୧୧ ।

କପୋତ ରବିବା ଦେଗେ ଦଅଇ ଶୁଣୁଛି
ନଖେ ଗାର ଟାଣୁଥାଏ ବଦାଢ଼ କ୍ଷିତିକି ।
ଲଭିଅଛି କି ଭୀତକି । ଚମକି ଛନକେ ଚାହେଁ ସଜନୀ ତତକ୍ଷଣ । ୧୨ ।

କି ଭାବ ଭାବୁଛି ବସି ଦିବସ ଶର୍ବରୀ
ସୁତନୁ କଲାଣି କ୍ଷୀଣ ବାଳ ଇନ୍ଦୁ ପରି ।
ସେ ଯେ ସିତାଂଶୁବଦନୀ । ବିରାଜିଲାଣି ତାହାଙ୍କ ପାଣ୍ଡୁରତା ବଦନ । ୧୩ ।
ସ୍ୱପ୍ନଯାନେ ଯାହାଙ୍କର ଅବସନ୍ନଗାତ୍ରୀ
ହେଲାଣି ଅବେଗେ ନବ ଅନୁରାଗବତୀ ।
ସେ ଯେ ଅଖିଳ ଛଇଳା । ନ ଜାଣି କି ଚନ୍ଦ୍ରାସ୍ରୋତ ଭଉଁରିଙ୍କ ଗଲା । ୧୪ ।
ପ୍ରାତଃକାଳେ କୁମୁଦିନୀ ଦେଖିଲେ ଦୁଃଖିନୀ
ଦିବ ବିଗଳିତ ସ୍ୱରେ କି ଭାଷଇ ଧନୀ ।
ଦେଖି ରଥାଙ୍ଗମିଥୁନେ । ଦୀର୍ଘଶ୍ୱାସ ତେଜେ ବସି କାସାର ପୁଳିନେ । ୧୫ ।
ଉପବନେ ବସି ଫୁଲ ଗୁନ୍ଥେ ଗୁନ୍ଦମୁହାଁ
କି ଭାବ ଭାବି କାହିଁକି ଦିଅଇ ପକାଇ ।
ଧରି ଶୟନ ଆଦର । ଛଳ ଛଳ କରେ ନେତ୍ର ଗୃଚ୍ଛ ବିମ୍ବାଧରୀ । ୧୬ ।
ବେଳେ ବେଳେ ସଖୀ ମୁଖେ ଗୁହିଁ କହେ ଦୀନା
ଜାଣି ନ ଜାଣିଲ ମୋର ଏ ଜାତ ବେଦନା ।
ଗୁଣ୍ଡେ ଶୁଖିଯାଏ ମୁଖ । ଅପଲକନେତ୍ରୀ ରହେ ବହି କେଉଁ ଦୁଃଖ । ୧୭ ।
ପ୍ରଭାତୀ କୁସୁମ ଘେନି ବୃନ୍ଦାବତୀ ପାଶେ
ବସି କାତ କହେ କିସ କୃଶାଙ୍ଗୀ ଆବେଶେ ।
କୁସୁମିତ ରାଗବତୀ । କାରସରେ ହେଲ ନବବାଳା ଅନୁମତି । ୧୮ ।
ଗର୍ଭାଗାରେ କେବେ ଭ୍ରମେ ନ ଆସେ ପ୍ରମୀଳା
ତବ ଦେଖାଦିନୁ ସବ ଉଦ୍ଧତ ତା ଗଲା ।
କରେ ଶର୍ବାଙ୍କ ନେଇ । କି ଭାବ ଭାବି ଦିଅଇ ସୁରଭି ଭୁଞ୍ଜାଇ । ୧୯ ।
ମନ୍ଦାକ୍ଷ ନାଶକୁ ଲେଢ଼ୁଅଛି ଶତକୋଟୀ
ସତେ କି ହୃଦ ଦୁଃଖରେ ଯାଉଅଛି ଫାଟି ।
ଲକ୍ଷେ ହେମ ପୁଷ୍ପ କରେ । ପୂଜୁଅଛି ହୈମବତୀପତି ସୁପ୍ରୀତିରେ । ୨୦ ।

ବେଶ ଭୂଷଣ ଆଦର ତେଜିଅଛି ଧନୀ
ବାଧୁରେ ହୋଇଛି ମତ୍ତ ମରାଳଗାମିନୀ ।
ସ୍ୱନ ପିକନାରୀସମ । ଅବସନ୍ତ ଲତା ଶୋଭା ନଳିନୀଲଲାମ । ୨୧ ।

କାହପରି ଦୃଷ୍ଟି କରୁଅଛି କୃଶୋଦରୀ
ଛନକା ଆସିଛି ତାର ମନେ ଏତେ ପରି ।
ହସେ ମାଦକୀ ସମାନ । କେତେବେଳେ କି ଭାଷଇ ବିଚଳିତ ମନ । ୨୨ ।

ମୋତେ ନ ଚିହ୍ନି ସେ କହୁଥାଏ ରସଲେଖା
ମୋ ପରି ଅଭାଗିନୀକି କିପାଁ ଦେଲୁ ଦେଖା ।
ତୋର ଏଡ଼କି କପଟ । ନବ ଅଙ୍କୁଣୀ କରାଇ କଲୁ ଛଟପଟ । ୨୩ ।

ମନ୍ତ୍ରୀ ବଧୂ ଚଞ୍ଚଳା ତା ସହଚରୀ ଯେନ
ଯେମନ୍ତ ଚତୁରୀ ବାଳୀ ତେମନ୍ତ ସୁଜାଣ ।
ଜାଣେ ମନକଥା ତାର । ବୋଧୁଥାଏ ଅଧିରଙ୍କୁ ସ୍ନେହେ ନିରନ୍ତର । ୨୪ ।
ବେଳେ ବେଳେ ସନ୍ନିପାତ ଲକ୍ଷଣକୁ ଧରି
ବହୁଛି ହେଉଛି କେବେ ଉନ୍ମାଦନୀ ପରି ।
ଗୃହୁଛ ଉରଜା ବିମ୍ବୋଷ୍ଠୀ । ଜୃମ୍ଭଣ ତେଜୁଛି କମ୍ବୁକଣ୍ଠୀ ମୃଗଦୃଷ୍ଟୀ । ୨୫ ।
ଗାଉଛି ସଙ୍ଗୀତ ପୁଣି ଗୁଣୁ ଗୁଣୁ ସ୍ୱରେ
ଗିରିସମ ଚିରିଷମେ ଅଳକ ଗୁଞ୍ଜରେ ।
କରେ କପାଳକୁ ଥୋଇ । ହେଠ ବଦନେ ଗୃହୁଁଛି ପଙ୍କେରୁହମୁହୀଁ । ୨୬ ।
ବିଷଣ୍ଣ ବଦନ ତାର ସଞ୍ଜ କଞ୍ଜ ସମ
ହାସ ଖେଳ କଉତୁକେ ପ୍ରାପିଲାଣି ଭ୍ରମ ।
କମ୍ପାକାରୀ ଶମ୍ପାଗୋରୀ । ସଖୀଙ୍କ ଅନୁକମ୍ପାରେ ବଞ୍ଚିଛି କଶୋରୀ । ୨୭ ।
ମୃଦୁଳ ପବନ ପ୍ରଭଞ୍ଜନ କରେ ସୁଖ
ଯାମିନୀ ରଜନୀ କରେ ଭାମିନୀ ବିମୁଖ ।
ଫୁଲ ସୁମନରେ ନେଇ । କରେ କି ଅଳି ଭ୍ରମରେ ଶିର ଗଳେ ଥୋଇ । ୨୮ ।
ସେ ସୁକାନ୍ତ ଛବି ସ୍ଥିତ ବିପିନ କାନନ
ଭାବି ଭବିଷ୍ୟତ ହେଲା ଅତି ମ୍ରିୟମାଣ ।
ବାଣୀବାକ୍ୟ ନାହିଁ ଯାକୁ । ଦୁର୍ବଳା ଅବଳା ଭାବ କେବା ବର୍ଣ୍ଣିବାକୁ । ୨୯ ।

---

୨୮—୩୧ ପଦ । ପୁନରୁକ୍ତବଦାଭାସ । ଏଥିରେ ପାଦ ବା ପଦମାନଙ୍କର ଏକ ଶବ୍ଦ ବା ପ୍ରତିଶବ୍ଦମାନଙ୍କର ବାରମ୍ବାର ସମାବେଶ ହୋଇଥାଏ, ମାତ୍ର ସେମାନଙ୍କର ଗୋଟିଏ ଗୋଟିଏ ସ୍ୱତନ୍ତ୍ର ଅର୍ଥ ଥାଏ ।

୨୮ ପଦ । ମୃଦୁଳ ପବନ ସୁଖକୁ ପ୍ରଭଞ୍ଜନ କରୁଅଛି ଅର୍ଥାତ୍ ବସନ୍ତ ପବନ ବିରହିଣୀର ସୁଖକୁ ଭାଙ୍ଗିଦେଉଛି । ସେ ଭାମିନୀ ( ମନୋହାରିଣୀ କାମିନୀ ) ରଜନୀ ( ରାତି ) ଓ ରଜନୀକର ( ଚନ୍ଦ୍ରକୁ ବା କର୍ପୂର ଗୁଣ୍ଡିକୁ ) ବିମୁଖ ହେଉଅଛି । ସୁମନରେ ( ସନ୍ତୁଷ୍ଟ ହୋଇ ) ଫୁଲ ନେଇ ଭ୍ରମରେ ( ବିଭ୍ରମରେ ) ଶିରଗଳାରେ ଥୋଇ କି ଅଳି କରେ ( କଣ ଅଳି କରୁଛି ) ଏ ପଦରେ ପବନ, ପ୍ରଭଞ୍ଜନ; ଯାମିନୀ, ରଜନୀ; ଫୁଲ, ସୁମନ; ଅଳି, ଭ୍ରମର ପୁନରୁକ୍ତବଦାଭାସ ହୋଇଅଛି ।

୨୯ ପଦ । ସେ ସୁକାନ୍ତ ( ମନୋହାରିଣୀର ) ଛବିସ୍ଥିତ ( ବିରହ ସୁଷମାର କଥା ) ବିପିନ କାନନ ହୋଇଅଛି ( ଘୋର ଜଙ୍ଗଲ ସଦୃଶ ହୋଇଅଛି ); ଅର୍ଥାତ୍ ତହିଁରେ ପ୍ରବେଶ କରିବା ସାଧ୍ୟାତୀତ ହୋଇଅଛି । ସେ ଭବିଷ୍ୟତକୁ ଭାବି, ଅତି ମ୍ରିୟମାଣ ( ବିଷାଦମଳିନା ) ହୋଇଅଛି । ବାଣୀବାକ୍ୟ ( ସରସ୍ୱତୀଙ୍କ ବଚନ ) ତାକୁ ନାହିଁ । ଦୁର୍ବଳା ଅବଳା ଭାବ ବର୍ଣ୍ଣିବାକୁ କେବା ( ସମର୍ଥ ? ) ( ଅର୍ଥାତ୍ ଆଉ କେହ ବର୍ଣ୍ଣି ପାରିବେ ନାହିଁ ) ।

କାନ୍ତ, ଛବି; ବିପିନ, କାନନ; ଭାବି, ଭବିଷ୍ୟତ; ବାଣୀ, ବାକ୍ୟ; ଦୁର୍ବଳା, ଅବଳା ପୁନରୁକ୍ତବଦାଭାସ ।

କାନ୍ତ ପ୍ରିୟବର ଭାବନାରେ ଧୀରା କ୍ଷୀଣ
ବସୁଧାରେ ଭୁବନ ତ ନେତ୍ରୁ ବହେ ଘନ ।
**ସଖୀ ଅଳିଙ୍କି ନ କହି ।** ବସି ବାସରେ ଦିବସ ନିଶି କି ଭାବଇ । ୩୦ ।
ସ୍ମରପର କାମାରିଙ୍କି ପୂଜୁଅଛି ନିତ
ଡାକୁଅଛି ଗିରିସୁତା ବିଯୋଗିନୀ ସତୀ ।
କାମ ଭସ୍ମାକ୍ତ ଅବୀର । ଲୋଡ଼ଇ ନାଗର ସର୍ପଗରଳ ମହୁରା । ୩୧ ।
ଭାବୁଛି ହେବାକୁ ସେ ତ ଏରୂପ ବିଧୁର
ନ ଭାବୁଛି ସେ ହେବାକୁ ଏରୂପ ବିଧୁର ।
ଭାବୀ ନ ଭାବ ସେ ଧୀରା । ଶୋକପାଶୋରା ହେଲଣି ଅଶୋକପାଶୋରା । ୩୨ ।
ଇଙ୍ଗିତେ ଲୋଡ଼ୁଛି ଅଙ୍ଗେ ନ ଲୋଡ଼ୁଛି ଅଙ୍ଗେ
ତା ଅରୁଚି ବାସ ସଙ୍ଗେ ରୁଚି ବାସ ସଙ୍ଗେ ।
ରସ ବିରସ ତା ଓଷ୍ଠ । ଅତନୁ ନ ଦିଏ ଧୀର ଦିଅ ତନୁକଷ୍ଟ । ୩୩ ।

---

୩୦ ପଦ । କାନ୍ତ ( ମନୋହର ) ପ୍ରିୟବର ( ଶ୍ରେଷ୍ଠ ) ଭାବନାରେ ଧୀରା ( ନାୟିକା ) କ୍ଷୀଣ ହୋଇଅଛି । ବସୁଧାରେ ( ପୃଥିବୀରେ ବା ବସୁଧାରାରୁ ଟୋପି ଟୋପି ହୋଇ ପଡ଼ିଲା ପରି ) ଭୁବନ ( ଜଳ, ଏଠାରେ ଲୋତକ ) ଘନ ( ଗାଢ଼ ଭାବରେ ) ବହୁଛି । ସେ ସଖୀଅଳୀ ( ସଖୀଗଣଙ୍କୁ ) କିଛି ନ କହି ବାସରେ ( ଗୃହରେ ) ବସି ଦିବାନିଶି ( ଦିନରାତି ) କି ଭାବଇ ( କଣ ଭାବୁଛି ) ।

କାନ୍ତ, ପ୍ରିୟ, ବର; ବସୁଧା, ଭୁବନ; ସଖୀ, ଅଳୀ; ବାସର, ଦିବସ ପୁନରୁକ୍ତ ହୋଇଅଛି ।

୩୧ ପଦ । ସ୍ମରପର ( କନ୍ଦର୍ପପରାୟଣା ) କାମାରି ( ଶିବଙ୍କୁ ) ନିତି ପୂଜୁଅଛି । ସତୀ ( ସାଧ୍ୱୀ ) ବିଯୋଗିନୀ ( ବିରହିଣୀ ) ଗିରିସୁତା ( ପାର୍ବତୀଙ୍କୁ ) ଡାକୁଛି । ସେ ଅବଳା କାମଭସ୍ମାକ୍ତ ହୋଇଅଛି । ହେ ନାଗର ସେ ସର୍ପର ଗରଳ ଓ ମହୁରା ଖୋଜୁଅଛି; ଅର୍ଥାତ୍ ସେ ଜୀବନର ମମତା ହରାଇଲାଣି ।

ଏଠାରେ ସ୍ମରପର, କାମାରି; ସତୀ, ବିଯୋଗିନୀ, ଗିରିସୁତା; ଭସ୍ମାକ୍ତ, ଅବୀର; ନାଗ, ସର୍ପ; ଗରଳ, ମହୁରା ପୁନରୁକ୍ତବଦାଭାସ ହୋଇଅଛି ।

୩୨—୩୩ ପଦ । ବିରୋଧାଭାସ ହୋଇଅଛି ।

୩୨ ପଦ । ସେ ଏରୂପ ବିଧୁର (ଚନ୍ଦ୍ରର) ଅର୍ଥାତ୍ ଆପଣଙ୍କର ବିରହ (ବିଧୁରା) ହେବାକୁ ଭାବୁ ନାହିଁ । ଭାବୀ ନ ଭାବ (ଭବିଷ୍ୟତରେ କଣ ହେବ, ନ ଭାବି) ସେ ଶୋକପାଶୋରା (ଯାହାକୁ ଦେଖିଲେ ସମସ୍ତଙ୍କର ଶୋକ ପାଶୋର ଯାଏ) ଅଶୋକପାଶୋରା ହୋଇଅଛି; (ଅର୍ଥାତ୍ ତାକୁ ଦେଖିଲେ ଜଣେ କାନ୍ଦ ପକାଇବ ବା ସେ ଶୋକକୁ ପାଶୋରି ପାରୁନାହିଁ ) ।

୩୩ ପଦ । ଇଙ୍ଗିତେ ଲୋଡ଼ୁଛି ଅଙ୍ଗେ (ତାର ଇଙ୍ଗିତମାନଙ୍କରୁ ଜଣାଯାଉଛି ଯେ, ସେ ଅଙ୍ଗ ଦେଶକୁ ବା ଆପଣଙ୍କର ଅଙ୍ଗସଙ୍ଗକୁ ଲୋଡ଼ୁଛି) । କିନ୍ତୁ ତାର ଅଙ୍ଗ (ଶରୀରକୁ) ନ ଲୋଡ଼ୁଛି); ( ଆଦର ବା ମମତା କରୁ ନାହିଁ ) । ତାର ବାସ (ବସନ) ବା ଗୃହ ସଙ୍ଗେ ଅରୁଚି ହୋଇଅଛି (ଅର୍ଥାତ୍ ବସନ ଓ ବେଶକୁ ହତାଦର କରୁଛି) ବା ଗୃହକୁ ମଣୁ ନାହିଁ । ତାର ସଙ୍ଗେ ବାସରେ ରୁଚି ( ଆପଣଙ୍କ ସହିତ ବାସ କରିବାକୁ ସୁଖ ପାଉଅଛି ) । ରସ ବିରସ ତା ଓଷ୍ଠ (ଅତ୍ୟଧିକ ସ୍ନେହରେ ତାର ଓଠ ଶୁଖି ଗଲାଣି) । ଅତନୁ (କନ୍ଦର୍ପ) ତାକୁ କଷ୍ଟ ଦେଉ ନାହିଁ । କିନ୍ତୁ ହେ ଧୀର ତୁମ୍ଭେ ତାର ତନୁକୁ (ଶରୀରକୁ) କଷ୍ଟ ଦେଉଅଛ ।

ଅଛି ଧିଆନରେ ବାଳା ନାହିଁ ଧୀ ଆନରେ
ସଦା ଶୋଭି ଆଳାପରେ ସଦା ବିଳାପରେ ।
ପତି ବି-ପତିର ଭାବି । ବାଳିଶ ଭାବରେ ଦ୍ରବି ଭାବରେ ନ ଦ୍ରବି । ୩୪ ।
ନ ଲୋଡ଼ଇ ଆନ ନରେ ଲୋଡ଼ଇ ଆନନେ,
କାମେ ନ ଲୋଡ଼ଇ ମନେ କାମେ ଲୋଡ଼େ ମନେ ।
ଭାବେ ନ ଭାବେ ସେ ରତି । କୁମାରେ ସୁମତି ବାଳା କୁମାରେ ବିମତି । ୩୫ ।
ଜୀବଜୀବ ଲୋଡୁଅଛି ଅତୁରି ସୁଖରେ
ଜୀବ ଯିବ ଲୋଡ଼ୁଅଛି ଆତୁରି ଦୁଃଖରେ ।
ଲୋଡ଼େ ବିଭାକରିବାରେ । ନ ଲୋଡ଼େ ଚନ୍ଦ୍ରମାମୁଖୀ ବିଭାବରୀ ବାରେ । ୩୬ ।
ତବ ଶୋଭା ଆଦରେ ସେ ଶୋଭା ଅନାଦରେ
ନିନ୍ଦଇ କାମକୁ ଧୀରେ ପ୍ରଶଂସେ କାମରେ ।
କଳାଶୋଭୀ ସେ ଅବଳା । ଧର ଧର ନ ଧର କାହିଁକି ଡାକେ ବାଳା । ୩୭ ।
କୁଟିଳ କୁନ୍ତଳା କାନ୍ତିମୟୀ କୃଶୋଦରୀ
କରଭୋରୁ କୁମ୍ଭସ୍ତନୀ କୃଶାଙ୍ଗୀ କୁମାରୀ ।
କର କୁମାରକାମନା । କାମିନୀର କଳେବର କଞ୍ଚକାନ୍ତିହୀନା । ୩୮ ।

---

୩୪ ପଦ । ବାଳା ଧିଆନରେ ଅଛି (ଆପଣଙ୍କର ଧ୍ୟାନରେ ଅଛି) । ଆନରେ (ଅନ୍ୟଠାରେ) ତାର ଧୀ ( ବୁଦ୍ଧି ବା ମନ ) ନାହିଁ । ସେ ସଦା ଆପଣଙ୍କ ଶୋଭା ବିଷୟରେ ଆଳାପ କରି ବିଳାପ କରୁଅଛି । ବି-ପତି (ଗରୁଡ଼)ର ପତି (ବିଷ୍ଣୁଙ୍କୁ) ଭାବି (ଭାବୁଅଛି) । ଭାବରେ ନ ଦ୍ରବି ବାଳିଶ ଭାବରେ ଦ୍ରବିଅଛି ଅର୍ଥାତ୍ ସେ ଆପଣଙ୍କଠାରେ ସ୍ନେହ କରି ତରଳି ନ ଯାଇଁ ପାଗଳିନୀ ପରି ହୋଇଅଛି ବା ସେ ଆପଣଙ୍କ ଭାବକୁ ନ ବୁଝି ପାରି ପାଗଳିନୀ ପରି ହୋଇଅଛି ।

୩୫ ପଦ । ସେ ଆନ (ଅନ୍ୟ) ନରେ (ଲୋକକୁ) ନ ଲୋଡ଼ଇ (ଲୋଡ଼ୁ ନାହିଁ) । ଆପଣଙ୍କର ଆନନ (ମୁଖକୁ ଅର୍ଥାତ୍ ମୁଖ ଦର୍ଶନକୁ) ଲୋଡ଼ୁଛି । କାମକୁ ମନରେ ଇଚ୍ଛାରେ ସ୍ଥାନ ଦେଉ ନାହିଁ, କିନ୍ତୁ କାମନା କରି ମନରେ ଆପଣଙ୍କୁ ଲୋଡ଼ୁଛି । ରତି ନ ଭାବେ (ଦାମ୍ପତ୍ୟ ସୁଖକୁ ଇଚ୍ଛା କରୁ ନାହିଁ ) । କୁମାରେ (ଆପଣଙ୍କ ପରି ରାଜପୁତ୍ରଠାରେ) ସୁମତି ହୋଇଅଛି ଓ କୁମାରେ (ମନ୍ଦ କନ୍ଦର୍ପଠାରେ) ବିମତି ହୋଇଅଛି ।

୩୬ ପଦ । ଆତୁରି ସୁଖରେ ଜୀବଜୀବ (ତାର ପ୍ରାଣର ପ୍ରାଣ ଆପଣଙ୍କୁ) ଲୋଡ଼ୁଅଛି । ଆତୁରି (କାତରି) ଦୁଃଖରେ ଲୋଡ଼ୁଛି (ଗୃହୁଁଛି) ଜୀବ ଯିବ ( ଜୀବନ ଯାଆନ୍ତା କି ) । ସେ ଆପଣଙ୍କୁ ବିଭା କରିବାରେ (ବିବାହରେ ବରଣ କରିବା ପାଇଁ) ଲୋଡ଼ୁଛି (ଖୋଜୁଛି) । କିନ୍ତୁ ବାରେ (ଥରେ ମାତ୍ର) ବିଭାବରୀ ( ରାତିକୁ ) ଲୋଡ଼ୁନାହିଁ ଅର୍ଥାତ୍ ରାତିରେ ଆପଣଙ୍କ ଭାବନା କରି ତାର ବିଶେଷ କଷ୍ଟ ହେଉଅଛି ।

୩୭ ପଦ । ଆପଣଙ୍କର ଶୋଭାକୁ ଆଦର କରି ସେ ଅନ୍ୟ ମନୋହର ପଦାର୍ଥମାନଙ୍କୁ ଅନାଦର କରୁଅଛି । ସେ କାମକୁ ନିନ୍ଦା କରୁଅଛି ଓ କାମରେ (କାମନାରେ) ଧୀରଙ୍କୁ (ଆପଣଙ୍କୁ) ପ୍ରଶଂସା କରୁଅଛି । ସେ କଳାଶୋଭୀ ଅବଳା ବାଳା (ଇନ୍ଦୁରେଖା) 'ହେ ଧରଧର' (ହେ ହରି) 'କାହିଁକି ନ ଧର' (ଉଦ୍ଧାର କରୁ ନାହଁ ) ଏହା ଡାକୁଛି କିମ୍ବା ହେ ରାଜପୁତ୍ର 'ଧରଧର' କାହିଁକି ଧରୁ ନାହଁ ଏହା ଡାକୁଅଛି ।

୩୮ ପଦ । ଏ ପଦ ଏକାକ୍ଷରୀ ଆଦ୍ୟ କ ପଦାନୁପ୍ରାସ ଅର୍ଥାତ୍ ପ୍ରତ୍ୟେକ ଶବ୍ଦର ମୂଳଅକ୍ଷର 'କ' ରେ ଆରମ୍ଭ ହୋଇଅଛି ।

ମେଳା ପ୍ରସଙ୍ଗେ ଯେ ଦନ୍ତ ଦେଖିଲ ସୁମୁଗ୍ଧ୍ରୀ
ଘନଜଘନାକୁ ଅଙ୍କ କରୁ ନ ରୁଚଇ ।
ଛଡ଼ ତବ ଶୋଭା ଧ୍ୟାନ । ଚିନ୍ତା ଇନ୍ଦ୍ରଜାଳେ ଘୂରଇଲ ବଳେ ମନ । ୩୯ ।
ବଞ୍ଚିବାର ଆଶା ସଖୀ ତେଜିଲେଣି ସନ୍ତ
ନିବେଦବ କେତେ ଯାହା କଲଣି ଅନ୍ତନ୍ତ ।
ଛଡ଼ ପଲ୍ଲବ ଶୟନ । ପକାଇଛୁ ଅଙ୍ଗଦେଶେ ଖଞ୍ଜନ ନୟନ । ୪୦ ।
ଏଥକୁ ବିଗୁର ଯାହା କର ହେ ସୁଧୀର
ବାଳା ପାଶେ ଗଲ ଦୂତୀ ହୋଇ ତରତର ।
ଦୀନ୍ଧୀମୁଖୀ କୃପା ଗୃହି । କଣୋପ୍ରି ଗୀତ ଗୋପାଳ ଛାନ୍ଦେ ବିରଚଇ । ୪୧ ।

## ବାଂଶ ଛାନ୍ଦ

ରାଗ—ଧନାଶ୍ରୀ

ପ୍ରେମରସାତୁରୀ ନାଗରୀ ଚତୁରୀ ରଖି କାଗଜ ଆଗରେ
ନବରସନିଧି ନାଗର ସନ୍ନିଧି ଲେଖିଲ ଅନୁରାଗରେ ।
ସେ ବାଳୀ । ଲଜ୍ଜ ସୁମନ ନ ପାଇ ଦଳ । ଅଳି ଚଞ୍ଚଳା ନାମରେ ଛଳ । ୧ ।
ବରାଙ୍ଗୀ ଘୂରନ୍ତୁ ଦେଖିବାର ଦନ୍ତ ଅନନ୍ତ ଉନ୍ତୁକୁ ମାରେ
ସେ ତ କୁମୁଦନୀ ଅମ୍ବର ସଙ୍ଗିନୀ କଳାକର ରୂପେ ଝୁରେ ।
ହେ ଧୀର । ଗୃନ୍ତେ କର କର ପ୍ରତକାର । ହେଲ ଅଙ୍ଗନା ନାଶ ଯିବାର । ୨ ।
ଅଜନମସୁଖୀ ସର୍ବେରୁହସମୁଖୀ ଦନ୍ତ ଦନ୍ତ ହୋଏ କ୍ଷୀଣ
ବିଭାବରୀନାହା ଭାବେ କର ଅଙ୍ଗମଣ୍ଡନ ଅଙ୍ଗମଣ୍ଡନ ।
ହେ ଧୀର । ତାକୁ ଘୋଟିଛୁ ଦୁଃଖ ତମିର । ନାମ ଦ୍ୱିନେଶ ସାର୍ଥକ କର ॥
ବିରହ ବିଷାଦ ବଳାର୍ଣ୍ଣ ସତତ ଘାଣ୍ଟଇ ନାଗରୀବର
ଅଞ୍ଜନାସୁତରେ ନ୍ୟସ୍ତ କର କର ଜରେ ପନ୍ଦର ଆଦର ।
ହେ ଧୀର । ଖେଦ ସଗରକୀର୍ତ୍ତି ଆକାର । ହୁଅ ଏଗାର ସୁତ ନାଗର । ୪ ।
ଅରୁଣ ଅଧରୀ କରୁଣ ରସରେ ବରୁଣାଳୟ ତ ଘର
ତରଣୀ ନ ଲଭି ତରୁଣୀ ମଣଇ ତରଣୀସୁତ ନବର ।
ହେ ଧୀର । ବିଯୋଗିନୀକି କୃତାର୍ଥ କର । ନାଥ ନାମ ବହ୍ନି ନିରନ୍ତର । ୫ ।

---

୪ ପଦ । ଅଞ୍ଜନାସୁତ=ହନୁ, ଏଠାରେ ଶବ୍ଦକ । (ଇଙ୍ଗିତ) ଅଗସ୍ତି ମୁନିଙ୍କୁ ସ୍ମରଣ କରି ଭୋଜନ ପରେ ପେଟରେ ବାମ ହାତକୁ ବୁଲାଇ ଦେଲେ ହଜମ ହୁଏ, ଅଗସ୍ତି ସ୍ମରଣ କଲେ ଉପରେ ପନ୍ଦର=ବଜ୍ରପାତ ହୁଏ ନାହିଁ ଓ ଅଗସ୍ତି ସାତ- ସମୁଦ୍ରକୁ ଚଳୁ କରିଥିବାର ପୁରାଣମାନଙ୍କରେ ଉଲ୍ଲେଖ ଅଛି । ଏଗାର ସୁତ=ଏକାଦଶ ରାଶି ବା କୁମ୍ଭସୁତ=ଅଗସ୍ତ୍ୟ ଋଷି ।

୫ ପଦ । ତରଣୀ—ନୌକା, ସୂର୍ଯ୍ୟ; ତରଣୀସୁତ—ଯମ ।

ବିରୂପାକ୍ଷ ନିତ ପୂଜଇ ସୁଦତୀ କର ତବ ପ୍ରୀତି ଅଶ
ଶଶିଖଣ୍ଡଚୂଳ ଡାକୁ ଆଦ୍ୟ ବର୍ଣ୍ଣ ସ୍ୱରଭଙ୍ଗେ ହୁଏ ନାଶ ।
ହେ ଧୀର । ଶଶିମୁଖେ ଖଣ୍ଡବାଣୀ ଯାର । ତାର ଦାସୀ କରେ କାମେ ଡର । ୬ ।
ପନ୍ଦର ବୟସୀ ଛନ୍ଦରେ ନ ପଶି ଦ୍ୱନ୍ଦରେ ଭ୍ରଷିଲ୍ଲ ଦଷ
ରସଲେଖା ରସଲେଶା ଘୋଷି ଘୋଷି ହେଲ୍ଲ ବାଳୀଶ ବାଲଶ ।
ହେ ଦେବ । ଅବସ୍ନେହ ଯେବେ ମୁଦେ ଦେବ । କୀର୍ତ୍ତି ଯୁଗେ ଯୁଗେ ରହୁଥିବ ।।
ପଣ୍ଡିତ ସମାନ ବିଦ୍ୟାରେ ପଣ୍ଡିତ ସମରେ ତ ସବ୍ୟସାଚୀ
ରତିପତି ଧୂର୍ତ୍ତ କରତବ ଲବେ ବଦନ ମୋହନ ରୁଚି ।
ହେ ଧୀର । ଦାତାପଣେ ତପନ କୁମର । ତାର କୃପାରେ ବା ଦଣ୍ଡି ମାର । ୮ ।
ବିଜ୍ଞେ ଭୂପସୁତ ତୁମ୍ଭେ ତ ସାକ୍ଷାତ ସୁଧାଂଶୁ ସମ ଶୋଭନ
ମରିଇ ବିରହ ତୃଷାରେ ବାମାକୁ ବଧିବ ମୃଗଲାଞ୍ଛନ ।
ହେ ଧୀର । ଶଶଭାବେ ସୁକୁମାରୀ ସାର । କାମ ବୃଦ୍ଧିକି ପୀୟୂଷ କର । ୯ ।
ଆଶା କୁହେଳିକା ସୁସନ୍ତରୁ ଥିଲା ସରିଗେ ଅବଳା ମନ
ଶୁଣିଲ୍ଲ ଯେ ଇନ୍ଦୁ ବଳେ ପ୍ରୀତିଲବେ ଟଳିଅଛି ତବ ମନ ।
ହେ ଧୀର । କଲ୍ଲ ଭୋଜନ ଶୟନ ଦୂର । ତପ ଆଚରେ କି ଭାବି ବର । ୧୦ ।
ହିମାଳୟ ସମ ଅଟଳ ଧଇର୍ଯ୍ୟ ତରଳ ଗଲାଣି କ୍ଷଣେ
ସୁରତରଙ୍ଗିଣୀ ହୋଇ ଜହ୍ନୁଲରେ ବଧିବା ବଶରେ ମନେ ।
ହେ ଧୀର । ତବ ହୃଦ ଅଗାଧ ସାଗର । ସ୍ୱଚ୍ଛହୃଦୟା ବିଷାଦ ହର । ୧୧ ।
କଳାକର କଳା କ୍ଷୀଣ ହେଲ୍ଲ ପରି ସଜନୀ ହେଲାଣି କ୍ଷୀଣ
ଅୟୁ ନ ଧରୁଛି ଛାଡ଼ି ଭାବି ହେବ ଦରଶ କି ଦରଶନ ।
ହେ ଦେବ । ଭାବ ବାଳୀହତ୍ୟା ଦୋଷ ହେବ । ଶିବ ହେଲେ ଗଙ୍ଗସି ଭଜିବ ।।
ସେ ଅପରାଜିତା ପାଇଁ ହେବ ମଣୁ ତାର ସୁରତରୁବର
ପ୍ରେମ ବଇଡୂର୍ଯ୍ୟ ଫଳ ଫଳିବାକୁ ଶିବ ହୁଅ ହେ ସୁନ୍ଦର ।
ହେ ଧୀର । ସୁରତରଙ୍ଗିଣୀ ତୋଷକର । ଭର ମଦନ ସଙ୍ଗକୁ ସାର । ୧୩ ।

---

୬ ପଦ । ବିରୂପାକ୍ଷ—ଶିବ ।

(ଶଶିଖଣ୍ଡଚୂଳ—ଶିବ) ଡାକୁ ଡାକୁ ସାତ୍ତ୍ୱିକରେ ସ୍ୱରଭଙ୍ଗରେ ଅଦ୍ୟ 'ଶ' ଲୋପ ହୁଏ ଅର୍ଥାତ୍ 'ଶଶିଖଣ୍ଡଚୂଳ' ଡାକୁ ଡାକୁ ଶିଖଣ୍ଡଚୂଳ ବୋଲି ଡାକେ ।

୭ ପଦ । ବାଳୀଶ—ବାଳୀଶ୍ରେଷ୍ଠ । ବାଲଶ—ପାଗଳଙ୍କ । ଅବ—ବର୍ତ୍ତିମାନ, ଛେଳ । ସ୍ନେହ—ଅନୁରାଗ, ଘୃତ ।

୮ ପଦ । ଦଣ୍ଡି ମାର=ଦଣ୍ଡ ଦେଇ ନାଶ କର ।

୯ ପଦ । ଶଶ—ଠେକୁଆ; ଶଶଜାତୀୟ ପୁରୁଷ ।

୧୨ ପଦ । ଦରଶ=ଦର୍ଶ, ଅମାବାସ୍ୟା ।

୧୩ ପଦ । ଅପରାଜିତା—ଯେ ପରାଜିତା ନୁହେଁ; ଚଣ୍ଡିକା । ଶିବ—ମଙ୍ଗଳଦାୟକ; ମହାଦେବ । ସୁରତରଙ୍ଗିଣୀ—ଉତ୍ତମ ସୁରତଜନପୂର୍ଣ୍ଣା; ଗଙ୍ଗା । ମଦନ—କନ୍ଦର୍ପ; ଧୂତୁରା ।

ନୃପତି ତନୁଜା ତନୁ ଯା ହେଉଛି ନବାନୁରାଗକୁ ଧରି
ପ୍ରେମ-ଶୀତ ଘୋଟି ବେପଥୁରେ ଖରେ ହରୁଛି ଶ୍ରୀ ମାଧୁରୀ ।
ହେ ଦେବ ! ମଧୁଭାବେ ରାଗ ଫୁଟାଇବ । ଅହ୍ଲାଦନୀ ପଦ୍ମିନୀ ମୋହିବ ॥
କିଶୋରୀଙ୍କ ସୁଖ ଦେବାକୁ ଜଗତେ ହରି ବିନା କେବା ଜଣେ
ସରସ୍ୱତୀ ଶ୍ରୀ ବନ୍ଧିବାର ଗୁଣେ ସରସ ବୀଣା-ବଚନେ ।
ହେ ହରି ! ହରିକଣ୍ଠୀ ଦୁର୍ଦ୍ଦଶାକୁ ହର । ଭାବ ସୀମନ୍ତିନୀ କର ପାର । ୧୫ ।
ଅଳକା ଶ୍ରୀରେ ନ ବଳେ ତା ମନ ଛବି ପଦେ ତା ଅଳକା
କୁବେରାକ୍ଷୀ କର୍ଣ୍ଣେ ଯଶ ପାନ କରି ଭଜୁଅଛି ହରି ଏକା ।
ହେ ପ୍ରାଜ୍ଞ ! ସେ ତ ଅରମ୍ଭିଛି ପ୍ରେମଯଜ୍ଞ । ସୁଖ ଅଦ୍ଭୁତ ଦିଏ ରସଜ୍ଞ । ୧୬ ।
ବିଳେଶୟୁ ପରି ଚକ୍ଷୁଟିର ଶୁଣାଇ ପୋଡ଼େ ସନ୍ତାପ ଅନଳ
ନାରଦ ବଚନ ବିଦର୍ଭେ କହଇ ବୀରସୂଜ ହୃଦେ ଧର ।
ହେ ଧୀର ! ହେବ ଲାଭ କର ଉପକାର । ବଳେ ହଟିବ ପଣେ ପୁଷ୍କର । ୧୭ ।
କରେ [illegible]ର କୁରୁକ୍ଷେତ୍ରେ ବାସ, ଭୀମ ପ୍ରହାର କଲଣି ସ୍ମର
କଉରବପତି ଅନ୍ତୁରେ ଡାକଇ କରି ରାଧେ ନାଶ ସ୍ଥିର ।
ହେ ହରି ! ମରେ ରମ୍ଭୋରୁ ବେଦନା ଧରି । କୃତ କୃପା ଦର୍ଶନ ଆଦରି ॥
କାମ ତୃଣାବର୍ତ୍ତି ବାହୁରେ ସାକ୍ଷାତ ତା ମନ ନେଲଣି ହରି
ମଦନମୋହନ ହରି ରଙ୍ଗେ ହେବ ବୃଜିନ ନାଶ ତାହାରି ।
ହେ ହରି ! ହେଲେ ଅକ୍ରୂର ହରିବ ହରି । ସୁରତରଙ୍ଗିଣୀ ହେବ ପାରି ॥

---

୧୪ ପଦ । ରାଗ—ଅନୁରାଗ; (ପୁଷ୍ପାଧର) ରଙ୍ଗ । ମଧୁ—ମଧୁର; ବସନ୍ତ । ପଦ୍ମିନୀ—ପଦ୍ମବନ; ପଦ୍ମିନୀଜାତୀୟା ସ୍ତ୍ରୀ ।

୧୫ ପଦ । କିଶୋରୀ—କିଶୋରବୟସ୍କା ସ୍ତ୍ରୀ; ରାଧିକା । ହରି—ନାୟକ; କୃଷ୍ଣ । ସରସ୍ୱତୀ ଶ୍ରୀ—ବାକ୍ୟଶୋଭା; ବାଣୀ ଏବଂ ଲକ୍ଷ୍ମୀ ।

୧୬ ପଦ । ଅଳକା—କୁବେରପୁର, ଶିରୋଭୂଷଣବିଶେଷ । କୁବେରାକ୍ଷୀ—ପୁଷ୍ପବିଶେଷ ।

୧୭ ପଦ । ବିଳେଶୟୁ ପରି—ସର୍ପ ପରି; (ଗୃହସ୍ୱରୂପ) ଗର୍ତ୍ତରେ ଶୋଇଥିବା ପରି । ନାରଦ—ଦନ୍ତହୀନ, ପାକୁଆ, ନାରଦ ଋଷି । ବୀରସୂଜ—ବୀରପିତାର ପୁତ୍ର ରାଜକୁମାର; ବୀରସେନଙ୍କର ପୁତ୍ର ନଳ । ପୁଷ୍କର—କାମର ଶରବିଶେଷ ଅର୍ଥାତ୍ ଅରବିନ୍ଦ ଶର; ନଳ-ରାଜାଙ୍କର ସାନ ଭାଇ (ଯେ ନଳଙ୍କୁ ପଶାଖେଳରେ ହରାଇ ନିର୍ବାସିତ କରିଥିଲେ) ।

୧୮ ପଦ । ଭୀମ—ଭୟଙ୍କର, ଦ୍ୱିତୀୟ ପାଣ୍ଡବ । ସ୍ମର=ସ୍ମରଣ କର; କନ୍ଦର୍ପ । କୌରବ କୁରୁବଂଶୀୟ; ଵେରଣ୍ଡା ବାଲୁଅ । କୃତକୃପା—କରିଥିବା କୃପା; କୃତବର୍ମା ଓ କୃପାଚାର୍ଯ୍ୟ ।

୧୯ ପଦ । ତୃଣାବର୍ତ୍ତି—ଖଣ୍ଡିଅବୁତ; ରାକ୍ଷସବିଶେଷ (ଏ କୃଷ୍ଣଙ୍କୁ ଆକାଶକୁ ଉଡ଼ାଇ ନେଇଥିଲା) । ମଦନମୋହନ—କାମପରି ସୁନ୍ଦର ରାଜକୁମାର; କୃଷ୍ଣ । ରଙ୍ଗ—ଯୁଦ୍ଧ; କ୍ରୀଡ଼ା । ଅକ୍ରୂର—ଅକର୍ଦ୍ଦମୟ, କଂସର ମନ୍ତ୍ରୀ (ଏ ରଙ୍ଗ—ସଭାକୁ କୃଷ୍ଣଙ୍କୁ ଗଙ୍ଗା ପାର କରାଇ ନେଇଥିଲେ) ।

ସ୍ନେହଶୀଳା ଷଷ୍ଠିଦଣ୍ଡ ହେ କୁମାର । ମାଦଶରେ ପ୍ରତି ଦାବା
ତାରକା ବିନାଶ ସାଧନ ତତ୍ପର ସେ ପ୍ରମୋଦା ରକ୍ତଶୋଭା ।
ହେ ଧୀର । ରୂପେ ମାରେ ଯେଣୁ ମନ୍ଦ କର । ତେଣୁ ଯଥାର୍ଥ ନାମ କୁମାର ॥
ତୁଳସୀ ରତିରେ ଗଣପତି ରୂପେ ସୁରତରଙ୍ଗିଣୀ ଭାବେ
ଜୀବନେ ଜୀବନ ଜୀବନ ଜୀବନ ପ୍ରୀତିରେ ତେଜିବ ଲବେ
ହେ କାମ । ଚିଦାନନ୍ଦରୂପୀ ଅଭିରାମ । ବାଳା ଅଶ୍ରିଲଣି ତ୍ୟାଗ ଧର୍ମ । ୨୧ ।
ରସଲେଖା ଅନୁଗାମିନୀ ନ ହେବା ଭାବ ତା ଚିତ୍ତ ଅସ୍ଥିର
ଚରମକ୍ଷ୍ମାଭୃତ ବିପ୍ରତିସାରରେ ଅଶ୍ରିଲଣି ସୁଖ ତାର ।
ହେ ଶାନ୍ତ ! ସଙ୍କୁଚିତ କୂର୍ଚ୍ଚ କରେ ବ୍ୟକ୍ତ । ଚିନ୍ତା ବିଭୋର ଅଙ୍ଗନା ସତ ॥
ନବ ଭାବ ପୁଣି ମତ କୌଞ୍ଚ କୌଞ୍ଚୀ ବିହାର କରିବା ବେଳେ
ବିରହ ଶବର ନିରାଶା ଶାୟକ ବିନ୍ଧିଛୁ କେଉଁ କୌଶଳେ ।
ହେ ଦେବ ! ମନେ ବୁଝାଇଲି ମୁନିଭାବ । ରାମ ରାମ କହି ଦିନ ଯିବ । ୨୩ ।
କାନ୍ତମୁଖୀ କାନ୍ତ ସୁଖୀ ହେବା ଲାଗି ପ୍ରମୋଦ ଅଛି ପାସୋର
ସର୍ବ ସୁଲକ୍ଷଣୀ ନାରୀଶିରୋମଣି ବିନା ଦୋଷେ ହୋଏ ଘାର ।
ହେ ବୀର ! ଏକାଦଶେ ଗ୍ରହ ସାରସାର । କରେ କାମ କପାଁ ନାରଖାର ॥
ସାମନ୍ତ ପଦରେ ସେବିକା ହେବାକୁ ବଳାଇଛି ମନ ତାର
ସ୍ନେହେ ଶୁକ ପୋଷି ନିକଟେ ଶୁଣଇ ନାମ ଶୁଭ ନିରନ୍ତର ।
ହେ ଧୀର । ଦୁଃଖତରଙ୍ଗିଣୀ ନୋହୁ ପାର । ଏକାଗ୍ରତାରେ ଲୋଡ଼େ ଧୀବର ॥
ବାଳା ସ୍ୱୟମ୍ବର ହେବାକୁ ଅଜ ତ ବିଳମ୍ବ ନାହିଁ ବହୁତ
ଜନକ ଜନନୀ ସ୍ୱୟମ୍ବର ଲଗି ହୃଦୟେ ସଦା ଚିନ୍ତିତ ।
ହେ ଧୀର । ଭବିତବ୍ୟ କି ହେବ ବାଳାର । ବାଣୀ ଅଲଙ୍ଘନୀୟ ପିତାର ॥

---

୨୦ ପଦ । ସ୍ନେହଶୀଳା ଷଷ୍ଠିଦଣ୍ଡ—ଷାଠିଏ ଦଣ୍ଡ ଅର୍ଥାତ୍ ସବୁ ସମୟରେ ସ୍ନେହ କରୁଥିବା ସ୍ନେହଶୀଳା ଷଷ୍ଠୀଦେବୀଙ୍କ ଦଣ୍ଡ ଦଅ । ତାରକା—ତାର ଜାହାର, ତାରକା ଅସୁର । ମାର—କାମ ।

୨୧ ପଦ । ତୁଳସୀ ରତିରେ—ତାକୁ ରତିରୂପରେ ତୁଳନା କର ଓ ତୁଳସୀଦେବୀ ସ୍ନେହରେ; ତୁଳସୀଦେବୀ ଗଣପତିଙ୍କୁ ପତିରୂପେ ବରଣ କରିବାକୁ ଗଙ୍ଗାରେ ତପସ୍ୟା କରିଥିଲେ କିନ୍ତୁ ଗଣପତି ଅସ୍ୱୀକୃତ ହେଲେ । (ବ୍ରହ୍ମବୈବର୍ତ୍ତ ପୁ.)

ଗଣପତିରୂପେ—ପତି ବୋଲି ମନେ କର ଓ ଗଣେଶରୂପରେ । ଜୀବନ—ଜଳ ପ୍ରାଣ ।

୨୨ ପଦ । ଚରମକ୍ଷ୍ମାଭୃତ୍—ଅସ୍ତାଚଳ । ବିପ୍ରତିସାର—ଅନୁତାପ । କୂର୍ଚ୍ଚ—ଦୁଇ ଭ୍ରୂଲତାର ମଧ୍ୟସ୍ଥାନ ।

୨୩ ପଦ । କୌଞ୍ଚ କୌଞ୍ଚୀ—ବଗ ବଗୁଲି । ମୁନିଭାବ—ମୌନତା, ଋଷି ଅର୍ଥାତ୍ ବାଲ୍ମୀକି ଋଷିଙ୍କ ଭାବ ।

୨୫ ପଦ । ତରଙ୍ଗିଣୀ—ନଦୀ । ଧୀବର—କେଉଟ, ଅତି ବୁଦ୍ଧିମାନ ।

କନ୍ୟା ମତ ଯେତେ ପଣ୍ଡୁରନ୍ତେ ପିତା ଅନ୍ତ ତ ନ ଥାନ୍ତା ଭୀତି
କନ୍ୟା ବଳେ ନିଜ ମନ ଜଣାଇଲେ ସମାଜେ ହେବ ଅଖ୍ୟାତି ।
ହେ ଧୀର । ଧିକ ସେ ସମାଜକୁ ଅମୂର । ବାଳା କରମେ ରୋଦନ ସାର ॥
ଲଜ୍ଜା ଯାହା ବୋଲି ସମାଜ ବୋଲଇ ପ୍ରକୃତ କି ଲଜ୍ଜା ସେହି ?
ବାହ୍ୟ ଶିକ୍ଷାଗୁର ବଳେ ଶିଖାଇଲେ ମନ କି ତହିଁ ଭୁଲଇ ?
ହେ ଧୀର । ନାସ୍ତି ଯାତନାର ରୂପାନ୍ତର । ବିନ୍ଦୁ ଆନ କ୍ନ ହୁଇ ବିଗୁର । ୨୮ ।
ପିତା ପରି ପିତା କୋଟିରେ ଗୋଟିଏ ଏ ଧରାମଣ୍ଡଳେ ଥିବେ
ସରଳା ବାଳିକା ବିବେଚନାକୁ ଯା ବିବେଚନା ବଳେ ଭିଟବ ।
ହେ ଶାନ୍ତ ! ଦୋଳେ ସଂସ୍ପୃଦୋଳାରେ ଚିତ୍ତ । ନୋହେ ବୁଝି ରତ୍ନାକର ଅନ୍ତ ॥
ଶିବ ଚତୁର୍ଦ୍ଦଶୀ ନିଶିରେ ସୁକେଶୀ ବାଳା ରହି ଉଜାଗର
କାଶୀ ବିଶ୍ୱନାଥ ମନ୍ଦିରେ ପୂଜିବ ଭକ୍ତିରେ ଅପର୍ଣ୍ଣା ହର ।
ହେ ଦେବ । ସତେ ଅନୁକମ୍ପା କମ୍ପାଇବ । ସୁଲକ୍ଷଣୀକି ଦର୍ଶନ ଦେବ ॥
ବର ଅବ କରାଲିଙ୍ଗନ କୁମୁଦ ହାସିନୀକି ହସାଇବ
ବରବରଣୀ ବର ବରବା ସଖୀ—ଚକୋର ରବରେ ଥିବ ।
ହେ ବର ! ବର ପୀରତ ହେବ ପୀବର । ବରଷିବ ସୁରସ ଅଦର । ୩୧ ।
କେଳିକୁଞ୍ଚିକା ସଞ୍ଚାରିକା ସଙ୍ଗତେ କରିବେ ସେ ଢାଳେ ହେଳା
କେଳିପ୍ରାଣା ସଖୀ ବରିବ ସୁମନେ କରି ଅଭିନବ କେଳା ।
ସେ ବାଳୀ । କେଳିନନ୍ଦାନଙ୍କୁ ଦେଇ କେଳି । କେଳିପୁରେ ଭାବ ଭାବୀ କେଳି ॥
ତର ତର ହୋଇ ସଜନୀଏ ଲେଉଟୁ ଧୀରମଣିଙ୍କ ଉତ୍ତର
ତରଳନୟନା ସମବେଦନାରୁ ଏତିକି ମାତର ତର ।
ହେ ଧୀର । ତରସ୍ତ ନୁହ କଥା ଭିତର । ତରଳିଛ ଜାଣୁ ବୃହତ୍ତର ! ୩୩ ।
ପରିଶେଷେ ଲେଖି ବିନତି ଏତିକି ଚିତ୍ତୁ ନ ଭୁଲିବ ଥରେ
ରାଧାକୃଷ୍ଣ ଚନ୍ଦ୍ର ଚଟାଜି ମୃଦୁଳ ଦେଲ ପଦ୍ମମାଳା କରେ ।
ହେ ଜନେ । ଛାନ୍ଦ ସମାପ୍ତ ନାନା ବିଧାନେ । ଚନ୍ଦ୍ରେ ଶ୍ରୀ ଗୋଲକ
                                        ନାରାୟଣେ । ୩୪ ।

---

୩୧ ପଦ । ବର—ଶ୍ରେଷ୍ଠ, ପତି, ବରଣ କର । ଅବ୍ଜ—ଚନ୍ଦ୍ର, ପଦ୍ମ ।

୩୨ ପଦ । କେଳିକୁଞ୍ଚିକା—ଶାଳୀ; ଯେ ସ୍ତ୍ରୀ ପରିହାସ କରିପାରେ । ସଞ୍ଚାରିକା—ଦୂତୀ । ଭାବ—ଭାବନା କର । ଭାବୀ—ଭବିଷ୍ୟତ୍ ।

୩୩ ପଦ । ତର—ଅବସର ।

## ୨୧ଶ ଛାନ୍ଦ

### ରାଗ—ଶୋକଚଢ଼ଶା ବାଣୀ

କୋବଦେ ଯେନ ଧୀରେ ସ୍ୱପନ ଛନ୍ଦ, କଷ୍ଟିକ୍ତଗତ ଶୋଭା ରସବିନୋଦ ।
କୁମର ଧୀରେ । କାରୁଣ୍ୟ କରେ ବସି ସଖା ସଙ୍ଗରେ । ୧ ।
ଖଙ୍କରଶୋଭା ନୃପପ୍ରିୟାବରଣା, ଖଣ୍ଡେନ୍ଦୁ ଶୁକ୍ଳହାସୀ ଖଣ୍ଡବଚନା ।
ଖୁରଙ୍ଗନେତ୍ରୀ । ଖଣ୍ଡପରଶୁଘର ଅସକ୍ତଦାତ୍ରୀ । ୨ ।
ଗଭାରେ ଥିଲା ଯେଣ କୁସୁମ ଦାମ ଗଗନ ତମିସ୍ରେ କି ତାରା ସୁଷମ ।
ଗ୍ରୈବଭୂଷିତା । ଗିର୍ବାଣୀ ବୀଣାପାଣି ଶୋଭା ଯୁକ୍ତତା । ୩ ।
ଘନକେଶୀ ଶୋଭାଙ୍ଗୀ ବାସ ପବନ, ଘନ କଘନେ କଲା ରଙ୍ଗେ କମ୍ପନ ।
ଘଟଣି କାନ୍ତି । ଘଟକୁ ଦେଲା ନବ ନବ ବିକୃତି । ୪ ।
ଅପାଙ୍ଗ ତାଳି ତାଳେ ଭୂରୁଶୋଭନୀ, ଅପଲକ କଲା ଏ ନୟନ ବେନି ।
ଅଳପହାସୀ । ଅନଙ୍ଗକୁନ୍ତ ମାରିଦେଲା ସୁଭାଷୀ । ୫ ।
ଚପଳେ ଚପଳତା ହୃଦୟେ ଦେଇ, ଚଳାପଙ୍ଗୀ ସେ ଦେଲା ନାସା ଫୁଲାଇ ।
ଚନ୍ଦ୍ର ହଜିଲା । ଚମ୍ପାବରଣା ତରୁଛବି ବହିଲା । ୬ ।
ଛଇଲାବାଣୀ ପିକ ବଚନ ଊର୍ଦ୍ଧ୍ୱ, ଛବି ପଦ୍ମର କର ପଲ୍ଲବ ବନ୍ଧୁ ।
ଛଟକ ହାସ । ଛଇଲେ ପ୍ରକାଶିଲା ପୃଷ୍ଠ ବିକାଶ । ୭ ।
ଜାଜ୍ୱଲ୍ୟମାନ ରଙ୍ଗବାସ ମାଧୁରୀ, ଜାଗତ ଖେଳାତୋଳା ଭ୍ରମର ସରି ।
ଜଗତଜିତା । ଜବେ ହୃଦରେ ଅଣି ଦେଲା ଜଡ଼ତା । ୮ ।
ଝୁମୁ ଝୁମୁ ବଜାଇ ଝୁଣ୍ଟିଆ ଧୀରି, ଝିମିଟେ ପଲ୍ୟଙ୍କରେ ଶୋଭାପସରୀ ।
ଝଷକେତନୀ । ଝାଉଁଳିଗଲା ପରି ବସିଲା ଧନୀ । ୯ ।
ନିତମ୍ବେ ଶୋଭୁଥିଲା ମେଖଳା କାନ୍ତି, ନୀଟରେ ଦେଇ ସ୍ୱର୍ଣ୍ଣ ଭୁଜଙ୍ଗ ଭ୍ରାନ୍ତି ।
ନୂତନ ଶୋଭା । କୁଆଁରୀ କାମ କୋଟି ଋକ୍ମ ଅଥିବା । ୧୦ ।
ଟେକ ତା ମଣୁଥିଲି ଅକାଶ ସମ, ଟେକ ତାଟଙ୍କ ରବି ଶଶୀ ସୁଷମ ।
ଟାହିକି କରି । ଟାକୁରିଇଲା ପ୍ରେମ ଛଟା ଭିତରି । ୧୧ ।
ଠାରି ବିସ୍ମୟ ଦେଲା ମୋର ହୃଦୟେ, ଠିକେ ତନ୍ମୟ ହେଲି ତା ଭାବୋଦୟେ ।
ଠୁଳେ ଭାବିଲି । ଠଣ ପରମା ଶୋଭା ସୁଗଢ ବୋଲି । ୧୨ ।
ଡାଳିମ୍ବରଦନା ଅଧର ସ୍ଫୁରାଇ, ଡୋଳା ଚଞ୍ଚରୀକକୁ ଦେଲା ଖେଳାଇ ।
ଡକାଇ କାମେ । ଡରାଇ ଙ୍କରାଇଲା ଆବେଶ ବାମେ । ୧୩ ।

---

୨ ପଦ । ଖଙ୍କର—କୁଞ୍ଚିତକୁନ୍ତଳ, ଅଳକା । ନୃପପ୍ରିୟା—କେତକୀ । ଖୁରଙ୍ଗ, କୁରଙ୍ଗ—ମୃଗ । ଖଣ୍ଡପରଶୁଘର—କାମ ।

୩ ପଦ । ତମିସ୍ର—ଅନ୍ଧକାର । ଗ୍ରୈବ—କଣ୍ଠର ଅଳଙ୍କାରବିଶେଷ, ଗିର୍ବାଣୀ—ସରସ୍ୱତୀଙ୍କ ବଚନ ।

୧୦ ପଦ । ନୀଟ—ବସନ ।

ଢଳାଇ ଦେଲି ଅଙ୍ଗେ ରଙ୍ଗେ ଶୋଭାଙ୍ଗୀ, ଢାଳେ ପ୍ରଣୟବୃଷ୍ଟି କଲା ସୁଭଙ୍ଗୀ ।
ଢାଳି ପୀୟୂଷ । ଢଗ ଢମରେ କଲା ମାନସ ତୋଷ । ୧୪ ।
ଅଣହେଳା ବା ମୁହିଁ କଲି ବାଳିକା, ଅଣ ଅୟୁତେ କେଣେ ଗଲା ଛଳିକେ ।
ଅଣିମା ଅଦା । ଅଣୁମାନଙ୍କେ କେଣେ ହରଲା ବାଧି । ୧୫ ।
ତରସ୍ତ ହେଇ ଗଲା ସ୍ୱପନ ଭାଙ୍ଗି, ତରତରେ ଲୋଡ଼ିଲି କୋଳେ ଶୋଭାଙ୍ଗୀ
ତମାଳକେଶୀ । ତଳପ ଟେକି କେଣେ ବସିଲା ରୁଷି । ୧୬ ।
ଥୟ ନ ଧରେ ସେହିକାଳୁ ମାନସ, ଥରୁଛି ଗାତ୍ର ଉତ୍କଣ୍ଠାରେ ବିଶେଷ ।
ଥୋପା କୁସୁମ । ଥୋଇ ଦେଲି ନ ଘେନି କେଡ଼େ ଅଧମ । ୧୭ ।
ଦଣ୍ଡକେ ସୀତା ଦଣ୍ଡେ ଏଡ଼େ ବିପତ୍ତି, ଦଣ୍ଡକେ ହରିନେଲା କେଉଁ ଦୁର୍ମତି ।
ଦଣ୍ଡ ଦେବର । ଦଣ୍ଡିଲା ଗୃହୁ ଏଣି ନେବି ସୁନ୍ଦର । ୧୮ ।
ଧରି ପାରିବ କେବା ସେ ଗଲା ଖ-ରେ, ଧରି ହୁଅନ୍ତା କାହୁଁ ପକ୍ଷିଗତରେ ।
ଧରଣୀଶୋଭା । ଧରି ବି-ପକ୍ଷ ଦେଲା ଦଣ୍ଡ ପର-ଭା । ୧୯ ।
ନ ମଲେ ବାଳି ଲଭିବାର ନ ମଣେ । ନୀରଜନେତ୍ରା ଗଲା ଅଶୋକବନେ ।
ନେଇ ସୁଗତ । ନେଇ ରଖିଛି ପୁଷ୍ପକରେ ଝଟିତ । ୨୦ ।
ପଦ୍ମମଳାବାନ୍ଧବ ବଶ ନ ହେଲେ, ପରମା ଶୋଭା ଲଭି ହେବ କି ଭଲେ ।
ପଦ୍ମ ସୁନ୍ଦରୀ । ପର କର ରହିଛି ଭୂପତିପୁରୀ । ୨୧ ।
ଫୁଲାଇ ଦେବା ନାସାଭଙ୍ଗୀ ତାହାର, ଫଣୀ ପରାୟେ ଦଂଶୁଅଛି ଶରୀର ।
ଫୁଲ୍ଲହାସିନୀ । ଫୁଲଶର କାମର ମାରୁଛି ଧନୀ । ୨୨ ।
ବାଣହରଣ ପରି ହେଲା କପଟ, ବାମେ ସ୍ୱପନ ହେଲା ରାଜମୁକୁଟ ।
ବିଭ୍ରମେ ସରି । ବିଦେହପିତା ରୀତ ଦେଖି ବିଗୁରି । ୨୩ ।
ଭ୍ରମେ ପଡ଼ିଲି ଏ କି ଥିଲା କରମେ, ଭସାଇ ଦେଲା ଏହା ଦହି ମରମେ ।
ଭଣ୍ଡିଲା ଗୃଣ୍ଡେ । ଭୀମ ପରିକି ମାରିଗଲା ଏ ମୁଣ୍ଡେ । ୨୪ ।

---

୧୮ ପଦଠାରୁ ୨୨ ପଦ ପର୍ଯ୍ୟନ୍ତ ରାଜପୁତ୍ରର ରାଜକନ୍ୟା ବିଚ୍ଛେଦରେ ଖେଦ, (ଶ୍ଳେଷରେ ରାମଙ୍କର ଦଣ୍ଡକାରଣ୍ୟରେ ଖେଦ) । ଦଣ୍ଡକେ—ଦଣ୍ଡକ ମଧ୍ୟରେ, ଦଣ୍ଡକାରଣ୍ୟରେ । ସୀତା—ଜାନକୀ; ସିତା—ନବାତ । ଖ—ଆକାଶ । ପକ୍ଷୀ—ବିହଙ୍ଗ, (ଶ୍ଳେଷରେ ପକ୍ଷୀଚଟା) । ବି-ପକ୍ଷ—ବିପଦ, ପକ୍ଷିରାଜ । ପର-ଭା—ପ୍ରଭା, ଶତ୍ରୁର ଦୀପ୍ତ ।

୨୦ ପଦ । ବାଳି—ମର୍କଟରାଜ; ବାଳୀ । ନୀରଜ—ପଦ୍ମ । ଅଶୋକବନ—ଶୋକ ନ ଥିବା ବନ; ସୀତା ବନ୍ଦୀ ହୋଇଥିବା ଅଶୋକ ବୃକ୍ଷର ବନ । ପୁଷ୍ପକ—କଙ୍କଣ; ପୁଷ୍ପକବିମାନ (କୁବେରର ବିମାନ, ଏହାକୁ ରାବଣ ଜୟ କରି ନେଇଥିଲା) ।

୨୧ ପଦ । ପଦ୍ମମଳା—ଇନ୍ଦୁରେଖାର ସଖୀ, ଚଞ୍ଚଳାର ନଣନ୍ଦ; ଇନ୍ଦ୍ରଜିତର ସ୍ତ୍ରୀ ।

୨୩ ପଦ । ରାଜମୁକୁଟ—କୁରୁପାଣ୍ଡବ ଯୁଦ୍ଧରେ ଶ୍ରୀକୃଷ୍ଣଙ୍କ ପରାମର୍ଶରେ ଅର୍ଜ୍ଜୁନ ଦୁର୍ଯ୍ୟୋଧନଙ୍କଠାରୁ ରାଜମୁକୁଟ ପ୍ରାପ୍ତ ହୋଇ ଭୀଷ୍ମଙ୍କଠାରୁ ପାଣ୍ଡବଙ୍କୁ ବଧ କରିବାକୁ ରଖିଥିବା ଶରମାନଙ୍କୁ କପଟରେ ଆଣିଥିଲେ, ଏହା ବାଣହରଣ ବୋଲି ମହାଭାରତରେ ଉଲ୍ଲେଖ ଅଛି । ବିଦେହପିତା—ଶ୍ରୀକୃଷ୍ଣ; କାମଜନକ ।

ମେରୁ ଉପରେ ସେ ଭାବନା ସୁମନା, ମେରୁର ତଳେ ମୁହିଁ ମହୀଶ ଦିନା ।
ମରିବି ଭାବି । ମାରଣରରେ ଶ୍ୟାମା ପ୍ରୀତି ନ ଲଭି । ୨୫ ।
ଯତମୋହନୀ ଚନ୍ଦ୍ରା ସାରିବି ବେଗେ, ଯବନିକା ପକାଇ ଜୀବନ ରଙ୍ଗେ ।
ଯାମବତୀକି । ଯମ ସମାନ କାହୁଁ ଥିବ ଭୀତକି । ୨୬ ।
ରୁଷି ଋଷିମୋହନୀ କେଶିକି ଗଲି, ଋଷ୍ୟଶୃଙ୍ଗ କାହିଁକି ମୋତେ ନ କଲି ।
ଋଷି ହୋଇବି । ରାଜୀବନୟନଙ୍କୁ ଧ୍ୟାନ କରିବି । ୨୭ ।
ଲୁବ୍ଧକ ପ୍ରାପ୍ତେ ଲୋଭେ ବସାଇ କ୍ଷଣେ, ଲବଣ୍ୟବତୀ ଚିର ହାଣିଛୁ ଏଣେ ।
ଲକ୍ଷ୍ମରୂପା । ଲବଣ୍ୟପିତୁଳାର ଏ ପରି କୃପା । ୨୮ ।
ବଡ଼ ବଚନ ଛବି ତାହାର ମଣେ, ବାନ୍ଧବ ହେବି ଅବା ମୁଁ କେଉଁ ଗୁଣେ ।
ବୃଷା ଶାପେ ବା । ବହୁରେ ଧରଣୀରେ ମେନକା ଶୋଭା । ୨୯ ।
ଶମ୍ଭୁ କରନ୍ତେ ଯେବେ ବରନ୍ତା ଭର, ଶମ୍ପାବରଣୀ ବହି ସ୍ନେହ ଅପାର ।
ଶିବଙ୍କୁ ତୋଷି । ଶିବରେ ତୋଷୁଥାନ୍ତି କୁଞ୍ଚିତକେଶୀ । ୩୦ ।
ଷାଡ଼ବେ ଗାଏ ଶୁଣେ ଶରଧାବତୀ, ଷଡ଼ ସଙ୍ଗିନୀ ସଙ୍ଗେ ସୁଗ୍ରହୁଦନ୍ତୀ ।
ଷୋଡ଼ଶୀ ବୟସେ । ଷୋଡ଼ଶୋପଗୃରେ କି ତୋଷିବ ବାସେ । ୩୧ ।
ସ୍ୱପନ ଯେତେ ସତ ହୁଅନ୍ତା ମୋର, ସପତ ଦିକୁ ତଳୁ ହେଲି ପ୍ରକାର ।
ସାରସଗତି । ସରସରେ ହୁଅନ୍ତା ସାର ବିଭୂତି । ୩୨ ।
ହରି ମାନସେ ରଙ୍ଗେ ଦେବାରେ ଛନ୍ଦ, ହିରଣ୍ୟତନୁ ବିଦାରଇ ବହନ ।
ହର ଭରସା । ହରଷେ ସୁଗନ୍ଧଙ୍କୁ ଲଭିବା ଆଶା । ୩୩ ।
କ୍ଷିତମଣ୍ଡନା ଭାବେ ପୁଂସ ଆବେଶେ, କ୍ଷମେ ଶ୍ରୀ ଗୋଲୋକ ଏ ଛାନ୍ଦ ପ୍ରକାଶେ ।
କ୍ଷମା ମାଗଇ । କ୍ଷଣେ ଗୋପାଳ-ପକ୍ଷୀଶୋଭିନୀ ଧ୍ୟାଇ । ୩୪ ।

---

୨୫ ପଦ । ମହୀଶ—ରାଜା ଓ ମହିଷ—ମହିଷାସୁର । ଶ୍ୟାମା—ଶ୍ୟାମା ସ୍ତ୍ରୀ; ଦୁର୍ଗା ।

୨୭ ପଦ । ରାଜୀବନୟନ—ପଦ୍ମନେତ୍ର; ଶ୍ରୀରାମ ।

୨୮ ପଦ । ଲୁବ୍ଧକ—ଲୋଭୀ, କାମୁକ ।

୨୯ ପଦ । ବୃଷା—ଇନ୍ଦ୍ର । ମେନକା—ଏ ସ୍ୱର୍ଗବେଶ୍ୟା ଅତି ସୁନ୍ଦରୀ ଅଟନ୍ତି । ଏ ଇନ୍ଦ୍ରଙ୍କ ଅଭିଶାପରେ ପୃଥିବୀରେ ଜନ୍ମ ହୋଇଥିଲେ ।

୩୦ ପଦ । ଶମ୍ଭୁ—ଶିବ । ଶମ୍ପା—ବିଦ୍ୟୁତ୍ । ଶିବ—ମହାଦେବ, ମଙ୍ଗଳ ।

୩୧ ପଦ । ଷାଡ଼ବ—୬ ସ୍ୱର ମିଶ୍ରିତ ରାଗରାଗିଣୀ ।

୩୨ ପଦ । ସାରସ—ହଂସ ।

୩୩ ପଦ । ହରି—ହରଣ କରି, ନୃସିଂହ ଅବତାର । ହିରଣ୍ୟ ସ୍ୱର୍ଣ୍ଣ; ହିରଣ୍ୟାକ୍ଷ । ସୁଗନ୍ଧ—ମନୋହରଗନ୍ଧବିଶିଷ୍ଟ; ମୁକ୍ତ ।

୩୪ ପଦ । କ୍ଷଣ—ଶୁଭମୁହୂର୍ତ୍ତ, ଅବସର, ଆନନ୍ଦ ।

## ୨୨ଶ ଛାନ୍ଦ

ରାଗ—ଶୋକ କାମୋଦୀ ।

ବିଧୁର ମଧୁର ଅଗୁରୁ ଏ ଗନ୍ଧ ଆସ୍ୱାଦ ସୁସ୍ୱାଦ ରସଗ୍ରାହୀ
ଗୃହୁ ବିମ୍ବାଧରୀ-କର ଦୂତୀ ଧରି ଘନେ କହେ କଳତ୍ରୁଳ ବାହି ।
ଘେନ ଅବେଣି ରେ ! ନବ ଅନୁରାଗୀ ସ୍ୱତରାଗି,
ଦେଖି ଶୀତକର ଶୀତେ ଥର ଥର ଧର ଧର କହେ ଦୁଃଖେ ଝୁରି । ୧ ।
ଖେଦବିଗଳିତ ମାନସ କଳିତ ଲଳିତ ଭାବରେ ଗୃହମୁହାଁ,
ପୀରତି ମନ୍ତ୍ରରେ କପଟ ଅନ୍ତରେ ସନ୍ତତେ ବସନ୍ତେ ନୋହି ସ୍ନେହୀ ।
ଏଣୀ-ଈକ୍ଷଣି ରେ ! କେବେ ବା ବାତୁଳ ବାଣୀ ଭଣି
ବିଜନେ ଉଦ୍ୟାନେ କାଳିମା ବଦନେ ଲୋତକଲୋଚନେ ଯୁବାମଣି । ୨ ।
ଭୂତକେଶୀବେଶୀ ପ୍ରଣୟୀ ଲାଳସୀ ଭ୍ରମରେ ଭ୍ରମରେ ଦେଖି ଛନ୍ନ
ମାଧବୀ ସେବତୀ ବିପରୀତ ରୀତି ଗୃହୁଁ ଗୃହୁଁ ନେଇଁ ବହେ ବନ ।
ମନମୋହିନି ରେ ! ତରୁ ଅଣି ଲତା ଦହେ ପୁଣି,
ଶୀତଭୀରୁ ଭୀରୁ କି ଭାବ ନମ୍ରୋରୁ ପ୍ରେମିକ ମନ୍ମଥ ବିବର୍ଦ୍ଧିନୀ ! ୩ ।
ସହକାରକୁଳ ବକୁଳ ବ୍ୟାକୁଳ ଅଳି ଗୃହୀ ଲୋଡ଼ି କାକୋଳକୁ
କିଂଶୁକ କୋରକ ହୃଦବିଦାରକ କର ତୁଳ ସ୍ମର-କଟକକୁ ।
କଞ୍ଜନୟନି ରେ ! ଅଳିଯୁକ୍ତ ପାଟଳିକି ପୁଣି,
ମଣନ୍ତି ଉଦ୍ଧତ କାମ ତୀକ୍ଷ୍ଣକାଣ୍ଡ ଗୁଞ୍ଜନକୁ ଜୟ ଭେରୀଧ୍ୱନି । ୪ ।
ରୋଲମ୍ବଲମ୍ବିତ ମାଳତୀ ପ୍ରତୀତ ହେଉ କାମକୁନ୍ତ ବହ୍ନି ଛନ୍ନ
ଚୁମ୍ବିତ ଭ୍ରମର ନିଅଳକ ଗୁରୁ ଯୋଷାହ୍ୱାନ ଯଶ ମଣି ତୂର୍ଣ୍ଣ ।
କୁନ୍ଦରଦନି ରେ ! ମୂକଭାବେ ଶୁଣି ପିକବାଣୀ,
ବାଞ୍ଛାଚକ୍ରବତ ମାନସ ସତତ ଅଧୃତ ତାପରେ ଧୀର ମଣି । ୫ ।
ତରୁଣ ଅରୁଣ କିରଣ ମଣ୍ଡନ ନଳିନୀରେ ନୀରେ ଦେଖି ସୁଖୀ
କି ଚନ୍ଦ୍ରାସମ୍ପତ୍ତି ବ୍ୟାପ୍ତିରେ ବିମ୍ବୋଷ୍ଠୀ ସୃଷ୍ଟିରେ ତୁଷ୍ଟି ନ ପାର ରଖି ।
ଭାବଦାୟିନି ରେ ! କାରୁଣ୍ୟ-ଲହରୀ ଛନ୍ନ ଘେନି,
ନିରବଗୁଣ୍ଠିତ ଭାବରାଶି ଜାତ କରେ ଚାଉ ଦ୍ୱିଧା ଶଙ୍କା ମାନି । ୬ ।

---

୧ମ ପଦ । ଶୀତକର—ଚନ୍ଦ୍ର । ଧରଧର—ଧାରଣ କର; ଶ୍ରୀକୃଷ୍ଣ ।

୩ୟ ପଦ । ଭୂତକେଶୀ—ପୁଷ୍ପବିଶେଷ । ଶୀତଭୀରୁ—ମଲ୍ଲୀ ।

୪ର୍ଥ ପଦ । ସହକାର—ଆମ୍ବ । କାକୋଳ—ବିଷ । କିଂଶୁକ—ପଳାଶ । ସ୍ମର—କନ୍ଦର୍ପ । ଅଳି—ଭଅଁର । ୫ମ ପଦ । ରୋଲମ୍ବ—ଭ୍ରମର ।

୬ଷ୍ଠ ପଦ । ଅରୁଣ—ରକ୍ତ । ନଳିନୀ—ପଦ୍ମବନ । ନୀର—ଜଳ ।

ଏ ଅତି ବିଚିତ୍ର ହୃଦେ ତୋର ଚାରୁ ମଣ୍ଡନ୍ତି ମଣି ଭୂଷଣ ଭୂଷା
କାରୁଣ୍ୟ-ପ୍ରଫୁଲ୍ଲ କଣ୍ଠ ଅନର୍ଗଳ ଇଚ୍ଛାରେ କି ବିଗଳିତ ଭାଷା ।
ରସସାଗର ରେ ! ସ୍ନେହୀ ହୃଦକୁଞ୍ଜ ପୋଷା ସାରୀ,
ଶିରେ ମାରି କର ହୁଅନ୍ତି ଅଧୀର ହୋଏ ଥନଥନ ନେତ୍ରେ ବାରି । ୭ ।
ଭାସେ ଅମ୍ବୁଧିରେ ଭାଷନ୍ତି କାତରେ ଡାକି କମ୍ବୁକଣ୍ଠୀ ଅମ୍ବୁଜାକ୍ଷୀ
ଦଅଇ ଅରାତି ରାତି ମହାଭ୍ରାନ୍ତି କ୍ଷିତିରେ ମୋ ପରି କାହିଁ ଦୁଃଖୀ
ସନ୍ଧି ସୁମୁହିଁ ରେ ! ଶୁଣି ବାଣୀ କେ ନ ହେବ ଦାହି,
କରୁଣା ବାହାରେ କବା ଶତଧାରେ ନୟନ ଲୋତକ ଛଳେ ବହି । ୮ ।
ଗ୍ରାସିଲଣି ଭ୍ରମ ବାତବ୍ୟାଧି ସମ ବିଷମ କଲଣି ମନ ଯେନ
କାଳିମା ବିରଜେ ବଦନସରୋଜେ ବିଶୀର୍ଣ୍ଣ ହେଲଣି ଅପଘନ ।
ପ୍ରେମମଞ୍ଜରି ରେ ! ପୋଷିଛନ୍ତି ଦିବ୍ୟ ପଢ଼ା ସାରି,
କରଇ ରଟନ ତୋ ନାମ ବହନ ଯଥାକାଳେ କୁତୂହଳ କରି । ୯ ।
କରି କିଶଳୟ ଶୟନ ଅଥୟ ଚକିତ ନୟନେ ଥାନ୍ତି ରହି
ଝିଲ୍ଲିରବ ଶୁଣି ସେ ଦାଗକୁ ପୁଣି ଡେରନ୍ତି କର୍ଣ୍ଣ କି ମୁଦ ବହି ।
ହଂସଗମନା ରେ ! ବାତୁଳ ପରାୟ ଯୁବାମଣି,
ଉଦାସ ଅଶ୍ୱାସ ସନ୍ତାପେ ପ୍ରକାଶ ପ୍ରେମିକ ମନ୍ମଥ ବିବର୍ଦ୍ଧିନୀ । ୧୦ ।
ଝୁରନ୍ତି ଅଧୀରେ ପ୍ରାପ୍ତି ସୋହାଗରେ, କି କରୁଥିବ ସେ ଚଳାପାଙ୍ଗୀ
କଲି ହୃଦ ପବି ନ ଗଲି ଯା ଦ୍ରବି ଥିବ କି ସନ୍ତାପେ ଚପଳାଙ୍ଗୀ ।
ସୁରସୁନ୍ଦରି ରେ ! ମଣନ୍ତି କାହିଁକି ବାସେ ଦାସୀ,
ହତାଶ ନିଃଶ୍ୱାସ ବିଶେଷ ପ୍ରକାଶ ଜୀବନ୍ମୃତ ଭାବ ସୁ-ଅଦରି । ୧୧ ।
ଅନାଇ ଗଗନେ ଭାବନ୍ତି କି ଛନ୍ଦେ ଭାବ ଯେନ ମନେ ଭାବବତି,
ଇନ୍ଦୁ ଦରଶନେ ସତତ ପ୍ରସନ୍ନେ ଶୀତ ପକ୍ଷେ ଅନୁରାଗ ଅତି ।
ବିଶ୍ୱମୋହନା ରେ ! ଚନ୍ଦ୍ରକର ବୈଶ୍ୱାନର ମଣି,
ବେଶ ବାସ ହାସ ରସ ପରିହାସ ମୃଗୟା ବିହାର ତେଜିଲେଣି । ୧୨ ।
ବସି ଏକାନ୍ତରେ ଚିନ୍ତି କି ଚିତ୍ତରେ କମ୍ପ ପୁଲକରେ ଜରଜର
ପୁଣି କ୍ଷଣେ କ୍ଷଣେ କି ଭାବ ମଜ୍ଜନେ ସରଣୀକି ଦୃଷ୍ଟି ଥରଥର ।
ନବ କାମିନୀ ରେ ! ନ ସରଇ ଦିନ ଗଣି ଗଣି,
ନିଶୀଥରେ ଥରେ ରଥାଙ୍ଗ ରବରେ ବ୍ୟଥିତ ଚିତ୍ତରେ ଗୁଣମଣି । ୧୩ ।

---

୮ମ ପଦ । ଅମ୍ବୁଧି—ସାଗର, ସମୁଦ୍ର । କମ୍ବୁ—ଶଙ୍ଖ । ଅମ୍ବୁଜ—ପଦ୍ମ, କଇଁ । ଅରାତି—ଶତ୍ରୁ । କ୍ଷିତି—ପୃଥିବୀ ।

୯ମ ପଦ । ସରୋଜ—ପଦ୍ମ । ଅପଘନ—ଶରୀର ।

୧୦ମ ପଦ । କିଶଳୟ—ନୂଆପତ୍ର, କଅଁଳିଆ ପତ୍ର । ମନ୍ମଥ—କନ୍ଦର୍ପ ।

୧୧ଶ ପଦ । ଚଳାପାଙ୍ଗୀ—ଚଞ୍ଚଳକଟାକ୍ଷା । ଚପଳାଙ୍ଗୀ—ବିଦ୍ୟୁତ୍‌ଗୋରୀ ।

୧୨ଶ ପଦ । ଇନ୍ଦୁ—ଚନ୍ଦ୍ର । ବୈଶ୍ୱାନର—ଅଗ୍ନି

୧୩ଶ ପଦ । ସରଣୀ—ପଥ, ରାସ୍ତା । ନିଶୀଥ—ଅର୍ଦ୍ଧରାତ୍ର । ରଥାଙ୍ଗ—ଚକ୍ରବାକ ।

ଗମିଲେ ଶୟନେ ଦାଶେ କି ନୟନେ ଅୟନେ ପଦ ଟେ ଦଏ ବାନ୍ଧ
କଣ୍ଠ ହାହାକାର କି କଷ୍ଟେ ବାହାର ଦଏ କାଏ ସତେ ବଳେ ଛନ୍ଦ ।
ମଲ୍ଲିହାସିନୀ ରେ ! ଅନ୍ତରତେ ମଲ ମଲ ବାଣୀ,
ଦବସେ ଅନ୍ଧାର ମଣିମୟୂର ଚାଳାସର ନାହିଁ ଠାଣି ଅଣି । ୧୪ ।
ବିରାଗୀ ହେଲେଣି ଭାବ ଗୁଣି ଗୁଣି ରାଗବନ୍ତି ଆନକଥା ନାହିଁ
ବିଜନତ ଖେଦ ରଜନୀରେ ନିଦ ନ ଆସେ ତୋ ଅଶେ ରହି ଗୃହିଁ ।
ବିଧୁବଦନୀ ରେ ! କୁମୁଦରେ ଝୃତ ହଜିଲଣି,
ଚର ଅଚରରେ ପ୍ରଚ୍ଛନ୍ନ କାତରେ·କି ସନ୍ଦେଶ ନବଭୂତ ମଣି । ୧୫ ।
ଦେଖି ସବୋଜନୀ ବୋଲନ୍ତି ତକ୍ଷଣି ତୁ ସୁନ୍ଦରୀ ଦୃଷ୍ଟି କଙ୍କଣୀକ
କାମଶରେ ଥାଇ ଥିଲା ତୋ ବଢ଼ାଇ ଛଡ଼ାଇ ଦେଲା କି ସେ ଅଣିକ ?
ରସରଙ୍ଗିଣି ରେ ! ବାଧା ଜଳେ ଭାସି ଶୁରମଣି,
ନୂଆ ଅନ୍ଧ ପରି ପରିସରେ ଭରି ଅନ୍ତରତେ ମୂଦେ ଖେଦ ବାଣୀ । ୧୬ ।
ସୁପରିବାଦନୀ ବାଜବାର କ୍ଷଣି ପୁଲକ ସଞ୍ଚାର ହୁଏ କ୍ଷଣେ
ସ୍ମୃତ ଅସୁଁ ଖର ମାର ମାରେ ଶର କରି ଜରଜର ଅପଘନେ ।
ବୀଣାବଚନୀ ରେ ! ସୁବର୍ଣ୍ଣରେ ରଙ୍ଗ ହୋଇଲେଣି,
ଦେଖି ପୋଷା ଏଣୀ ତୋ ଏଣୀଗୃହାଣୀ ସୁମରିଲା ପରି ଧୀରମଣି । ୧୭ ।
ନୂତନ ବନ୍ଧନ ବିହଙ୍ଗମ ମନ ଯଥା ପିଞ୍ଜରେ ଭାବ ଘୋର ।
ନ ଭକ୍ଷି ପୀୟୂଷ ଯଥା ରକ୍ଷବଂଶ ମୋହନୀଭାବରେ ତଥା ସର ।
ଭ୍ରୂରୂଶୋଭନୀ ରେ ! ଅପିଚ୍ଛିଳ କାମପଥ ମଣି,
ଦେଉଥିଲେ ପଦ ହେଲଣି ପ୍ରମାଦ ନବମ ଦଶାକୁ ବଳିଲଣି । ୧୮ ।
ତୋ ବିଚ୍ଛିଣ୍ଡ ଧ୍ୟାନ ଦନେ ରେ କାମିନୀ ! ଯାମିନୀରେ ରାଜ-ଉପବନେ
ଦେଖିଲେ ପଲ୍ୱଲେ ଚନ୍ଦ୍ରବିମ୍ବ ଖେଳେ ଆଲେଡ଼ିଲେ ଭୋଳେ ଯାଇ ବନେ ।
ସୁଧାଭାଷିଣି ରେ ! ଶତବିମ୍ବେ ଦଶେ ଲିଭେ ଜାଣି,
ଅତ ଆରତରେ ଭାଷିଲେ କାତରେ ଏ ରୀତ କି କଲା ବାଳାମଣି । ୧୯ ।
ଚନ୍ଦ୍ରାତରଙ୍ଗିଣୀ ଅଗାଧ ନ ଜାଣି ବାଧା ଭଙ୍ଗିଁରୀକି ଗଲେ ପଶି
ସେ ଫଳରେ ଧୃତ ସଙ୍ଗେ ଗଲା ସ୍ଫୂର୍ତ୍ତି କାମ-ଯମ ଭୟ ଦେଲା ଆସି
ନବରଙ୍ଗିଣି ରେ ! ଅଜ କି ସ୍ଫୁରଇ କଣ୍ଠ ବାଣୀ,
ନିମିଷକ ପୁଣି କୋଟିଯୁଗ ମଣି କଷ୍ଟେ ନାହିଁ ତାକ ଛାଡ଼ିଲେଣି । ୨୦ ।

---

୧୪ଶ ପଦ । ଅୟନ—ପଥ, ଗନ୍ତ । ଅଣି—ଗର୍ବ ।
୧୬ଶ ପଦ । ପରିବାଦନୀ—ସପ୍ତତନ୍ତ୍ରୀବିଶିଷ୍ଟା ବୀଣା । ଏଣୀ—ହରିଣୀ ।
୧୮ଶ ପଦ । ବିହଙ୍ଗମ—ପକ୍ଷୀ । ପୀୟୂଷ—ଅମୃତ । ରକ୍ଷ—ଅସୁର, ରାକ୍ଷସ ।
ନବମ ଦଶା—କାମର ନବମ ଦଶା; ମୂର୍ଚ୍ଛା ।
୧୯ଶ ପଦ । ଯାମିନୀ—ରାତ୍ରି । ଉପବନ—ବଗିଚା । ପଲ୍ୱଲ—ପୋଖରୀ ।
୨୦ଶ ପଦ । ତରଙ୍ଗିଣୀ—ନଦୀ । ତରୁ—ବୃକ୍ଷ ।

ମାନସ-କଳ୍ପିତ ତୋର ମୂର୍ତ୍ତିକି ଧରିବାକୁ ବାହୁ ଦୁଇ ସଜ
ବିଷାଦ ମଗନେ ପୁଣି ପରକ୍ଷଣେ ହୋଇଯାଏ ରଙ୍ଗ ଓଷ୍ଠ ଗୋଳ ।
ଘନମୁକ୍ତକେଶି ରେ ! ଜାଣିବ କେ ତାଙ୍କ ଦୁଃଖରାଶି ?
ତରୁରୁ ଝଡ଼ନ୍ତ ଦେଖିଲେ ପଲ୍ଲବ ଆଉ କେ ଧରିବ ଧୈର୍ଯ୍ୟ ବସି ? । ୨୧ ।

ପ୍ରିୟ ଦୃଶ୍ୟମାନ ହେଲଣି ବହନ ସମ୍ବରି ନାଗର ପାଶୁ ଦୂର
କେତେ କି କବିତା ବିଜନେ ବନିତା ଲେଖି ଫିଙ୍ଗିଲେଣି ବାରମ୍ବାର ।
ମୃଦୁହାସିନି ରେ ! ବାରୁଣୀପାୟୀର ସର୍ବ ଠାଣି,
ବାରୁଣୀ କରତେ ଖାଇଲେଣି ଚିତ୍ତେ ମଣି ତୋ ଲୋଭ ରସ-ମନ୍ଦାକିନୀ । ୨୨ ।

ଖାଇବ ବ୍ୟାଜରେ ଲୁଚନ୍ତି ଲାଜରେ ବନେ ବନେ ପଡ଼ିଯାଏ ଜଣା
ନାଦନ୍ତି ସ୍ୱମୁଖେ ଅହା କେତେ ଦୁଃଖେ କରିଦେଲ ଜାଣି ବୁଦ୍ଧିବଣା ।
ସ୍ନେହବଲ୍ଲଭ ରେ ! ଭୂଷାକୁ ହେବାକୁ ହୃଦ ଜାଣି,
ମଜ୍ଜନେ ବିଜନେ ଅଦର ଯତନେ କାତରେ କଲେଣି ଯୁବାମଣି । ୨୩ ।

ଦିନେ କି ଯୋଗରେ ବିହଙ୍କୁ ଦାଣ୍ଡରେ ଗବାକ୍ଷେ ଦିଶିଲ ତୋର ଚନ୍ଦ
ଗଲ ବନେ ଲଖି ନ ଫେରିଲ ଆଖି ବାମେ ହେଲ ଜାଣି ସ୍ତମ୍ଭ ଜାତ ।
ମନୋମୋହନ ରେ ! ହେଲେ ଥର ଥର ଯୁବାମଣି,
ସଖୀ ହେତୁ ଭଣି ଭ୍ରବ ପରମାଣି ସୁକଣ୍ଠାକ୍ଷା କଷା ହେଲ ମଣି । ୨୪ ।

ଯେତେକ ସୁନ୍ଦର ସାର ମଧ୍ୟେ ସାର ତହିଁରେ ଗୁହିଁ ତୋ ପ୍ରତିବିମ୍ବ
ଦୁଅନ୍ତେ ଅଧୀର ପ୍ରେମରସାତୁର କଲ ଅଧିକାର ଅନାଲମ୍ବ ।
କାମକାତର ରେ ! ବିଯୋଗୀ ଭଜନ୍ତି ରାଗ ଧରି,
ଦିବସ ଶର୍ବରୀ ଅକଞ୍ଚନ ପରି କେବେ ବା ଉନ୍ମତ୍ତ ଭଙ୍ଗୀ କରି । ୨୫ ।

କୁମର-କଳାପ ତୋ ସ୍ମିତ ଆଳାପ-କାଳେ ପ୍ରଳାପ ବିଳାପ କରି
କୋହରେ ମୋହରେ ବୁଡ଼ନ୍ତି ଲୁହରେ ଦେହରେ ଜୀବ ନ ଥିଲ ପରି
ନବକିଶୋର ରେ ! ଦଶ ଦିଗ ମଣି ଶୂନ୍ୟ ସରି,
ଧରିବ କେ ସ୍ଥିତ ଦେଖି ଏହି ସ୍ମିତ ତରଳିବେ ପର ହା ହା କରି । ୨୬ ।

ଘାଟଲେଣି ସରଣି ଅସୀମ ନ ଜାଣି ଭ୍ରମିଲେ ସେ ପଥେ କୁତୁହଳେ
କ୍ଳାନ୍ତିରେ ଶେଷରେ ପଡ଼ିଲେଣି ଖରେ ତାପିତ ପଥିକ କି ବିକଳେ ।
ରସରଙ୍ଗିଣି ରେ ! ଦୀର୍ଘଶ୍ୱାସ ଖେଦେ ଛାଡ଼ିଲେଣି,
କାମ-ଝଞ୍ଜାବାତ ବହି ଅବିରତ କେ ବର୍ତ୍ତିବ ଯେତେ ଜାଳିଲଣି । ୨୭ ।

---

୨୨ଶ ପଦ । ବାରୁଣୀ—ମଦ; ତୀର୍ଥସ୍ନାନ ଯୋଗବିଶେଷ । ନିରତେ—ସର୍ବଦା । ମନ୍ଦାକିନୀ—ଗଙ୍ଗା ।

୨୫ଶ ପଦ । ପ୍ରତିବିମ୍ବ—ଛବି, ପ୍ରତିମୂର୍ତ୍ତି । ଶର୍ବରୀ—ରଜନୀ । ଉନ୍ମତ୍ତ—ପାଗଳ ।

୨୬ଶ ପଦ । କଳାପ—ଚନ୍ଦ୍ର, ଶ୍ରେଷ୍ଠ । ପର—ଶତ୍ରୁ ।

୨୭ ପଦ । ଖରେ—ଚଞ୍ଚଳ । ଅବିରତ—ସର୍ବଦା ।

ଧନ୍ୟ ଧନ୍ୟ କ୍ଷୀଣ ନାଗରରତନ ନିନ୍ଦନ୍ତି ବିକଳେ ଭାଗ୍ୟ କେତେ
ସଖୀଗଣ-ବୋଧ ନ ମାନି ଅବୋଧ ଦରିଦ୍ର ନିଧି ହାରିଲା ମତେ ।
ଚମ୍ପାବରଣି ରେ ! ବୋଧିବା ଉପାୟ ନାହିଁ ଜାଣି,
ସର୍ବ ସଖୀକୁଳ ହେଲେଣି ଚଞ୍ଚଳ ଅବଧାନ କର ଯାହା ଧନି । ୨୮ ।
ଭ୍ରମର-ଅରଛ ଶୁଣି ରସବତୀ ଲୋଭକ ନୟନେ ଜରଜର
ଦୂତୀକର ଧରି ବୋଲେ ରସାତୁରୀ ଶୁଣିବାକୁ ଏହା ଥିଲା ମୋର ।
ପ୍ରେମୀ କୋବିଦେ ହେ ! ବସିଲ କାହିଁକି ହୋଇ ଖେଦେ,
ଦୂତୀ କରେ ବୋଧ ଗୋଲୋକ ଅବୋଧ ଶିଖଣ୍ଡଚୂଳଙ୍କ ବାଧା ବାଧେ । ୨୯ ।

## ୨୩ଶ ଛାନ୍ଦ

ରାଗ—କଳସା, ମଙ୍ଗଳ-ଗୁଜ୍ଜରୀ, ଭୂପାଳ

ସୁବୁଦ୍ଧିରେ ଘେନ ଧୀରେ ଛାନ୍ଦ ମନୋହର ।
ମୋହର ଏ କ୍ରମରେ ଚ୍ୟୁତ ହେବ ଆଦ୍ୟାକ୍ଷର । ୧ ।
ସୁବିଜ୍ଞେ ଅର୍ଥ ଏଥି ନବ ଏକାଦଶ ।
ହେ ସୁଜ୍ଞାନ ! କର ଶ୍ରମ ଲଭିବ ସନ୍ତୋଷ । ୨ ।
ବିରସ ରତ ଯେ କାଳେ କ୍ଷିତିରେ ବହନ ।
ବିପ୍ରଭଞ୍ଜନକୁ ଶୋଭା କଲା ଅଣି ଘନ । ୩ ।

---

୨୯ ପଦ । ଅରଛ—ବିକଳଭାବ । ଲୋଭକ—ଲୁବ୍ଧ । କୋବିଦ—ପଣ୍ଡିତ । ଶିଖଣ୍ଡଚୂଳ—ଶ୍ରୀକୃଷ୍ଣ; ରାଜକୁମାର ।

୧ମ ପଦ ଛଅ ଅର୍ଥରେ । ଏ ଛାନ୍ଦରେ କ୍ରମେ କ୍ରମେ ଆଦ୍ୟରୁ ୧ମ ଅର୍ଥ ପରେ ଏକ ଏକ କରି ଦୁଇ ଅକ୍ଷର ଚ୍ୟୁତ ହେବ । ଏ ଅତି ମନୋହର ଛାନ୍ଦ । ହେ ପଣ୍ଡିତମାନେ, ଉତ୍ତମ ନୟମାନୁସାରେ ଏ ଛାନ୍ଦକୁ ଗ୍ରହଣ କରନ୍ତୁ । ଏ ଛାନ୍ଦଗୁଡ଼ିକ ଆପଣମାନଙ୍କ ଚିତ୍ତକୁ ମୋହିତ କରିବ । ( ତିନିଗୋଟି ଛାନ୍ଦ ଏକତ୍ର ହୋଇ ଏ ଛାନ୍ଦଟି ହୋଇଅଛି । ଅର୍ଥାତ୍ ୧୪ ଅକ୍ଷରୀ ଏକ ଛାନ୍ଦ, ୧୩ ଅକ୍ଷରୀ ଏକ ଛାନ୍ଦ ଓ ୧୨ ଅକ୍ଷରୀ ଏକ ଛାନ୍ଦ ) ।

୨ୟ ପଦ । ଚ୍ୟୁତାକ୍ଷର କଲେ ୩ ଅର୍ଥ ହେବ ।

୩ୟ ପଦର ୧ମ ଅର୍ଥ । ଯେ କାଳେ, ବି—ରସରତ ( ଯେଉଁ ସମୟରେ ଜଳର ଗୈର ଅର୍ଥାତ୍ ଖସ ) ରତ ହୁଏ ଅର୍ଥାତ୍ ଗ୍ରୀଷ୍ମ ସମୟ କ୍ଷିତିରେ (ପୃଥିବୀରେ ) ବହନ ( ଶୀଘ୍ର ) ପ୍ରବେଶ କଲା । କୁ ( ପୃଥିବୀର ) ଶୋଭାକୁ ବିପ୍ରଭଞ୍ଜନ କଲା ( ବିଶେଷରୂପେ ଭାଙ୍ଗି ପକାଇଲା ) । ଘନ ଅଣି କଲା ( ବିଶେଷ ଗର୍ବ ପ୍ରକାଶ କଲା ); ଅର୍ଥାତ୍ ଗ୍ରୀଷ୍ମ ସମୟ ପୃଥିବୀର ବସନ୍ତ ଶୋଭାକୁ ଲୁପ୍ତ କରି ଗର୍ବ ପ୍ରକାଶ କଲା । [ ବି ( ବିଶେଷ ) ରସର ( ଜଳର ) ତ ( ଗୈର ) ଅର୍ଥାତ୍ ଖରାଦିନ । ]

୩ୟ ପଦର ୨ୟ ଅର୍ଥ । ବୀର (ଯୁବରାଜ) କ୍ଷିତିରେ (ଧୀର ନାରୀଠାରେ) ଯେ କାଳେ ସରତ ଅର୍ଥାତ୍ ଯୌବନ ବହନ (ଶୀଘ୍ର) ପ୍ରବେଶିଲା । କୁଶୋଭା (ଧର୍ମମଣ୍ଡନା ନାରୀ) ଘନ ଅଣି (ଯୁବକସୁଲଭ ଗର୍ବକୁ) ବିପ୍ରଭଞ୍ଜନ କଲା (ବିଶେଷରୂପେ ଭାଙ୍ଗି ପକାଇଲା ।)

ବରମ୍ମିତ ଭାନୁ ବିଭ୍ରସମ ଅଚ୍ଛାଦନ ।
ସୁଜନଶିତ ଦର ଦୂର ବଶେଷେ ସୁମନ । ୪ ।

୩ୟ ପଦର ୩ୟ ଅର୍ଥ । ସ୍ଥିରେତେ (ଧୀର ନାରୀଠାରେ) ଯେ କାଳେ ବରସରତ (ବରତକାଳ) ବହନ ପ୍ରବେଶିଲା (ଶୀଘ୍ର ସହଁଞ୍ଚିଲା) । କୁଶୋଭା ଘନ ଅଣିକୁ (ଧର୍ମମଣ୍ଡନାର ଯୁବତୀସୁଲଭ ଗର୍ବକୁ) ବପ୍ରଭଞ୍ଜନ କଲା (ବଶେଷରୂପେ ଭାଙ୍ଗି ପକାଇଲା !)

୩ୟ ପଦର ୪ର୍ଥ ଅର୍ଥ । (ବ—ବ—ଚ୍ୟୁତରେ) ସ୍ଥିରରେ (ପୃଥିବୀରେ) ଯେକାଳେ ରସ (ନୀର) ରତ, ଅର୍ଥାତ୍ ବର୍ଷାକାଳ ବହନ ପ୍ରବେଶ କଲା । ପ୍ରଭଞ୍ଜନ (ପବନ) ଘନ (ମେଘ) ଅଣି କୁଶୋଭା (ଅଶୋଭା) କଲା ।

୩ୟ ପଦର ୫ମ ଅର୍ଥ । (ଶ—ବ—ଚ୍ୟୁତରେ) ଯେ କାଳେ ସ୍ଥିରରେ (ଧୀର ନାରୀଠାରେ)ର ଶରନ୍ତ (କନ୍ଦର୍ପ ଶର ଥାଏ ଅର୍ଥାତ୍ ଯୌବନ) ବହନ ପ୍ରବେଶ କଲା । କୁଶୋଭା (ଧର୍ମଶୋଭା ସ୍ତ୍ରୀ) ଯୁବକର ଘନ ଅଣି (ଯୁବକସୁଲଭ ଗର୍ବକୁ) ପ୍ରଭଞ୍ଜନ କଲା (ଭାଙ୍ଗି ପକାଇଲା) (ତ ପାଦପୂରଣ ଅବ୍ୟୟ) ।

୩ୟ ପଦର ୬ଷ୍ଠ ଅର୍ଥ । (ବ—ବ—ଚ୍ୟୁତରେ)—ସ୍ଥିରରେ (ଧୀର ନାରୀଠାରେ)ର (କାମାଗ୍ନି) ସରତ ଯେ କାଳେ (ଅର୍ଥାତ୍ ବରହ) ବହନ ପ୍ରବେଶ କଲା । କୁଶୋଭା (ଧର୍ମମଣ୍ଡନା ସ୍ତ୍ରୀର) ଘନ ଅଣୀକ (ଯୁବତୀସୁଲଭ ଗର୍ବକୁ) ପ୍ରଭଞ୍ଜନ କଲା (ଭାଙ୍ଗି ପକାଇଲା) ।

୩ୟ ପଦର ୭ମ ଅର୍ଥ । (ବର—ବପ୍ର—ଚ୍ୟୁତରେ)—ଯେ କାଳେ (ଭାଦ୍ର ଓ ଆଶ୍ୱିନ ମାସରେ) ସ୍ଥିରରେ (ପୃଥିବୀରେ) ଶରତ ବହନ ପ୍ରବେଶ କଲା, କୁଶୋଭା ଭଞ୍ଜନ କଲା (ଅଶୋଭା ଭାଙ୍ଗି ପକାଇଲା) । ଘନ ଅଣି କଲା (ବହୁତ ଗର୍ବ ପ୍ରକାଶ କଲା, ଅର୍ଥାତ୍ ଶରତ୍ ବର୍ଷାକାଳୀନ ଶୋଭାକୁ ଲୁପ୍ତ କରି ଶରତ୍‌କାଳୀନ ଶୋଭାକୁ ପ୍ରକାଶ କଲା ।)

୩ୟ ପଦର ୮ମ ଅର୍ଥ । (ଶର—ବପ୍ର—ଚ୍ୟୁତରେ) ସ୍ଥିରରେ (ଧୀର ନାରୀଠାରେ) ସରତ ଯେ କାଳେ (ପୁରୁଷ ଯେଉଁ ସମୟରେ ରତ ହୁଏ ଅର୍ଥାତ୍ ଯୌବନ) ବହନ ପ୍ରବେଶ କଲା । କୁଶୋଭା ଘନ ଅଣିକୁ ଭଞ୍ଜନ କଲା (ଧର୍ମମଣ୍ଡନା ନାରୀ ପୁରୁଷଗର୍ବକୁ ଭାଙ୍ଗିଲା) ।

୩ୟ ପଦର ୯ମ ଅର୍ଥ (ବର—ବପ୍ର—ଚ୍ୟୁତରେ) ସ୍ଥିରରେ ସେ (ଶଯ୍ୟା) ରତ ଯେ କାଳେ, ଅର୍ଥାତ୍ ବରହ ବହନ ପ୍ରବେଶ କଲା । କୁଶୋଭା ଘନ ଅଣି ଭଞ୍ଜନ କଲା (ଯୁବତୀର ଯୁବତୀସୁଲଭ ଗର୍ବକୁ ଭାଙ୍ଗି ପକାଇଲା ) ।

୪ର୍ଥ ପଦର ୧ମ ଅର୍ଥ । ଗ୍ରୀଷ୍ମ ସମୟରେ ଭାନୁ (ସୂର୍ଯ୍ୟ) ବ—ରଶ୍ମିତ (ବଶେଷ ରଶ୍ମିଯୁକ୍ତ ହେଲେ) । ଗିରସମ (ଗ୍ରୀଷ୍ମ) ଅଚ୍ଛାଦନ କଲା (ପ୍ରକାଶ ପାଇଲା) । ସୁଜନଶିତ (ଦିବସ ତୁଳନାରେ କଣି ଉତ୍ତମ ହେଲା) । ଦର ଦୂର (ଗ୍ରୀଷ୍ମଭୟ ଦୂର ହେଲା), ବଶେଷ ସୁମନ (ଲୋକମାନେ ବଶେଷ ଖୁସି ହେଲେ) ।

୪ର୍ଥ ପଦର ୨ୟ ଅର୍ଥ । ଯୌବନ ପ୍ରବେଶ କରିବାରୁ ବାରର (ଯୁବତୀଙ୍କର) ସ୍ମିତ (ହସୁଥିବା) ଭାନୁ (ଶୋଭା) ଗିରସମ (ପର୍ବତ ପରି ଅର୍ଥାତ୍ ଅତ୍ୟାଧିକ୍ୟରେ) ଅଚ୍ଛାଦନ କଲା (ଶରୀରରେ ପ୍ରକାଶ ପାଇଲା) । ସୁଜନଶିତ ଉତ୍ତମ କଣିମାନଙ୍କରେ ଅର୍ଥାତ୍ ଉଦ୍ଦୀପନକାରକ ଗୃହକଣି କଣିରେ ବଶେଷ ଦୂର (କନ୍ଦର୍ପଭୟ ହେଲା), ସୁମନ ଦୂର (ସନ୍ତୋଷ ଲୁପ୍ତ ହେଲା) ବା ଯୌବନରେ ସୁଜନଶିତ (ରାତିରେ ଗାଢ଼ ନିଦ୍ରା ହେଲା) ଦର ଦୂର ହେଲା (କାହାରିକୁ ଭୟ ରହିଲା ନାହିଁ) । ବଶେଷେ ସୁମନ (ମନ ସବୁବେଳେ ପ୍ରସନ୍ନ ରହିଲା) ।

୪ର୍ଥ ପଦର ୩ୟ ଅର୍ଥ । ବରହ ହେତୁରୁ, ବି-ରସ୍ମିତ ଭାନୁ (ଶୋଭା ଲୋପ ହେଲା, ବା କାମାଗ୍ନିର ଉଜ୍ଜ୍ୱଳ କାନ୍ତି ବଶେଷ ହେଲା, ଅର୍ଥାତ୍ କାମ ବଶେଷ ପୀଡ଼ା ହେଲା) । ଗିରସମ

ବିରସିତ କଲେ ଗନ୍ଧବତୀ ସୁମନାତ ।
ବିଭାବନରେ ସଦାବର ଶୋଭା ଯୁକତ । ୫ ।

---

ଅଚ୍ଛାଦନ ହେଲା (କାମତାପର ଅନୁଭୂତି ହେଲା) ସୁକଣିତ (ଉଦ୍ଦୀପନକାରକ କଣିମାନଙ୍କରେ) ଦର (ଭୟ ହେଲା, ଅର୍ଥାତ୍ କନ୍ଦର୍ପଭୟ ଜାତ ହେଲା); ଦୂରବିଶେଷେ ସୁମନ (ମନରେ) ଅଶାନ୍ତ ହେଲା ବା ଦୂରରେ (ଭବିଷ୍ୟତରେ) ସୁମନ ହେବାର ବିଶେଷ ଆଶା ହେଲା ।

୪ର୍ଥ ପଦର ୪ର୍ଥ ଅର୍ଥ । (ବି ଓ ସୁ ଚ୍ୟୁତରେ)—ବର୍ଷାକାଳରେ ରସ୍ମିତ ଭାନୁ (ଦେଦୀପ୍ୟମାନ ସୌନ୍ଦର୍ଯ୍ୟ) ଗିରିକି ସମ ଅଚ୍ଛାଦନ କଲା (ସମାନ ଭାବରେ ଅଚ୍ଛାଦନ କଲା ଅର୍ଥାତ୍ ପର୍ବତ ସବୁ ସୁନ୍ଦର ଦିଶିଲେ) । ସୁକଣିତ (କଣି ମନୋହର ବୋଧ ହେଲା), ଦରଦୁର ସୁମନ (ଦର୍ଦ୍ଦୁରମାନେ ସନ୍ତୋଷ ପ୍ରକାଶ କଲେ) ।

୪ର୍ଥ ପଦର ୫ମ ଅର୍ଥ । (ବି ଓ ସୁ ଚ୍ୟୁତରେ)—ଯୌବନ ସମୟରେ ର (କାମାଗ୍ନି) ସ୍ମିତ (ହାସ୍ୟଯୁକ୍ତ ଅର୍ଥାତ୍ ପ୍ରକାଶିତ ହେଲା) । ଭାନୁ (କାନ୍ତ) ଓ ଗିରିଷମ (କାମତାପ) ସମ ଅଚ୍ଛାଦନ କଲା (ଅର୍ଥାତ୍ ଯୌବନ ସଙ୍ଗେ ସଙ୍ଗେ ଏ ଦୁଇଟି ପ୍ରକାଶିତ ହେଲେ) । କଣିତ ଦର (ସ୍ୱନକୁ ହିଁ ବିଶେଷ ଭୟ ହେଲା) ଦୂର ବିଶେଷେ ସୁମନ (ତେଣୁ ବିଶେଷ ଭାବରେ ସନ୍ତୋଷ ଦୂର ହେଲା, ଅର୍ଥାତ୍ ଯୁବକ ସ୍ୱନିରେ କାମତାପରେ ବିଶେଷ ଉତ୍କଣ୍ଠିତ ହେଲା) ।

୪ର୍ଥ ପଦର ୬ଷ୍ଠ ଅର୍ଥ । (ବି ଓ ସୁ ଚ୍ୟୁତରେ) —ବିରହ ହେତୁର ରସ୍ମିତ ଭାନୁ (ଅନ୍ୟ ଯୁବକ ବା ଯୁବତୀର ପରିଦୃଶ୍ୟମାନ ଶୋଭା) ଗିରିସମ ଅଚ୍ଛାଦନ କଲା (ପର୍ବତ ମାନ୍ଦ୍ୟ ପଡ଼ିଲା ପରି ଅନୁଭୂତ ହେଲା) । କଣିରେ ଭୟ ହେଲା ଓ ଶାନ୍ତ ଦୂର ହେଲା ।

୪ର୍ଥ ପଦର ୭ମ ଅର୍ଥ । (ବିର ଓ ସୁକ ଚ୍ୟୁତରେ)—ଶରତ୍‌କାଳରେ ସ୍ମିତ ଭାନୁ (ରବି ହାସ୍ୟଯୁକ୍ତ ହେଲେ, ଅର୍ଥାତ୍ ମେଘ ନ ଥିବାରୁ ମନୋହର ଦିବସ ହେଲା) । ଗିରିସମ ଅଚ୍ଛାଦନ (ପର୍ବତମାନେ ପୁଷ୍ପମାନଙ୍କରେ ସଜ୍ଜିତଭାବରେ ରମଣୀୟ ଦେଖାଗଲେ) ବା ସ୍ମିତଭାନୁ (ହାସ୍ୟଯୁକ୍ତ ରବି ଅର୍ଥାତ୍ ପ୍ରାତଃକାଳୀନ ଓ ସନ୍ଧ୍ୟାକାଳୀନ ସୂର୍ଯ୍ୟ ଉଦୟଗିରି ଓ ଅସ୍ତଗିରିକୁ ସମାନ ଶୋଭାଯୁକ୍ତ କଲେ) । ଶୀତ ଦର (ବର୍ଷାକାଳୀନ ଶୀତର ଭୟ) ଦୂର ହେଲା ; ବିଶେଷେ ସୁମନ (ନାନାପ୍ରକାର ଫୁଲ ଫୁଟିଲେ) ।

୪ର୍ଥ ପଦର ୮ମ ଅର୍ଥ । (ବିର ଓ ସୁକ ଚ୍ୟୁତରେ)—ଯୌବନର ସ୍ମିତଭାନୁକୁ ଗିରିସମ (ଶିବଙ୍କର ଯମ ଅର୍ଥାତ୍ ଶତ୍ରୁ କନ୍ଦର୍ପ) ଅଚ୍ଛାଦନ କଲା ଅର୍ଥାତ୍ ଯୌବନଶୋଭାରେ କାମ ପଶିଲା ବା ସ୍ମିତଭାନୁ ଓ ଗିରିଶମ (ଚନ୍ଦ୍ର ଅର୍ଥାତ୍ ଅର୍ଦ୍ଧଚନ୍ଦ୍ର, ଏଠାରେ ହାସ) ଅଚ୍ଛାଦନ କଲା (ଯୁବକଠାରେ ପ୍ରକଟିତ ହେଲା) ଶୀତଦର (କାମଜ କମ୍ପକୁ ଭୟ ହେଲା) ଓ ବିଶେଷେ (ବିଶେଷ ଭାବରେ) ସୁମନ ଦୂର (ଅର୍ଥାତ୍ ମନରୁ ଶାନ୍ତସୁଖ ଦୂର ହେଲା) ।

୪ର୍ଥ ପଦର ୯ମ ଅର୍ଥ । (ବିର ଓ ସୁକ ଚ୍ୟୁତରେ)—ବିରହ ହେତୁରୁ ସ୍ମିତଭାନୁକୁ (ଈଷଦ୍ଧାସ୍ୟଯୁକ୍ତ ଶୋଭାକୁ) ଗିରିଷମ (ଗ୍ରୀଷ୍ମ ଅର୍ଥାତ୍ କାମଜ ତାପ) ଅଚ୍ଛାଦନ କଲା ଅର୍ଥାତ୍ ଘୋଟିଗଲା । ଶୀତଦର (କାମାଗ୍ନିର କମ୍ପପ୍ରଦ ଅବସ୍ଥାକୁ ଭୟ ହେଲା) । ସୁମନ ବିଶେଷେ ଦୂର (ସନ୍ତୋଷ ବିଶେଷଭାବରେ ମନରୁ ଚାଲିଗଲା) ।

୫ମ ପଦର ୧ମ ଅର୍ଥ । ଗ୍ରୀଷ୍ମକାଳ ଗନ୍ଧବତୀ ( ଧୀବରୀ ) ସୁମନାଙ୍କୁ ( କାମିନୀମାନଙ୍କୁ ) ବିରସିତ କଲା ଅର୍ଥାତ୍ ଗ୍ରୀଷ୍ମକାଳରେ ନଦୀ ପୋଖରୀ ଆଦି ଶୁଷ୍କ ହୋଇଯିବାରୁ ମତ୍ସ୍ୟ ଅଭାବରୁ ଧୀବରୀ ନିରାନନ୍ଦା ହେଲେ; ଦାବ ( ଦାବାଗ୍ନି ) ର ଶୋଭାଯୁକ୍ତ ହୋଇଥିବାରୁ ବନର ବିଭା ସ ( କ୍ଷତି, ନାଶ ) ହେଲା ବା ଶୋଭାଯୁକ୍ତ ସଦାବର ( ଦାବାଗ୍ନିର ) ବିଭା ( ଶୋଭା ) ବନରେ ଦେଖାଗଲା ।

୫ମ ପଦର ୨ୟ ଅର୍ଥ । ଯୌବନକାଳରେ ଗନ୍ଧବତୀ ସୁମନା ( ପୃଥିବୀର ଅଙ୍ଗନାଗଣ ) ( କୁମାରକୁ ) ବରସିତ କରେ ( ଅର୍ଥାତ୍ ବରଣ କରେ ) । ସଦା ବର ଶୋଭାଯୁକ୍ତ ( କାମିନୀ ଚିତ୍ତ ଆକର୍ଷଣ ନିମିତ୍ତ ବେଶ ବାସ ଶୋଭାନ୍ୱିତ ହୋଇ ) ବଦ୍ଭାବନରେ ( ବିଶେଷ ଚିନ୍ତାରେ ) ରହେ ।

୫ମ ପଦର ୩ୟ ଅର୍ଥ । ବିରହ ଗନ୍ଧବତୀ ସୁମନା ତ ( ପଦ୍ମିନୀ ଜାତୀୟା ସ୍ତ୍ରୀମାନଙ୍କୁ ) ବିରସିତ କରେ ( ଦୁଃଖ ଦିଏ ) । ସେମାନେ ସଦା ଶୋଭାଯୁକ୍ତ ବର ଭାବନାରେ ରହନ୍ତି ।

୫ମ ପଦର ୪ର୍ଥ ଅର୍ଥ । ( ବି-ବି—ଚ୍ୟୁତରେ )—ବର୍ଷାକାଳ ଗନ୍ଧବତୀ ସୁମନାଙ୍କୁ ( ଧୀବରୀମାନଙ୍କୁ ) ରସିତ କରେ ( ଆନନ୍ଦ ଦିଏ ) । ଭା ବନରେ ( ଅର୍ଥାତ୍ ଜଳର ପ୍ରଚୁରତା ରୂପକ ଦୀପ୍ତି ପ୍ରକାଶିତ ହେଲା ) ଓ ବରଶୋଭା ଯୁକ୍ତ ହେଲା ( ମନୋହର ଦେଖାଗଲା ) ବା ସଦା ବର ( ଶ୍ରେଷ୍ଠ ) ଶୋଭାଯୁକ୍ତ ଭା ( ଦୀପ୍ତି ) ବନରେ ( ଜଳରେ ) ଦେଖାଗଲା ।

୫ମ ପଦର ୫ମ ଅର୍ଥ । (ବି-ବି-ଚ୍ୟୁତରେ )—ଯୌବନରେ ଗନ୍ଧବତୀ ସୁମନା ( କାମିନୀର ) ତ ( କୋଡ଼ପ୍ରାପ୍ତି ଆଶା ଇତ୍ୟର୍ଥଃ ) ଯୁବକକୁ ର-ଶୀତ କରେ ( କାମାଗ୍ନିରୁ ଜାତ କମ୍ପ ଦେଲା ) । ଭାବ ନରେ ( ହେ ନରମାନେ ଏ କଥା ଭାବ ) ତେଣୁ ସେ ସଦା ବରଶୋଭାଯୁକ୍ତ ହେଲା ।

୫ମ ପଦର ୬ଷ୍ଠ ଅର୍ଥ । ( ବି-ବି-ଚ୍ୟୁତରେ )— ବିରହରେ ସଦା ଶୋଭାଯୁକ୍ତ ବର ଗନ୍ଧବତୀ ସୁମନାକୁ ( ପଦ୍ମିନୀକୁ ) ରସିତ କରେ ( ମୋହିତ କଲା ) । ହେ ନରେ ! ଭାବ ବା ବିରହଣୀକୁ ସଦା ଶୋଭାଯୁକ୍ତ ବର ମୋହିତ କରିଥିବାରୁ ସେ ସଦା ତାଙ୍କର ଭାବନାରେ ରହିଲା ।

୫ମ ପଦର ୬ଷ୍ଠ ଅର୍ଥ । ( ବି-ବି-ଚ୍ୟୁତରେ ଅନ୍ୟ ପ୍ରକାର )—ତ ( କୋଡ଼ ) ରସି ଗନ୍ଧବତୀ ସୁମନା ( ମତ୍ସ୍ୟଗନ୍ଧା ସ୍ତ୍ରୀ ) ବିରହରେ ସଦା ବର ଶୋଭାଯୁକ୍ତ ନରେ ଭାବ କରେ, ଅର୍ଥାତ୍ ଶୋଭାଯୁକ୍ତ ପୁରୁଷ ସହିତ ଭାବ କଲା ।

୫ମ ପଦର ୭ମ ଅର୍ଥ । (ବିର-ବିଭା-ଚ୍ୟୁତରେ)— ଶରତ୍ ସମୟରେ ଗନ୍ଧବତୀ ସୁମନା ( ନବମଲ୍ଲିକା ଫୁଲ ) ଶୀତକରେ ( ଚନ୍ଦ୍ରଦ୍ୱାରା ଅର୍ଥାତ୍ ଚନ୍ଦ୍ର କିରଣରେ ) ତ ( ରତ୍ନ ବା ପୁଣ୍ୟ ସ୍ୱରୂପ ବୋଧ ହେଲା ) । ବନରେ ( ଅରଣ୍ୟରେ ବା ଜଳରେ) ଏ କାଳରେ ବର (ଶ୍ରେଷ୍ଠ) ଶୋଭା-ଯୁକ୍ତ ହେଲା (ଅରଣ୍ୟରେ ପୁଷ୍ପାଦିର ବିକାଶ ଓ ଜଳରେ କୁମୁଦାଦିର ବିକାଶ ଓ ହଂସାଦିର ସନ୍ତରଣ ଦେଖାଗଲା ।)

୫ମ ପଦର ୭ମ ଅର୍ଥ । (ବିର-ବିଭା-ଚ୍ୟୁତରେ ଅନ୍ୟ ପ୍ରକାର)—ଶରତ୍ କାଳରେ ଗନ୍ଧବତୀ ସୁମନା (ସୁବାସଯୁକ୍ତ ଫୁଲମାନେ) ଶୀତକରେ (ଚନ୍ଦ୍ରାଲୋକରେ ) ତ (ଅମୃତ) ବୋଧ ହେଲେ; ହେ ନରେ ! ବ (ବରୁଣ ବା ଜଳ) ସଦା ବରଶୋଭା ଯୁକ୍ତ ଅର୍ଥାତ୍ ଶରତ୍ କାଳରେ ଜଳର ସ୍ୱଚ୍ଛତା ଆସିଲା ।

୫ମ ପଦର ୮ମ ଅର୍ଥ । (ବିର-ବିଭା-ଚ୍ୟୁତରେ)—ଯୌବନରେ ଯୁବକ ସ୍ୱଭାବସୁଲଭ ପ୍ରସନ୍ନତା ହେତୁରୁ ଚନ୍ଦ୍ରାଲୋକରେ ସୁବାସିତ ଫୁଲମାନେ ସଦା ବର ଶୋଭାଯୁକ୍ତ ହେଲେ, ଅର୍ଥାତ୍ ରସିକ ଯୁବକଙ୍କ ନେତ୍ରକୁ ଉପବନରେ ଚନ୍ଦ୍ରକିରଣରଞ୍ଜିତ ସୁବାସିତ ଫୁଲମାନେ ଅତିଶୟ ରମଣୀୟ ଦେଖାଗଲେ ।

୫ମ ପଦର ୯ମ ଅର୍ଥ । (ବିର ଓ ବିଭା ଚ୍ୟୁତରେ)—ବିରହଣୀ ସ୍ତ୍ରୀମାନେ ଚନ୍ଦ୍ରାଲୋକରେ ସଦା ନରେ—(ନେତ୍ରମାନଙ୍କରେ) ବରଶୋଭାଯୁକ୍ତ ହେଲେ (ମନୋହାରିଣୀ ଦେଖାଗଲେ),

ରସ ଆଦରେ ସୁମନା ଯାତ ସରଥରେ
ବି-ଅଧୀର ଘନ ଅଶା ରସ ମାନସରେ । ୬ ।

---

ଅଥବା ବ (ଜଳ) ଓ ର (ଅଗ୍ନି) ଶୋଭାଯୁକ୍ତ ହେଲେ, ଅର୍ଥାତ୍ ବିରହିଣୀ ଲୋକଙ୍କ ବର୍ଷଣ କଲେ ଓ କାମବିକାରଜନିତ ତାପ ଅନୁଭବ କଲେ ।

୬ଷ୍ଠ ପଦର ୧ମ ଅର୍ଥ । (ଲୋକେ) ଗ୍ରୀଷ୍ମ ସମୟରେ ରସ (କ୍ଷୀର) ଆଦରେ (ଆଦର କଲେ), ସୁମନାଯାତ (ଦେବତାମାନଙ୍କର ଯାତ୍ରା ହେଲା) ଓ ସର ଥରେ (ପୁଷ୍କରିଣୀ ଆଦି କମ୍ପିତ ହେଲେ) ଅର୍ଥାତ୍ ଏ କାଳରେ ଚନ୍ଦନଯାତ୍ରା ହେଉଥିବାରୁ ଲୋକଙ୍କ କୋଳାହଳ ଏବଂ ନୌକାବିହାରେ ପୁଷ୍କରିଣୀମାନ କମ୍ପିତ ହୁଅନ୍ତି । ବି-ଅଧୀର (ପକ୍ଷୀମାନେ ଅଧୀର ହେଲେ) । ଘନ ଅଶା ଓ ମାନସରେ ରସ ଧରିଲେ ଅର୍ଥାତ୍ ସମସ୍ତେ ମେଘ ଖୋଜିଲେ ଓ ଚିତ୍ତରେ ଜଳ ସ୍ମରଣ କଲେ ।

୬ଷ୍ଠ ପଦର ୨ୟ ଅର୍ଥ । ଯୌବନ ସମୟରେ ରସ ଆଦରେ (ଆଦି ରସକୁ ଆଦର ହେଉଥିବାରୁ) ସରଥରେ ସୁମନା ଜାତ କଲେ ଅର୍ଥାତ୍ କାମିନୀମଣ୍ଡଳୀ ନେହ ଅଗରେ ବା ମନରେ ନାଚିଲେ ବା କେହି କେହି ଯୁବକ ବେଶ୍ୟାନୃତ୍ୟ କରାଇଲେ । ରସମାନସରେ (ମନରେ ରସଭାବ ବଢ଼ିଥିବାରୁ) ବି-ଅଧୀର (ବିଶେଷ ଅଧୀର ହେବାକୁ ପଡ଼ିଲା) ଓ ଘନ ଅଶା (ଗୃହକ ଘନକୁ ଆଶା କରି ପରି କାମିନୀପ୍ରାପ୍ତି ଅଶାରେ ରହିବାକୁ ହେଲା) । ଘନଅଶା-ଢ (ଗୃହକ) ।

୬ଷ୍ଠ ପଦର ୩ୟ ଅର୍ଥ । ସୁମନା (ଏଠାରେ ବିରହିଣୀ) ସରସରେ ଜାତ ରସ (ଉତ୍କଣ୍ଠା ଉଦ୍‌ବେଗାଦିକୁ ଯେଉଁ ସ୍ନେହ ଜାତ ହୁଏ) ଆଦରେ (ଆଦର କଲା); ରସମାନସରେ (ସ୍ନେହର ସ୍ନେହକାମନାରେ) ବିଶେଷ ଅଧୀର ହେଲା ଓ ପ୍ରଣୟୀ ପ୍ରାପ୍ତି କାମନା କଲା ।

୬ଷ୍ଠ ପଦର ୪ର୍ଥ ଅର୍ଥ । (ର-ବି-ଚ୍ୟୁତରେ)—ବର୍ଷାକାଳରେ ସଆଦରେ ସରଥରେ ସୁମନାଯାତ ହେଲା ଅର୍ଥାତ୍ ଅଷାଢ଼ରେ ଲୋକମାନେ ଅତ୍ୟନ୍ତ ଆଦର ସହିତ ଦେବଦେବୀଙ୍କୁ ରଥରେ ବସାଇ ଉତ୍ସବ କରନ୍ତି, ଅର୍ଥାତ୍ ରଥଯାତ୍ରା ହୁଏ । ଅଧୀର ଘନ ଆସାର (ମେଘ ସର୍ବଦା ଗର୍ଜିତ ହେଲା ଓ ବୃଷ୍ଟିପାତ ହେଲା); ସମାନ ସରେ (ପୁଷ୍କରିଣୀସବୁ ଜଳପୂର୍ଣ୍ଣ ହେଲେ ଅଥବା ଅଧୀର-ଘନ-ଅଶା ଗର୍ଜିତ ମେଘମାନଦ୍ୱାରା ତଡ଼ାଗସବୁ ପୂର୍ଣ୍ଣ ହେଲେ) ଓ ସରେ (ପୁଷ୍କରିଣୀସବୁ) ରସମାନ (ଜଳପୂର୍ଣ୍ଣ) ହେଲେ ।

୬ଷ୍ଠ ପଦର ୫ମ ଅର୍ଥ । (ର-ବି-ଚ୍ୟୁତରେ) ଯୌବନରେ ଯୁବକ ଷ (କେଶ) ଆଦରେ (ଆଦର କଲା) ଅର୍ଥାତ୍ କେଶ ବିନ୍ୟାସାଦିରେ ମନ ବଳାଇଲା । ଶ (କଲ୍ୟାଣ) ର (ସ୍ୱର୍ଣ୍ଣ) ଓ ଥରେ (ମଙ୍ଗଳ ପାଇଁ) ସୁମନଯାତ କଲା (ଦେବଦେବୀଙ୍କୁ ପୂଜା କଲା) । ରସ ମାନସରେ (ରସ-ଜରଜର ମନରେ) ଅଧୀର (ଅସ୍ଥିର) । ଘ (କାଞ୍ଚୀ=ଅଳଙ୍କାର ବିଶେଷ) ନ (ଦାନ) ଆଶା ବହିଲା ଅର୍ଥାତ୍ ସେ ବିବାହ ହେବାର କାମନା କରି ଅଧୀର ହେଲା ।

୬ଷ୍ଠ ପଦର ୬ଷ୍ଠ ଅର୍ଥ । (ର-ବି-ଚ୍ୟୁତରେ) ବିରହିଣୀ ସଆଦରେ (ଆଦର ସହିତ) ସରଥରେ ସୁମନଯାତ କରେ (ସଙ୍ଗିନୀଗଣଙ୍କ ସହିତ) ଦେବଦେବୀ ପୂଜା ବା ଦେବଦେବୀ ନିକଟରେ ଅଭୀଷ୍ଟ (ସିଦ୍ଧି ନିମିତ୍ତ ଯାତ୍ରା କଲା ।) ରସ ମାନସରେ ଅଧୀର ହେଲା (ମନରେ ସ୍ନେହ ବହି ଅଧୀର ହେଲା) ଓ ଘନ ଆଶା ବହିଲା (ସ୍ୱାମୀ ଦର୍ଶନ ଆଶା ବହିଲା) ।

୬ଷ୍ଠ ପଦର ୭ମ ଅର୍ଥ । (ରସ ଓ ବିଅ-ଚ୍ୟୁତରେ) ଶରତ୍‌କାଳରେ ସୁମନା ସରଥରେ ଯାତ ଆଦରେ ଅର୍ଥାତ୍ କୁମାରୀଗଣ ମିଳି କୁମାରୋତ୍ସବ ବିଧିମାନ ପାଳନ କଲେ । ଧୀର ଘନ (ମେଘର ଉପଦ୍ରବ କମିଗଲା) । ଅ (ବ୍ରହ୍ମା)ଙ୍କର ସାରସ (ହଂସ) ମାନସରେ (ମାନସରୋବରରେ

ଭ୍ରବ ଭ୍ରଷି ଏ କାଳେ କେ ବୋଧି ମିତ୍ର ଚନ୍ଦ୍ର ।
ସକାତର ବାଳାଭ୍ରବ ସ୍ମର କେତୁ ମନ୍ଦ । ୭ ।
ଙ୍କଭ୍ରଷେ କେତୁ ଗ୍ରାସରେ ଯେମନ୍ତ ପ୍ରକୃତ ।
ସୁବୃଧିରେ ଘେନ ନବବାଳାଗତ ମତ । ୮ ।

---

ଦେଖାଯାଏ) ଅର୍ଥାତ୍ ହଂସାଦ ଜଳଚରପ୍ରାଣୀ ମାନସରୋବରରେ ଦେଖାଗଲେ; କମ୍ପା ଅଷାରସ (ଷଦ୍ମଠାରୁ ଅରମ୍ଭ କର) ମାନ (ମର୍ଯ୍ୟାଦା) ସରେ (ପୁଷ୍କରଣୀରେ) ଦେଖାଗଲ, ଅର୍ଥାତ୍ ପଦ୍ମ ଓ ଭ୍ରମରାଦରେ ପୁଷ୍କରଣୀ ଶୋଭମୟ ଦେଖାଗଲ ।

୬ଷ୍ଠ ପଦର ୮ମ ଅର୍ଥ । (ରସ ଓ ବଅ-ଚ୍ୟୁତରେ)—ଯୁବକ ସୁମନା ଅଦରେ (ସ୍ତ୍ରୀ ଜାତି ପ୍ରତି ମମତା ବଢ଼ାଇଲା) । ସରଥରେ ଯାତ କରେ (ସଖାଗଣଙ୍କ ସଙ୍ଗରେ ଉତ୍ସବ କଲା) । ରସମାନସରେ (ରସାର୍ଦ୍ର ଚିତ୍ତରେ) ଧୀ (ବୁଦ୍ଧି ବା ଜ୍ଞାନ), ର (ସ୍ୱର୍ଣ୍ଣ ବା ଧନ) ର ଘନ ଅଶା (ଗାଢ଼ ବା ଏକାନ୍ତ ଅଶା) ବଢ଼ାଇଲ ।

୬ଷ୍ଠ ପଦର ୯ମ ଅର୍ଥ । (ରସ ଓ ବଅ-ଚ୍ୟୁତରେ)—ସୁମନା (ଏଠାରେ ବରବର୍ଣ୍ଣୀ) ଧୀର (ଅଚଳ) ଘନ (ଏକାନ୍ତ ଅଶା ଅଭିଳାଷକୁ) ରସମାନସରେ (ରସାର୍ଦ୍ର ଚିତ୍ତରେ) ବହି ସରଥରେ (ସଙ୍ଗିନୀ ସମଭିବ୍ୟାହାରରେ) ଯାତ (ଦେବଦେବୀଙ୍କର ଯାତ୍ରାକୁ) ଅଦରେ (ଅଦର କଲା) ଅର୍ଥାତ୍ ଶୀଘ୍ର ପତିପ୍ରାପ୍ତି କାମନାରେ ଦେବଦେବୀ ପୁଜନ୍ତି ।

୭ମ ପଦର ୧ମ ଅର୍ଥ । ଏକାଳେ (ଗ୍ରୀଷ୍ମସମୟରେ) କେ (କେନୈକ ସଖା) ମିତ୍ର ଚନ୍ଦ୍ରକୁ (ଶ୍ରେଷ୍ଠ ସଖାକୁ, ଏଠାରେ ରାଜକୁମାରକୁ) ଭ୍ରବ ବୋଧି ଭ୍ରଷିଲ :—ସକାତର ବାଳାଭ୍ରବ (କାତର ସହିତ ବର୍ତ୍ତମାନ ବାଳାର ଭ୍ରବକୁ) ଅର୍ଥାତ୍ କାତରା ବାଳା ପ୍ରତି ତୁମ୍ଭର ଯେଉଁ ଅତ୍ୟଧିକ ସ୍ନେହ ତାକୁ ମନ୍ଦକେତୁ (ରୋଗ) ବୋଲି ସ୍ମର (ମନେ କର) ।

୭ମ ପଦର ୨ୟ ଅର୍ଥ । (ଭ୍ର ଓ ସ-ଚ୍ୟୁତରେ)—ଏକାଳେ (ବର୍ଷା କାଳରେ) କେ (କେନୈକ ସଖା) ମିତ୍ରଚନ୍ଦ୍ରଙ୍କୁ ବୋଧି ଭ୍ରଷି କହିଲ-କାତର ବାଳାଭ୍ରବକୁ (ବାଳାର ବହୁଳତ ଭ୍ରବକୁ) ମନ୍ଦକେତୁ (ରୋଗ) ବୋଲି ସ୍ମର (ମନେକର) ।

୭ମ ପଦର ୩ୟ ଅର୍ଥ । (ଭ୍ରବ ଓ ସକା-ଚ୍ୟୁତରେ) ଏକାଳେ (ଶରତ୍ କାଳରେ) କେ (ସଖା) ମିତ୍ରଚନ୍ଦ୍ରଙ୍କୁ ଭ୍ରଷି (କହିଲ), ବାଳାଭ୍ରବକୁ (ବାଳା ପ୍ରତି ତୁମ୍ଭର ଯେଉଁ ମମତା ତାକୁ) ମନ୍ଦ ରୋଗ ବୋଲି ମଣ ।

୭ମ ପଦର ୩ୟ ଅର୍ଥ । (ବିଶଦ ବ୍ୟାଖ୍ୟା)—କେ ସଖା ରାଜପୁତ୍ରକୁ କହିଲ—ଅପଣ ମୋର ମିତ୍ରଚନ୍ଦ୍ର (ବନ୍ଧୁଶ୍ରେଷ୍ଠ) ଅର୍ଥାତ୍ ମିତ୍ର (ସୂର୍ଯ୍ୟ) ଓ ପୁଣି ଚନ୍ଦ୍ର । ଇନ୍ଦୁରେଖା ଇନ୍ଦୁ (ଚନ୍ଦ୍ର) ନାମ ବହିଅଛି । ବାଳାର ଓ ଅପଣଙ୍କର ଯେଉଁ ଭ୍ରବ ଉଦୟ ହୋଇଅଛି, ତାହା କେତୁ (ରାହୁର ମସ୍ତକବହୀନ ଜୀବନ୍ତ ବିଗ୍ରହ, ସେ ଚନ୍ଦ୍ର ଓ ସୂର୍ଯ୍ୟଙ୍କର ଶତ୍ରୁ) । କେତୁ ଚନ୍ଦ୍ର ସୂର୍ଯ୍ୟଙ୍କୁ ଗ୍ରାସ କଲା ପରି ଉଭୟଙ୍କର ଭ୍ରବ କେତୁ (ରୋଗ) ହୋଇ ଉଭୟଙ୍କୁ ଘାରୁଅଛି ବା ଗ୍ରାସ କରୁଅଛି ।

୮ମ ପଦର ୧ମ ଅର୍ଥ । ସଭ୍ରଷେ (କହିଲେ) ପ୍ରକୃତ କେତୁଗ୍ରାସରେ ଯେମନ୍ତ ହୁଏ, ହେ ନବବାଳାଗତମତ (ସଖା), ସୁବୃଧିରେ ତାହା ଘେନ ।

୮ମ ପଦର ୨ୟ ଅର୍ଥ । (ଙ୍କ-ସୁ-ଚ୍ୟୁତରେ)—ଭ୍ରଷେ (କହିଲା) ପ୍ରକୃତ କେତୁଗ୍ରାସରେ ଯେମନ୍ତ ହୁଏ, ହେ ନବବାଳାଗତମତ, ବୃଧିରେ ତାହା ଘେନ ।

୮ମ ପଦର ୩ୟ ଅର୍ଥ (ଙ୍କଭ୍ର-ସୁବୃ-ଚ୍ୟୁତରେ)—ପ୍ରକୃତ (ସ୍ତ୍ରୀ=ଇନ୍ଦୁରେଖା) କେତୁ (ରୋଗ) ଗ୍ରାସରେ ଯେମନ୍ତ, ହେ ନବବାଳାଗତମତ ! ଧୀରେ (ମନରେ) ତାହା ଘେନ ।

ଅହିମକରଙ୍କ କେତୁର ଗ୍ରାସେ ଧରାଶିରୀ ।
ବିଶେଷ ମଳିନ ବଧିରେ ତ ତମ ପୁରୀ । ୯ ।
ରବି ଗ୍ରାସୁ ଛାୟା ଆରମ୍ଭରେ ବିଲକ୍ଷିତ ।
ସୁପ୍ରବୃଦ୍ଧି ବେଳୁ ବେଳ ସେ ଅବାଶ୍ରେ ତ । ୧୦ ।
ଅସଂପୂର୍ଣ୍ଣ ଗ୍ରାସ କରିବାରେ କାନ୍ତ କର ।
ନ ଅଦୃଶ୍ୟ ହୁଏ ଅତି ସେ ମ୍ଳାନ ବଧୁର । ୧୧ ।
ଘନ ଦୃଶ୍ୟ ପରାଭବେ ହୁଏ ପ୍ରକାଶିତ ।
ଶ୍ୱେତ ରଙ୍ଗ ଧରାଶୋଭା କେତେ ଶିଥିଳ ତ । ୧୨ ।

---

୯ମ ପଦର ୧ମ ଅର୍ଥ । ଅହିମକର (ସୂର୍ଯ୍ୟ) କେତୁର ଗ୍ରାସରେ ପଡ଼ିଲେ ଧରାଶିରୀ (ପୃଥିବୀର ଶୋଭା) ଓ ବିଶେଷ ପ୍ରଭା (ରବିଙ୍କର ଜ୍ୟୋତି) ମଳିନ ହୁଏ । ବଧିରେ ତମ (ଅନ୍ଧକାର) ପୁରୀ (ନଗରୀକୁ) ଆସେ ।

୯ମ ପଦର ୨ୟ ଅର୍ଥ—(ଅ-କ-ଚ୍ୟୁତରେ)—ହିମକର (ଚନ୍ଦ୍ର) କେତୁଗ୍ରାସରେ ପଡ଼ିଲେ ଧରାଶୋଭା ଓ ଚନ୍ଦ୍ରଙ୍କର ପ୍ରଭା ମଳିନ ହୁଏ—ବଧିରେ ଅନ୍ଧକାର ନଗରୀମାନଙ୍କୁ ଆସେ ।

୯ମ ପଦର ୩ୟ ଅର୍ଥ । (ଅହି-ବିପ୍ର-ଚ୍ୟୁତରେ)—ଧରାଶିରୀ (ଧରା-ଶୋଭା ଇନ୍ଦୁରେଖା) ମକରକେତୁର ଗ୍ରାସେ (କନ୍ଦର୍ପ ପୀଡ଼ାରେ ପଡ଼ିବାରୁ) ଭା (ପ୍ରଭା ବା ଶୋଭା) ମଳିନ ହୋଇଅଛି । ବଧିରେ ତ ତମ (ଶୋକ) ପୂରି (ପୂର୍ଣ୍ଣ ହୋଇଅଛି ବା କାମାନ୍ଧକାର ପୂର୍ଣ୍ଣ ହୋଇଅଛି) ।

୧୦ମ ପଦର ୧ମ ଅର୍ଥ । ରବି ଗ୍ରାସୁ (ସୂର୍ଯ୍ୟଙ୍କୁ କେତୁ ଗ୍ରାସ କଲେ) ଆରମ୍ଭରେ ଛାୟା ବିଲକ୍ଷିତ ହୁଏ (ବିଶେଷ ରୂପେ ଦେଖାଯାଏ) । ବେଳୁବେଳ (କ୍ରମେ କ୍ରମେ) ସୁପ୍ରବୃଦ୍ଧି ହେଲେ ଛାୟା (ତମରୂପେ ବଢ଼ିଲେ) ସେ (ସୂର୍ଯ୍ୟ) ଅବାଶ୍ରେ (ପ୍ରଭାହୀନ ହୁଅନ୍ତି) ।

୧୦ମ ପଦର ୨ୟ ଅର୍ଥ । (ର-ସୁ-ଚ୍ୟୁତରେ) ବି (ଈଷତ୍) ଗ୍ରାସୁ (ଚନ୍ଦ୍ରଙ୍କୁ ଗ୍ରାସ କଲେ) ଆରମ୍ଭରେ ଛାୟା ବିଲକ୍ଷିତ (ଈଷତ୍ ଦେଖାଯାଏ) । ବେଳୁ ବେଳ ପ୍ରବୃଦ୍ଧି ହେଲେ ସେ (ଚନ୍ଦ୍ର) ଅବାଶ୍ରେ ତ (ପ୍ରଭାହୀନ ହୁଅନ୍ତି) ।

୧୦ମ ପଦର ୩ୟ ଅର୍ଥ । (ରବି-ସୁପ୍ର-ଚ୍ୟୁତରେ) ଗ୍ରାସୁ (କନ୍ଦର୍ପ ଇନ୍ଦୁରେଖାକୁ ଗ୍ରାସ କରିବାରୁ) ବେଳୁବେଳ (ଦିନକୁ ଦିନ) ଛାୟା (ଆସକ୍ତି) ବୃଦ୍ଧି ହେଉଅଛି ଏବଂ ସେ (ଇନ୍ଦୁରେଖା) କ୍ରମେ ନିଜକୁ ବିମ୍ବହୀନ ମନେ କରୁଛି ।

୧୧ଶ ପଦର ୧ମ ଅର୍ଥ—ଅସଂପୂର୍ଣ୍ଣ ଗ୍ରାସ କରିବାରେ (ସୂର୍ଯ୍ୟଙ୍କୁ ସମ୍ପୂର୍ଣ୍ଣ ଗ୍ରାସ କରିପାରେ ନାହିଁ); ତେଣୁ କାନ୍ତକର (ସୂର୍ଯ୍ୟଙ୍କର ମନୋହର କିରଣ) ନ ଅଦୃଶ୍ୟ ହୁଏ (ସଂପୂର୍ଣ୍ଣ ଅଦୃଶ୍ୟ ହୁଏ ନାହିଁ) । କିନ୍ତୁ ସେ ସୂର୍ଯ୍ୟ ଅତି ମ୍ଳାନ ଓ ବଧୁର ଦେଖାଯାନ୍ତି ।

୧୧ଶ ପଦର ୨ୟ ଅର୍ଥ—(ଅ-ନ-ଚ୍ୟୁତରେ) ସମ୍ପୂର୍ଣ୍ଣ ଗ୍ରାସ କରିବାରେ (ଚନ୍ଦ୍ରଙ୍କୁ ସମ୍ପୂର୍ଣ୍ଣ ଗ୍ରାସ କଲେ) କାନ୍ତକର (ଚନ୍ଦ୍ରଙ୍କର ମନୋହର କିରଣ) ଅଦୃଶ୍ୟ ହୁଏ (ଦେଖାଯାଏ ନାହିଁ) ଓ ସେ (ଚନ୍ଦ୍ର) ଅତି ମ୍ଳାନ ଓ ବଧୁର ଦେଖାଯାନ୍ତି ।

୧୧ଶ ପଦର ୩ୟ ଅର୍ଥ—(ଅସଂ-ନଅ-ଚ୍ୟୁତରେ) ପୂର୍ଣ୍ଣ ଗ୍ରାସ କରିବାରେ (ବର୍ତ୍ତିମାନ କନ୍ଦର୍ପ ପୂର୍ଣ୍ଣ ଗ୍ରାସ କରିବାରୁ) କାନ୍ତକର (ସ୍ୱାମୀକର) ଦୃଶ୍ୟ ହୁଏ (ବାଳାକୁ ଦେଖାଯାଉଅଛି) । ସେ ଅତି ମ୍ଳାନ ଓ ବଧୁର (ଦୁଃଖିତ) ଅଛି ଅର୍ଥାତ୍ ସେ ବର୍ତ୍ତିମାନ ଆପଣଙ୍କର ପାଣିଗ୍ରହଣକୁ ଇଚ୍ଛା କରି ଅତି ମ୍ରିୟମାଣା ହୋଇଅଛି ।

୧୨ଶ ପଦର ୧ମ ଅର୍ଥ—ଘନ ଦୃଶ୍ୟ ପରା ଭବରେ ପ୍ରକାଶିତ ହୁଏ (ମେଘ ଉଦୟ ହେଲେ ପର ପୃଥିବୀକୁ ଜଣାଯାଏ) ଓ ଧରାର ଶ୍ୱେତ ରଙ୍ଗ (ଧବଳ ବର୍ଣ୍ଣ) କେତେ (ଅତି) ଶିଥିଳ ହୁଏ (ହ୍ରାସ ହୋଇଯାଏ) ।

ବିସପ୍ରସୂନ କୁମୁଦ ଚକ୍ରେ ସତର୍କିତ ।
ମାନସରେ ଚିନ୍ତା ବିଭିବସି ବା ଅଗତ । ୧୩ ।
ବିଭିବସୁ ମଣ୍ଡରେ ତ କର ବିଚ୍ଛେଦନୀ ।
ସାରସେ କୁଶୋଭି ଫୁଲଶରେ ବିନୋଦିନୀ । ୧୪ ।
ସୁରସେ ରଢରେ କରି ଗଢ ସ୍ମରପର ।
ବିରଧନ ଦାନ ମନ ଧୀରେ କରିବାର । ୧୫ ।

---

୧୨ଶ ପଦର ୨ୟ ଅର୍ଥ—(ଘ ଓ ଶ୍ୱେ-ଚ୍ୟୁତରେ) ନ ଦୃଶ୍ୟ ଷସ୍ତି ଭବରେ ପ୍ରକାଶିତ (ଚନ୍ଦ୍ର ଉଦୟ ନ ହେଲା ପରି ଜଣାଯାଏ) ଓ ଧସିର (ପୃଥିବୀର) ଶୋଭିର ତରଙ୍ଗ ଶିଥିଳ ହୁଏ (ବିଶେଷରୂପେ ହ୍ରାସ ହୁଏ) ।

୧୨ଶ ପଦର ୩ୟ ଅର୍ଥ—(ଘନ-ଶ୍ୱେତ-ଚ୍ୟୁତରେ) ସେ (ଇନ୍ଦୁରେଖା) ଦୃଶ୍ୟ (ସୁଦୃଷ୍ଟି) ଷସ୍ତିଭବରେ (କାମ ବିକାରରେ) ପ୍ରକାଶିତ ହୋଇଅଛି । ଧସ୍ତିଶୋଭି (ଇନ୍ଦୁରେଖାର) ରଙ୍ଗ (ହାସ୍ୟକଉତୁକ) କେଡ଼େ ଶିଥିଳ ତ (ଅତ୍ୟନ୍ତ ଶିଥିଳତା ଭଜୁଅଛି) ।

୧୩ଶ ପଦର ୧ମ ଅର୍ଥ—ମାନସରେ (ମନରେ) ଚିନ୍ତା (ଭାବନା) ବିଭିବସି ଅଗତ ବା (ସ୍ୱାକ ଅସିଲା କି) ? ବିସପ୍ରସୂନ (ପଦ୍ମ) କୁମୁଦ (କଇଁଫୁଲ) ଲଭି ତରନ୍ତି ଓ ଚକ୍ରେ (ଚକ୍ରବାକ ପକ୍ଷୀ ପକ୍ଷିଣୀ) ସତର୍କିତ ହୁଅନ୍ତି ।

୧୩ଶ ପଦର ୨ୟ ଅର୍ଥ—(ବି-ମା-ଚ୍ୟୁତରେ) ଚିନ୍ତା ନ ସରେ (ଚିନ୍ତା ସରୁ ନାହିଁ) । ବି (ବିଶେଷ) ଭି (ପ୍ରୀତି) ବସି ଚିନ୍ତା ବା ଅଗତ (ଉପସ୍ଥିତ କି) ? ସପ୍ରସୂନ (ମୁକୁଳ ସହିତ) କୁମୁଦଚକ୍ରେ (କଇଁଗୁଚ୍ଛକ) ସତର୍କିତ ହୁଅନ୍ତି ।

୧୩ଶ ପଦର ୩ୟ ଅର୍ଥ—(ବିସ-ମାନ-ଚ୍ୟୁତରେ) ଇନ୍ଦୁରେଖା ପ୍ରସୂନ (ଜାତ) କୁମୁଦ (କଇଁଫୁଲ) ଚକ୍ରେ (ସମୂହଦ୍ୱାରା) ସତର୍କିତା ହୋଇଅଛି । ବିଭି ବସିବା ଅଗତ (ଅର୍ଥାତ୍ ନୃପକୁମର ସହିତ ମୋର ବିବାହ ହେବା ଉପସ୍ଥିତ) ଏହା ଭାବନ୍ତେ ଚିନ୍ତା ତାର ସରି ଯାଉଅଛି ।

୧୪ଶ ପଦର ୧ମ ଅର୍ଥ—ବିଭିବସୁ ମଣ୍ଡରେ (ସୂର୍ଯ୍ୟ ମନେ କରନ୍ତି) କର-ବିଚ୍ଛେଦନୀ ଅର୍ଥାତ୍ ପଦ୍ମ ମୋର ବିଚ୍ଛେଦନୀ ହୋଇଅଛି । ଫୁଲଶରେ ବିନୋଦିନୀ ସାରସେ (କେଳି-ଷସ୍ତିଯୁକ୍ତା ପଦ୍ମିନୀ) କୁ ଶୋଭି ହୋଇଅଛନ୍ତି ।

୧୪ଶ ପଦର ୨ୟ ଅର୍ଥ—(ବି-ସା-ଚ୍ୟୁତରେ)—ସୁମଣ୍ଡରେ ଭବ (ହେ ସଖୀ ! ଉତ୍ତମ ବିଗ୍ରହ କରି ଭାବ) । କର (କରଣ) ବିଚ୍ଛେଦନୀ ସରବିନୋଦନୀ ଫୁଲ (କୁମୁଦିନୀ) ରସେ (ନୀରରେ) କୁଶୋଭି (ଶ୍ରୀହୀନ) ଦେଖାଯାଏ ।

୧୪ଶ ପଦର ୩ୟ ଅର୍ଥ—(ବିଭି-ସାର-ଚ୍ୟୁତରେ) ବସୁମତୀରେ (ପୃଥିବୀରେ) କର ବିଚ୍ଛେଦନୀ (ଆପଣଙ୍କର କର ପଦ୍ମ ବିଚ୍ଛେଦନୀ) ସେ କୁଶୋଭି (ଧସ୍ତିମଣ୍ଡନା ଇନ୍ଦୁରେଖା) ଫୁଲଶର ବିନୋଦନୀ ହୋଇଅଛି ।

୧୫ଶ ପଦର ୧ମ ଅର୍ଥ—ଏହି ସମୟରେ ଧୀରେ (ବୁଦ୍ଧିମାନ୍ ଲୋକମାନେ) ସ୍ମରପର (ମହାଦେବଙ୍କୁ) ଗଢିକରି (ଅଶ୍ରୟ ମନେକରି) ରଢରେ ସୁରସେ (ତୀର୍ଥମାନଙ୍କରେ) ବିର ଧନ ଦାନ ମନ କରିବାର (ସ୍ୱର୍ଣ୍ଣରୌପ୍ୟାଦି ଦାନ କରନ୍ତି) ।

୧୫ଶ ପଦର ୨ୟ ଅର୍ଥ—(ସୁ-ବି-ଚ୍ୟୁତରେ)—ଏହି ସମୟରେ ଧୀରେ (ବୁଦ୍ଧିମାନ୍ ଲୋକମାନେ) ସ୍ମରପରଙ୍କୁ ଗଢ କରି (ଦେବଦେବଙ୍କୁ ଅଶ୍ରୟ ମନେକରି) ରଢରେ

ସୁରତରଙ୍ଗିଣୀ ଚନ୍ଦ ଭାବନାରେ ମତ୍ତ ।
ଭାଭାବନ ମୋହିନୀ ସୁଗ୍ରୁରୁ କୁନ୍ଦଦନ୍ତୀ । ୧୬ ।
କୁମୁଦରେ କେତୁଗ୍ରାସେ ଯେହ୍ନୁ ଅଛ ସୁଖୀ ।
ଅବ୍ଧିରେ ବାଞ୍ଛା କରି ମୁକ୍ତ ସ୍ତବ ଲକ୍ଷି । ୧୭ ।
ସେ ଅସୁର କେତୁ ଘାରେ ସୁରଇନ୍ଦ୍ର ଯଥା ।
ସୁରଶେଷେ ଘାରହେଲ ବେନି ଜନ ତଥା । ୧୮ ।
ସୁରଧିରେ ଶୁଭଜାଳ କରିବା ନିର୍ଣ୍ଣୟ ।
ସତେସେ ଗୁରୁଲୋଚନା ଲଭିବା ଉପାୟ । ୧୯ ।

( ପ୍ରୀତରେ ) ରସେ ( ଜଳରେ ପଶି ) ର ( ସ୍ୱର୍ଣ୍ଣ ) ଓ ଧନ ଦାନେ ମନ କରନ୍ତି ଅର୍ଥାତ୍ ସ୍ନାନ କରି ସ୍ୱର୍ଣ୍ଣ ଓ ଧନ ଦାନ କରନ୍ତି ।

୧୫ଶ ପଦର ୩ୟ ଅର୍ଥ—( ସୁର-ବର-ଚ୍ୟୁତରେ )—ସ୍ମରପର (କନ୍ଦର୍ପାସକ୍ତା) କରିଗତି ( ଗଜଗମନା ) ସେ ( ଇନ୍ଦୁରେଖା ) ରସରେ ( ପ୍ରୀତରେ ) ଧନ ( ଯୌବନଧନ ) ଧୀରେ ( ଧୀରଙ୍କୁ ଅର୍ଥାତ୍ ଆପଣଙ୍କୁ ) ଦାନ କରିବାକୁ ମନ କରିଅଛି ।

୧୬ଶ ପଦର ୧ମ ଅର୍ଥ—ସୁରତରଙ୍ଗିଣୀ ଚନ୍ଦ ( ପର୍ବଗ ସମୟରେ ଗଙ୍ଗାର ଜଳ ) ଭାବନାରେ ମତ୍ତକଲେ ( ଭାବିଲେ ) ସୁଗ୍ରୁରୁ କୁନ୍ଦଦନ୍ତୀ ମୋହିନୀ ( ମୋହିନୀ କନ୍ୟା ) ବିଭାବନ ( ଚିନ୍ତନ ) ହୁଏ ଅର୍ଥାତ୍ ସୂର୍ଯ୍ୟ କେତୁମୁକ୍ତ ହେବା ସମୟରେ ଗଙ୍ଗାରେ ଲୋକମାନେ ସ୍ନାନ ଦାନାଦି କରନ୍ତି । ସେମାନଙ୍କୁ ଦେଖିଲେ—ସାଗର ମନ୍ଥନ ପରେ ମୋହିନୀ କନ୍ୟାର ସୁଧା ପରିବେଷଣ ଓ ରାହୁର ଶିରଶ୍ଛେଦ ଭାବ ମନକୁ ଆସେ ।

୧୬ଶ ପଦର ୨ୟ ଅର୍ଥ—( ସୁ-ବି-ଚ୍ୟୁତରେ ) ଚନ୍ଦ୍ର କେତୁମୁକ୍ତ ସମୟରେ ରତରଙ୍ଗିଣୀ ( ମୋହିନୀ କନ୍ୟା ) ଚନ୍ଦ ( ଅଷ୍ଟର୍ଯ୍ୟ ) ଏହି ଭାବନାରେ ମତ୍ତ ରହେ—ସୁଗ୍ରୁରୁ କୁନ୍ଦଦନ୍ତୀ ମୋହିନୀ ଭାବନ ହୁଏ ପରି ଅର୍ଥାତ୍ ପଣ୍ଡିତମାନେ ଭଗବାନଙ୍କର ମୋହିନୀ କନ୍ୟାରୂପକୁ ଚିନ୍ତା କରନ୍ତି ।

୧୬ଶ ପଦର ୩ୟ ଅର୍ଥ—( ସୁର-ବଭି-ଚ୍ୟୁତରେ )—ସୁଗ୍ରୁରୁ କୁନ୍ଦଦନ୍ତୀ ବନମୋହିନୀ ( ପଦ୍ମିନୀ ) ରଙ୍ଗିଣୀ ( ରଙ୍ଗନିପୁଣା ଇନ୍ଦୁରେଖା ) ଚନ୍ଦ ( ଯମ ) ଭାବନାରେ ମତ୍ତ କରୁଅଛି ଅର୍ଥାତ୍ କନ୍ଦର୍ପପୀଡ଼ାରେ ପଡ଼ି ମୃତ୍ୟୁ କାମନା କରୁଅଛି ଅଥବା ସେ ଆପଣଙ୍କ ଚନ୍ଦ ( ରୂପକୁ ) ଭାବୁଅଛି ।

୧୭ଶ ପଦର ୧ମ ଅର୍ଥ—ଯେହ୍ନୁ ଅଛ ସୁଖୀ ( ଯତିମାନେ ) କେତୁଗ୍ରାସରେ (କେତୁଗ୍ରାସ ସମୟରେ ) କୁମୁଦରେ ( ନିରାନନ୍ଦ ହୋଇ ) ଅବ୍ଧିରେ ( ସମୁଦ୍ରରେ ସ୍ନାନ କରି ) ମୁକ୍ତ ବାଞ୍ଛା କରି ( ସୂର୍ଯ୍ୟଙ୍କ ମୁକ୍ତ କାମନା କରିବାର ) ସ୍ତବ ଲକ୍ଷି ( ସ୍ତବ କରିବାର ଦେଖାଯାଏ ) ।

୧୭ଶ ପଦର ୨ୟ ଅର୍ଥ—( କୁ-ଅ-ଚ୍ୟୁତରେ) ଅଛ ସୁଖୀ ଲୋକମାନେ କେତୁ ଗ୍ରାସରେ ( କେତୁଗ୍ରାସ ସମୟରେ ) ମୁଦରେ ( ଆନନ୍ଦ ହୋଇ ) ମୁକ୍ତ ବାଞ୍ଛା କରି ( ଚନ୍ଦ୍ରଙ୍କର ମୁକ୍ତ କାମନା କରି ) ବଧିରେ ( କେତୁହନ୍ତା ବିଷ୍ଣୁଙ୍କୁ ) ସ୍ତବ ଲକ୍ଷି ( ସ୍ତବ କରିବାର ଦେଖାଯାଏ ) ।

୧୭ଶ ପଦର ୩ୟ ଅର୍ଥ—( କୁମୁ-ଅବ-ଚ୍ୟୁତରେ )—ଯେହ୍ନୁ ଅଛ ସୁଖୀ ଅର୍ଥାତ୍ ଅଳକ-ସୁଖୀ ( ଇନ୍ଦୁରେଖା ) କେତୁ ଗ୍ରାସେ ( କାମ ଦାନବ ପୀଡ଼ାରେ ) ଦରେ ( ଭୟରେ ) ଧୀରେ ( ଧୀରଙ୍କୁ ଅର୍ଥାତ୍ ଆପଣଙ୍କୁ ) ବାଞ୍ଛା କରି ( କାମନା କରି ) ମୁକ୍ତ ସ୍ତବ ଲକ୍ଷି ( ନିଜେ ମୁକ୍ତ ଲଭିବାର ସ୍ତବ କରୁଥିବାର ଜଣା ଯାଉଅଛି ) ।

୧୮ଶ ପଦ । ସୁର—ସୂର୍ଯ୍ୟ, ଶୁର—ଯୋଦ୍ଧା । ୧୯ଶ ପଦ । ଗୁରୁଲୋଚନା—ସୁଲୋଚନା ।

ବୋଧୁ ଭାବେ ସୂଚଣାଙ୍କ ଦେବା କର ଭଙ୍ଗୀ ।
ସରସିଜ ପରଶରେ ସେ ଅନବଦ୍ୟାଙ୍ଗୀ । ୨୦ ।
ସକାମରେ ଚଳାପାଙ୍ଗୀ ରୂପ ଭାବ ତବ ।
ଏ ସୁରମ୍ୟ ଛାନ୍ଦ ଗୋଲୋକର ସଖୀଭାବ । ୨୧ ।

## ୨୪ଶ ଛାନ୍ଦ

ରାଗ ବଙ୍ଗଳା—ଆଷାଢ଼ଶୁକ୍ଳ ବାଣୀ

ଘେନ ହେ ସାଧକ ବଚନ ରସ, ଘନକେଶୀ ପ୍ରଂସ ପ୍ରେମ ଆବେଶ
ଘନଜଘନାର ଅରତ ଦେଖି, ଘୋର ଚିନ୍ତାନଳେ ଭାଳିଲେ ସଖୀ ।
ଘାର କେ ନ ହେବ, ଘଟଣାକାନ୍ତର ଦେଖି ଏ ଭାବ । ୧ ।
ସବେ ଏକାଳେ ହେଲେ ମଗନ, ସଜନୀ କ ଅମ୍ଭ ବଞ୍ଚିବ ଘେନ ।
ସବତା ମାଧୁରୀ ଯାଉଛି ସରି, ଶଙ୍କାକୁଳେ ବମ୍ଭବଡ଼ମ୍ବାଧରୀ
ସଡ଼ିଲାଣି ପ୍ରେମେ, ଶତମନ୍ୟୁଯାନଗତ ମରମେ । ୨ ।
ସାତ୍ତ୍ୱିକମାନଙ୍କୁ ଅଙ୍ଗରେ ବହୁ, ସ୍ନେହ ସଂଘାତରେ ଚେତା ଗୁଡ଼ାଇ
ସବେଗେ ଖେଳାଇ ଭାବ ତରଙ୍ଗ, ସାଗରଜୁଦୟା ବିଷମ ରଙ୍ଗ,
ସମ୍ଭାଙ୍କି ଦେଖାଇ, ସମାହୃତ ତାପେ ସବୁ ସାରଇ । ୩ ।
ଝାଳ ଅବିରତେ ବହୁଛି ଦେହୁ, ଝଷକେତନର ଏ କସ ଦାଉ,
ଝୁଣ୍ଟୁଛି କୃଶାଙ୍ଗୀ ଗମନକାଳେ, ଝୁରୁଛି କପୋତୀ ପରି ବାକଳେ,
ଝରୁଛି ଲୋତକ, ଝାଉଁଳି ଯାଉଛି ଏ କି ବିପାକ । ୪ ।
ଟାଙ୍କୁରୁଛି ରୋମରାଜି ତାହାର, ଟଳିଲେ ମନ ସିନା ଏ ପ୍ରକାର,
ଟେକିଲା ମନ ଖସେ ତାହିଁ ଅଜ, ଟାଣପଣ ତ ଗଲା ଗୃହୁଁ ଗୃହୁଁ
ଟଙ୍କିଲା ପ୍ରଣୟ, ଟାପରା କରାଇ ହେଲା ନିର୍ଦ୍ଦୟ । ୫ ।
ଅହାର ବିହାର ହେଲାଣି ଦୂର, ଅକୁଳ ଗଦ୍‌ଗଦେ ନ ସ୍ଫୁରେ ଗିର
ଅଜଜ ବସୁଛି ଧରି ମିତଣୀ, ଅଶ୍ଳପତିଙ୍କୁ ସଖୀଙ୍କ ନେଲାଣି
ଅହା ରେ ଦଇବ ! ଅଜନ୍ମସୁଖୀ କି ଏହା ସମ୍ଭବ । ୬ ।
ଧରାସ୍ୱେନଙ୍କୁ ଅଦର କରି, ଧରଣୀମଣ୍ଡନା ଯାଉଛି ସରି
ଧାଡ଼କାରେ ତେଜେ ଖର ନିଃଶ୍ୱାସ, ଧବଳମୟୂଖ ମୁଖ ବିରସ
ଧନରଙ୍କ ପରି, ଧରିବ କେ ଧୃତ ଦେଖି ଅଧୀରୀ । ୭ ।

---

୨ୟ ପଦ । ଶତମନ୍ୟୁଯାନଗତ—ଐରାବତଗମନା, ଗଜେନ୍ଦ୍ରଗମନା
୪ର୍ଥ ପଦ । ଝଷକେତନ—ମୀନକେତନ, କନ୍ଦର୍ପ ।
୭ମ ପଦ । ଧବଳ-ମୟୂଖ—ଚନ୍ଦ୍ର ।

କମ୍ପ ପୁଲକରେ ଅଭରି ତନୁ, କଣ୍ଠେ ଧର ଧର ଭାଷା ବଦନ୍ତୁ
କର ପଦ୍ମର ନ ଚଳଇ ତାର, ତାହାଙ୍କ ହେଲଣି ବର୍ଣ୍ଣ ପାଣ୍ଡୁର
କରମୋରୁ ଗୁଣ୍ଡ, କି ବିଷାଦେ ଛୁଡ ଧାଏ କରନ୍ତ ।୮।
ଝାମ ପିବା ଏଣେ ଦେଖି କେ ସଖୀ, ଝଗ୍ରୁ ତା ମୁଖେ ନୀର ସିଞ୍ଚଇ
ଝଗଡ଼ ବାଟେ କହେ ଦେଲ ମତ, ଝୀନବସନାର ହେଲ ଦୁର୍ଗତ
ଝଟିତ ଉପାୟ, ଝାମ ନାଶକୁ ଭର ସଖୀଚୟ ।୯।
କିଶଳୟ ଅଣି ଘନେ ଶୋଯାଇ, କୃଶାଙ୍ଗୀକି ଧୀରେ ଦେଲେ ଶୁଆଇ
କୁଚଶାଦସ୍ତି ସ୍ନେହ ପଦ୍ମାନ୍ତ ମନେ, କଲେ ସେବା ସଖୀବାର ଯତନେ,
କେ ବିଞ୍ଚେ ଚାମର, ତେଣୁ ଶୀତରେ ଜାତ କରେ ସମୀର ।୧୦।
ବିରଳ ନିଷ୍ଟନ ନୟନ ଜ୍ୟୋତ, ବିକସିତ ଶୋକପ୍ରକମ୍ପଗାତ୍ରୀ
ବାଧୁରୀ ଅଭଞ୍ଚ ନ ପାରି ସହି, ବାମନୟନା କେ ବାମେ ଅନାଇ,
ବୋଧେ ମୁଖ ଟେକି, ବରରମଣୀ ହେଲୁ ଏତେ ସବୁ ।୧୧।
କେ ବୋଲେ ତୋଳା ତା ଦେଲଣି ଖୋଚି, କାହିଁକି ଏମନ୍ତ ହେଲ ରୂପସୀ
କେ ବୋଲେ ନ ଶୁଣେ ବାଣୀ ସୁଦୃଶା, କଳାକରମୁଖୀ ଦୁଃଖବିବଶା,
କେ ଧର ଚିବୁକ, କୁରଙ୍ଗନୟନା କରଇ ଶୋକ ।୧୨।
କେ ବୋଲେ ସେ ଧନ କି ଭଙ୍ଗୀ ହେଲା, କରୁ ଚନ୍ଦପଟ ଖସି ପଡ଼ିଲା
କଲା କି ଯୋଗେ ସେ ରୂପ ଚିନ୍ତନ, କରାଇବାକୁ ଏ ରୂପ ଦର୍ଶନ,
କହିବା କି ଯୁକ୍ତି, କାଟେ ହୃଦ ଧୀର-ହୀରା ଅରତ ।୧୩।
ତରଳ ବିଷାଦେ ଟେକ ପଶୁରଇ, ତ୍ରପାମିଶା ହାସସୁଧା ତା କାହିଁ
ତପତ କନକ କାନ୍ତି କି ହେଲା, ତା ସୁବର୍ଣ୍ଣ ଓଷ୍ଠ କୃଷ୍ଣ କେ କଲା,
ତରକୁନ୍ତି ମୁହିଁ, ତରୁଣୀ ସଙ୍ଗେ କି ଦେବ ଭସାଇ ।୧୪।
ପ୍ରଲମ୍ବକୁନ୍ତଳା ନୟନ ଜ୍ୟୋତ, ପଳାଇ ହେଲଣି ଶୁକ୍ଳିମା ଅତ
ପ୍ରବେଷ୍ଟାବେ ତୋଳା ଦେଉଛୁ ଖୋସି, ପୟୋଧରୁ ଚେଳ ଯାଉଛୁ ଖସି,
ପ୍ରମାଣ ବାତୁଳ, ପର ମଣେ ସନ୍ନିପାତ ଏଭଳ ।୧୫।
ପାଣିଗ୍ରହଣରେ କରୁଛୁ ସ୍ନେହ, ପ୍ରଳାପରେ ବଳେ ଘୋଟୁଛି ମୋହ
ପାଣି ପାଦ ତାର ଶୀତଳ ଅତ, ପଥର କର କେ ରହିବ ଛାତ ।
ପାଂଶୁଳ ପ୍ରଣୟ, ହେତ ହୋଇ ଦେଲା କି ଜାତ ଭୟ ।୧୬।

---

୯ମ ପଦ । ଝାମ—ମୋହ ।
୧୦ମ ପଦ । କିଶଳୟ—କଅଁଳିଆ ପତ୍ର । ବାର—ସମୂହ ।
୧୧ଶ ପଦ । ବରରମଣୀ—ଶ୍ରେଷ୍ଠ ଅଙ୍ଗନା ।
୧୨ଶ ପଦ । କଳାକରମୁଖୀ—ଚନ୍ଦ୍ରବଦନା । କୁରଙ୍ଗ—ହରିଣ ।
୧୩ଶ ପଦ । କରୁ—ହସ୍ତରୁ ।
୧୪ଶ ପଦ । ତ୍ରପା—ଲଜ୍ଜା । ସୁଧା—ଅମୃତ । କନକ—ସ୍ୱର୍ଣ୍ଣ ।
୧୫ଶ ପଦ । ପୟୋଧରୁ—ସ୍ତନରୁ । ଚେଳ—ବସନ ।
୧୬ଶ ପଦ । ପାଣିଗ୍ରହଣ—ପାଣି ଧରିବା, ବିବାହ ।

ଫୁଲ୍ଲପଦ୍ମେ ଭୃଙ୍ଗ ବଥାଉଛ ପଣ୍ତି, ଫଣୀ ମଣିହରା ପ୍ରାଏ ସତି
ଫାଟିପଡ଼ୁଛି କି ତାପେ ଲପନ, ଫୁଟିଯାଏ ନେତ୍ର କଲେ ଦର୍ଶନ,
ଫଟା କପାଳଙ୍କୁ, ଫଳ ମିଳିଗଲା ଅଳିଅଳିଙ୍କୁ । ୧୭ ।

ନୀର ଅମ୍ବରରେ ନେତ୍ରେ ପୂରିଛି, ନୀରଜନୟନା ନିଷ୍ପନ୍ଦ ଅଛି
ନିର୍ଜୀବ ସମାନ ଶୋଇ ଉତ୍ତାନେ, ନିଶ୍ୱାସ ଚେଳୁଛି ମୃତ୍ୟୁ ବିଧାନେ,
ନୂତନା ଉରଜେ, ନୀଳମଣିହାର କମ୍ପ ସରଜେ । ୧୮ ।

ଅଧୀରେ ଧୀରଙ୍କୁ ଦେଖି କେ ସଖୀ, ଅନଙ୍ଗେ ପାମର କହି ଶମ୍ଭଇ
ଅଙ୍ଗହୀନ ତୁରେ ବୋଲଉ ଭୂତ, ଅକାଳେ ପ୍ରବଳ ବଳହୁଁ ପ୍ରେତ
ଅଶିବ ତୁ ଜାଣି, ଅଚିରେ ନାଶିଲେ ପିନାକପାଣି । ୧୯ ।

ଖେଳା ଖଞ୍ଜନାକ୍ଷୀ କଳା ସାହସ, ଝୁର ମାର ଦେଣ୍ଡୁ କରୁଛୁ ନାଶ
ଖେଳୁ ଖେଳୁ ପଦ ଗଲା ତା ଖସି, ଝରାପ କରୁଛି କି ହମ୍ଭେ ଆସି
ଖଳ ମୋହନାଙ୍କୁ; ଖୋଜତ ନ କର ଗଦାରୁ ରୁକ୍ଷ । ୨୦ ।

ବାମାକୁ ଅନଙ୍ଗ ସୁବର୍ଣ୍ଣ ସର, ବାରଣେ କେ ବୋଲେ ମୋଡ଼ଇ ଗୋଡ଼
ବଣିକ ଚମ୍ପକ-କଳିରେ ଫୁଙ୍କଇ, ବିଶେଷେ ଅଗ୍ନି ମଣ୍ଡୁଅଣୀ ଚହିଁ
ବାଳୀଶ ଘାଣ୍ଟଇ, ବାଣୀ ଏ ବେଦନାକୁ ଅଛି କାହିଁ ? ୨୧ ।

ଅହା କୃଶାଙ୍ଗୀର ଦଶା କି ହେଲା, ଅକ୍ଷେପ କରି କେ ସଖୀ ଭାଷିଲା
ଅଦିତ୍ୟ ସନ୍ତାପେ ବାଳୀ ମଉଳା, ଆତପ ନ ଆସୁ ଯାଏ ଝାଉଁଳା
ଆଜ କି ସହିବ, ଅପର ସଖୀଙ୍କି କଥା କହିବ । ୨୨ ।

ବଧୁରିର ପିକ କେ ବୋଲେ ଅର, ବଧୂ ଅଳି ଆଜ ଯାହା ମାଧୁରୀ
ବୋବାଇ ଶୋଭକେ ଲୋଭାନ୍ତ ମନ, ବନ୍ଧୁରିର ପ୍ରାଣ ଏବେ ଉଚ୍ଛନ୍ନ
ତାଙ୍କୁ ସହଧର୍ମୀ, ବଧିରେ ତା ବିନା ମରଇ ଭ୍ରମି । ୨୩ ।

ମଧୁପ ଝଙ୍କାର ଦରେ ଯେ କାଲେ, ମତ୍ତକାଶିନୀ ମୋହ ସେହି କାଲେ
ମର୍ମ ବିଦାରେ ଘାରେ ତା ପ୍ରାଣ, ମାରର କିବା ସେ ପଞ୍ଚମ ବାଣ
ମୈନାକସ୍ତମ୍ଭୀକି, ମାରେ ଅଳି ଇନ୍ଦ୍ର କି ଦମ୍ଭୋଳିକି । ୨୪ ।

---

୧୭ଶ ପଦ । ଫଣୀ—ସର୍ପ । ଲପନ—ମୁଖ । ଅଳି-ଅଳି—ସଖୀଶ୍ରେଣୀ ।

୧୮ଶ ପଦ । ନୀରଜ—ପଦ୍ମ । ଉତ୍ତାନେ—ଚିତ୍ ହୋଇ । ନୂତନା—ନବୀନା । ଉରଜ—ସ୍ତନ ।

୧୯ଶ ପଦ । ଅନଙ୍ଗ—କନ୍ଦର୍ପ । ଅଶିବ—ଅମଙ୍ଗଳମୟ । ପିନାକପାଣି—ଶିବ ।

୨୦ଶ ପଦ । ଝଳ—ଶିବ ।

୨୧ଶ ପଦ । ବାଳୀଶ—ନାଗରନ୍ତୁ ।

୨୨ଶ ପଦ । ଆଦିତ୍ୟ—ସୂର୍ଯ୍ୟ । ମଉଳ—ଶ୍ରେଷ୍ଠ ।

୨୩ଶ ପଦ । ଅଳି—ଭ୍ରମର ।

୨୪ଶ ପଦ । ମଧୁପ—ଭ୍ରମର । ଝଙ୍କାର—ଗୁଣୁଗୁଣୁ ଶବ୍ଦ । ମୈନାକ—ପର୍ବତବିଶେଷ ( ଇନ୍ଦ୍ରଙ୍କ ବଜ୍ର ଭୟରେ ଏ ପର୍ବତ ସମୁଦ୍ରରେ ଲୁଚିବାରୁ ଏହାର ପକ୍ଷଚ୍ଛେଦ ହୋଇ ନାହିଁ ) । ଦମ୍ଭୋଳି—ବଜ୍ର ।

କେ ବୋଲେ ତା ଗର୍ବ ଦେବା ଛଡ଼ାଇ, କାନ୍ତମୁଖୀ ଶୋକ ଶମିବା ପାଇଁ
କଳି ଦ୍ୱାର କୋପେ ଭବନେ ରଖି, କର ମୁଠାଇବା ସକଳ ସଖୀ,
କଲ କର୍ମ ଭାର, କଟାକ୍ଷେ ଖସିପଡ଼ି ମରିବ ସ୍ମର ।୨୫।
ପଦ୍ମିନୀଙ୍କ କରେ କେ ବୋଲେ ସ୍ନେହ, ପର ମଣି ସୁତ କରନ୍ତି ଦ୍ରୋହ
ପରଚନ୍ଦ୍ର କରପାଶ ଅଣାଇ, ପରପଞ୍ଚ ଗର୍ବ ଦେବା ଛଡ଼ାଇ
ପରମା ସୁନ୍ଦରୀ, ଯାଇଁ ରୋପିବା ଚଞ୍ଚରୀକମାରୀ ।୨୬।
ବସନ୍ତ କେ ବୋଲେ ଅନ୍ତ ନ ହେଲେ, ବିରହୀ କି ଆଉ ବଞ୍ଚିବ ଭଲେ
ବଳେ ଆସି କଲେ ସେ ଉଚ୍ଚାଟନ, ଶ୍ରୀବସନ୍ତ ଲାଗି କର ଭଜନ,
ବାମଦେବ ଧ୍ୟାନେ, ବରଷା ଜାଳିବ ମଧୁପବନେ ।୨୭।
କେତୁର ମୋହନୀ ବଇରୀ ଜାଣି, ଜଳାକର ଦେଖା ବହୁତ ଆଣି
କର ଉପାୟ କେ କହେ ତାହିଁକି, କେ ବୋଲେ ଜପିବା ଉମାପତିଙ୍କି
କରୁ ଜୀବ-ଶାପ, କଳାକର ଶେଷ କଳାକୁ ଲୋପ ।୨୮।
ପିକ କୁହୁ ଏଣେ ଶୁଣି କେ ସହି, ପରପଞ୍ଚ କହୁ କ୍ରୋଧେ ଶମଇ
ପରପୋଷା ତୁ ରେ ଏଡ଼େ ଗୃହର, ପଳା ପଳା ପର ଘରେ ପାମର
ପୋଡ଼ି କି ସରମ; ପଶି ପତ୍ରତଳେ ଦେଖାଉ ତମ ।୨୯।
ଥର ଥର ଥରେ ଚନ୍ଦ୍ରମାମୁହାଁ, ଥରାଜକୁ ବଡ଼ପଣ ଦେଖାଇ,
ଥୁ ଥୁ ତୋ ରୂପକୁ ବସନ୍ତ ଦୂତ, ଥଳ କୂଳ ମିଳି ସାରିବୁ ମିତ,
ଥପୁ ଧର ତୁହି, ଥୋପିବା ବକୁଳ ଦେବୁ ଛୁଣ୍ଡାଇ ।୩୦।
ଫାପୁଲା ବେଙ୍ଗକୁ ଧର ନସହଇ, ଫାଙ୍କିପଣ ତୋର ଦେବୁ ଛଡ଼ାଇ,
ଫଟା କପାଳ ତୋ ହେଲା ଏଣିକି, ଫଳକେ ମାରିବୁ ଯିବୁ କେଣିକି,
ଫୁଟୁ ତୋର କାନ, ଫଣୀ ହେଲେ ବିଷବୈଦ୍ୟରେ ଘେନ ।୩୧।
ବିରହତାପକୁ ଔଷଧି କାହିଁ, ବୋଲି କେଉଁ ସଖୀ ଧୀରେ ପୁଛଇ
ବାରରେ ଉଶୀରମୂଳ ଚନ୍ଦନ, ବାଟି ଲେପୁ ହେଲା ଅତି ଉଚ୍ଛନ୍ନ
ବେଳୁ ବେଳ ତାର, ବଢ଼ିଲା ବିକାଶ କେତେ ବିକାର ।୩୨।
ଧୀରା ଅବେଶରେ ସଜନୀ ଗଣ, ଧରାମଣ୍ଡନାର କଲେ ଯତନ,
ଧ୍ୟାୟିତ ନାଗର ପ୍ରାପ୍ତି ପିପାସା, ଧରିଲେ ମାନସେ ହରିଣୀଦୃଶା ।
ଧୀରେ ଛାନ୍ଦ ଶେଷ, ଧ୍ୟାୟେ ଶ୍ରୀ ଗୋଲୋକ କିଶୋରୀବେଶ ।୩୩।

---

୨୬ଶ ପଦ । ଚଞ୍ଚରୀକମାରୀ—ଭ୍ରମରମାରୀ ଗଛ ।
୨୭ଶ ପଦ । ବାମଦେବ—ଶିବ । ମଧୁପବନେ—ବସନ୍ତ ପବନକୁ, ବନରେ ଭ୍ରମରକୁ ।
୨୮ଶ ପଦ । ଜୀବ—ବୃହସ୍ପତି । କଳା—ଚନ୍ଦ୍ରର ଷୋଡ଼ଶ ଭାଗ ।
୨୯ଶ ପଦ । ପିକ—କୋଇଲି । ସରମ—ଲଜ୍ଜା ।
୩୦ଶ ପଦ । ବସନ୍ତଦୂତ—କୋଇଲି । ଥୋପିବା—ବିକଚ; ଫୁଟିଥିବା ।
୩୧ଶ ପଦ । ବିଷବୈଦ୍ୟ—ସାପୁଆକେଳା ।
୩୨ଶ ପଦ । ଉଶୀର—ବେଣାମୂଳ । ୩୩ଶ ପଦ । କିଶୋରୀ—ରାଧା; ଯୁବତୀ ।

## ୨୪ଶ ଛାନ୍ଦ

### ରାଗ—ଗୁଜ୍ଜରୀ

ଶମ୍ବରରିପୁ କଳମ୍ବ କଦମ୍ବ, କଣ୍ଟାଳି ଟାଳିଲା ଅଳୋ ଦମ୍ଭ
ଦେଖି ସଖୀ ଭ୍ରମେ ସରିଲି ଲାଜ, ଅରକ୍ତ ଗଣ୍ଡ ଦେବା କି ସାଜେ ?
ସଜନି ! ନ ଦେଖିଲି ପଦ୍ମିଲି, ଯେ ଯେତେ ମତେ ବୁଝାଇ କହିଲେଁ । ୧ ।
ବିଷକୁ ପୀୟୂଷ ମଣିଲି ଭୋଳେ, ତରଳ ଗରଳ ଢୋକିଲି ହାଲେ
ପ୍ରବଳ ବିରହ କବଳ କଲା, ସମ୍ବଳ ଯେ ହେଲା ଏ ଦଶା ଦେଲା
ସଜନି ! ମନଭୁଲା କଥାକୁ, ନ ଭାବି ଭୋଳିଲି ଏତେ ବ୍ୟଥାକୁ । ୨ ।
ହଁଲକ ଶୋଭା କି ପୁଲକ ଦେଲା ? ବଳେ ମନ ପର ଆୟତ୍ତେ ଗଲା
ମତ୍ତ ହେଲା ମତ୍ତ ମାତଙ୍ଗଗତି, ସଙ୍ଗ ପ୍ରସଙ୍ଗରେ ବଳିଲା ମତି
ସଜନି ! ତାର ଏ ପରିଣତି, କ୍ଷୁଦ୍ରବୀଜ ବୃକ୍ଷ ହେଲା ହଁଟିତି । ୩ ।
ସଖୀଙ୍କି ଛଳିବା ଏ ଦଶା ଦେଲା, ଫେରି ଫେରି ମୁହିଁ ଫଳ ଫଳିଲା
ବ୍ୟାଜ ମୁହାଶୀର ସଜା ଏମନ୍ତ, ବିଜନ ଭାବନା ମଜା କେମନ୍ତ ?
ସଜନି ! ଅନୁଭବ କି ହେଲା, ବଳେ ପଶା ଭାବ ମହତ ନେଲା । ୪ ।
ଇଙ୍ଗିତ ଦେବାକୁ ତରକି ରହି, ନୟନେ ନୟନ ଦେଇ ମିଳାଇ
ମୃଦୁ ମଧୁ ହାସ ଫୁଟାଇ ଦେଇ, ସେ ଫଳ ଫଳନ୍ତା କାହାକୁ ଆଜ ?
ସଜନି ! ନ ଭାବିଲି ଅଗକୁ, ଖଣ୍ଡେ ଦେଲି ମନ ଅଶ୍ୱ-ବାଗକୁ ?
ପଶିଲି ନ ବୁଝି ଗହନ ବନେ, ଉଚ୍ଛନ୍ନ ଭାବକୁ ରଖି ଗୋପନେ
ମନକୁ ଜଡ଼ାଇ ଦେଲି ସାହସେ, ଛଡ଼ାଇଲେ ଆଜ ପାଶେ କି ଅସେ ?
ସଜନି ! ହେଲା ଏତେ ବିପତ୍ତି, ଅରମ୍ଭେ ପଥର ନ କଲି ଯୁକ୍ତି । ୬ ।
ନୂଆ ସ୍ନେହେ ଯାକୁ ପୋଷିଲି ମିତ, ବଳେ ବଳେ ଚିତ୍ତ କଲା ଅୟତ୍ତ
ନ ଜାଣିଲି କିପାଁ ସେ ଭୁଜଙ୍ଗମ, ଜଙ୍ଗମ ହେଲେ କି ରଖିବ ଭ୍ରମ ?
ସଜନି ! ଗଲେ ବାରେକ ହୁଡ଼ି, ଅସଇ କି ଗଲା କଥା ବାହୁଡ଼ି । ୭ ।
ସୁଷମା ଦେଖାଇବାକୁ ଯେ ବାସ, ଖସାଇ ଥାଇ ତ ବହୁ ସନ୍ତୋଷ
ତା ଲାଗି ଏ କାଳେ ଗିରି ସଦୃଶ, ହେବ ନ ବିଗୁର କଲି ସାହସ
ସଜନି ! ଗେଲି ଭେଲ ହୋଇଲା, କାହିଁ କଥା କାହିଁ ଯାଇ ରହିଲା । ୮ ।
ଅକୃତ କଉକ ଯାହାର ଲୋଡ଼ି, ଚନ୍ଦ୍ରଶାଳା ଚୂଳେ ଯାଇ ତୁ ଚଢ଼ି
ଶୁଣାଇବାକୁ ତୋ ମୃଦୁ ସଙ୍ଗୀତ, ବୀଣା ବାଇ ଗାଇ ପଞ୍ଚମେ ଗୀତ
ସଜନି ! ନ ହେଜିଲି ସେ କାଳେ, ସୁନା ଦେହ ଚୁନା କଲି ସେ ଫଳେ ।୯।

---

୧ମ ପଦ । ଶମ୍ବରରିପୁ—କନ୍ଦର୍ପ । କଳମ୍ବ—ଶର । କଦମ୍ବ—ସମୂହ ।
୨ୟ ପଦ । ପର—ଅପର ଲୋକ । ମାତଙ୍ଗ—ହସ୍ତୀ ।
୫ମ ପଦ । ବାଗ—ଲଗାମ । ଅଶ୍ୱ—ଘୋଡ଼ା ।
୭ମ ପଦ । ଭୁଜଙ୍ଗମ—ସର୍ପ ; ଲମ୍ପଟ । ଜଙ୍ଗମ—ଗମନଶୀଳ ।
୮ମ ପଦ । ବାସ—ବସନ । ଗିରି—ପର୍ବତ । ଭେଲ—କୃତ୍ରିମ ।

ତୋ ସ୍ନେହ୍ନା ଛବିତର ଡାଳ ଧାରିଥି, ଚରୁଥିଲ କାମ ଶୋଭା ସମ୍ବାଦ
ହରିଣୀ ନ ଜାଣି ହେଲୁ ତୁ ମୁଗ୍ଧା, ତୋ ବିନା ଆନ କେ ହୁଅନ୍ତା ଦଗ୍ଧା ?
ସଜନି ! କଲୁ କେମନ୍ତ ରୀତ, କି ଏବା ଅଭାବ ଥିଲା ତୋ ଚିତ । ୧୦ ।
ଭଲ ବୋଲି ଭାବ ଥିବାରୁ ସଖୀ, ଜଳୁ ଜାରମଣି ଧୂର୍ତ୍ତ ଉପେକ୍ଷି
ହେଲୁ ସ୍ତମ୍ଭ-ଦମ୍ଭ ଖମ୍ଭ ଉପାଡ଼ି, ସବୁ ସ୍ନେହ ତାଙ୍କୁ କେମନ୍ତେ ଛାଡ଼ି
ସଜନି ! ପରପ୍ରୀତି-ମାଦକ, ତୋ କଥାକୁ କିବା ନ ହେଲ ଦକ । ୧୧ ।
ପଦ୍ମକୁ ବୃନ୍ଦାଳ କହୁ ଯେମନ୍ତ, ନିଜ ତେଜକୁ କି ହେଲା ତେମନ୍ତ
ରସ କଥା କେ କହିଲେ କାହାକୁ, ହସରେ ଉଡ଼ାଇ ଦେଉ ତାହାକୁ
ସଜନି ! ଭୁଲ ମନ୍ତ୍ର ପୋଥି, ନ ଜାଣିଲୁ ସେ ଯେ ରଖିଛି ସାଥି । ୧୨ ।
ବାରିଜାକ୍ଷି, ଧରି ଯାହାର ନାମ, ବଜନେ ପୁରାଉଥିଲୁ ତୋ କାମ
ବଶ ହୋଇ ଗ୍ରାସ କଲଣି ଶିରୀ, ରୋଷ କଲେ ଆଜ ନୋହେ ଉବୁର
ସଜନି ! ଦୋଷ ଲଙ୍ଘିଲେ ସୀମା, ବାସ କରେ ଚିତ୍ତେ ଚନ୍ଦ୍ରାନିଯାମା । ୧୩ ।
ଅହିତକୁ ହିତ ବରୁର ଚିତ୍ତେ, ହିତ ନ କଲୁ ସଖୀ, ସ୍ୱତେ
ପରତେ ନ ଥିଲା ସତେ ରମ୍ଭୋରୁ, ବିରତ ହୋଇରୁ ସଖୀ କଥାରୁ
ସଜନି ! ଦେଖି ଏ କାରବାର, ସଂସାରକୁ ଚିତ୍ତେ ହେଲଣି ଡର । ୧୪ ।
କେମନ୍ତେ ବଳିଲା କହ ତୋ ଛାତି, ଉପାରହସାକୁ ଚଳିଲା ମତି
ହୃଦୟ ମୁକୁଟମଣି ତୁ ଯେଣୁ, ଛନ୍ଦ କରି ଛନ୍ଦେ ପଶିଲୁ ତେଣୁ.
ସଜନି ! ସାର ସଖୀଙ୍କ ବୁଦ୍ଧି, ଅରଜିଲୁ କହ କେଉଁ ସମୃଦ୍ଧି । ୧୫ ।
ଅପରଖ କଥା ପରଖି ବସି, ବଚାରେ ପଡ଼ି ତୁ କଲୁଣି ଦୋଷୀ,
ବଳାବଳି କରି କହିଲେ ଆଜ, ବଳେ ପଶାମନ ଠେଲିବ କାହୁଁ ?
ସଜନି ! ଆଗ ପଛ ନ ଭାବି, ଭୁଷି ହେଲୁ ନିଜ ମନ ପଦବୀ । ୧୬ ।
ବଶୀଭୂତ କରିବାକୁ ସାହସ, କରି ବଶୀଭୂତା ହେଲୁ ବାଳୀଶ
ଅକଥାରେ କଲୁ କଥା ତୁ ଯେଣୁ, ଅଯାଚିତେ ଘାରି ହୋଇଲୁ ତେଣୁ
ସଜନି ! ତବେ କାହାର ଶକ୍ତି, ଉଜାଣି ଅଣିବ ସଂସାର ଗତି । ୧୭ ।
କରୁଥିଲୁ କେତେ ତୋତେ ତ ନାହିଁ, ନ ମାନି ଏ ଦଶା ଭୋଗିଲୁ ସହି
କହୁଥିଲୁଁ ସିନା ବଳାଇ ତୋତେ, ଯେନା ହୁଅନ୍ତା କି କାମ ଇଙ୍ଗିତେ
ସଜନି ! ଚିହ୍ନା ପଡ଼ିଲା ରୀତି, ଅଲସନାଡ଼ିକା ହେଲୁ ସମ୍ପ୍ରତି । ୧୮ ।

---

୧୧ଶ ପଦ । ଦକ—ଭୟ ।
୧୨ଶ ପଦ । ସାଥି—ସଙ୍ଗରେ ।
୧୩ଶ ପଦ । ବାରିଜାକ୍ଷୀ—ପଦ୍ମାକ୍ଷୀ । ଶିରି—ଶୋଭା । ନିଯାମା—ରାତ୍ର ।
୧୫ଶ ପଦ । ସମୃଦ୍ଧି—ସମ୍ପତ୍ତି ।
୧୬ଶ ପଦ । ଅପରଖ କଥା—ଯେଉଁ ବିଷୟ ପରୀକ୍ଷା କରିବାର ନୁହେଁ । ପଦବୀ—ଉପାଧି ।
୧୭ଶ ପଦ । ବାଳୀଶ—ନାରୀଶ୍ରେଷ୍ଠ ।

ମିଅଦ ଝାଳିଲା ପିଅଦା ପଣ, ପର ସ୍ନେହ ହେଲା ବଳେ ଭଗାର
ପରକୀୟା ଭାବ ଅନୁସରଣି, କଲଙ୍କ ଗଲା ତୋ ଗୃହତଳଣି
ସଜନି ! ନୂଆ ଦାନକୁ ଦାନ, ସୁନ୍ଦର ପଣର ଏ ମହାଗୁଣ । ୧୯ ।
ଭାବବାକୁ ଲଭି ତୁ ଅବସର, ମନୋରାଜ୍ୟ କଲୁ ଏ କାଳବାର
କାମରାଜ ଯହିଁ ବଡ଼ ପ୍ରଚଣ୍ଡ, ନ ମାନନ୍ତା କି ତୋ ଧର୍ମ ଦଣ୍ଡ
ସଜନି ! ଆଣି ଦେଲା ସାଙ୍କୋଳି, ପଦ ପକାଇ କି ପାରିବୁ ଚଳି । ୨୦ ।
ମନେ ମନେ କରି କେତେ ରଙ୍ଗକୁ, ଅଧରେ ଧରି କି ନାଗବଲ୍ଲୀକି
ବାଳାମଣି ସ୍ନେହେ ଦେଲୁ ତୁ ଯାଚି, ବିପରୀତ ହେଲା ନାଗରୀଗରୀ
ସଜନି ! ଛଳ-ଭକ୍ତିକି କରି, କହିଲୁ କେତେ ନ ଖେଳିଲୁ ଗୋରି । ୨୧ ।
ଶୋଭା ମାପିଲୁ ନ ପାଇ ଖରଗୁ, ଅସକ୍ତ କି ଦେଲା କାମ ପାରଗୁ
କରୁ ଥା ଏଣିକି ବସି ତରଗୁ, ଲାଗୁଥାଉ ଭଲ ପ୍ରଣୟ ରଗୁ
ସଜନି ! କାଲୁ କରମ କଗୁ, ଗେଲ ସଙ୍ଗେ ଗଲା ତୋ ଭୁରୁନଗୁ । ୨୨ ।
କଲା ତୋତେ କାମ ଦ୍ୱିରଦରଦ, ରଦ ପ୍ରହାର ତୁ ନ ପାଉ ଭେଦ
ବରି ମାହୁନ୍ତ ନ ହେଲା ବରଦ, ଦରଦ ହେଲାଣି ଅତି ଦାରଦ
ସଜନି ! କେ କି କରୁଛୁ ବାଦ, ଅଣିଲୁ ବଳେ ତୁ ସିନା ପ୍ରମାଦ । ୨୩ ।
ତାଳୁଅଣି ତାପ ହୃଦରେ ବହି, ଦିନୁ ଦିନୁ କ୍ଷୀଣ ହେଲୁ ସୁମୁହିଁ ।
ଅଦ୍ଭୁତ ତୋ ବେଶେ ବାସକୁ ଡରୁ, ଚିହ୍ନି ହେଉ ନାହୁଁ କଣୋଗ୍ରୀ ଭୀରୁ
ସଜନି ! ଅହା କି ହୋଇଗଲୁ, ଚିହ୍ନାପଡ଼ା ସ୍ୱଭ ଖୋଜି ଅର୍ଜିଲୁ । ୨୪ ।
ଯା ଲଚି ଏ ଦଶା ହେଲା ସହସା, କାଳକୁ ଚାଣୁଛୁ ସିନା ସୁବୃଶା
ଅଗ କଥା ଏବେ କର ତୁ ପଛ, ହର ଜ୍ଞାନା ଗଣି ସକଳ ମିଛ,
ସଜନି ! ହେବ ଶାନ୍ତି ଉଦୟ, ହରଧ୍ୟାନେ କର କାମ ବିଜୟ । ୨୫ ।
ଯାହା ମୁଁ କହୁଛି କରବୁ ସହି, ମନ୍ତ୍ର ଯନ୍ତ୍ର କିଛୁ ଜାଣଇ ମୁହିଁ
ଏବେ ମାର ଗୁଳିଯିବ ଲଭସେ, ନାଗରମଣିକି ରଖିଲେ ବାସେ
ସଜନି ! ଦିଗମ୍ବର ନାଗର, ଦରଶନ କଲେ ଯିବ ତୋ ଡର । ୨୬ ।
ଇନ୍ଦୁରେଖା ଶୁଣି ସଖୀ ବଚନ, ଲଜ୍ଜା ସଙ୍କୋଚରେ ହେଲା ମଉନ
ଛଳେ ଭାବେ ଭଜେ ଶିଖଣ୍ଡଚୂଳ, ତାଙ୍କ ବିନୁ ନାହିଁ ଆନ ସମ୍ବଳ,
ସୁଜନେ ! ପିଅ ଅମିୟ ରସ, ଶ୍ରୀ ଗୋଲେକ ଭାବେ ଲଳିତା-ଭାଷ । ୨୭ ।

---

୨୧ ପଦର ଆଉ ଏକ ପ୍ରକାର ଅର୍ଥ ଅଛି । ବାଳାର ହ୍ରୀ—(ଲଜ୍ଜା) ତ୍ୟାଗ ବ୍ୟଙ୍ଗରେ ବର୍ଣ୍ଣନା ଅଛି ।

୨୩ଶ ପଦ । ଦ୍ୱିରଦ—ହସ୍ତୀ । ରଦ—ଦନ୍ତ ।

୨୫ଶ ପଦ । ହରି—କୃଷ୍ଣ; ଶିବ ।

୨୬ଶ ପଦ । ଏବେମାର—ଏ ବେଗ; ଏବେ କନ୍ଦର୍ପ । ନାଗରମଣି—ସାପର ମଣି; ରସିକ ଶ୍ରେଷ୍ଠ । ବାସେ—ବସ୍ତ୍ରନରେ; ଗୃହରେ । ଦିଗମ୍ବର—ଶିବ; ଉଲଗ୍ନ ।

୨୭ଶ ପଦ । ଶିଖଣ୍ଡଚୂଳ—କୃଷ୍ଣ; ନାୟକର ନାମ ।

## ୨୭ଶ ଛାନ୍ଦ

ରାଗ—ଘଣ୍ଟାରବ

ବରଷା ଧୀରେ ପ୍ରବେଶେ, ବିବୋଧାଭ୍ୟାସ ପ୍ରକାଶେ
କାଳିକା କୁରଙ୍ଗ ଜାତକଲା ଖରେ ଦୀର୍ଘଜଙ୍ଘେ ଉଡ଼ି ତୋଷେ । ୧ ।
ପ୍ଲବଙ୍ଗେ ବହିଲେ ତୋଷ ପ୍ଲବଙ୍ଗେ ଅତି ବିରସ
ଗଣିକାବାସରେ ମଧୁବ୍ରାସୀ ରତ ଏକାଳେ ପାନ୍ଥ ନିରାଶ । ୨ ।
ତଜି କାଳିକା ତପନ ବେଳ ଜାଣି ଆଲିଙ୍ଗନ
ମୋହିଲେ ଚପଳା ରଙ୍ଗିଣୀ ଭାର୍ଗବୀ ସରବେ ସରସେ ତୂର୍ଣ୍ଣ । ୩ ।
ମଘବା ଧନୁ ବିହରେ ଅମୋଘୀ ଶକ ଆଶାରେ
ଉଦ୍ଦୀପ୍ତ ଅଦୃଶ୍ୟ ଦୃଶ୍ୟ, ମେଘ ନୀର ଗୃହକ ଅଧରେ ଧରେ । ୪ ।

---

ଏ ଛାନ୍ଦର ପ୍ରଥମ ସାତ ପଦ ବିବୋଧାଭ୍ୟାସରେ ବର୍ଷା ଋତୁ ବର୍ଣ୍ଣନ ହୋଇଅଛି ।

୧ମ ପଦ ବର୍ଷା ଅର୍ଥ— ବର୍ଷାକାଳ ଧୀରେ ପ୍ରବେଶ ହେଲା । ବିବୋଧାଭ୍ୟାସ ପ୍ରକାଶ କଲା । କାଳିକା ( ନୂଆମେଘ) ଖରେ ( ଅକାଶରେ ) କୁ (ମନ୍ଦ) ରଙ୍ଗ ଜାତ କଲା । ଅର୍ଥାତ୍ ନୂଆମେଘ ଆକାଶକୁ ଆଚ୍ଛନ୍ନ କରିବାରୁ ଆକାଶର ସ୍ୱାଭାବିକ ରଙ୍ଗ ଲୁଚିଗଲା । ଦୀର୍ଘଜଙ୍ଘେ ( ବକମାନେ ) ତୋଷରେ ଉଡ଼ିଲେ ।

୧ମ ପଦ । ବିବୋଧ ଅର୍ଥ—ବର୍ଷା ଋତୁ ଧୀରେ ପ୍ରବେଶ ହୋଇ ବିବୋଧାଭ୍ୟାସ ପ୍ରକାଶ କଲା । କାଳିକା ( ଶୃଗାଳୀ ) ଦୀର୍ଘଜଙ୍ଘେ ( ଓଠଦ୍ୱାରା ) ତୋଷରେ ଉଡ଼ି ( ମୈଥୁନ କରାଇ ) କୁରଙ୍ଗ ( ହରିଣ ) ଖରେ ଜାତକଲା ( ଶୀଘ୍ର ଜନ୍ମକଲା ) ।

୨ୟ ପଦ ବର୍ଷା ଅର୍ଥ—ବର୍ଷା ହେବାରୁ ପ୍ଲବଙ୍ଗେ ( ଭେକମାନେ ) ତୋଷ ବହିଲେ ଓ ପ୍ଲବଙ୍ଗେ ( ମର୍କଟମାନେ ) ବିରସ ହେଲେ । ମଧୁବ୍ରାସୀ ( ଭ୍ରମରମାନେ ) ଗଣିକାବାସରେ ( ଯୁଈବାସରେ ) ରତ ହେଲେ । ପାନ୍ଥ ନିରାଶ ( ବାଟୋଇମାନେ ନିରାଶ ହେଲେ ) ।

୨ୟ ପଦ ବିବୋଧ ଅର୍ଥ—ପ୍ଲବଙ୍ଗେ ତୁଷ୍ଟ ହେଲେ ଓ ପ୍ଲବଙ୍ଗେ ବିରସ ହେଲେ । ମଧୁବ୍ରାସୀ ( ବିଟ୍ଟୁ ) ଗଣିକା ବାସରେ ରତ ହେଲେ ( ମଦ୍ୟପ ଲମ୍ପଟମାନେ ବେଶ୍ୟାଘରେ, ବେଶ୍ୟା-ଖଞ୍ଜରେ ରହିଲେ ) । ପାନ୍ଥ ନିରାଶ ହେଲେ ( ବେଶ୍ୟାଘରକୁ ଯାଉଥିବା ବାଟୋଇମାନେ ନିରାଶ ହେଲେ ) ।

୩ୟ ପଦ ବର୍ଷା ଅର୍ଥ—କାଳିକା ( ମେଘ ) ବେଳ ଜାଣି ( ବେଳେ ବେଳେ ) ତପନ ( ସୂର୍ଯ୍ୟ ) ଙ୍କୁ ଆଲିଙ୍ଗନ କଲା (ଘୋଡ଼ାଇ ପକାଇଲା) । ଚପଳା (ବିଜୁଳି) ରଙ୍ଗିଣି (ରଙ୍ଗିଣି ଫୁଲ) ଭାର୍ଗବୀ ( ଏକ ପ୍ରକାର ଦୂବଘାସ ) ସରବେ ( ଏମାନେ ସମସ୍ତେ ) ସରସେ ( ସରସରେ ) ତୂର୍ଣ୍ଣ ( ଶୀଘ୍ର ) ମୋହିଲେ ( ସମସ୍ତଙ୍କୁ ମୁଗ୍ଧ କଲେ ) ।

୩ୟ ପଦ ବିବୋଧ ଅର୍ଥ—କାଳିକା ( ଚଣ୍ଡୀ ) ବେଳ ଜାଣି ( ସୁବିଧା ଦେଖି ) ତପନ ( ସୂର୍ଯ୍ୟ ) ଙ୍କୁ ଆଲିଙ୍ଗନ କଲା ( କୋଳାଗ୍ରତ କଲା ) । ଚପଳା ରଙ୍ଗିଣୀ ଭାର୍ଗବୀ ( ଚଞ୍ଚଳା ରଙ୍ଗନିପୁଣା ଲକ୍ଷ୍ମୀ ) ସରସେ ( ସରସରେ ) ତୂର୍ଣ୍ଣ ( ଶୀଘ୍ର ) ସରବେ=ସର୍ବେ ( ମହାଦେବଙ୍କୁ ) ମୋହିଲେ ।

୪ର୍ଥ ପଦ ବର୍ଷା ଅର୍ଥ—ବର୍ଷାକାଳରେ ମଘବା ଧନୁ ( ଇନ୍ଦ୍ରଧନୁ ) ବିହରେ ( ଦେଖାଗଲା ) । ଶକ ( ମଚ୍ଛୀ ) ଆଶାରେ ( ବୃଷ୍ଟି ପତନରେ ଅର୍ଥାତ୍ ବର୍ଷାକାଳରେ

ବିଟପୀ ରାଜି ଋତୁରେ ପ୍ରମୋଦ କଲେ ଧୀବରେ

ଦାତ୍ୟୁହ ରଙ୍ଗରେ, ଶରାଳି ବିହରେ ବହି ତୋଷ ମାନସରେ । ୫ ।

କୀଃଶଙ୍କ ଜଗତପ୍ରାଣ, ସଶଙ୍କ ଜଗତପ୍ରାଣ

ପ୍ରସରେ ଜୀବନ ବିନାଶେ ଜୀବନ ଅଶନି ଶନି ପ୍ରମାଣ । ୬ ।

ସାଧବବଧୂ ସୁବେଶ ମହୀଷ ରସରେ ତୋଷ

ଗିରି ବନତାରେ ସୁରତ ପ୍ରମତ୍ତ ବିଷକଣ୍ଠର ଉଲ୍ଲାସ । ୭ ।

---

ବୃଷ୍ଟି ହେବାରୁ ) ଅମୋଘ ହେଲା ( ନିରାନନ୍ଦ ହେଲା ଅର୍ଥାତ୍ ହୃଷ୍ଟ ଚିତ୍ତ ହେଲା ନାହିଁ ) । ଉଡ଼ୁପ ( ଚନ୍ଦ୍ର ) ଅଦୃଶ୍ୟ ହେଲେ । ପୁଣି ଉଡ଼ୁପ ( ନୌକା ) ଦୃଶ୍ୟ ହେଲା । ଏ କାଳରେ ଚନ୍ଦ୍ର ଦେଖାଯାନ୍ତି ନାହିଁ ଓ ନୌକାଦି ଯାତାୟାତ କରେ । ଚାତକ ପକ୍ଷୀ ମେଘନୀର ଅଧରେ ( ମୁଖରେ ) ଧରେ ( ଧାରଣ କରେ ବା ପାନ କରେ ) ।

[କଥିତ ଅଛି ଚାତକ ପକ୍ଷୀ ଅନ୍ୟ ଜଳ ପିଏ ନାହିଁ । ସର୍ବଦା ଆକାଶରେ ଉଡ଼ି ମେଘକୁ ଜଳ ମାଗୁଥାଏ, ବୃଷ୍ଟି ହେଲେ ସେହି ଜଳ ପାନ କରେ । ]

୪ର୍ଥ ପଦ ବିରୋଧ ଅର୍ଥ— ଇନ୍ଦ୍ରଧନୁ ବିହାର କରିବାରୁ ଶକ୍ର (ଇନ୍ଦ୍ର) ଆକାଶରେ ଅମୋଘ ହେଲେ ଅର୍ଥାତ୍ ତାଙ୍କ ଆଶାରେ ଆନନ୍ଦ ରହିଲା ନାହିଁ । ଉଡ଼ୁପ ଅଦୃଶ୍ୟ ପୁଣି ଦୃଶ୍ୟ । ମେଘନୀରକୁ ଚାତକ ଅଧରେ [ ଧରେ ନାହିଁ ] ପୁଣି ଧରେ ।

୫ମ ପଦ ବର୍ଷା ଅର୍ଥ—ବିଟପୀ (ବୃକ୍ଷମାନେ) ଋତୁରେ (ଏ ବର୍ଷା ଋତୁରେ) ରାଜି (ଶୋଭା ପାଇଲେ) ଅର୍ଥାତ୍ ପଲ୍ଲବିତ ହୋଇ ଶୋଭିଲେ । ଧୀବର (କେଉଟମାନେ) ପ୍ରମୋଦ କଲେ (ନୌକାଦି ଚଳାଇବା ଓ ମତ୍ସ୍ୟାଦି ଧରିବା ବ୍ୟବସାୟରେ ଆନନ୍ଦ ଉପଭୋଗ କଲେ ।) ଦାତ୍ୟୁହ ରଙ୍ଗରେ (ଡାହୁକମାନେ କ୍ରୀଡ଼ାରତ ହେଲେ), ଶରାଳି (ହଂସ) ତୋଷ ବହି (ତୁଷ୍ଟ ହୋଇ) ମାନସରେ (ମାନସରୋବରରେ) ବିହରେ (ବିହାର କଲେ) ।

୫ମ ପଦ ବିରୋଧ ଅର୍ଥ—ବିଟପୀ ରାଜି ଋତୁରେ (ଭର୍ତ୍ତା ସ୍ତ୍ରୀ ଋତୁମତୀ ହୋଇଅଛି) । ଧୀବରେ (ପଣ୍ଡିତମାନେ) ପ୍ରମୋଦ କଲେ (ଶୃଙ୍ଗାର ଇତ୍ୟର୍ଥ) । ମାନସରେ ତୋଷ ବହି (ମନୁଷ୍ଟ ହୋଇ) ଶରାଳି (ହଂସରାଳୀ) ଦାତ୍ୟୁହ ରଙ୍ଗରେ ବିହରେ (ଡାହୁକ ସଙ୍ଗରେ ରତି କଲା) ।

୬ଷ୍ଠ ପଦ ବର୍ଷା ଅର୍ଥ—ଜଗତ୍ପ୍ରାଣ (ପବନ) କୀଃଶଙ୍କ (ଶଙ୍କାଶୂନ୍ୟ ହେଲା—ଅର୍ଥାତ୍ ତୋଫାନ ଅତି ହେଲା), ଜଗତ୍ପ୍ରାଣ ସଶଙ୍କ ହେଲା (ଜୀବମାନେ ଭୟତ୍ରସ୍ତ ହେଲେ) । ଜୀବନ (ଜଳ) ପ୍ରସରେ (ବହିଲା) । ଶନି ପ୍ରମାଣ (ପ୍ରକୃତ ଶନିଗ୍ରହ ସଦୃଶ ଭୀଷଣ) ଅଶନି (ବଜ୍ର) ଜୀବନ ବିନାଶେ (କେତେ ପ୍ରାଣ ବିନାଶ କଲା) ।

୬ଷ୍ଠ ପଦ ବିରୋଧ ଅର୍ଥ—କୀଃଶଙ୍କ ଜଗତପ୍ରାଣ ଓ ସଶଙ୍କ ଜଗତପ୍ରାଣ, ପ୍ରସରେ ଜୀବନ ଓ ବିନାଶେ ଜୀବନ, ଅଶନି ଓ ଶନି ।

୭ମ ପଦ ବର୍ଷା ଅର୍ଥ—ସାଧବବଧୂ ସୁବେଶ (ଏ କାଳରେ ସାଧବବୋହୂ ମନୋହର ବେଶ ଶୋଭିଲେ) । ମହୀଷ ରସରେ ତୋଷ (ମହିଷିମାନେ ପାଣିରେ ତୋଷ ପ୍ରକାଶ କଲେ) । ଗିରି ଓ ବନତାରେ (ପର୍ବତ ଓ ବନରେ) ସୁରତ ପ୍ରମତ୍ତ (ସୁରତରେ ମାତିଥିବା) ବିଷକଣ୍ଠର (ମୟୂରର) ଉଲ୍ଲାସ ହେଲା ।

୭ମ ପଦ ବିରୋଧ ଅର୍ଥ—ସାଧବବଧୂ ସୁବେଶ (ସାଧବ ଘରର ବୋହୂ ସୁବେଶ ହେଲା) ଓ ମହୀଶ ରସରେ ତୋଷ (ମହାରାଜା ବା ମହିଷି ପ୍ରୀତିରେ ତୋଷ ବହିଲା) । ଗିରିବନତାରେ (ହିମାଳୟର ସ୍ତ୍ରୀ ମେନକାଠାରେ) ସୁରତ ପ୍ରମତ୍ତ (ପ୍ରୀତିରେ ମାତିଥିବା) ବିଷକଣ୍ଠ (ଶିବଙ୍କର) ଉଲ୍ଲାସ ହେଲା (ମନ ବଡ଼ ଆନନ୍ଦିତ ହେଲା) ।

ସୁଖ ଚନ୍ଦ ନନ୍ଦ ମୀନ ପ୍ରମତ୍ତ ବାହାର ବନ
ବାଲି ରତନ ବାଳଣ ପର୍ କାଟେ ସଜନୀବ୍ରାଜ ବମନ । ୮ ।

ସୁମୁଖୀ ସଜନୀ ମିଳି ଜେମା ଅନୁରାଗ ଭଲି
ନୃପନନ୍ଦନଙ୍କୁ ଛଳି ଚତୁରି ଏ ପଞ୍ଜିକାଏ ଦେଲେ ଗୁଳି । ୯ ।

ଚ୍ୟୁତାକ୍ଷର ଗୀତେ କାହ୍ନ ଲେଖିଲ କେଉଁ ସୁମୁହାଁ
ବରଷାରେ ତରଙ୍ଗିଣୀ ମ୍ଳାନରଲ୍ ପ୍ରମୋଦେ ଅସାର ପାଇ । ୧୦ ।

କେ ଲେଖେ ଶରତ ତୋଷେ ସରସୀ ସାରସେ ଦଶେ
ଶ୍ରବଣା! ବାନ୍ଧବ ସୁରଙ୍ଗ ସୁସଙ୍ଗ ସୁମନା ହସଇ ରସେ । ୧୧ ।

କେ ବୋଲେ ହେମନ୍ତ ଆମେ ‘କ୍ଷ ରଙ୍ଗେ କୃଶ ଧବସେ
ଲୁଚାର ଏକାନ୍ତ କେଦାର ସ୍ୱଭାବେ ବରଷି କାକର ଦଶେ’ । ୧୨ ।

କେ ଶୀତ ଖ୍ରୀତ ପ୍ରକାଶେ ‘ବହେ ଜଉର ବଶେଷେ
ପଲ୍ଲବ ଖସଇ ସ୍ୱଭାବେ ଶୀତରେ; ତରୁରୁ ସୁଦୃଷ୍ଟି ବାସେ’ । ୧୩ ।

ବସନ୍ତେ ଚାନ୍ଦ୍ର କେ କହେ ‘ମଳୟ ଧୀରେ ବମୋହେ
ସୁମନା ବାସଇ ଭ୍ରମର କାମରେ କାତର ସ୍ୱଭାବ ବହେ’ । ୧୪ ।

ଲେଖେ କେ ଭବ କାଗୁର ‘ଗ୍ରୀଷମ ମୂରନ୍ଧ ଧର
ପ୍ରଖର କିରଣ ସ୍ମରଣ ଅଶାରେ ମଳୟ ନୀରେ ଅବର’ । ୧୫ ।

---

୧୦ମ ପଦଠାରୁ ୧୫ଶ ପଦ ଚ୍ୟୁତାକ୍ଷର—ଏଥିରେ ପ୍ରତ୍ୟେକ ପାଦର ପ୍ରତ୍ୟେକ ଶବ୍ଦର ମୂଳ ଅକ୍ଷର ଚ୍ୟୁତ ହେବ ।

୧୦ । (ଚ୍ୟୁତାକ୍ଷରରେ) ରସାରେ ରଙ୍ଗିଣୀ ସରଇ । ମୋଦେ (ଅନନ୍ଦରେ) ସାରଇ (ଶାରିଲେଣି) ।

୧୧ । ଉସି ରସେ ମେ ବଣା, ଧବରଙ୍ଗ ସଙ୍ଗ ମନାସଇ ସେ ।

୧୨ । ରଙ୍ଗେ ସ (ଶଜ୍ୟା) ବଶେ ଚରକାଳ ଦାର ଭାବେ, ରସିକର ସେ (ଅର୍ଥାତ୍ ସେ ଆପଣଙ୍କର) ।

୧୩ । ହେ, ତସ୍ୱସେ (ଭୟ ହସ୍ତରେ) ସେ ଲବ (ଖୁବ୍ ଅଳ୍ପ ସମୟ) ସଇ ( ସହ୍ୟଭାବେ ) ତରେ । ରୁରୁଦୃଷ୍ଟି ସେ (ହରିଣନୟନା ଅଟେ) । ସର୍ବଦା ସେ ଚକିତ ଅଛି ଓ ଖୁବ୍ ଅଳ୍ପ ସମୟରେ ଆପଣଙ୍କର ସ୍ନେହ ଭାବ ଭୟମୁକ୍ତ ହେଉଅଛି ।

୧୪ । ଲୟରେ ମୋହେ । ମନାସଇ ମରମରେ ତବ ଭାବ ହେ । ଅର୍ଥାତ୍ ସେ ଆପଣଙ୍କୁ ଧ୍ୟାନ କରିଅଛି; ସେ ହୃଦ ମଧ୍ୟରେ ଆପଣଙ୍କ ଭାବକୁ ଇଚ୍ଛା କରୁଅଛି ।

୧୫ । ସମ ରନ୍ଧ ଧର । ଖର ରଣରଣ (କନ୍ଦର୍ପ) ସାରେ (ସାରିଦେଉଛି); ଲୟରେ ବର (ବରକୁ) ଅର୍ଥାତ୍ ଆପଣଙ୍କୁ ଏକାଗ୍ରରେ ଭାବୁଅଛି ।

୧୬ଶ ପଦଠାରୁ ୧୯ଶ ପଦ । ଦତ୍ତାକ୍ଷର—ଏଥିରେ ପ୍ରତ୍ୟେକ ପଦରେ ପ୍ରତ୍ୟେକ ଶବ୍ଦର ମୂଳ ଅକ୍ଷରମାନଙ୍କରେ ଯଥାକ୍ରମେ ବନ୍ଧନୀରେ ଥିବା ଅକ୍ଷରମାନଙ୍କୁ ଲଗାଇ ଅର୍ଥ କରିବାକୁ ହେବ ।

ସାଧାରଣ ଅର୍ଥରେ ଯଥାକ୍ରମେ ଗଣେଶ, ଭାସ୍କର, ଶିବ ଓ ଦୁର୍ଗାଙ୍କର ସ୍ତବ । ଦତ୍ତାକ୍ଷରରେ ନାୟିକା ସମ୍ବନ୍ଧରେ ସଖୀମାନଙ୍କର ନାୟକଙ୍କ ନିକଟକୁ ସମ୍ବାଦ ।

ଙ୍କେ ଲେଖିଲା ଦଣ୍ଡାକ୍ଷର ସ୍ତବ ଗଣେଶେଶ ନ୍ୟସ୍ତର
(ଭ୍ରା) ବିନାୟକ (ଅ) ଖଙ୍ଗ (ସ୍ମୁ) ଉନ୍ତ (ର) ମଣିଭଦ୍ର (ଦା) ଶିର
(ଘା) ଗରେ (ଅ) ବଧ୍ନେ (ବ୍ର) ହର । ୧୬ ।
(ଆ) ଗ୍ରହପଉ (ସ୍ମୁ) ଦନଙ୍କର (ବ) ବାହ (ଆ) ବାହନେ (ସ୍ମୁ) ଅଦାର
(ସ୍ମୁ) ପଦ୍ମଗୀବାଙ୍କ (ଅ) ହେ (ବ୍ର) ହର (ସ୍ମୁ) ଉଦ୍ଧର
ଲେଖିଲା ଚେ ଗ୍ରମାକର । ୧୭ ।
ହୋଇ ଙ୍କେ ଶିବେ ଲୋଲୁପ ସ୍ତବେ ବହୁଲ ଅଳାପ
(ସ୍ମୁ) ଗୋବଜା (ଆ) ସୁରତରଙ୍ଗିଣୀ (ଅ) ବର (ସ୍ମେ) ହେ
(ର) ମହାଦେବ (ଅ) ବଳା (ସଂ) ଛାପ । ୧୮ ।
(ସ୍ମ) ରୂପେ (ନି) ଭୁବନମୋହନୀ (ସ୍ମୁ) ଷୋଡ଼ଶୀ (ସ୍ମୁ) ଶ୍ୟାମା (ଶ୍ୱ) ଯୋଗିନୀ
(ସ) କାତରେ (ଖୋ) ଯେ (ଅ) ଧୀରେ (ସ) କାମେ (ଜ୍ଞ) ଧର
(ର) ତାରେ, ସ୍ତବେ ଙ୍କେ ଶିବଭାମିନୀ । ୧୯ ।
ରମା ରସ ଗ୍ରମ ଲବେ ପୁଜା ଗାଅ ସୁରଶିରେ
ଚତୁର୍ଥ ସଖୀ ଙ୍କେ ଲେଖିଲା ସୁପଦ ଚ୍ୟୁତ ଦଣ୍ଡାକ୍ଷର ଭାବେ । ୨୦ ।
ମଣି ରହେ ହର ଗଳେ ତାକୁ ବରେ ଗ୍ରବେ କାଳ
ପଞ୍ଚମ ସଖୀ ଙ୍କେ ଲେଖିଲା ଏ ପଦ ଦଣ୍ଡାକ୍ଷରେ ଚ୍ୟୁତାକ୍ଷରେ । ୨୧ ।
[ ରମଣି ବିରହେ, ବିହର ଯୁଗଳେ ଲତାକୁ ଭାବରେ ବଭାବେ ବିକାଳେ
ରମ ଗାର, ବହ ଯୁଗ ଲତା, ଭାବ ବଭାବକା ]

---

୨୦ଶ ପଦ ଚ୍ୟୁତଦଣ୍ଡାକ୍ଷର—ଏଥିରେ ପ୍ରତ୍ୟେକ ଶବ୍ଦ ଯୁକ୍ତାକ୍ଷର ହୋଇଅଛି । ଏ ଶବ୍ଦ-ମାନଙ୍କର ମୂଳ ଅକ୍ଷରମାନଙ୍କୁ ଉଠାଇ ଯେଉଁ ଯେଉଁ ଏକ ଏକ ଅକ୍ଷର ରହିବ, ସେମାନଙ୍କ ପରେ ସେହି ସେହି ଅକ୍ଷରମାନ ଏକ ଏକ କରି ଯଥାକ୍ରମେ ଦେବାକୁ ହେବ ।

ଏହାପରେ ଚ୍ୟୁତଦଣ୍ଡାକ୍ଷର କଲେ—ମାରଶରମର (କନ୍ଦର୍ପଶରବିଦ୍ଧ ହୋଇଅଛି) । ବେଳ ଯାଯୁ ଅପା (ଆମ୍ଭର ସଖୀ କପର ସମୟ କଟାଇ ଦେଉ) । ରସୁ ବେଶି (ଆପଣଙ୍କ ସଙ୍ଗରେ କପଟ ବେଶି ରସାବସ୍ଥ ହେଉ) ଅର୍ଥାତ୍ କନ୍ଦର୍ପଶରରେ ମୃତପ୍ରାୟ ହୋଇଅଛି ଯେ ଆମ୍ଭର ଅପା—ଭଉଣୀ, ସେ ଆପଣଙ୍କୁ ବେଶି ଭଲ ପାଉ ଓ ତାର ସମୟ କଟାଇ ଦେଉ (ଏହି ଅଭିପ୍ରାୟ) । ଏ ପଦ ସାଧାରଣ ଅର୍ଥରେ ଲକ୍ଷ୍ମୀଙ୍କର ବନ୍ଦନା ।

୨୧ଶ ପଦ । ହରଙ୍କ ପ୍ରତି ଭକ୍ତର ଭାବ ସାଧାରଣ ଅର୍ଥରେ ।

ଏ ପଦ ଦଣ୍ଡାକ୍ଷର ଓ ଚ୍ୟୁତାକ୍ଷର ହୋଇଅଛି । ପ୍ରତ୍ୟେକ ପଦ ଯୁକ୍ତାକ୍ଷର । ଏଥିରେ ପ୍ରଥମ ପାଦର ପ୍ରଥମ ଅକ୍ଷରମାନଙ୍କ ପୂର୍ବରେ ଯଥାକ୍ରମେ ର, ବ, ବ, ଯୁ, ଲ, ଭା, ବ ଓ ବ ଦେଇ ପ୍ରଥମରେ ଏକ ଅର୍ଥ ନେବାକୁ ହେବ । ପୁଣି ସେହି ଛନ ଛନ ଅକ୍ଷରବିଶିଷ୍ଟ ପଦ-ମାନଙ୍କର ପ୍ରାନ୍ତ ଅକ୍ଷରମାନ ଲୋପ କରି ଆଉ ଗୋଟିଏ ଅର୍ଥ ବୁଝିବାକୁ ହେବ । ଉକ୍ତ ପଦ ତଳେ ବନ୍ଧନୀରେ ସେହି ନୂତନ ହୋଇଥିବା ଗୀତ ଦିଆ ଯାଇଅଛି । କିନ୍ତୁ ତାହା ଏହି ଛନ୍ଦର ପଦ ରୂପେ ଧରା ଯାଇ ନାହିଁ । ବୁଝିବାକୁ କ୍ଲିଷ୍ଟ ହୋଇଥିବା ଯୋଗୁ ଗୀତ ମଧ୍ୟରେ ଦିଆ ଯାଇଅଛି ।

ଦତ୍ତ ଚ୍ୟୁତାକ୍ଷର ଘେନ ଛନ୍ଦ ଗୋମୂତ୍ର ବିଧାନ
କେ ବଧୂବଦନା ଚତୁରେ ସୁପଦ ଲେଖିଲୁ କର ଯତନ । ୨୨ ।
ରବି ତୋଷଇ ନଳିନ ଅସାରେ ଗୃତକ ମନ
ଦେଖି ଘନ ଶିଖୀ ହୁଏ ଯଥା ସୁଖୀ ତଥା ସ୍ୱମେ କରେ ଧ୍ୟାନ । ୨୩ ।
[ଛବି ଦଶଲ ମଳିନ ନାଶାରେ କେତକୀ ଘେନ
ସଖୀ ମନ ଶୁଖିଯାଏ କଥା ଦେଖି ବ୍ୟଥା କାମେ ସାର ମାନ । ]
ଅପବର୍ଗ ଏହି ଘେନ ଲେଖେ କେ କର ଯତନ
ହର ଭଙ୍ଗ ପ୍ରେମେ ତେଜ ମଦ ମୋହେ ବିଦେହ କରି କାଧନ । ୨୪ ।
କମ ଯୁକ୍ତାକ୍ଷର ଚ୍ୟୁତ କର କେ ଲେଖିଲୁ ଗୀତ
ବିରହେ ଭଜନ୍ତ ମାଧବ କଂକଗ୍ରି ସ୍ୱଭାବରେ ସ୍ୱନ୍ତତ । ୨୫ ।
କାଟି ନାଗବନ୍ଧ ଏବେ ଲେଖିଲେ ପଦ ଅନେକ
ଆଠ ଅକ୍ଷର ଯା ତହିଁ ମଧ୍ୟେ ବ୍ୟକ୍ତ କହି ଧୀର ! ତାହା ଦେଖ । ୨୬ ।
ଜମ୍ଭ ଲକ୍ଷ୍ମୀ ନାରାୟଣ କର ତେଜ ଦେବ ! ପାଳନ
ହୁଏ ହେ ! ଅନନ୍ତ ଶୟନ ସାଗରେ ଙ୍କସାଗ ପ୍ରଳୟ ଦିନ । ୨୭ ।
ଧ୍ୟାନ କରି କେତେ ବିଧି ବିଧି ବିଧି ହେ ଅନାଦି,
ନାଭିରୁ ତୋ ଜାତ ପଦ୍ମେ ତୁମ୍ଭେ ବସି ପଦ୍ମାସନେ ଚକ୍ଷୁ ମୁଦି । ୨୮ ।
ରକ୍ଷିବଶ ଭୋ କଂସାରି, କରି ଧ୍ୟାନ କେବା ହରି
ତା' କାନ୍ତ ଦାସ୍ୟ ଅନ୍ତ ନ ପାଆନ୍ତ ଅନନ୍ତ ଶିବ ଶଙ୍କରୀ । ୨୯ ।
ସର୍ବ ଘଟେ ଅଛ ପୂରି ବାମନ କେଶବ ହରି
ହନ୍ତି ଲକ୍ଷେ କାମ କେତେ ଦଶ ରମ୍ୟ ସାଧନ ବିନା କେ ହେବ । ୩୦ ।
ବିଷ୍ଣୁ ମୁଁ କେବଳରେ କଷ୍ଟୀ ବଳିବ ପକାଇ ଦୃଷ୍ଟି
ଭକ୍ତ ବାରଣଙ୍କୁ ନକ ଘଟ ନାଶୁଁ କି ଦେଇ କରିବ ତୁଷ୍ଟି । ୩୧ ।
ସଦା ଶଙ୍ଖ ଗଦା ଚକ ପଦ୍ମ ହରଇ ବିବେକ
ମାଧବ ! ସନ୍ତତ ରମା ରଙ୍ଗେ ରତ ଭୂଷଣରେ ପୂର୍ଣ୍ଣ ବକ୍ଷ । ୩୨ ।

---

୨୩ ପଦ । ଦତ୍ତ ଚ୍ୟୁତାକ୍ଷର ଓ ଛଳ ଗୋମୂତ୍ର ଛନ୍ଦ ହୋଇଅଛି ।

୨୩ଶ ପଦରେ ଦତ୍ତ ଚ୍ୟୁତାକ୍ଷର କଲେ ଯାହା ହେବ, ତାହା ତଳେ ବନ୍ଧନୀ ମଧ୍ୟରେ ଦିଆଯାଇଅଛି । ଏହା ପୂର୍ଣ୍ଣ ଗୋମୂତ୍ର ଛନ୍ଦ ନ ହୋଇ ଛଳ ଗୋମୂତ୍ର ଛନ୍ଦ ହୋଇଅଛି ।

୨୪ଶ ପଦ । ପଦରୁ 'ପ' ବର୍ଗ ଚ୍ୟୁତ କଲେ 'ହରଙ୍କ (କନ୍ଦର୍ପ) ତେଜ ଦହେ ଦେହ କରି କାଧନ' ହେବ ।

୨୫ଶ ପଦ । ଏ ପଦର ପ୍ରତ୍ୟେକ ପଦରୁ ପ୍ରଥମେ ମୂଳ ଅକ୍ଷରମାନ ଚ୍ୟୁତ କଲେ ଏକ ଅର୍ଥ ହେବ—ପୁଣି ଯେଉଁ ନୂତନ ପାଦ ହେଲା, ତାହାର ପ୍ରତ୍ୟେକ ପଦର ମୂଳ ଅକ୍ଷର ଚ୍ୟୁତ କଲେ ଆଉ ଗୋଟିଏ ଅର୍ଥ ହେବ ।

୨୬—୩୨ଶ ପଦ । ନାଗବନ୍ଧ । ଏଥିରୁ 'ହେ (ହେ ନାଗର) ସୁକାନ୍ତ ପଦେ ସଙ୍ଗୀ' ବାହାରିବ ।



ଦୃଷ୍ଟି ସମୋହେ ତୋ କାନ୍ତି ଲଟକେ ନ ଜାଗଇ ରତି
ବଳି ଦଳା ନାହିଁ ନାହିଁ କନ୍ଦୁ ମାୟା ହେ ହର ମୋ ହଜା ଧୃତି । ୩୩ ।
ବଢ଼ ସଦୟ ତୁ ନାଥ, ମୁଁ ତାକେ ଶୋକ-ଯୁକତ
ନରକ ଭକ୍ଷଣ ନାଶ ମିଳୁ ଗତ ସଦା ବୀଜେ ବୀଶପନ୍ନ । ୩୪ ।
ବହୁ ହେ ଭାବେ ଶ୍ରୀବତ୍ସ ନାଥ ସହ ଅଦଭୁତ
ରଖ ଅନେକଙ୍କୁ କ ଭାବ ଲୋକ ହେ ଧ୍ରୁବ ଜାସ୍ ମୁଜ୍ଜ ମିତ । ୩୫ ।
ଲକ୍ଷ୍ମୀ ବାଣୀ ବାମା ଦୁଇ ଦୁଷ୍କ ମାରୁ ମାୟା ବହି
ବଇକୁଣ୍ଠକୁ ବା ବର୍ତ୍ତିବ ନକ ଅଛୁ ଅଶେଷ ବିଷୟ ଯହିଁ । ୩୬ ।
ଶ୍ରମ ଜାଣିବେ ବିଦୁଷ ଧୀରେ ଛନ୍ଦ ହେଲା ଶେଷ
ଶ୍ରୀ ଗୋଲୋକ ବୋଲେ ପଦିକା ପେଷିଲେ ଚନ୍ଦ୍ର ସଖୀଏ ଗଣେଶ । ୩୭ ।

---

ବୀଶ — ଗରୁଡ଼ ।
ଶ୍ରୀବତ୍ସ — ଜଣେ ଭକ୍ତ ବ୍ରାହ୍ମଣ ।

## ୨୭ଶ ଛାନ୍ଦ

ରାଗ—କେଦାରଗଉଡ଼

ଦିନେ ଦିନେ ଉତ୍ତାଧରା ଧର ସଖୀବର,
ନୀର ନୀରଜ ନୟନେ ଲମ୍ପଟ ନାଗର ।
ସଖି ! ସହିଲଣି ବୁଝି,
ବେଳକୁ ବେଳ ବେଦନାନଦୀ ହେଲା ବୁଢ଼ି । ୧ ।
ଜାଣିଥିଲି କି ପ୍ରଣୟ ପ୍ରଭାବ କେମନ୍ତ,
ହେଜି ନ ପାରିଲି ସେତେବେଳେ ସେ ଏମନ୍ତ ।
ସଖି ! ଦେଲଣି ସଢ଼ାଇ,
ନାମରେ ଜଡ଼ାଇ ଚିନ୍ତା-ସରିତେ ବୁଡ଼ାଇ । ୨ ।
ନୟନେ ନାଚୁଛି ତାଙ୍କ ମୋହନ ମୂରତି,
ଶ୍ରୁତିଅଭ୍ୟନ୍ତରେ ଶୁଭେ ମଧୁର ଭାରତୀ ।
ସଖି ! ଦିଅରେ ଭରତି,
ଇନ୍ଦ୍ରଜାଲ ଲଗାଇଲା କି ତାଙ୍କ ପୀରତି । ୩ ।
ପୀରତିକି ଏହା ପୁଣି ଦିଶେ କି ସୁନ୍ଦର,
ଅଳା ଦଣ୍ଡିଲେ ବଳେ ଲଗାଇ ହୃଦର ।
ସଖି ! କି ହେବ ଅଧୀର,
ଜାଣି ପୁଣି କଲେ ତାଙ୍କ ପ୍ରଣୟ ବଧୂର । ୪ ।
ସେବକାକୁ କଲେ ସେ ତ ଏଡ଼କ ନାରାଶ,
ଏ ପୋଡ଼ା କରମେ କେତେ ଭୋଗିବି ପରାସ ।
ସଖି ! କହିବ କାହାକୁ
ହୃଦ ଫାଟିଲେ ହାନି କି ବୁଝାଇ ନାହାକୁ । ୫ ।
ଅନ୍ତରଗତ ବେଦନା ନ ହୁଏ ସମ୍ଭାଳି,
ସରୁ ନାହିଁ ଦିନ ମଲି ଗୁଣି ଭାଳି ଭାଳି ।
ସଖି ! ହେଲଣି ଗୃଢ଼କୀ,
ପରପଞ୍ଚ ପ୍ରୀତି ବଳେ କଲଣି ପାତକୀ । ୬ ।

---

ଧ୍ରୁବ—ସୁନୀତିପୁତ୍ର ଧ୍ରୁବ ( ଏ ଶିଶୁକାଳରେ ତପସ୍ୟାଦ୍ୱାରା ଧ୍ରୁବଲୋକ ପ୍ରାପ୍ତ ହୋଇଅଛନ୍ତି ) ।

ଜାର—ଜାର ଶବର ( ଏ ଶିଥିଳ ଲତାରେ କୃଷ୍ଣ ଶୋଇଥିବା ସମୟରେ ତାଙ୍କୁ ହରିଣ ମନେ କରି ବାଣ ବିଦ୍ଧ କରିଥିଲେ ଓ ଫଳରେ ସେ ସ୍ୱଦେହରେ ସ୍ୱର୍ଗକୁ ଗଲେ ) ।

ବଇକୁଣ୍ଠ—ବିଷ୍ଣୁପୁର, ବିଷ୍ଣୁ ।

---

୨ୟ ପଦ । ସରିତ—ନଦୀ । ୩ୟ ପଦ । ଇନ୍ଦ୍ରଜାଲ—କୁହୁକ ।
୪ର୍ଥ ପଦ । ବଧୂର—ଦୁଃଖିତା, ବିରହିଣୀ ।

ପରମାଦ ହେଲା ଏବେ ହୃଦୟୁ ଭୂଷଣି,
ଧାନୁକୁ ନ ହେଉ ମୋର ଏ ଜାତ ଲକ୍ଷଣ ।
ସଖି ! ଭୁଞ୍ଜିଲି କରମ,
ନାଗର କାହ୍ନିଙ୍କ ପ୍ରୀତି ଏ ଜାତ ଧରମ । ୭ ।
ସରୋବର ବିନା କାହିଁ ଶୋଭେ ତାମରସ,
ମାନସର ତୋଷ କାହିଁ ଲଭଇ ସାରସ ।
ସଖି ! ନ ଲଭି ଭୁବନ,
ଦେଖିଛୁ କେ ରହେ କାହିଁ ମୀନର ଜୀବନ । ୮ ।
ଚନ୍ଦ୍ରିକା ବିନା ଚକୋର ତୋଷଇ କେ ଆନ,
ଜୀବଜୀବ ବିନା ଗତି ଦଶେ ଆନ ଆନ ।
ସଖି ! ମଦନମୋହନ,
କାମ-ପାବକେ ପକାଇ କଲେଣି ଦହନ । ୯ ।
କେଉଁ ପାତକୀ କାହିଁକି ପ୍ରଣୟୁ ସର୍ଜିଲି,
ତାଙ୍କ ପ୍ରେମ ଖୋଜୁଁ ଖୋଜୁଁ ମାନସ ହଜିଲି ।
ସଖି ! ଖୋଜିଲେ ନ ମିଳେ,
ବାସ କଲ ଯାଇ ତାଙ୍କ ଅନୁରାଗ-ବଳେ । ୧୦ ।
କାୟା ବିନା ଛାୟା ସଖି, ରହୁଛି କାହିଁକି ?
ହର ବିନା ହରଣୀର ସୁଗତି ଥାଇ କି ?
ସଖି ! ଯେ ଯାର ଜୀବନ୍ଧା,
ସେବା ଛଡ଼ାଇଲେ କାହିଁ ଛାଡ଼ଇ ସେବନ୍ଧା । ୧୧ ।
ଖେଦ ଛାୟା ଘୋଟି କଲା ଯା ସ୍ୱାନମାନୀକ,
ଅବଳା ପରାଣେ କେତେ ସହିବ ମୁଁ ନିକ ।
ସଖି ! ନିର୍ଲଜ୍ଜ ଜୀବନ,
ସନ୍ତରେ ଅଶାରେ; ନେଇଁ ବୁହଇ ଜୀବନ । ୧୨ ।
ଅମନ୍ଦିଲି ମନ୍ଦଭାଗ୍ୟ ନ ଜାଣି ଲକ୍ଷଣି,
ନାରୀଦମ୍ଭ ଭାଙ୍ଗିଦେଲା ପୀରତି ଦୂଷଣି ।
ସଖି ! ଆଶା ନ ଫଳଇ,
ନୂଆ ଅଙ୍କ ପର ଚିତ୍ତେ କେତେ କି ଭାଳଇ । ୧୩ ।

---

୮ମ ପଦ । ଭୁବନ—ଜଳ ।
୯ମ ପଦ । ଚନ୍ଦ୍ରିକା—ଚନ୍ଦ୍ରକିରଣ । ପାବକ—ଅଗ୍ନି ।
୧୦ମ ପଦ । ବଳ—ଗତି ।
୧୧ଶ ପଦ । କାୟା—ଶରୀର ।
୧୨ଶ ପଦ । ଜୀବନ—ଜଳ; ପ୍ରାଣ ।

ବକ୍ଷ ଶିଳା କଲେ ଧନ ଅବଳା ପାଇଁକି,
ସ୍ନେହକୁ ଅସୁନ୍ଦର ଏ ଦଶର ନାହିଁ କି ?
ସଖି ! ମୋହନୀ ଲଗାଇ,
ଚନ୍ଦ୍ର-ବେଶ୍ମେ ଅଶାଦୀପ ଦେଲେଣି ଜଗାଇ । ୧୪ ।
ଜାଣିବାରେ ଦୋଷ କରନାହିଁ ଅଭାଗିନୀ,
ଏ କି ପ୍ରୀତି ଗୂଢ ମୋହ ବାନ୍ଧବା ସଙ୍ଗିନୀ ।
ସଖି ! ସତ ମନୋରଥ
ଉତ୍କଣ୍ଠୁ ଭାଗ୍ୟକୁ ମନେ ନ ହୋଇ ଭରତ । ୧୫ ।
ଥିଲି ଯାଙ୍କ ଗଳାମାଳା ସେ ହେଲେ ଅନ୍ତର,
ନୟନକୁ ସୁଧା ବରଷି ଦହିଲେ ଅନ୍ତର ।
ସଖି ! ପୀରତିମନ୍ତର
କାମ-ହେତ ଜଗାଇଲ ପୀରତି ମନ୍ତର । ୧୬ ।
ଜୀବନ ଦେବାକୁ ଫାନ୍ଦେ ନ ଜାଣି ପଡ଼ିଲି,
ଘାଣ୍ଟି ହେବାକୁ ନିରତେ ପ୍ରଣୟେ ଜଡ଼ିଲି ।
ସଖି ! ଅବଳାର ମନ
ଜାଣିଲେ କାହ୍ନୁ ଡରନ୍ତା ବିରହ-ଶମନ । ୧୭ ।
କେ ଜାଣିଛୁ ଅଗ୍ନିକଣା ଘନ ବରଷିବ,
ଏଡ଼େ ବଡ଼ ପାରାବାରେ ଲବଣ ମିଶିବ ।
ସଖି ! ବାଡ଼ବାଗ୍ନି ଜାତ
ଜଳୁଁ ହେବ ଗଗନରୁ ପୁଣି ଉଲ୍କାପାତ । ୧୮ ।
କାହ୍ନରେ କରମେ ହେବ ବହୁତ ଦୂଷଣ,
କାହିଁକି କି ଯୋଗେ କଲ ନୟନ-ଭୂଷଣ ।
ସଖି ! ସୁଷମାସଦନ
ମଦନମଦବର୍ଦ୍ଧନ ସିତାଂଶୁବଦନ । ୧୯ ।
କାଣି ପୁଣି ଗୁଣମଣି ଦେଲେଣି ପକାଇ,
ମଧୁରେ ଶୋଭା ଦେଖାଇ ପ୍ରଣୟେ ଡକାଇ ।
ସଖି ! କଲେ କି ବିହିତ,
ସ୍ନେହ ଅନଳରେ ପିଣ୍ଡ ଦେଲେ ଯା ଦହି ତ । ୨୦ ।

---

୧୪ଶ ପଦ । ଶିଳା—ପଥର । ବେଶ୍ମ—ଗୃହ ।
୧୫ଶ ପଦ । ମନୋରଥ—ଇଚ୍ଛା ।
୧୬ଶ ପଦ । ସୁଧା—ଅମୃତ ।
୧୮ଶ ପଦ । ଘନ—ମେଘ ।
୧୯ଶ ପଦ । ସିତାଂଶୁ—ଚନ୍ଦ୍ର ।
୨୦ଶ ପଦ । ଅନଳ—ଅଗ୍ନି ।

ଏ ପନ୍ନଗୀ ଗୀତରସେ ବିକଳ୍ପ ମୂର୍ଚ୍ଛି ତ,
ମୋଷିଥିଲା ଅଶା ଏବେ ବେଞ୍ଚଗଲି ଅଦ୍ଭୁତ ।
ସଖି ! ଦାସୀ ଯା ସହୁଲ,
ଦବ୍ୟ ଅବଧାନେ ବୃନ୍ଦାମଣୀ ତ ନୋହୁଲ । ୨୧ ।
ଝାଞ୍ଜିଲେ ଝାଞ୍ଜି ନୁହଇ ଏ ପାପ ପୀରତି,
ଛନ୍ଦରେ ଦନ୍ଧି ଅର୍ଜିଲେ କେମନ୍ତ କୀରତି,
ସଖି ! ବାଳା କି ନାଗର—
ହୃଦୟ ଜାଣିବ କେଡ଼େ ଅଗାଧ ସାଗର । ୨୨ ।
ଚନ୍ଦନବୃକ୍ଷରେ ବାସ ଭୁଜଙ୍ଗ କରଇ,
ଜାଣି କି ଭକତ ମନ ତାହା ନ ବରଇ ?
ସଖି ! ଭୁଜଙ୍ଗ ଦଂଶନ,
ହେଲେ ହେଉ ବିଭୂଷିବେ ଯାଉ ମୋ ଦୂଷଣ । ୨୩ ।
ନ ଘେନଇ ବୋଲି ଦେଲେ ଗୁଡକୁ ପଥର,
ମୂଦିଲେ ନୟନ ଶୋଭା ହୃଦେ ଅଣେ ଥର ।
ସଖି ! ତରଳନ୍ତି ମତି,
ଉଚିତେ ଯାହା କରନ୍ତୁ ବିଧାନେ ସୁମତି । ୨୪ ।
ଜୁହାର ନ କଲି ଥାଇଁ ପୀରତିକି ଦୂରେ,
ଅବଳା କୋମଳ ପ୍ରାଣେ ମାରଇ ଭଦୁରେ ।
ସଖି ! ଏ ଗୃତକୀ ଜୀବ,
ଘନଲୋଟେ ଅଗ୍ନିକଣା ଭକ୍ଷିଗଲେ ଯିବ । ୨୫ ।
ଭାଙ୍ଗି ବନ୍ଧ ସଖି ନୀର ଯାଇଅଛି ବହି,
ଦମ୍ଭ ରଖିବି କେମନ୍ତେ କି ଭାବନା ବହି ।
ସଖି ! ଅଶା ଯାଏ ମରି,
ଥର ଥର ଚିତ୍ତ ବନ୍ଧୁ ପୀରତି ସୁମରି । ୨୬ ।
ଘାରିବା ପାଇଁ ଅବଳା ଗଢ଼ିଛି ଦଇବ,
ଅନୁଗତା ବିନା କିଏ ବିପାକ ସହିବ ।
ସଖି ! ନାଗରମଣି କି,
ଜାଣି ଶୁଣି ଦେଲେ ପେଲି ଅଗାଧ ପାଣିକି ? । ୨୭ ।

---

୨୨ଶ ପଦ । ଅଗାଧ ସାଗର—ଅଥଳ ସମୁଦ୍ର ।
୨୩ଶ ପଦ । ଭୁଜଙ୍ଗ—ସର୍ପ, ଲମ୍ପଟପୁରୁଷ ।
୨୪ଶ ପଦ । ଥର—କମ୍ପ ।
୨୫ଶ ପଦ । ଭଦୁର—ବକ୍ର ।

ନିଜ ଗୁଣ ନ ଛାଡ଼ିଲା ମରାଳେ ନୂପୁର,
ମନ ନ ଛାଡ଼ଇ ତାନ୍ତ କମଳ ପୟୂର ।
ସଖି ! ସ୍ୱପନରେ ବନ୍ଧୁ,
ଦେଖାଇ ଯାଉଛନ୍ତି ତାଙ୍କ ମୁଖପଦ୍ମ ଇନ୍ଦୁ । ୨୮ ।
ବହିଲି କେଉଁ ଦାରୁଣ ପୀରତି କଷଣ,
ଦାରୁ ହୋଇ ଅବଳାକୁ ଅରଜେ ଦୂଷଣ ।
ସଖି ! ପ୍ରଣୟିନୀ ଜନ,
ମନ ବୁଝିବାକୁ କଏ ସଂସାରେ ଭାଜନ । ୨୯ ।
ଉଚ୍ଛନ୍ନ ଗଲା ମାନସ କାହିଁ ନ ଲାଗଇ,
ଝୁରେ ଯେତେ ଆଶା ତେତେ ହୃଦରେ ଜାଗଇ ।
ସଖି ! ପୀରତି ଦହନ,
ବଳେ ବଳେ ମୋ ପିଣ୍ଡ ଜାଳଣି ଦହନ । ୩୦ ।
କହନ୍ତା କେ ଏ ବେଦନା ବନ୍ଧୁ ଶ୍ରୀଛାମୁରେ,
ଦାସୀକି ବାନ୍ଧିଲେ ଦଣ୍ଡ କେଉଁ ସୁବାହୁରେ ।
ସଖି ! ସେ କରୁଣାନିଧି,
ଫୁଲଶରେ ଘାଣ୍ଟି ହେଲି ଜଳେ କେଉଁ ବିଧି । ୩୧
ବନ୍ଧୁ ଛାଡ଼ି ରହିଛୁ ଏ ନିର୍ଲଜ ଜୀବନ,
ସୁଧାରଖା ରାହୁପରି ହେଲେଣି ବହନ ।
ସଖି ! କଲେ କି କପଟ,
ନ ମେଣ୍ଟିଲା ପାପ ଆଶା ହେଲି ଛଟପଟ । ୩୨ ।
ଏ ମଳା ଶରୀରେ ତାହୁଁ ପଶିବ ପରାଣ,
ନ ଲେଉଟିଲେ ଦୁଃଖିନୀକି ପରାଣପରାଣ ।
ସଖି ! ଦେଲେ ପାଶୋରି କି,
ଏ ତହୁଁ ବଳି କି ଚିନ୍ତା ଅଛି କିଶୋରୀକି । ୩୩
କରି ଶଶୀ ଆଶା ଶଶ ଚେତିଲା ଜୀବନ,
ଲାଞ୍ଛନ ବହିବେ ନାଥ ଗଲେ ଏ ଜୀବନ ।
ସଖି ! କରମ ଲିଖନ,
କାହିଁ ଅରଜିଛି ପୁଣ୍ୟ ହେବ ବିଲେଖନ । ୩୪ ।
ମନ ଆଶା ମନେ ସଖି ଯାଉଛି ମରି ତ,
ଅଭାଗିନୀ କାହିଁ ନାହିଁ ମୋହରି ସରି ତ ।
ଧୀରି ! ଲୋତକରେ ସାନ୍ଦ୍ର,
ପଦ୍ମମଳା ବୋଧେ ଭାଷେ ଶ୍ରୀ ଗୋଲୋକଚନ୍ଦ୍ର । ୩୫ ।

---

୨୮ଶ ପଦ । ନୋପୂର—ଗୁଞ୍ଜର । କମଳ—ପଦ । ପୟୂର—ପାଦ ।
୩୦ଶ ପଦ । ଦହନ—ଅଗ୍ନି, ପୋଡ଼ିବା । ୩୧ଶ ପଦ । ବେଦନା—କଷ୍ଟ । ଫୁଲଶର—କନ୍ଦର୍ପର ବାଣ । ୩୪ଶ ପଦ । ଶଶୀ—ଚନ୍ଦ୍ର । ଶଶ—ଠେକୁଆ । ବିଲେଖନ—ଖଣ୍ଡନ ।

## ୨୮ଶ ଛାନ୍ଦ

ରାଗ ଚନ୍ଦ୍ରାବେଶାକ୍ଷ—(ଉସକୋଇଲି ବାଣୀ)

ଏଥୁଅନ୍ତେ ଘେନ ମଧୁର ରସ, ବୈରାଗୀ ନ ଲଭିବାରୁ ଜୀବେଶ,
ପ୍ରଣୟିବଧୂର ଅରତ ଭାବ, କଳନା କରି କେ ତାହା କହିବ ।
ଉଦାସ ଭାବ ପ୍ରକାଶି,
ଅରପି ଅଶଙ୍କା ଡାକିଲା ଜୀବନେ ଭାର ମଣେ ମଦାଳସୀ । ୧ ।
ପଞ୍ଜୁରେ ଚଞ୍ଚଳା ବାଳିକା ବଦନେ, କା ଭାବ ସଜନି ! ଭାବୁ ବଜନେ
ମୃଦୁ ମଧୁସ୍ୱରେ ସଙ୍ଗୀତ ଗାଇ, ଗଗନେ ଅନାଇ ଚନ୍ଦ୍ରମାମୁହିଁ !
କା ଭାବେ ହେଲୁ ଅଧୀରୀ,
ଶିଖିଲୁ କାହିଁକି ପ୍ରେମିମା ସ୍ୱର କଲା ଏ ତୋତେ ବଧୂସ୍ଥ । ୨ ।
ନାଥ ନାଥ ବୋଲି ଡାକେ ସୁସ୍ୱନେ, ରଜନୀରେ ଏକ ଡାକିଲୁ ଦୀନେ,
ନ ଘେନିଲୁ ସଙ୍ଗୀ ବୋଧ ଆଦେଶ, କି ଦାରୁଣ୍ୟ କଲୁ ତୁ ମୃଦୁଚିତ୍ତ !
ମାତ୍ରିନୀ ଏ ବାସ୍ୟେ ଉକ୍ତ,
କି ମୋହିନୀ ମନ୍ତ୍ରେ ମୋହିଲା ଏ ତୋତେ ସଖୀଙ୍କ ବୁଦ୍ଧି ହଜାଇ । ୩ ।
ଅନାଇ ତରୁକୁ ଗଣୁ ଛନ୍ଦନ, ମୁକୁରେ ନିରେଖୁ ଚନ୍ଦ୍ରବଦନ,
ଛନକା ପଶିଲା ପରି ତୋ ଚିତ୍ତେ, ବିଚଳିତ କରୁ ମତ୍ତ ନାଭରେ ।
ରାଜସୂତଛବି ଗୃହିଁ,
ସ୍ୱପନ ଅନନ୍ଦେ ମଜ୍ଜିଲୁ କାହିଁକି ଧାରି ହେଉ ମୃଦୁମୁହିଁ । ୪ ।
ପୁଞ୍ଜୁ ମତ୍ତେ ଫୁଲ ଚଡକ ଉଦ୍‌ବେଗେ, ପିନ୍ଧାଉ କୁସୁମ ଦାମ ସୋହାଗେ,
ଭାବି ଭାବି ଗଲା ଭୁଲିଲୁ ଜୀବ, ପରାଣବନ୍ଧୁଙ୍କ ବାରତା ଦେବ ।
ଲୋତକ ବର୍ଷିଲୁ ପକ୍ଷି !
କନ୍ଦାଇଲୁ ସିନା ଅଳଙ୍କୁ ତୋହର କାହିଁକି ସରୁ ମୃଗାକ୍ଷି । ୫ ।
ଜାଣି କେତେ ପୁଚ୍ଛ ଅଧୀର ଭଣେ, ବିରହ ବେଦନା ଯେ ଜାଣେ ଜାଣେ,
ଜଣାଥିଲେ ସଖି ଉକ୍ତ ସୁତତ୍ତ୍ୱେ, ଲଭିବି ଜୀବନେ ଶାନ୍ତି କେମନ୍ତେ ?
କରିବି କି କି ଧରମ,
କଲେ କି କରମ ନ ହେବ ସଜନି ! ଭବେ ପୁନର ଜନମ ? ୬ ।
ଚଞ୍ଚଳା ଭଣିଲା ଜାଣେ ପିତଣି ! ମନେ ବଇରାଗ୍ୟ ଜାତ କଲୁଣି,
ପତିପ୍ରେମପ୍ରାପ୍ତି ନାହିଁର ଶାନ୍ତି, ଧରମଟି ପତି ସେବା ପ୍ରାପତି ।
ନିଷ୍ପପତ୍ନୀ ସାଧନ,
ବିଚ୍ଛେଦରେ ପତିଭୂତ ଅନୁଭୂତ ଅଟଇ ପ୍ରେମ ପରମ । ୭ ।

---

୪ର୍ଥ ପଦ । ଛନ୍ଦନ—ପକ୍ଷ ।
୫ମ ପଦ । କୁସୁମଦାମ—ଫୁଲହାର । ବାରତା—ବାର୍ତ୍ତା, ସମ୍ବାଦ । ସରୁ—ଘାଣ୍ଟି ହେଉ ବା ଆଖି ହେଉ ।

ଇନ୍ଦ୍ରିୟନିଗ୍ରହ ଅସ୍ତେୟ କ୍ଷମା, ଧୀ ସତ୍ୟ ଅକ୍ରୋଧ ବିଦ୍ୟା ଉତ୍ତମା,
ଦମ ଧୃତି ଶୌଚ ଧର୍ମ ଲକ୍ଷଣ, ଶାସ୍ତ୍ର ଅଛୁ ଅଦ୍ୟା ମତେ ଘେନ ।
ସୁଖ ଦୁଃଖ ସାମ୍ୟଭାବ,
ପ୍ରକୃତ ସୁଖ ଏ ଜଗତରେ ସଖି ! କ୍ଷଣିକରୁ ତା ଉଦ୍ଭବ । ୮ ।

କାମ କ୍ରୋଧ ବେଗ ଯେ ଅଜୀବନ, ସହିଯାଏ ଏଥି ଯୋଗ୍ୟତା ଘେନ,
ହେଲେ ଅଷ୍ଟାଦଶ ଦୋଷବିହୀନ, ଶାନ୍ତିନିକେତନ ହୁଅଇ ମନ ।
ଆଚରିଲେ ବ୍ରହ୍ମଚର୍ଯ୍ୟ,
ହୁଏ ଈଶପ୍ରେମ ଲାଭ, ଯାଏ ଜଣା ଆନ ଯେ ଜଗତେ ତ୍ୟାଜ୍ୟ । ୯ ।

ଅପୂର୍ବ ଶୁଣ ଗୋ ଧୀର ରତନ ଚିନ୍ତା ତ ବିଧିର କର୍ମ ନିଦାନ,
ସୁଖରେ ଆକାଙ୍କ୍ଷାରହିତ ଭାବ, ଦୁଃଖରେ ବିରାଗଶୂନ୍ୟ ସ୍ୱଭାବ ।
ବୋଲାଏ ପ୍ରକୃତ ଶାନ୍ତି,
ଏ ନିଷ୍କାମଭାବେ ଶାନ୍ତିରୁ ପ୍ରଣୟ ପ୍ରଣୟରୁ ପୁଣି ଶାନ୍ତି । ୧୦ ।

ମଦ୍ୟ ମାଂସ ମତ୍ସ୍ୟ ମୁଦ୍ରା ମୈଥୁନ କହିଲେ ଧୀରେ ପଞ୍ଚ ମକାର ଘେନ,
ପୁନର୍ଜନ୍ମ ନୋହେ ସଂସାରେ ସଖି ! ଆତ୍ମସମର୍ପଣେ ଏ ଭାବେ ଦେଖି ।
କହିଲି ଘେନ ସୁଚିତ୍ତେ,
ପ୍ରଣୟ ବିନା ନ ସମ୍ଭବେ କଦାପି ପ୍ରଣୟସାର ଜଗତେ । ୧୧ ।

ପ୍ରଣୟ ପ୍ରଣୟ ହୁଏ ସ୍ଥାପିତ, ପ୍ରଣୟେ ଜୀବନ ନିତ୍ୟ ଶାଶ୍ୱତ,
ପ୍ରଣୟ ଆନନ୍ଦମୟ ଅଟଇ, ସତୀପ୍ରେମ ପ୍ରେମଧର୍ମକୁ କହି ।
ପତିବ୍ରତା ଭାବ ପାଇ,
ପ୍ରଣୟ ଭାବକୁ ବୁଝନ୍ତି ସେ ଗୋପାଙ୍ଗୀ ରାଧାଙ୍କ ସେହି ବୈଭବ । ୧୨ ।

---

୯ମ ପଦ । ଅଷ୍ଟାଦଶ ଦୋଷ—
ମୋହସ୍ତନ୍ଦ୍ରା ଭ୍ରମୋରୂକ୍ଷରସତା କାମଉଲ୍ବଣଃ
ଲୋଲତା ମଦମାତ୍ସର୍ଯ୍ୟେ ହିଂସାଖେଦପରିଶ୍ରମଂ ।
ଅସତ୍ୟଂ କ୍ରୋଧ ଆକାଂକ୍ଷା ଅଶଙ୍କା ଚିତ୍ତ ବିଭ୍ରମଃ
ବିଷମତ୍ୱଂ ପରାପେକ୍ଷା ଦୋଷା ଅଷ୍ଟାଦଶୋଦିତାଃ ।

୧୧ଶ ପଦ । ମଦ୍ୟ—ଯଦୁକ୍ତଂ ପରମବ୍ରହ୍ମ ନିର୍ବିକାରଂ ନିରଞ୍ଜନଂ
ତସ୍ମିନ୍ ପ୍ରେମଦନଜ୍ଞାନଂ ତନ୍ମଦ୍ୟଂ ପରିକୀର୍ତ୍ତିତଂ ।
ମାଂସ—ମାଂ ସନୋତି ହି ଯତ୍‌କର୍ମ ତନ୍ମାଂସଂ ପରିକୀର୍ତ୍ତିତଂ
ନ ଚ କାୟପ୍ରତୀକନ୍ତୁ ଯୋଗିଭିର୍ମାଂସମୁଚ୍ୟତେ ।
ମତ୍ସ୍ୟ—ମହାମାନସବର୍ତ୍ତୁତେ ସୁଖଦୁଃଖାଦମତ୍ପ୍ରିୟେ
ଇତି ଯତ୍ ସାତ୍ତ୍ୱିକଂ ଜ୍ଞାନଂ ତନ୍ମତ୍ସ୍ୟଂ ପରିକୀର୍ତ୍ତିତଂ ।
ମୁଦ୍ରା—ସତ୍‌ସଙ୍ଗେନ ଭବେନ୍ମୁକ୍ତିରସତ୍‌ସଙ୍ଗେଷୁ ବନ୍ଧନଂ
ଅସତ୍‌ସଙ୍ଗମୁଦ୍ରଣଂ ଯତ୍ ତନ୍ମୁଦ୍ରା ପରିକୀର୍ତ୍ତିତାଃ ।
ମୈଥୁନଂ—କୁଳକୁଣ୍ଡଳିନୀଶକ୍ତିର୍ଦେହିନାଂ ଦେହଧାରଣାଂ
ତସ୍ୟା ଶିବସ୍ୟ ସଂଯୋଗେ ମୈଥୁନଂ ପରିକୀର୍ତ୍ତିତଂ ।

ସେତେବେଳେ ଯନ୍ତ୍ରଣା ଜଗତେ ବାନ୍ତ । କେ ନୋହେ ବିରହ ସଙ୍ଗତେ ତୁଳା,
ନିଷ୍କାମ ଭକ୍ତିରେ ସେ ପୂତମୟ, ପରଖି ସ୍ନେହକୁ କରେ ପ୍ରଣୟ,
ପଡ଼ିରେ ମଜ୍ଜିଲ ଧନୀ !
ସରଳ ଜୀବନେ ପ୍ରଣୟ ସର୍ଜିଲ ଘୋର ହେଲା ଜିତମ୍ନିଜ । ୧୩ ।
କସ୍ତୁରୀ ପରାୟେ ତୋ ଗୁଣରାଶି, ନ ଲୁଚି ଅମୋଦ କରେ ଅବେଶି ।
ଦହନ୍ତହର ଦୁଃଖ ମରୁଭୂମି, ଭ୍ରମୁଛୁ ଯା ପ୍ରେମେ ସତତ ଭ୍ରମି ।
ତାର ଦ୍ୱିଧା ଶଙ୍କା ମତ,
ହତାଶ-ଆଶ୍ୱାସ-ପରାଣରେ ତୋର ଢାଳଦେବ ନବ ଭୂତ । ୧୪ ।
ସନ୍ଦେହ ବିଶ୍ୱାସେ ନ ହୁଅ ଘାର, ପ୍ରେମର ପ୍ରଭାବ ନୋହେ ସେପର,
ବିଶ୍ୱାସ ପ୍ରଣୟବୀଜ ଅଟଇ, କୋପଦୃଷ୍ଟି ତିକ୍ତ ତାଚ୍ଛଲ୍ୟ ନାହିଁ ।
ପରସୁଖ ଲଗି ଜାତ,
ଜନ୍ମିଲେ ପ୍ରଣୟ ଦୁଃଖ ସବୁକାଳେ ସୁଖେ ହୋଏ ପରିଣତ । ୧୫ ।
ଯୋଗ ଧ୍ୟାନେ ଯାହା ନୋହେ ସୁଦେହା, ପ୍ରଣୟେ ଅନାୟାସେ ଲବ୍ଧ ତାହା,
ଭକତ କତକ ସ୍ୱଚ୍ଛନ୍ଦେ ମିଳେ, କାର୍ପଣ୍ୟ ବିନୟ ସେବାର ଫଳେ ।
ପ୍ରୀତିକି ଦୂର ଅଦୂର,
ସମାନ ସର୍ବଦା ବାତାୟୁ-ପ୍ରେକ୍ଷଣି ! ଏଥକୁ ଚିନ୍ତା କି ତୋର । ୧୬ ।
ହସ ହସ ହୋଇ ରସମଞ୍ଜରୀ, ଅସିଲ ଭଣିଲ "କି ଗୋ କିଶୋରି !"
ପରିମଳା ରାଜପୁରେ ପ୍ରବେଶ, ବଦନେ ବିକାଶ ହାସ ହରଷ ।
ଚଞ୍ଚଳା ଧର୍ମରେ କାହିଁ,
ନାନା ଭାବ ଭାବି ବସେ ଇନ୍ଦୁରେଖା ପରିମଳା ମିଳେ ତହିଁ । ୧୭ ।
ଏଥୁ ଅନ୍ତେ ଘେନ ରସ ସାଧବ, ହସି ପରିମଳା ବୋଲଇ ଜବ,
ଶିଟାଳ ଫିଟାଳ ରାଜନନ୍ଦନ, ବଶୀଭୂତ କଲା ରଙ୍ଗେ ମଦନ ।
ବିଚଳିତ ମତି ସଦା,
ପେଷିଲେ ଉଦନ୍ତ ଦେବାକୁ ବିଧୁର ସୁଚିତ୍ତେ ଘେନ ପ୍ରମଦା । ୧୮ ।
ନ ହେବାକୁ ତୁ ତ ପାଷାଣଗିରି, ହେବାକୁ ଶୋଭାଙ୍ଗି ! ପ୍ରେମପସରି,
ନେବାକୁ ମାନସ ନୃପସୁତର, ଦେବାକୁ ସରସ ବାଣୀ ମଧୁର ।
କରିବାକୁ ପ୍ରେମଦାସ,
ନ ସହାଇବାକୁ ବିରହ ବେଦନା କରାଇବାକୁ ପୌରୁଷ । ୧୯ ।
ଧରାଇଦେବାକୁ ତୁ ସୁଧାକର, ବୁହାଇଦେବାକୁ ଜାହ୍ନବୀ ଧାର,
ଫୁଟାଇ ଭୁଲେକେ ତୁ ପାରିଜାତ, ଲୁଟାଇବାକୁ ତ ମଘବା ବିଭ ।

---

୧୬ଶ ପଦ । ବାତାୟୁପ୍ରେକ୍ଷଣୀ—ମୃଗନୟନା ।

୧୮ଶ ପଦ । ସାଧବ—ପଣ୍ଡିତ । ଉଦନ୍ତ—ଖବର । ବିଧୁର—ଦୁଃଖୀ, ବିରହୀ । ପ୍ରମଦା—ସୁନ୍ଦରୀ ନାରୀ ।

ଛୁଟାଇବାକୁ ବିପଦ,
ଜୁଟାଇବାକୁ ତ ଅମର ଔଷଧ ଲୋଟାଇବାକୁ ବଦେନ୍ଦ୍ର ।୨୦।

ଫାନ୍ଦରେ ଧରାଇବାକୁ ସମୀର, କଣାଇଦେବାକୁ ରଙ୍କେ କୁବେର,
ଦଅଇବାକୁ ତୁ ତ ଅଣିମାଦି, ଶୁଖାଇଦେବାକୁ ପଲକେ ଅବ୍ଧି ।
ଗଣାଇବାକୁ ତାରକା,
ଅଣାଇବାକୁ ତ ଦିଗମ୍ବରଭୂତି ଅନଙ୍ଗେ ଦେବାକୁ ଦକ୍ଷା ।୨୧।

ବଞ୍ଚାଇବାକୁ ତ ପ୍ରଣୟୀ ଜନ, ସଞ୍ଚାଇ ଦେବାକୁ ପ୍ରଣୟଧନ,
ବଢ଼ାଇଦେବାକୁ ରଙ୍ଗ ବିଳାସ, ଘୁଞ୍ଚାଇଦେବାକୁ ବିରହ ତ୍ରାସ ।
ବଞ୍ଚାଇବାକୁ ବିନୋଦେ,
ଭଞ୍ଜାଇବାକୁ ତ ପ୍ରଣୟ ଆୟୁଧ ଖେଳିବାକୁ ପ୍ରମୋଦେ ।୨୨।

ନ ରୋଷାଇବାକୁ କୁସୁମଶରେ, ନ ଭୁଷାଇବାକୁ ସୁମନାବରେ,
ବିଭୂଷାଇବାକୁ ତୃପ୍ତିମାଳରେ କଷାଇବାକୁ ତ ରଙ୍ଗରସରେ,
ପଶାଇବାକୁ ହୃଦୟ,
ବସାଇବାକୁ ତ ପ୍ରେମସିଂହାସନେ ଚଖାଇବାକୁ ଅମିୟ ।୨୩।

ଶ୍ରୁତିରେ ପିଇ ଏ ପୀୟୂଷବାଣୀ ପ୍ରୀତିରେ ନାଚିଲେ ତରୁଣୀମଣି,
ମତିରେ ଖେଳାଇ ଭାବତରଙ୍ଗ, କେତେବେ ବିଳେକ ପ୍ରଣୟୀ ସଙ୍ଗ,
ରତିପତି ଭାବ ବନ୍ଧୁ,
ଭୀତିରେ ଝିଟକି ଅନାଇ ସୁନ୍ଦରୀ ପତି ଧ୍ୟାୟେ ଗୃହମୁହାଁ ।୨୪।

ରସଲେଖା ଏଣେ ହେଲା ପ୍ରବେଶ, ସଖୀଏ ବୋଇଲେ ଆସ ଗୋ ଆସ,
ହସି କହେ ଦୂତି କିପାଁ ସୁଭାଷୀ, ଝାଉଁଳାଇ ଅଛ ବଦନଶଶୀ ।
ନାମ 'ଅନଙ୍ଗମଞ୍ଜରୀ',
ଦେଇଛନ୍ତି ପତି ମତିରେ ବିଚାରି; ଜାଣି ନାହିଁ କି କିଶୋରୀ ।୨୫।

ଉଚ୍ଛୁଳିଲା ଚିତ୍ତ ବାଳାର ଶୁଣି, ଉଚାଟନ କଲା ଅମିୟ ବାଣୀ,
କମଳୟ ମୃଦୁ ପଲ୍ଲବ କରେ, ଦୂତି କର ଧରି ଭାଷେ ଅଧୀରେ,
ଧୀରି ସଶଙ୍କ ବଚନେ,
ଚକୋର କି ସତେ ଚନ୍ଦ୍ରିକା ମାଗଇ ନିଙ୍କ କି ଲୋଡ଼ଇ ଧନେ ।୨୬।

---

୨୦ଶ ପଦ । ସୁଧାକର—ଚନ୍ଦ୍ର । ଜାହ୍ନବୀ—ଗଙ୍ଗା । ମଘବା—ଇନ୍ଦ୍ର । ବିତ୍ତ—ଧନ, ସମ୍ପତ୍ତି । ବଦେନ୍ଦ୍ର—କନ୍ଦର୍ପ ।

୨୧ଶ ପଦ । ସମୀର—ପବନ । ଅଣିମାଦି—ଅଷ୍ଟସିଦ୍ଧି । ଅବ୍ଧି—ସମୁଦ୍ର । ଦିଗମ୍ବର—ଉଲଗ୍ନ, ଶିବ । ଭୂତି—ଐଶ୍ୱର୍ଯ୍ୟ । ଅନଙ୍ଗ—କାମଦେବ । ଦକ୍ଷା—ଭସ୍ମ ।

୨୨ଶ ପଦ । ତ୍ରାସ—ପୀଡ଼ା । କୁସୁମଶର—କାମ । ଅମିୟ—ସୁଧା, ଅମୃତ ।

୨୪ଶ ପଦ । ପୀୟୂଷ—ଅମୃତ । ତରୁଣୀ—ଯୁବତୀ । ତରଙ୍ଗ—ଢେଉ ।

"ଯା ନାମରେ ଶାନ୍ତି ଯାପିତ ପ୍ରାଣେ, ଯା ରୂପ ଦର୍ଶନ ଆନନ୍ଦ ଅଣେ
ଯା ନାମ ଶ୍ରବଣେ ମୋହିତ ଶ୍ରୁତି, ଯା ପ୍ରେମ ତୋଷଇ ମୁମୁକ୍ଷୁ ମତି,
ସୁଖ ଧାମ ଯାର କୀର୍ତ୍ତି,
ସର୍ବ ଶୁଭରେ କି ଅଛନ୍ତି ସୁନ୍ଦର କହ କହ ଶୁଭେ ଦୂତି । ୨୭ ।

ଭସାନ୍ତି ଆନନ୍ଦେ ତପ୍ତ ପ୍ରାଣରେ, ମୃତ୍ୟୁ ସିନ୍ଧୁ ନୀରେ ଶାନ୍ତି ଲିପ୍ସାରେ,
ସାମାନ୍ୟ ସ୍ୱପ୍ନରେ ଏତେ ବିଷାଦ, ଚିର ନିଦ୍ରାରେ କି ମିଳିବ ମୁଦ ।
ଏ ଭାବ ଦହଇ ମନ,
ଏତେକି ବିରହେ ଏ ଜାତ କଷଣେ ଚିର ନିରତେ ସେବନ୍ତି । ୨୮ ।

ସଙ୍ଗୁପ୍ତିକ ରସମଞ୍ଜରୀ ଭଣି, ହେବ କେତେବ ସଖୀ ଅଭିସାରିଣୀ,
ହର୍ଷ ଧୀପଶିଖା ତେଜିବୁ କେବେ, ଏ ସୂଚତୁରୀର ନାଗର ଭାବେ ।
ନୃପନନ୍ଦନଙ୍କୁ ଦୂତି,
ନାନା କଉତୁକେ ତୋଷି ସଜନୀଏ ସଜନୀକି ଦେବୁ ପ୍ରୀତି । ୨୯ ।

ଧୀରା ସଙ୍ଗେ ନୃପନନ୍ଦନ ଭେଟ, ହେଲାଣି କହଇ ଦୂତୀ ନିକଟ,
ଚଞ୍ଚଳ ଚଞ୍ଚଳା କହଇ ତହିଁ, ପଣ୍ଡିରବ ହସି ତୁମ୍ଭେ କି ସେହି ।
ପୁଣି କେମନ୍ତ ନାଗର,
ଅଧୀରେ ଧୀରାକୁ ସହାଇ କାହିଁକି କଲ ଏଡ଼କି ଆଚୁର । ୩୦ ।

ପରିମଳା ବୋଲେ ପୁଚ୍ଛିବ କିସ, ବୋଲିବ ସ୍ୱଭାବେ ତୁମ୍ଭେ ପୁରୁଷ,
ଅବଳାକୁ କଲ ବଳେ ଦହନ, ପୁରୁଷର ପୁଣି ଏଡ଼େ ଗୁମାନ ।
ହସିବି ଭାଷିବି ଧୀରେ,
ଇନ୍ଦୁରେଖା ମାନ ବିଭଞ୍ଜନ ଦିନ ମନେ କରିବ ବିଧୁରେ । ୩୧ ।

ଚମ୍ପକଲତିକା ଅବା ସଜନୀ, ବୋଲନ୍ତି ଆମ୍ଭେ କି ହୋଇବୁ ତୁଣ୍ଡି,
ସୁରଙ୍ଗ ବଚନେ ଧୀରା ତୋଷିଲେ, ହାସ୍ୟ ପରିହାସ କେତେ କେତେ କଲେ ।
ଧୀରେ ରମ୍ୟ ଛନ୍ଦ ଶେଷ,
ଶ୍ରୀ ଗୋଲୋକଚନ୍ଦ୍ର ଚିନ୍ତେ କୁଞ୍ଜେ ସଖୀ ଯୋଗମାୟାଙ୍କ ବିଶେଷ । ୩୨ ।

---

୨୭ଶ ପଦ । ମୁମୁକ୍ଷୁ—ଯେ ମୁକ୍ତି ଲଭିବାକୁ ଇଚ୍ଛା କରେ ।

୨୮ଶ ପଦ । ଲିପ୍ସା—ଲାଭଇଚ୍ଛା । ସିନ୍ଧୁ—ସମୁଦ୍ର ।

୨୯ଶ ପଦ । ସଙ୍ଗୁପ୍ତି—ଦୂତି । ଅଭିସାରିଣୀ—ନାୟକ ସହିତ ମିଳନ ପାଇଁ ସଙ୍କେତ ସ୍ଥାନକୁ ଯିବା ନାୟିକା ।

୩୦ଶ ପଦ । ଆଚୁର—ବ୍ୟବହାର ।

୩୧ଶ ପଦ । ଗୁମାନ—ମାନ ।

୩୨ଶ ପଦ । ଧୀରା—ନାୟିକାବିଶେଷ, ପଣ୍ଡିତା । ରମ୍ୟ—ମନୋହର । ଯୋଗମାୟା—ସଂସାରମାୟା, ଦୁର୍ଗା । ଏ ମାୟା ବିସ୍ତାର କରି ରାଧାକୃଷ୍ଣଙ୍କର ମିଳନ କରାଇଥିଲେ ।

## ୨୯ଶ ଛାନ୍ଦ

ରାଗ—କାଳି

ଘେନ ସରସ ଅପୂର୍ବ ରସ ନୃପସୁତା ଅରତ
ଦୂତକୀ ବଦନେ କାଢୁରେ ଦୀନ ଭାଷେ ଖେଦ ଭାରତୀ । ୧ ।
ପ୍ରୀତି ଦୂଷଣ ଦିଏ କଷଣ ବନ୍ଧୁସଂଯୋଗ ବିନା
କହୁବ ଅଟେ ପ୍ରାଣନାଥରେ ମରେ ନବ ନବୀନା । ୨ ।
ପ୍ରୀତରେ ରଣୀ କରି ତରୁଣୀ ନାରୀମର୍ ସ୍ୱାନ୍ତକ
କଲେ ନାଗର ନ ଦେଇ ଟର ଦହିଲେ ସୁନ୍ଦରୀଙ୍କ । ୩ ।
ମଧୁଭାଷଣ ଚିତ୍ତଭୂଷଣ କରାଇଲେ ନାଗର
ସୁର ସମ୍ପତ୍ତି ପ୍ରଣି ବିପତ୍ତି ଦେଲେ ରସସାଗର । ୪ ।
ରହୁଛି ଜୀବ ଛାଡ଼ି ଯା ଜୀବ-ଧବ ଏ ଅକାରଣ
କେଉଁ ନାଗରୀ ରସସାଗରୀ ନ ଲୋଡ଼ିବ ମରଣ । ୫ ।
ଚେତକ ସେବକା ଜୀବନ ଶକା ଦୂଷିବାର ପୀରତ
ଲୋଡ଼େ ସୁରତ ନ ଲୋଡ଼େ ରତ କହିବ ଏ ଆରତ । ୬ ।
ଯେ କାଶୀଜନ ଦୋଷଭାଜନ ହେଲେ କି ଦଣ୍ଡିବାର
ହାନି କାହାକୁ କର ନାହାକୁ ଦାସୀକି ଭଣ୍ଡିବାର । ୭ ।
ଭାବେ ଅନ୍ତରେ ପ୍ରେମ ମନ୍ତ୍ରରେ ସେବକା ନିରନ୍ତରେ
ମନମଥରେ ହୃଦୟ ଥବେ ଦୁଃଖୀରେ ସନ୍ତରେ । ୮ ।
ପୋଡ଼ିଲେ ବନ ଜାଣିବେ ବନବାସୀ ଏହା ଭଣିବ
ପୋଡ଼ିଲେ ମନ ଦହିଲେ ମନ-ମଥ କେ ତା ଜାଣିବ । ୯ ।
ନବୀନା ସରେ ନବ ରସରେ ପଡ଼ି କୁସୁମଶରେ
ବଢ଼େ ସୁରତ ନୋହି ବିରତ ଭାଳେ ନିଶି ବାସରେ । ୧୦ ।
ନାରୀ ସ୍ୱଭାବ ନ ଜାଣି ଭାବ କଲେ କିପାଁ ଏମନ୍ତ
ପଦେ ସେବକା ଯେ ତାଙ୍କୁ ବିକା ଜାଣି କଲେ କେମନ୍ତ । ୧୧ ।
ମୀର ନିରତେ ନୟନେ ରତେ କାହିଁ ନ ଲାଗେ ମନ
ନିଶି ବାସରେ ଶୋକ ନ ସରେ ଅଭାଗିନୀ ବିମନ । ୧୨ ।

---

୧ମ ପଦ । ବାଧୁରେ—ଦୁଃଖରେ ।
୨ୟ ପଦ । ଗର—ବିଷ ।
୫ମ ପଦ । ଜୀବଧବ—ପ୍ରାଣକାନ୍ତ ।
୭ମ ପଦ । ନାହା—ସ୍ୱାମୀ ।
୯ମ ପଦ । ମନମଥ—କନ୍ଦର୍ପ ।
୧୦ମ ପଦ । ସରେ—ସହିତରେ । କୁସୁମଶର—ଫୁଲଶର, କନ୍ଦର୍ପ ।
୧୨ଶ ପଦ । ନିରତେ—ସର୍ବଦା । ।

କାହିଁ ଧିଅନ ନାହିଁ ମୋ ଆନ ଏକା ତାଙ୍କ ଚରଣ
କେଉଁ ସେବାରେ ନ କେଉଁ ବାରେ ହେବ ସେ ରଣରଣ ।୧୩।
କହ ଦୂତିକା ପ୍ରେମଲତିକା ତରୁ ବିନା କି ରହି,
ନ ଲଭି ଘନ କେବେ କି ଘନ ମୋଦେ ନାଚେ ବାରହୀ । ୧୪ ।
ହୃଦରଞ୍ଜନ ନେହ ଅଞ୍ଜନ ତାପ ବିନାଶେ ପତି
ନେହ ସମ୍ପତ୍ତି ନୋହି ପ୍ରାପତି କାହିଁ ହେବ ତୃପତି । ୧୫ ।
ବେଶ ରୁଚିର ଭୂଷଣ, ଚିର ପଲ୍ୟଙ୍କାଙ୍କ ଶୟନ
କୁସୁମହାର ସଖୀବିହାର ଗନ୍ଧ ଫୁଲ୍ଲ ଚୟନ । ୧୬ ।
ଖେଦେ ଅଗାର କି କାରାଗାର ମଣେ ଶିତ୍‌ବିକାର
ନୀରସା ରସା ଏକା ଭରସା ସେ ରୂପ ସେବିକାର । ୧୭ ।
ଯେସନେ ବରଷା ନ ଲଭି ରସା ମରୁଭୂବେ ବିଶିଖୀ
ତେସନେ ଭରସାବିହୀନେ ରସାଳସା ତ ହତଶିଖୀ । ୧୮ ।
ତାଙ୍କ ଲପନ ହେଲା ସ୍ୱପନ ଦଣେ ଦଣେ ଦଣେ ତ
ବିଯୋଗିନୀରେ ସନ୍ତାପନୀରେ ବିଜଡ଼ାଇଲେ ସେ ତ । ୧୯ ।
ଇନ୍ଦ୍ରଜାଲେ କି ଥିଲି ଭୁଲେ କି ନିରବଧି ସବୁ
ପ୍ରିୟ ବଦନ ସୁଖ ସଦନ କେତେ ବା ସୁମରିବି । ୨୦ ।
କୁମୁଦାକର ଝୁରେ ନିକର ଯେସନେ ଶୀତକରେ
ଖେଦେ ଦର୍ଶରେ ତାପ ନ ସରେ ନ ଲଭି କାନ୍ତ କରେ । ୨୧ ।
ଯେସନେ କପୋତ ଦରିଦ୍ର ପୋତନିଧିହରି ଝୁରଇ
ନୟନ ତାରା କର୍ଣ୍ଣ ସୀତାରା କାନ୍ତ କାନ୍ତ ଝୁରଇ । ୨୨ ।
କାଏ ସହିବ କାମ ଦହିବ ଅପକାଳେ ନିରତେ
ଭାବେ ନ ମରି ପ୍ରୀତି ସୁମରି ରହେ କେବା ଝରତେ । ୨୩ ।
ନ ଯାଏ ଜଣା ସ୍ନେହ ଅଜଣା ଗ୍ରନ୍ଥେ ଏ କବା ବହିଲେ
ଭୁଲି ଦାସୀରେ ଅଶନି ଶିରେ ଅକାରଣେ ଲହିଲେ । ୨୪ ।
ନାମ ଭଜନେ ବସି ବିଜନେ ହେବାରେ ସନ୍ତାପିତ
ଅନ୍ତରଗତେ ଆଶା ଆଗତେ ଜଳେ ଖେଦ ଅପିତ୍ତ । ୨୫ ।

---

୧୩ଶ ପଦ । ରଣରଣ—କନ୍ଦର୍ପ ।
୧୬ଶ ପଦ । ରୁଚିକର—ମନୋହର ।
୧୭ଶ ପଦ । ଅଗାର—ଘର । କାରାଗାର—ବନ୍ଦୀଘର ।
୧୮ଶ ପଦ । ମରୁ—ଅନୁର୍ବର ଦେଶ ।
୧୯ଶ ପଦ । ଦଣେ ଦଣେ ଦଣେ—ଦଗେ ଦଗେ ଦେଖାଯାଏ ।
ବିଯୋଗିନୀ—ବିରହିଣୀ ।
୨୦ଶ ପଦ । ନିରବଧି—ସର୍ବଦା ।
୨୧ଶ ପଦ । ପୋତ—ଜାହାଜ ।
୨୫ଶ ପଦ । ଅପିତ୍ତ—ଅଗ୍ନି ।

କହିବ ଧୀରେ କରପାଁ ଅଧୀରେ ଅନଙ୍ଗ ପାଶବାରେ
ଦାସୀକି ନତ କଲେ ଅନାତ ବଳେ ଦେଲ ଦେବାରେ । ୨୬ ।
ସେ ତ ସୁଧୀର ହେଲେ ବଧିର ଦାସୀର କଥା ଗତ
ମୋହନ ଶରେ ମୋହ ନ ସରେ କଲେଣି ସେ ଅଗତ । ୨୭ ।
ସେ ପ୍ରାଣକାନ୍ତ ଭାବେ ଏକାନ୍ତ ଅଗତ ମୁକ୍ତଗତ
ରସେ ଧିଆନେ ନାହିଁ ଧୀ ଆନେ ଲୋଡ଼େ ତାଙ୍କ ଅଗତ । ୨୮ ।
ହେଉ ଏଣିକି ଯାହା ପୁଣି କି ଅଛୁ ଜୀବନ ବାକି
ଯେ ଯା ଜୋଗୁର ସେବେ ପଥର ବାଳସିବ ସେବା କି । ୨୯ ।
ଝୁରିଲ ଧ୍ୟାନେ ରଜନୀ ଦିନେ ରସାଦ୍ଭୁରେ କାନ୍ତରେ
ଧ୍ୟାନେ ମୂର୍ତ୍ତିକି କରି ତାଙ୍କ ଜପିବା ଏକାନ୍ତରେ । ୩୦ ।
କରି ବନ୍ଦନ ପଦ ବନ୍ଦନ କରିବା ମାନସରେ
କାମ ରୂପରେ ତପେ ତାପରେ ଧାୟିବା ସୁରସରେ । ୩୧ ।
ଅନୁବରତେ ତାପସୀରତେ ଭାବେ ହେବା ଅବେଶ
ପ୍ରେମ ମନ୍ତ୍ରରେ ଜପି ଅନ୍ତରେ କରୁଥିବା ସୁବେଶ । ୩୨ ।
ଶଙ୍ଖପଟଳୁ ଶତ୍ରୁପଟଳୁ ରଖିବା ଭକତରେ
ପ୍ରେମ ସୁମନ ସହିତ ମନ ଅରପିବା ପ୍ରୀତରେ । ୩୩ ।
ନିଶିବାସରେ ପ୍ରଣୟ-ସରେ ବୁଡ଼ିଥିବା ଆଦରେ,
ପ୍ରଣୟୀବରେ ଭକ୍ତ ଭାବରେ ପୂଜୁଥିବା ସାଦରେ । ୩୪ ।
ଘୋର ଅତନୁ ଦହୁଛି ତନୁ କହିବ ଭାଗ୍ୟ ମନ୍ଦ
ଦେଖାନ୍ତ ଆଣି ନୁହ ନୁଆଣି ଭାଷେ ଗୋଲୋକଚନ୍ଦ୍ର । ୩୫ ।

## ୩୦ଶ ଛାନ୍ଦ

### ରାଗ—ଶୋକକାମୋଦୀ

ଦିନେ ବିମ୍ବାଧରୀ କାନନେ ବିହରି ସହଚରୀ ମୁଖ ଚୋପେ ଚାହିଁ,
ଭାବ ଅବେଶରେ ଉତ୍କଣ୍ଠା ବଶରେ ରସରେ ଭାଷଇ ଚନ୍ଦମୁହୀଁ ।
ଅହେ ସାଧୁଜନେ ! ରମ୍ୟ ରସ ଘେନ ତୋଷ ମନେ । ୧ ।
ମଦନ ବଡ଼ାଇ ଚନ୍ଦ୍ରାନନା କହି ରସାନନ୍ଦନିଧି ପ୍ରାଣବନ୍ଧୁ,
ପ୍ରେମାକରବର ଅନନ୍ଦ ପାତର ଅଣାଇ କୁଞ୍ଜକୁ କୃପାସିନ୍ଧୁ ।
ଅଗୋ ସହଚରୀ ! କର ସୁସଂଯୋଗ ପ୍ରିୟ ବରି । ୨ ।

---

୨୮ଶ ପଦ । ଧିଆନ—ଧ୍ୟାନ । ଧୀ—ବୁଦ୍ଧି । ୨୯ଶ ପଦ । ଜୋଗୁର—ସେବକ ।
୩୪ଶ ପଦ । ବାସରେ—ଦିବସରେ । ୩୫ଶ ପଦ । ଅତନୁ—କନ୍ଦର୍ପ । ତନୁ—ଶରୀର ।
( ଏ ଛନ୍ଦ ନାନା ଲକ୍ଷଣଯୁକ୍ତ ହୋଇଅଛି )
୨ୟ ପଦ । ନାମ ଲକ୍ଷଣ (ପୁରୁଷଙ୍କର) ଅଛି । ମଦନ—କନ୍ଦର୍ପ, ଜଣେକ ଲୋକର ନାମ । ବଡ଼ାଇ—ବୃଦ୍ଧିକର, ଜାତିବିଶେଷ । ଚନ୍ଦ୍ରାନନା—ଚନ୍ଦ୍ରମୁହୀଁ, ଜଣେକ ବ୍ରାହ୍ମଣ । ପାତର—ପାତ୍ର, ଗୁଡ଼ିଆ ଆଦି ଜାତିଙ୍କର ଉପାଧିବିଶେଷ ।

ଚମ୍ପକ ମାଲତୀ ଗୃହ ଗନ୍ଧବତୀ ମଲ୍ଲିକା କାମିନୀ ଥିବେ ଧୀରେ,
ନିଅଳି ମାଧବୀ ସେ କାଳର ଛବି ଦେଖୁଥିବେ ନାନା ପ୍ରମୋଦରେ ।
ଅଗୋ ସହଚରି ! କର ସୁସଂଯୋଗ ପ୍ରିୟ ବରି । ୩ ।
ନିକୁଞ୍ଜନାୟିକା କୋକିଳ ସାରିକା ମଧୁର ଗାୟିକା ଭାବ ଧରି,
କଳନାଦ କରି ମଧୁରଲହରୀ ଖେଳାଉଥିବେ ଏ କୁଞ୍ଜ ଭରି ।
ଅଗୋ ସହଚରି ! କର ସୁସଂଯୋଗ ପ୍ରିୟ ବରି । ୪ ।
ବାର୍ତ୍ତାକ କଦଳୀବର ଭଲି ଭଲି ସଜ୍ଜନ ଭାବରେ ଥିବ ଗୃହି,
ଗୁଞ୍ଜନରେ ତହିଁ ମତ୍ତ ଥିବ ରହି ଅଳି କନ୍ଦରପ ଭାବ ବହି ।
ଅଗୋ ସହଚରି ! କର ସୁସଂଯୋଗ ପ୍ରିୟ ବରି । ୫ ।
ଶ୍ୟାମା ତପସ୍ୱିନୀ ଲକ୍ଷ୍ମୀକି ନ ମାନି ବସିଥିବ ଅତି କୁତୁହଳେ,
କୁକୁର ବୃଷଭ ଐରାବତ ଭାବ ଦେଖି ହେବ ସୁଖୀ ସ୍ନେହଭୋଳେ ।
ଅଗୋ ସହଚରି ! କର ସୁସଂଯୋଗ ପ୍ରିୟ ବରି । ୬ ।
ଶକ୍ରସୁମନା ତ ମଦନାବ୍ଜ ସତ ତା ପରେ ତଗର ହୈମବତୀ,
ଅନାଇବେ ଧୀରେ ଥିବ ମୁଁ ପ୍ରୀତିରେ ଫୁଲଶର ତୋଷୁଥିବ ମତି ।
ଅଗୋ ସହଚରି ! କର ସୁସଂଯୋଗ ପ୍ରିୟ ବରି । ୭ ।
ରାମ ନୟନରେ ଲବେ କୁଶଳରେ ଅନାଇବ ମୁଖ ଶୀତକରେ,
ଲକ୍ଷଣୀବନ୍ତ ସେ ବଇଦେହୀର ବଶେ ବାଳୀଭାବେ ଥିବେ କାମୁରଧରେ ।
ଅଗୋ ସହଚରି ! କର ସୁସଂଯୋଗ ପ୍ରିୟ ବରି । ୮ ।
ଭୀମ ହରଷରେ ଥିବ ସେ କାଳରେ ଉରପକ ଦୁଃଶାସନ ଦେଖି,
ପାଞ୍ଚାଳୀ ମଧ୍ୟରେ ପ୍ରିୟ ଧୀରେ ଧୀରେ ଡାକୁଥିବେ ବଶ ପ୍ରିୟସଖି ।
ଅଗୋ ସହଚରି ! କର ସୁସଂଯୋଗ ପ୍ରିୟ ବରି । ୯ ।

---

୩ୟ ପଦ । ସ୍ତ୍ରୀ ନାମ ଲକ୍ଷଣ ।

୫ମ ପଦ । ଫଳ ଲକ୍ଷଣ । ବାର୍ତ୍ତାକ —ଖବର କଣ ? ବାଇଗଣ । କଦଳୀ—କଦଳୀ ଫଳ, ମୃଗ । ବର—ଶ୍ରେଷ୍ଠ, ବରଫଳ । ସଜ୍ଜନ—ସତ୍‌ଲୋକ, ସଜନାଛୁଇଁ । ଗୁଞ୍ଜନ—ଭ୍ରମରର ଗୁଣୁଗୁଣୁ, ରସୁଣ ।

୬ଷ୍ଠ ପଦ । ଦେବୀ ଲକ୍ଷଣ ଓ ପଶୁ ଲକ୍ଷଣ । ଶ୍ୟାମା—କାଳଦୁବ, କାଳିକା । ତପସ୍ୱିନୀ—ଜଟାମାଂସୀ ଗଛ, ତାପସୀ । ଲକ୍ଷ୍ମୀ—ଅଗବଥୁ, ରମା । କୁକୁର—ଗଣିଅନା ଗଛ, ଶ୍ୱାନ । ବୃଷଭ—କର୍କଟଶୃଙ୍ଗୀ ଗଛ, ଷଣ୍ଢ । ଐରାବତ—ନାରଙ୍ଗୀ ଲେମ୍ବୁ, ଇନ୍ଦ୍ରଙ୍କ ହସ୍ତୀ (ଏଠାରେ ହସ୍ତୀ) ।

୭ମ ପଦ । ଦେବ ଲକ୍ଷଣ । ଶକ୍ର—ମଲ୍ଲିଫୁଲ, ଇନ୍ଦ୍ର । ସୁମନା—ମାଲତୀଫୁଲ, ଦେବତା । ମଦନ—ଧାତୁରାଗଛ, କନ୍ଦର୍ପ । ଅବ୍ଜ—ପଦ୍ମ (ଏଠାରେ ସ୍ଥଳପଦ୍ମ), ଚନ୍ଦ୍ର । ପରେ ତଗର—ତଦନନ୍ତର ତଗରଫୁଲ, ଯମ । ହୈମବତୀ—ହରଡ଼ା, ଦୁର୍ଗା ।

୮ମ ପଦ । ରାମାୟଣ ଲକ୍ଷଣ । ରାମ—ହରିଣ, ରାମଚନ୍ଦ୍ର । ଲବ—ଟିକାଏ, ରାମଙ୍କ ପୁତ୍ର । ବଇଦେହ—କାମ, ଦେଶବିଶେଷ । ବାଳି—ବାମା, ମର୍କଟରାଜ ।

୯ମ ପଦ । ମହାଭାରତ ଲକ୍ଷଣ । ଭୀମ—ଭୟଙ୍କର, ଅଷ୍ଟଶମ୍ଭୁ, ଦ୍ୱିତୀୟ ପାଣ୍ଡବ । ପାଞ୍ଚାଳୀ—ପାଞ୍ଚ ସଖୀ, ଦ୍ରୌପଦୀ ।

ଅହଲ୍ୟା ଅନାଇ ଇନ୍ଦ୍ରପଦଦେଇ ସୁବାହୁରେ ପୀଡ଼ୁଥିବେ ସଙ୍ଗୀ,
ବିଶ୍ୱାମିତ୍ର ମାର ଦେଖିବ କାତର ଫୁଲଶିବଧନୁ ଯିବ ଭାଙ୍ଗି ।
ଅଗୋ ସହଚରୀ ! କର ସୁସଂଯୋଗ ପ୍ରିୟ ବର । ୧୦ ।
ପ୍ରଥମ ଅଗମେ ଲଜ୍ଜା ପାଇ ଭ୍ରମେ ହୋଇ ଅଧୋମୁଖୀ ଥିବ ବସି,
ଶତ ଗୃହ୍ଣୁ କାନ୍ତ ବରବେ ଏକାନ୍ତ ହେବ ମୃଦୁ ମଞ୍ଜୁ ମଧୁହାସୀ ।
ଅଗୋ ସହଚରୀ ! କର ସୁସଂଯୋଗ ପ୍ରିୟ ବର । ୧୧ ।
ହୋଇବ ଶିଥିଳ ସେକାଳେ ଦୁକୂଳ ଜଘନେ ସଘନେ କି ମଧୁରେ,
ଅଧରେ ଚୁମ୍ବନ କରି ରଙ୍ଗେ ଦାନ ତୋଷୁଥିବେ ମତ ସୁପ୍ରୀତିରେ ।
ଅଗୋ ସହଚରୀ ! କର ସୁସଂଯୋଗ ପ୍ରିୟ ବର । ୧୨ ।
ଚକ୍ରସ୍ତନେ ଦଣ୍ଡ ଦେବେ ସେ ପ୍ରଚଣ୍ଡ କାମରେ ବାସରେ କରକରେ,
ସଙ୍କଟରେ ପଡ଼ି କରୁଥିବ ଚେଲ ଅରରକୁ ବନ୍ଦ ପ୍ରମୋଦରେ ।
ଅଗୋ ସହଚରୀ ! କର ସୁସଂଯୋଗ ପ୍ରିୟ ବର । ୧୩ ।
ବାମରେ ବିରୂପା ପ୍ରେମରେ ସୁରୂପା ଦେଖି ତୋତେ ସୁରତରଙ୍ଗିଣୀ
ସ୍ୱର୍ଣ୍ଣରେଖା ଦାଗେ ଦେଖିବେ ସରାଗେ ଦେହେ କାନ୍ତ ତୋଷୁଥିବେ ପୁଣି
ଅଗୋ ସହଚରୀ ! କର ସୁସଂଯୋଗ ପ୍ରିୟ ବର । ୧୪ ।
କାଞ୍ଚିଦାଗ ଧୀରେ ପଡ଼ିବ କଟିରେ କୁନ୍ତଳ ପୀଡ଼ିବାକାଳେ ଧୀର,
ଦକ୍ଷିଣ ଯାଉଥିବ ସେ କାଳେ ତାଣ୍ଡବ କଳିଙ୍ଗଭୃଙ୍ଗର କି ମଧୁର ।
ଅଗୋ ସହଚରୀ ! କର ସୁସଂଯୋଗ ପ୍ରିୟ ବର । ୧୫ ।
ଶ୍ରମସିକ୍ତ ଜଳ ବଞ୍ଚିଣ ଅଞ୍ଚଳ ଶୁଖାଉଥିବ ବିବହୁ ମୁଦ,
ମଧୁର ମଳୟ ବହୁ କିଶଳୟ-ନିଳୟରେ ଦେଉଥିବେ ମୋଦ ।
ଅଗୋ ସହଚରୀ ! କର ସୁସଂଯୋଗ ପ୍ରିୟ ବର । ୧୬ ।
ମୀନକେତନରେ ଅତି ଉଚ୍ଛଳରେ ସଫରୀନୟନେ ଥିବ ଗୃହି,
ସହସ୍ର ଦଂଷ୍ଟ୍ରରେ ବଧୂଲି ଅଧରେ ପୀଡ଼ୁଥିବେ ପ୍ରିୟ ରଙ୍ଗ ବହି ।
ଅଗୋ ସହଚରୀ ! କର ସୁସଂଯୋଗ ପ୍ରିୟ ବର । ୧୭ ।

---

୧୦ମ ପଦ । ଅରଣ୍ୟକାଣ୍ଡରେ ଥିବା ରାମାୟଣ ଲକ୍ଷଣ । ଅହଲ୍ୟା—ମେଘ, ଗୌତମଙ୍କ ସ୍ତ୍ରୀ । ସୁବାହୁ—ଉତ୍ତମ ବାହୁ, ରାକ୍ଷସବିଶେଷ । ବିଶ୍ୱାମିତ୍ର—ବିଶ୍ୱଶତ୍ରୁ, ବିଶ୍ୱାମିତ୍ର ଋଷି ।

୧୩ଶ ପଦ । ଶକଟ ଲକ୍ଷଣ । ଚକ୍ର—ଚକ୍ରବାକପକ୍ଷୀ, ଶଗଡ଼ଚକ୍ର । ଚେଲ—ବସ୍ତ୍ର । ଅରର—ଆବରଣ, ଶଗଡ଼ରେ ଥିବା ଅର (ଚକ୍ରର ପକ୍ଷ) ର ।

୧୪ଶ ପଦ । ନଦୀ ଲକ୍ଷଣ । ବିରୂପା—ବିଶ୍ରୀ, ନଦୀବିଶେଷ । ସୁରୂପା—ସୁଶ୍ରୀ, ନଦୀବିଶେଷ (ବିରୂପା ଓ ସୁରୂପା ମହାନଦୀର ଦୁଇଟି ଶାଖା ନଦୀ) । ସୁରତରଙ୍ଗିଣୀ—କେଳିନିପୁଣା, ଗଙ୍ଗାନଦୀ । ସ୍ୱର୍ଣ୍ଣରେଖା—ସୁନା ଅଳଙ୍କାରର ଦାଗ, ନଦୀବିଶେଷ ।

୧୫ଶ ପଦ । ଦେଶ ଲକ୍ଷଣ । କାଞ୍ଚି—ଅଳଙ୍କାରବିଶେଷ, ଦେଶବିଶେଷ । କୁନ୍ତଳ—କେଶ, ଦେଶବିଶେଷ । ତାଣ୍ଡବ—ନୃତ୍ୟ । କଳିଙ୍ଗଭୃଙ୍ଗ—କଜ୍ଜଳପାତି ପକ୍ଷୀ । କଳିଙ୍ଗ—ପ୍ରାଚୀନ ଓଡ଼ିଶା ।

୧୬ଶ ପଦ । କିଶଳୟ-ନିଳୟ—ନବପଲ୍ଲବାଚ୍ଛାଦିତ ଗୃହ ।

୧୭ଶ ପଦ । ମତ୍ସ୍ୟ ଲକ୍ଷଣ । ମୀନକେତନ—କନ୍ଦର୍ପ । ମୀନ—ମାଛ । ସଫରୀ—ଦଣ୍ଡିଶିରି ମାଛ । ସହସ୍ରଦଂଷ୍ଟ୍ର—ବାଲିଆ ମାଛ । ସହସ୍ରଦଂଷ୍ଟ୍ରରେ—ଏଠାରେ ଦନ୍ତରେ ବହୁବାର ।

ଢଳ ବିପର୍ଯ୍ୟତ ହୋଇଥିବା ମତ୍ତ ସଲଜ୍ଜ ନୟନ ଥିବ ମୁଦ,
ପାରଣ୍ଣ କନ୍ତନ ବନ୍ଧାଦ ଶୟନ ଖେଳି କରିଥିବେ କି ବିନୋଦୀ ।
ଅଗୋ ସହଚରି ! କର ସୁଙ୍ଘଯୋଗ ପ୍ରିୟ ବର । ୧୮ ।
ହୋଇ ଝଣିଝଣି ସେକାଳେ କିଙ୍କିଣୀ ବାଜୁଥିବ ନାନା ତାନ ଧରି,
ରଣିତ ନୂପୁର ମଧୁର ସୁସ୍ୱର ଥିବ କାନ୍ତେ ବଶୀଭୂତ କରି ।
ଅଗୋ ସହଚରି ! କର ସୁଙ୍ଘଯୋଗ ପ୍ରିୟ ବର । ୧୯ ।
କରିବେ ନର୍ତ୍ତକୀ ନାସିକା ମୋତିକି କାମରଣକାଳେ ପ୍ରିୟବର
ପାଲଟ ବାସରେ ଭଞ୍ଜୁଣ ବେଶରେ ଦିଶୁଥିବେ ଅହା କି ସୁନ୍ଦର ।
ଅଗୋ ସହଚରି ! କର ସୁଙ୍ଘଯୋଗ ପ୍ରିୟ ବର । ୨୦ ।
ରତଶ୍ରମ ଶାନ୍ତ ବିରଚନେ କାନ୍ତ ସୁରତରୁ ଯିବା ଅପସରି,
ପ୍ରଶଂସିବେ କୋଳେ ବସାଇ ନିରେଖିଲେ କରକଞ୍ଜେ ଚିବୁକକୁ ତୋଳି ।
ଅଗୋ ସହଚରି ! କର ସୁଙ୍ଘଯୋଗ ପ୍ରିୟ ବର । ୨୧ ।
ମାନସରେ କ୍ରୀଡ଼ା କରୁଥିବ ବ୍ରୀଡ଼ା ଦର ବିକସିତ ମୃଦୁହାସ,
କାନ୍ତ ଉତ୍ସଙ୍ଗରେ ପ୍ରଣୟ ବିଭୋରେ ବସି ଲଭୁଥିବ କି ସନ୍ତୋଷ ।
ଅଗୋ ସହଚରି ! କର ସୁଙ୍ଘଯୋଗ ପ୍ରିୟ ବର । ୨୨ ।
କାମେ ସରୁକଣ୍ଠୀ ସୁନାସି ମର୍କଟୀ ଲଗାଉ କରୁଥିବେ ସେ କାଳେ,
ସୁକରଜା ଅବ କୁଶୋଭୀ ସମ୍ବୋଧି ରତ ମାଗୁଥିବେ ପୁଣି ଭୋଳେ ।
ଅଗୋ ସହଚରି ! କର ସୁଙ୍ଘଯୋଗ ପ୍ରିୟ ବର । ୨୩ ।
ବିପରୀତ ରତେ ସୁଶୀଳ ସହିତେ ଚାହୁଁଥିବେ ରଙ୍ଗେ ସୁରତରୁ,
ରସସାଗରର ସରତ ନାଗର ନ ଥିବେ ଭାବିବା ଅବେଶରୁ ।
ଅଗୋ ସହଚରି ! କର ସୁଙ୍ଘଯୋଗ ପ୍ରିୟ ବର । ୨୪ ।
ମୁକୁତା ମାଳତୀ ସହ ପଦ୍ମାବତୀ ଥିବ ତ ମୋ ଭାବେ କୁତୂହଳୀ,
ଅନଙ୍ଗମଞ୍ଜରୀ ଅନଙ୍ଗମଞ୍ଜରୀ ବୋଲି ହସୁଥିବ ଦେଇ ତାଳି ।
ଅଗୋ ସହଚରି ! କର ସୁଙ୍ଘଯୋଗ ପ୍ରିୟ ବର । ୨୫ ।
ରସାଳସା ଧୀରେ ମଦନାବେଶରେ ଭାସୁ ଭାସୁ ହେଲା ପ୍ରେମେ ଭୋଳ,
ଗୋଲୋକ ବଦତ ସଜନ୍ମ ସମ୍ମତ ଭେଟାଇଦିଅ ସେ ରସସ୍ଥଳ ।
ଅଗୋ ସହଚରି ! ରାଧାକୁଞ୍ଜେ ମାଗେ ବଂଶୀଧାରୀ । ୨୬ ।

---

୨୦ଶ ପଦ । ଭଞ୍ଜୁଣ—ସ୍ତ୍ରୀ ବେଶଧାରୀ ପୁରୁଷ ।
୨୧ଶ ପଦ । କରକଞ୍ଜ—କରପଦ୍ମ ।
୨୨ଶ ପଦ । ବ୍ରୀଡ଼ା—ଲଜ୍ଜା ।
୨୩ଶ ପଦ । ଅପଣବାଳଙ୍କାର ଲକ୍ଷଣ । ସୁନାସି—ଉତ୍ତମନାସୀ । ମର୍କଟୀ—ବାଇତଙ୍କ ।
ସୁକରଜା—ଉତ୍ତମ ନଖବିଶିଷ୍ଟା, ଶୁକରସ୍ୱଭୂତା । କୁଶୋଭି—ମନ୍ଦଶୋଭିବିଶିଷ୍ଟା, ଧର୍ଷଣୋଭି ।

## ୩୧ଶ ଛାନ୍ଦ

ପାସୋରିଲ୍ କି ତା ଭାବ ହେ ବାନ୍ଧବ ! ପାସୋରିଲ କି ତା ଭାବ,
ଶିରୀଷ ଫୁଲରୁ କୋମଳ ମଧୁର ଅଟେ ଯା ପ୍ରେମ ସ୍ୱଭାବ । ୧ ।
ସୁନା ଝଲି ଯେବେ ଲବଣୀ ହୁଅନ୍ତା କଳନ୍ତ ତା ରୂପ ନବ,
ଗଲା ଗଲଣି ସେ ରୁଦ୍ଧ ସବୁଦ୍ୱାର କଳ୍ପ ଯେଣୁ ପଦେ ଠାବ । ୨ ।
ସଙ୍ଗ କଥା ଶୁଣି ଫୁଟୁଥିଲା ଯେଉଁ ମୁଖେ ଲାଜ ନବ ନବ,
ମିଳନ ଗୋଧୂଳିଶୋଭା ରୁହିଁ ରୁହିଁ ହେଲାଣି କାରୁଣ୍ୟ ଠାବ । ୩ ।
ପିକବାଣୀଜଣାବଚନା ରସନା କଲାଣି ଜଡ଼ତା ଲାଭ,
କନକରୁ କାନ୍ତି ଗୁଡ଼ଲା ପରାଏ ମଣିଲେଣି ସଖୀ ସବ । ୪ ।
ସିନ୍ଦୁରେ ତଟିନୀ ନ ମିଶନ୍ତୁ ଅହା ତେଜି ଦେଲା ପୂର୍ବ ଭାବ,
କୁମୁଦେ ପରାସ କସି ଦେବା ହେଲା ଶୀତାଂଶୁ କାହୁଁ ଜାଣିବ । ୫ ।
ଗୁଞ୍ଜଫଳ ପରି ଅନୁରାଗେ ପୂରି ମୁଖରେ ବିଷାଦ ଭାବ,
ସୁନାରି ତାହାକୁ ରତିକି ତୁଳଇ ଅଟର କେଉଁ ସ୍ୱଭାବ । ୬ ।
ଯାଚି ହୋଇ କଥା କହିବା ଫଳକୁ ଭେଟିଲେ ସିନା ତାନବ,
ବିଳମ୍ବେ ମହାପବପ୍ରକ୍ରୀଡ଼ା ତବ ଶଶାଙ୍କଙ୍କ ପରି ହେବ । ୭ ।
ଜାଣି ଥିଲା କି ସେ ଅଶାତରଣୀ ତା ଚିନ୍ତା ଭଉଁରିକି ଦେବ,
ଦହିବା କଥା କି ତାରିକାନ୍ତ ଯେବେ କାଳକୂଟ ବରଷିବ । ୮ ।
ନୀରୁ କ୍ଷୀର ପରି ହଂସ ହୋଇ ଯେବେ ତା ଶୋଭା ହରିବ ଧବ,
ପଙ୍କକୁ ଲୋଡ଼ିଲେ ନାଗର ଅଜ କି ହଂସକସ୍ୱନେ ରସିବ । ୯ ।
କଏ ବା ଜାଣିବ ଫୁଲ୍ ତୋଳୁ, ପ୍ରିୟ କଣ୍ଟାକୁ ରଙ୍ଗେ ପେଲିବ,
କାମ ଶାର୍ଦ୍ଦୂଳରେ ଡରାଇବା ଭାବ କାଳକାଞ୍ଚିତେ ସାରିବ । ୧୦ ।
ଗଜରାଜବିରାଜିତ ମନ୍ଦଗତି ସ୍ନେହଟୋପେ ଝୁରେ ଜବ,
ଇତର କି ସ୍ନେହାଧୀନା କେତେ କାମଅଙ୍କୁଶଘାତ ସହିବ । ୧୧ ।
ଲୀଳାବିହ୍ୱଳାକୁ ବିଭ୍ରମେ ଘାରିଲେ ଦାଣ୍ଡିକୁ କି ଶୋଭା ହେବ,
ପିଣ୍ଡରେ ପରାଣ ନାହିଁ ଉନ୍ମାଦନୀ ସାତ୍ତ୍ୱିକ କରୁଛି ଲାଭ । ୧୨ ।
ଗୋଷ୍ଠି ଗୋଟି ଦଶା ସରିଲାଣି ତାର ନବମ ଏବେ ବଳିବ,
କୀଣା କନେ ଊଣା କରୁଣାକୁ କରି କେଉଁ ପୌରୁଷ ଲଭିବ । ୧୩ ।
ଅଣ୍ଟି ନାହିଁ କି ହେ କୋମଳାଙ୍ଗୀ ପ୍ରତି ଏ ଜାତ ନିଷ୍ଠୁର ଭାବ,
ପର ହେଲେ କଏ ଦେଖି ତା ଅବସ୍ଥା ଗ୍ଲାନି ପଥର କରିବ । ୧୪ ।
ନାଗରେନ୍ଦ୍ର ଚନ୍ଦ୍ରେ ବିଗୁରିବ ଏତେ ଲେଖେ ପରମଳା ଜବ,
ଶ୍ରୀ ଗୋଲୋକଚନ୍ଦ୍ର କଶୋରି ବିରହ ଭଣେ ହେ ଯେନ ସାଧବ । ୧୫ ।

## ୩୨ଶ ଛାନ୍ଦ

### ରାଗ—ଗୌରୀ

ପୂର୍ଣ୍ଣମାସୀ ପ୍ରବେଶିଲା, କାମୀ କଶାରେ ମୋହିଲା, କୁମୁଦଜା ରସେ ତୋଷି ପ୍ରେମ ଅଶ୍ଳେଷେ । ଧ୍ୟାୟି ବଧୂ ଶୋଭା ଖରେ, ପ୍ରକାଶିଲ ଅଣିବାରେ, ବଭ୍ରଛଳରେ ଷୋଡ଼ଶୀ କଳା ହରଷେ । ରସାଇ ସୁମନା ବାସରେ । ରଙ୍ଗେ କଲା ଗଢ ଦେଇ କର ପୁଷ୍କରେ । ୧ ।

କଲ କରସୁଧା ବୃଷ୍ଟି, ଗୃନ୍ଦନାରେ ଶୋଭା ସୃଷ୍ଟି, ରାଧା ବିଶାଖାଦ ବଧୂରସେ ମୋହିତ । ରଜନୀକର ଅଞ୍ଚଳେ, ବହି ଚାଲେ କି ମଞ୍ଜୁଳେ, ଦ୍ୱିଜରାଜମୁଖୀ ଫୁଲଶରେ ସୁଚିତ । ଅନୁରାଗବଶେ ପୁଷ୍ପିତ । ବଧୂଶିଳା ଭାବ କଲା ରଙ୍ଗେ ବ୍ୟକତ । ୨ ।

---

ପ୍ରଥମ ୧ ପଦ ଦୁଇ ଅର୍ଥରେ ହୋଇଅଛି । ପ୍ରଥମ ଅର୍ଥ ପୂର୍ଣ୍ଣିମା ବର୍ଣ୍ଣନ । ଦ୍ୱିତୀୟ ଅର୍ଥ ଯୋଗମାୟାଙ୍କ ଦ୍ୱାରା ରାଧାଙ୍କ ସହିତ କୃଷ୍ଣଙ୍କର ମିଳନ ।

୧ମ ପଦ ୧ମ ଅର୍ଥ—ପୂର୍ଣ୍ଣମାସୀ (ପୂର୍ଣ୍ଣିମା) ପ୍ରବେଶିଲା । କାମୀ ଲୋକମାନଙ୍କୁ କଶାରେ ମୁଗ୍ଧ କଲା । ସେ କୁମୁଦଜାର (ଚନ୍ଦ୍ରକୁ) ପ୍ରେମଅଶ୍ଳେଷେ (ପ୍ରେମାଲିଙ୍ଗନ କରି) ତୋଷିଲା । ଅର୍ଥାତ୍ ପୂର୍ଣ୍ଣିମାରେ ପୂର୍ଣ୍ଣଚନ୍ଦ୍ର ଉଦୟ ହେବାରୁ କାମୀଲୋକମାନେ ଉଚାଟନ ଓ ମୋହନରେ ଆବେଶ ହେଲେ ବା କାମୀଲୋକମାନେ ପୂର୍ଣ୍ଣିମା କଶାପାଳନ କରି ତୋଷ ପ୍ରକାଶ କଲେ । ବଧୂ (ଚନ୍ଦ୍ର) ଖ-ରେ (ଆକାଶରେ) ଶୋଭାଧ୍ୟାୟି (ନିଜର ଶୋଭାକୁ ଧ୍ୟାନ କରି) ଷୋଡ଼ଶୀକଳା ବଭ୍ର ଛଳରେ (ଷୋଳକଳା କିରଣ ଛଳନାଦ୍ୱାରା) ଅଣି (ଗର୍ବ) ବାରେ (ମାସରେ ଥରେ ମାତ୍ର) ହରଷେ ପ୍ରକାଶ କଲା ଏବଂ ସୁମନାଙ୍କୁ (ପୁଷ୍ପମାନଙ୍କୁ) ବାସରେ ରସାଇ (ମହକାଇ) ପୁଷ୍କରେ (ଆକାଶରେ) କର (କିରଣ) ଦେଇ ରଙ୍ଗେ ଗଢ କଲା ଅର୍ଥାତ୍ ଆକାଶକୁ ଉଠିଲା ।

୧ମ ପଦ ୨ୟ ଅର୍ଥ—ପୂର୍ଣ୍ଣମାସୀ (ଯୋଗମାୟା) ପ୍ରବେଶ ହେଲା ଓ କାମିନୀ ସାରେ (କୃଷ୍ଣପ୍ରାପ୍ତି କାମନାପରାୟଣା ରାଧାଙ୍କୁ ତୋଷ ପ୍ରଦାନ କଲା) । କୁମୁଦଜା (କୁମୁଦନନ୍ଦନୀ ରାଧାଙ୍କୁ) ପ୍ରେମ ଅଶ୍ଳେଷରେ (ପ୍ରେମାଲିଙ୍ଗନ କରି) ରସାଇଲା ଏବଂ ଖରେ (ଶୀଘ୍ର) ବଧୂ (କୃଷ୍ଣ) ଶୋଭା (ରୂପ ଶୋଭା) ଧ୍ୟାୟି—ଷୋଡ଼ଶୀ (ରାଧାଙ୍କୁ) ବିଶେଷେ କଳା (କୃଷ୍ଣଙ୍କ ସହିତ) ବଭ୍ର ଛଳରେ (କପଟ ବିବାହଦ୍ୱାରା) ଅଣିବାରେ ହରଷେ ପ୍ରକାଶ କଲା । ବାସରେ (ଗୃହରେ) ସୁମନା (ରାଧାଙ୍କୁ) ରସାଇ, କରପୁଷ୍କକୁ (ପଦ୍ମକୁ) ଦେଇ ରଙ୍ଗେ ଗଢ କଲା (ଗଲା) ଅର୍ଥାତ୍ ହାତ ଦେଇ ଗଲା, ମୁଁ ରାଧାଙ୍କ ସହିତ କୃଷ୍ଣଙ୍କୁ ମିଳନ କରାଇବି ।

୨ୟ ପଦ ୧ମ ଅର୍ଥ—କର (ଚନ୍ଦ୍ରକିରଣ) ସୁଧା (ଅମୃତ) ବୃଷ୍ଟି କଲା । ଗୃନ୍ଦନାରେ (ଚନ୍ଦ୍ରକିରଣରେ) ସୃଷ୍ଟି ଶୋଭା ଦିଶିଲା । ରାଧା (ଅନୁରାଧା) ବିଶାଖାଦି (ନକ୍ଷତ୍ରମାନେ) ବଧୂ (ଚନ୍ଦ୍ର) ରସେ (ପ୍ରୀତିରେ) ମୋହିତ ହେଲେ । ଅଞ୍ଚଳେ (ଦେଶରେ ଏଠାରେ ପୃଥିବୀରେ) ବହି (ବିଧାତା) ରଜନୀକର (କର୍ପୂରମୂର୍ତ୍ତିକୁ) ମଞ୍ଜୁଳେ (ମଧୁରଭାବରେ) ଢାଳେ କି (ଢାଳିଦେଲେ କି) ? ଦ୍ୱିଜରାଜମୁଖୀ (ଚନ୍ଦ୍ରମୁଖୀ ଫୁଲ) ଫୁଲଶରେ (କନ୍ଦର୍ପରେ) ସୁଚିତ ହୋଇ ଅନୁରାଗବଶେ (ସ୍ନେହବଶେ) ପୁଷ୍ପିତ ହେଲା । ବଧୂଶିଳା (ଚନ୍ଦ୍ରକାନ୍ତମଣି) ରଙ୍ଗେ ଭାବ ବ୍ୟକ୍ତ କଲା ଅର୍ଥାତ୍ ଚନ୍ଦ୍ରକିରଣ ଲଭି ତରଳି ଗଲା ।

୨ୟ ପଦ ୨ୟ ଅର୍ଥ—କର (ଯୋଗମାୟାର ହସ୍ତ) ସୁଧା ବୃଷ୍ଟି କଲା । ଗୃନ୍ଦନାରେ (ମଣ୍ଡପରେ ଥାଇ) ସୃଷ୍ଟି ଶୋଭା (ରାଧା) ଓ ବିଶାଖାଦି ସଖୀମାନେ ବଧୂ (କୃଷ୍ଣ) ରସେ (ପ୍ରୀତିରେ) ମୋହିତ ହେଲେ । ଅଞ୍ଚଳେ (ଲତାକାନନରେ) ରଜନୀକରେ (କର୍ପୂରମୂର୍ତ୍ତିମାନଙ୍କୁ) ଢାଳେ

ଏଣେ ଗତ କଲା ଖରେ, ଭେଟିବା ପାଇଁ ନଗରେ, କଳାକର ପରମ୍ପରା ସାତ ସୁମର । ସେ ଜରଠ କାମିନୀଏ, ମିଳନ ଭାବ ଅଥୟେ, ହଟକେଶ୍ୱର ଦର୍ଶନେ ଅତି ଅତୁଷ୍ଟା । ବରହଂଶୀରତଅବେଶୀ । ଚିନ୍ତେ ଖଗପତି ନ ଲଭିଣ ସୁକେଶୀ । ୩ ।

କୃଷ୍ଣପକ୍ଷେ ପରାଗତ, ଜାଣିଲେ ଜଗେ ସେ ଜ୍ୟୋତି, ତାରକା ପ୍ରଭା ନୀରବେ କଲେ ନିଜନ । ଅନନ୍ତ ଅଙ୍କବାହାସ୍ତ, କରେ ପରିରମ୍ଭ କରି, ନବମାଳିକା ସୁମନେ ହୋଇ ସୁମନ । ବିଳାସୀ କରାଇ ମଧୁରେ । ଧରାଶୋଭା କଲେ ରଙ୍ଗେ ଅମ୍ବୁଜ କରେ ।୪।

ପୂର୍ଣ୍ଣମାସୀ ପରକାଶେ, ବାଧୁ ପୌଗଣ୍ଡ ବୟସେ, କର ବିଟପୀ ନାଗର ଦେହେ ମଣ୍ଡନ । ନ ଧରଣ ସ୍ମରଦଣ୍ଡ, ରଞ୍ଜଇ ଏହି ବ୍ରହ୍ମାଣ୍ଡ, ବିପ୍ରଲାପ ଜନମାଏ ବିହି ଲିଖନ । ପଦ୍ମିନୀ ରହଇ ବିରସେ । ଭାବ ବିବଶରେ ଭାବୁଥାଇ ଦିନେଶେ । ୫ ।

---

(କଞ୍ଜଲୋଚନଙ୍କେ) ବନ୍ଧୁ (ରଶ୍ମି ବା ବାନ୍ଧବ) କି ମଞ୍ଜୁଳେ (ଅତି ମଧୁରଭାବରେ) ଦ୍ୱିଜରାଜମୁଖୀ (ଚନ୍ଦ୍ରମୁଖୀ ରାଧା) ଫୁଲଶରରେ ସୁଭିତ ହେଲେ (କନ୍ଦର୍ପ ପୀଡ଼ାଗ୍ରସ୍ତ ଭାବ ବ୍ୟକ୍ତ କଲେ) ଓ ଅନୁରାଗବଶେ ପୁଷ୍ପିତ ହୋଇ (ଅନୁରାଗିଣୀଭାବରେ ଆନନ୍ଦିତା ହୋଇ) ଚନ୍ଦ୍ରଶିଳା ଭାବ ରଙ୍ଗେ ବ୍ୟକ୍ତ କଲେ ଅର୍ଥାତ୍ ପ୍ରେମ କାମନା କରି ଉଲ୍ଲସିତ ଗଲେ ।

୩ୟ ପଦ ୧ମ ଅର୍ଥ—ଏଣେ ସେ କଳାକର (ଚନ୍ଦ୍ର) ପରମ୍ପରା ସାତ ସୁମର (ପୁର୍ବ-ଜନ୍ମମାନୁଯାୟୀ) ନଗରେ (ଅସ୍ତାଚଳକୁ) ଭେଟିବାପାଇଁ ଖ-ରେ (ଆକାଶରେ) ଗତ କଲା (ଗମନ କଲା) । ମିଳନ ଭାବ ଅଥୟ ହୋଇ ହଟକେଶ୍ୱର (ନାଗର) ଦର୍ଶନେ ଅତୁଷ୍ଟା ହୋଇ କାମିନୀ-ମାନେ ଶେଯରତ ହେଲେ (ଶୟନ କଲେ) । ରତ ଅବେଶୀ ସୁକେଶୀ ବରହଂଶୀ ପକ୍ଷ ନ ଲଭି ବିଷ ଚିନ୍ତେ (ଚିନ୍ତା କଲେ) ଅର୍ଥାତ୍ ବିଷ ଭକ୍ଷଣ କାମନା କଲେ ।

୩ୟ ପଦ ୨ୟ ଅର୍ଥ—ଏଣେ ସେ ଜରଠକାମିନୀ (ବୃନ୍ଦା ଯୋଗମାୟା) ଏ ମିଳନ ଭାବ (ରାଧାକୃଷ୍ଣଙ୍କ କପଟ ମିଳନ ପାଇଁ) ଅଥୟ ହୋଇ ହଟକେଶ୍ୱର ଦର୍ଶନେ (ନାଗର କୃଷ୍ଣଙ୍କ ଦର୍ଶନ ଆଶାରେ) ଅତି ଅତୁଷ୍ଟ ହୋଇ ପରମ୍ପରା ସାତ (ରାଧାକୃଷ୍ଣଙ୍କ ମିଳନ କଥା, ଏହା) ସୁମରି କଳା-କରଙ୍କୁ (କୃଷ୍ଣଙ୍କୁ) ନଗରେ (ଗୋପନଗରରେ) ଭେଟିବାପାଇଁ ଖରେ ଗତ କଲା (ଶୀଘ୍ର ଗଲେ) । ସୁକେଶୀ (ରାଧା) ରତ ଅବେଶୀ ବରହଂଶୀ ହୋଇ ଖଗପତିଙ୍କୁ (ଗରୁଡ଼ାସନଙ୍କୁ) ନ ଲଭି ଚିନ୍ତେ (ଚିନ୍ତା କରୁଅଛନ୍ତି) ।

୪ର୍ଥ ପଦ ୧ମ ଅର୍ଥ—ସେ ଜ୍ୟୋତି (ଚନ୍ଦ୍ରାଲୋକ) କୃଷ୍ଣପକ୍ଷକୁ ପରାଗତ କରେ, ଏହା ତାରକାମାନେ ଜାଣିଲେ । ନୀରବେ ପ୍ରଭା ନିଜନ କଲେ (ନିଷ୍ପ୍ରଭ ହେଲେ) । ଅନନ୍ତଅଙ୍କବାହାସ୍ତ (ଆକାଶବାହାସ୍ତ ଚନ୍ଦ୍ର) ସୁମନ ହୋଇ (ଆନନ୍ଦିତ ହୋଇ) ନବମାଳିକା ସୁମନକୁ (ନଅଳି ଫୁଲକୁ) କରେ ପରିରମ୍ଭ କରି (କିରଣ ଦ୍ୱାରା ଆଲିଙ୍ଗନ କରି) ଓ ମଧୁରେ ବିଳାସୀ କରାଇ—ରଙ୍ଗେ ଅମ୍ବୁଜକରେ (ଚନ୍ଦ୍ରଜ୍ୟୋତ୍ସ୍ନାଦ୍ୱାରା) ଧରାଶୋଭା କଲେ (ଧରାଶୋଭା ସମ୍ପାଦନ କଲେ) ।

୪ର୍ଥ ପଦ ୨ୟ ଅର୍ଥ—ସେ ଜ୍ୟୋତି ଜାଣିଲେ (ଜ୍ୟୋତି ସ୍ୱରୂପ କୃଷ୍ଣଚନ୍ଦ୍ର ଜାଣିଲେ) ପରା (ଯୋଗମାୟା) କୃଷ୍ଣପକ୍ଷେ (ନିଜ ସମ୍ବନ୍ଧରେ) ଗତ କରେ (ଆସୁଅଛି) ତାରକା ପ୍ରଭା (ଚକ୍ଷୁତାରାର ଜ୍ୟୋତି) ନୀରବେ ନିଜନ କଲେ । ଅନନ୍ତଅଙ୍କବାହାସ୍ତ (ଶେଷଶାୟୀ କୃଷ୍ଣ) ସୁମନ ହୋଇନବ-ମାଳିକା ସୁମନ (ନଅଳି ଫୁଲଟିଏ) କରେ ପରିରମ୍ଭ କରି (ହସ୍ତରେ ଧରି) ଓ ମଧୁରେ ଅମ୍ବୁଜକରେ (ହସ୍ତପଦ୍ମଦ୍ୱାରା) ରଙ୍ଗେ ବିଳାସୀ କରାଇ (କ୍ରୀଡ଼ାରତ କରାଇ ବା ନଚାଇ) ଧରାଶୋଭା କଲେ (ପୃଥିବୀର ଶୋଭା ସମ୍ପାଦନ କଲେ) ଅର୍ଥାତ୍ ତାଙ୍କର କରପଦ୍ମଦ୍ୱାରା ପୃଥିବୀର ଶୋଭା ପୁଷ୍ଟି ହେଲା ।

୫ମ ପଦ ୧ମ ଅର୍ଥ—ପୂର୍ଣ୍ଣମାସୀ ପ୍ରକାଶେ (ପୂର୍ଣ୍ଣିମୀ ପ୍ରକାଶ କଲା) ବାଧୁ ପୌଗଣ୍ଡ ବୟସରେ ପ୍ରବେଶ ହେବାରୁ କର (ଚନ୍ଦ୍ରକିରଣ) ବିଟପୀ ନାଗର ଦେହେ (ବୃକ୍ଷଶ୍ରେଷ୍ଠ ଅର୍ଥାତ୍

ଭାନୁଜା ସରତ ଶୋଭା, ଧନେ ଅତି ମନୋଲୋଭା; ବାଳିଶ ଭାବେ ସଙ୍ଗୀତ ଗାଏ ବିଧୁରେ । ବିଧୁ କରି ନିରୀକ୍ଷଣ, ବନେ ସେ ପ୍ରେମ ମଗନ, ସୁରତରଙ୍ଗିଣୀ ଭାବି ସ୍ନେହୀ ବିଧୁରେ । ଅମ୍ବରବାସଙ୍କୁ ଆଦରେ । ଶିଥିଳ ଗତି କରଇ ଚନ୍ଦ୍ର ପ୍ରୀତିରେ । ୬ ।

ସମୁଦ୍ର ହାସ ତରଙ୍ଗେ, ଉତ୍‌ଫୁଲ୍ଲଇ ନାନାରଙ୍ଗେ, ଅବ୍‌ଜକରସ୍ପର୍ଶ ପାଇ ନିଶାରେ ମତ୍ତ । ବିଧୁବଦନକୁ ଚାହିଁ, ସରିତପତି ଭାବଇ, ଆବେଶ ଅବଶ ଭାବ କରି ବ୍ୟକତ । ଚକୋରୀ ବିଧୁର ଆବେଶେ । ବନେ ବସି ମେଧାବିନୀ ଶାହିର ଘୋଷେ । ୭ ।

---

ବଢ଼ ବଢ଼ ବୃକ୍ଷମାନଙ୍କର ଦେହକୁ) ମଣ୍ଡନ କରିଅଛ । ସ୍ମର ( ସ୍ମରଣ କର ) ସେ ଦଣ୍ଡ ନ ଧରି ଏହି ବ୍ରହ୍ମାଣ୍ଡକୁ ରଞ୍ଜଇ । (ଶାସନ କରଇ ବା ମୁଗ୍‌ଧ କରୁଅଛି) ବିହି ଲିଖନରୁ ବିପ୍ରଲାପ (ବିରୋଧ ବଚନକୁ ଜନ୍ମାଏ) କାରଣ ପଦ୍ମିନୀ (ପଦ୍ମବନ) ବିରସ ରହି (ଭାବ ବିବଶରେ) ଦିନେଶ (ସୂର୍ଯ୍ୟଙ୍କୁ) ଭାବୁଥାଏ ।

୫ମ ପଦ ୨ୟ ଅର୍ଥ—ପୂର୍ଣ୍ଣମାସୀ ପ୍ରକାଶେ (ଯୋଗମାୟା କୃଷ୍ଣଙ୍କ ନିକଟରେ ପ୍ରକାଶ କଲା) ହେ ବିଧୁ (କୃଷ୍ଣ) ତୁମ୍ଭେ ପୌଗଣ୍ଡ ବୟସରେ ପ୍ରବେଶ ହୋଇଅଛ । ଅର୍ଥାତ୍ ବର୍ତ୍ତମାନ ତୁମ୍ଭର ପୌଗଣ୍ଡ ବୟସ । ହେ ନାଗର, ବିଟପୀ (ରାଧାଙ୍କୁ) ଦେହରେ ମଣ୍ଡନ କର । ସ୍ମର (କନ୍ଦର୍ପ) ଦଣ୍ଡ ନ ଧରି (ରାଜଦଣ୍ଡ ନ ଧରି) ଏହି ବ୍ରହ୍ମାଣ୍ଡକୁ ଶାସନ କରୁଅଛି । ପଦ୍ମିନୀ (ରାଧା) ବିରସ ରହିଅଛି । ବିହି ଲିଖନରୁ ବିପ୍ରଲାପ ଜନ୍ମାଉଅଛି ଅର୍ଥାତ୍ ବିଶେଷ ପ୍ରଲାପ କରୁଅଛି । ଭାବବିବଶରେ ଦୀନା (ଦୁଃଖିନୀ ରାଧା) ଈଶଙ୍କୁ (ଆପଣଙ୍କୁ ସ୍ୱାମୀରୂପରେ) ଭାବୁଅଛି ବା ଦୀନେ (ଦୁଃଖରେ) ସେ ଭାବୁଅଛି ।

୬ଷ୍ଠ ପଦ ୧ମ ଅର୍ଥ—ଭାନୁଜା ସରିତଶୋଭା ଅତି ମନୋଲୋଭା ଧନେ । (ଯମୁନା ନଦୀର ଶୋଭା ଅତି ରମଣୀୟ ଦେଖା ଯାଉଅଛି) । ବିଧୁରେ ବାଳିଶ ଭାବେ ସଙ୍ଗୀତ ଗାଏ (ପାଗଳିନୀ ପରି ଦୁଃଖରେ ସଙ୍ଗୀତ ଗାଉଅଛି) ସେ (ଯମୁନା ନଦୀ) ବିଧୁ (ଚନ୍ଦ୍ରଙ୍କୁ) ବନେ (ନୀରରେ) ନିରୀକ୍ଷଣ କରି ପ୍ରେମମଗ୍ନ ହୋଇଅଛି ଭାବି (ଏହି ଭାବନା ହେଉଛି) । ସୁରତରଙ୍ଗିଣୀ (ସୁରନଦୀ ଯମୁନା) ବିଧୁରେ ଚନ୍ଦ୍ରସ୍ନେହପରିପୂର୍ଣ୍ଣା ହୋଇଅଛି ବା ସେ ଉତ୍ତମ ରଙ୍ଗ କିପୁଣୀ ଭାବି ବିଧୁରେ ସ୍ନେହପରିପୂର୍ଣ୍ଣା ହୋଇଅଛି । ଅମ୍ବରବାସ (ଆକାଶବାସୀ ଚନ୍ଦ୍ରଙ୍କୁ) ଆଦର କରୁଅଛି ଓ ଚନ୍ଦ୍ର ପ୍ରୀତିରେ ଶିଥିଳ ଗତି କରୁଅଛି । (ପୂର୍ଣ୍ଣିମାରେ ଜଳର ସ୍ଫୀତି ସ୍ୱାଭାବିକ) ।

୬ଷ୍ଠ ପଦ ୨ୟ ଅର୍ଥ—ଶୋଭା ସରିତ (ସଦୃଶ) ଭାନୁଜା (ବୃଷଭାନୁ ସୁତା ରାଧା) ଅତି ମନୋମୁଗ୍‌ଧକାରିଣୀ ଅଟନ୍ତି । ବାଳୀଶ (ବାଳଶ୍ରେଷ୍ଠ ରାଧା) ଭାବେ ଓ ବିଧୁରେ (ବିରହ ଦୁଃଖରେ) ସଙ୍ଗୀତ ଗାଉଅଛି । ହେ ବିଧୁ (କୃଷ୍ଣ) ସେ (ରାଧା) ବନେ ନିରୀକ୍ଷଣ କରି (ବୃନ୍ଦାବନରେ ତୁମ୍ଭଙ୍କୁ ଦେଖି) ପ୍ରେମରେ ମଗ୍ନ ହୋଇ ଅଛି । ସୁରତରଙ୍ଗିଣୀ ରାଧା ତୁମ୍ଭଙ୍କୁ ଭାବି ବିଧୁରେ ସ୍ନେହୀ ହୋଇଅଛି । ଅମ୍ବରବାସ (ଶିବଙ୍କୁ) ଆଦର କରୁଅଛି (ପୂଜୁଅଛି); ଚନ୍ଦ୍ରପ୍ରୀତିରେ (ଚନ୍ଦ୍ରସେଣା ପ୍ରୀତିରେ) ସେ ଶିଥିଳ ଗତି କରୁଅଛି ।

୭ମ ପଦ ୧ମ ଅର୍ଥ—ସମୁଦ୍ରର ହାସ ନାନା ରଙ୍ଗେ ତରଙ୍ଗେ ଉତ୍‌ଫୁଲ୍ଲ ହେଉଅଛି । ସେ (ସମୁଦ୍ର) ଅବ୍‌ଜକର (ଚନ୍ଦ୍ରକିରଣ) ସ୍ପର୍ଶ ପାଇ ନିଶାରେ ମତ୍ତ ଅଛି । ଭାବଇ (ମୁଁ ଭାବୁଅଛି) ସରିତପତି (ସମୁଦ୍ର) ବିଧୁବଦନକୁ ଚାହିଁ ଆବେଶ ଓ ଅବଶ ଭାବ ବ୍ୟକ୍ତ କରୁଅଛି । ଚକୋରୀ (ଚକୋର ପକ୍ଷିଣୀ) ବିଧୁର (ଚନ୍ଦ୍ରର) ଆବେଶରେ ଅଛି । ମେଧାବିନୀ (ସାରୀ) ବନେ ବସି ଶାହିର ଘୋଷୁଅଛି ।

ଚନ୍ଦ୍ର ଗୃହ୍ନି ବିଯୋଗିନୀ, କାନ୍ତକର ଭାବ ଧନୀ, ସ୍ୱରଭଙ୍ଗ ମୋହନରେ କରେ ଉଦୟ । ଉତ୍ତର କୁରୁ ସଙ୍ଗୃହୀ, ବିଧୁ ଦେଖି ନବ ବାଳୀ, ଚରମ ନଗ ଅଶ୍ରିବା ସୁଖେ ଅଥୟ । କଳାକର ଭରେ ପ୍ରକାଶ । କୃଷ୍ଣେ ଅଶ୍ରିବାକୁ ଅଙ୍କ ତର ବିଶେଷ । ୮ ।

ଚନ୍ଦ୍ରମୁଖୀ ଭାବ ଧରି, କ୍ଷଣାରେ କି ମୁଗ୍ଧ ହରି, ହରିମାୟା ସୁନ୍ଦର ରୂପେ ଯେ ସମ୍ଭବ । ସୁମନା ବାସ ଛାଡ଼ଇ, କାନ୍ତା କାନ୍ତ ପ୍ରୀତି ବହି, ରତିପତି ଭାବାବେଶ ରମାବାନ୍ଧବ । କର ପୃଷ୍ଠରେ ଅଲିଙ୍ଗନ, ବିବସନରେ ସୁମନା ପ୍ରେମ ମଗନ । ୯ ।

ଏମନ୍ତ ସୁନ୍ଦରୀ ଜାଣି, ଗୃହ୍ନି ସୁତ ଦର୍ଭହାସୀ, ନୃପତିସୁତା ସୁକେଶୀ ଭାବେ ଅଧୀର । ଲେଖଇ ମଞ୍ଜୁ ଭାରତୀ, ଭାମ ବିଗଳିତ ମତି, ଅରୁଣ ଓଷ୍ଠୀର ପ୍ରୀତି ଲାଭେ କାତର । ବେପଥୁ ସଜାତ ଶରୀରେ । କଦମ୍ବ କୋରକ ଶୋଭା ଶରୀର ଧରେ । ୧୦ ।

---

୭ମ ପଦ ୨ୟ ଅର୍ଥ—ଅବ୍ଜକର ସ୍ପର୍ଶ ପାଇ କ୍ଷଣାରେ ମତ୍ତ ହେବାରୁ ସମୁଦ୍ର ହାସ ତରଙ୍ଗେ ନାନା ରଙ୍ଗେ ଉତ୍ଫୁଲ୍ଲ ହେଉଅଛି । ଅର୍ଥାତ୍ (ତୁମ୍ଭର କରପଦ୍ମ ସ୍ପର୍ଶ ପାଇବା ଆଶାରେ ସେ (ରାଧା) କ୍ଷଣାବିହ୍ୱଳା ହୋଇଅଛି ଓ ଆନନ୍ଦିତ ହେଉଅଛି । ସେ ତୁମ୍ଭର ଚନ୍ଦ୍ରବଦନକୁ ଗୃହ୍ନି ତୁମ୍ଭଙ୍କୁ ପତି ସରି (ସଦୃଶ) ଭାବୁଅଛି ଏବଂ ଆବେଶ ଓ ଅବଶଭାବ ବ୍ୟକ୍ତ କରୁଅଛି । ଚକୋରୀ ବିଧୁର ଅବେଶରେ ରହିଲା ପରି ମେଧାବତୀ (ବୁଦ୍ଧିମତୀ) ରାଧା ବନେ ବସି ଶ୍ରୀହରି ଶ୍ରୀହରି ଘୋଷୁଅଛି ।

୮ମ ପଦ ୧ମ ଅର୍ଥ—ବିଯୋଗିନୀ ଧନୀ (ବିରହିଣୀ ସ୍ତ୍ରୀମାନେ) ଚନ୍ଦ୍ର ଗୃହ୍ନି କାନ୍ତକର (ମନୋହର କିରଣ) ଭାବ ମୋହନରେ ସ୍ୱରଭଙ୍ଗ ଉଦୟ କଲେ କିମ୍ବା ପତି ଭାବନା କରି ସ୍ୱରଭଙ୍ଗ ଜାତ କଲେ । ନବ କାମିନୀମାନେ ଉତ୍ତର କୁରୁସଙ୍ଗୃହୀ ବିଧୁ ଦେଖି (ସ୍ୱର୍ଗ ବା ଆକାଶରେ ଗତି କରୁଥିବା ଚନ୍ଦ୍ରଙ୍କୁ ଦେଖି) ଚରମନଗ (ଅସ୍ତାଚଳ) ଅଶ୍ରିବା ସୁଖରେ ଅଥୟ ହେଲେ, ଅର୍ଥାତ୍ ଚନ୍ଦ୍ରଙ୍କର ଅସ୍ତାଚଳ ଆରୋହଣ ସଙ୍ଗେ ସଙ୍ଗେ ସେମାନଙ୍କର ଆଶା ଶେଷ ହେବ ଏହି ଚିନ୍ତା କଲେ । ସେ କଳାକର (ଚନ୍ଦ୍ର) ପ୍ରକାଶ କଲା—କୃଷ୍ଣେ ଅଶ୍ରିବାକୁ ଅଙ୍କ ବିଶେଷ କରି (କିରଣ) ହୋଇଅଛି । (କୃଷ୍ଣପକ୍ଷକୁ ପରଦିନ ଗତି କରିବ ବୋଲି ବିଶେଷ କିରଣ ହୋଇଅଛି ।)

୮ମ ପଦର ୨ୟ ଅର୍ଥ—ରେ ମୋହନ ( ହେ କୃଷ୍ଣ ) ବିଯୋଗିନୀ ଧନୀ ( ରାଧା ) ଚନ୍ଦ୍ର ଗୃହ୍ନି ( ମୟୂରଚନ୍ଦ୍ରିକାକୁ ଗୃହ୍ନି ) କାନ୍ତକର ଭାବ ( ତୁମ୍ଭର ପାଣିଗ୍ରହଣକୁ ଇଚ୍ଛା କରି ) ନବବାଳୀ ( ରାଧା ) ବିଧୁ ( କର୍ପୂର ) ଦେଖି ଚରମନଗ ଅଶ୍ରିବା ସୁଖେ ଅଥୟ ଅର୍ଥାତ୍ ତାହାର ଦୁଃଖ ଶେଷସୀମାକୁ ଯାଉଅଛି । ଉତ୍ତର କୁରୁ ( କର ) ସଙ୍ଗୃହୀ ଦୂତିକ ଅର୍ଥାତ୍ ( ମୋତେ ଉତ୍ତର ଦିଅ ) କଳାକର ( କୃଷ୍ଣ ) ପ୍ରକାଶ କଲେ କୃଷ୍ଣ ଅଶ୍ରିବାକୁ ଅଙ୍କ ବିଶେଷ କରି ଅର୍ଥାତ୍ ମୋତେ ରାଧା ଅଶ୍ରିବା ନିମିତ୍ତ ବିଶେଷ ଯତ୍ନ କର ।

୯ମ ପଦ ୧ମ ଅର୍ଥ—ହରି ( ଚନ୍ଦ୍ର ) ଚନ୍ଦ୍ରମୁଖୀ ( ପୁଷ୍ପ ବିଶେଷର ) ଭାବ ଧରି କ୍ଷଣାରେ ମୁଗ୍ଧ କି ? ହରି ( ଚନ୍ଦ୍ର ) ର ମାୟା ସୁନ୍ଦର ରୂପରେ ( ଉତ୍ତମ କିରଣ ରୂପରେ ) ସମ୍ଭବ ହୋଇଅଛି । କାନ୍ତା କାନ୍ତପ୍ରୀତି ବହି ସୁମନା ( ଚନ୍ଦ୍ରମୁଖୀ ଫୁଲ ) ବାସ ଛାଡ଼ିଲା । କାନ୍ତା କାନ୍ତ ପ୍ରୀତିରେ ବସନ ତ୍ୟାଗ କଲାପରି ଏ ବାସନା ଛାଡ଼ିଲା । ରତିପତି ଭାବାବେଶ ରମାବାନ୍ଧବ ( ରମା=ନାରୀ, ନାରୀର ପତି ) ହେଲେ । କର ପୃଷ୍ଠରେ ଅଲିଙ୍ଗନ ( ଚନ୍ଦ୍ରକିରଣ ଆକାଶକୁ ଆଲିଙ୍ଗନ କରିଥିବାରୁ ) ନରେ ବିବଶରେ ଓ ସୁମନା ( ଦେବତାମାନେ ) ପ୍ରେମମଗ୍ନ ହେଲେ ।

୯ମ ପଦ ୨ୟ ଅର୍ଥରେ—ହରି ( କୃଷ୍ଣ ) ଚନ୍ଦ୍ରମୁଖୀ ଭାବ ଧରି ( ରାଧାଙ୍କ ଭାବ ଧରି ) କ୍ଷଣାରେ କି ମୁଗ୍ଧ ହେଲେ ( ଅର୍ଥାତ୍ ଅତିଶୟ ମୁଗ୍ଧ ହେଲେ ) । ମାୟା ( ଯୋଗମାୟା )

ସାର ଶୋଭା ସୁକୁମାରୀ, ଅବନୀଶିରୀ ସୁନ୍ଦରୀ—ପୁରନ୍ଦରୀ ପାରନ୍ଦ୍ର ମଧ୍ୟମା ରୂପସୀ । ପ୍ରାଣେଶ୍ୱରୀ ବିନା ତୋତେ, ନ ଡାକିବା ଅନ୍ତରଗତେ, ଅନ୍ୟ ନାମେ ପ୍ରୀତି ଊଣା ହେବ ସୁନାସି । କରଭୋରୁ ହେବ କାହାର । ପ୍ରତିପଦର୍ଶିନୀ ମାରେ କୁସୁମଶର । ୧୧ ।

ତେତେ କାଳ ପୁଣ୍ୟ କୁଣ୍ଡ, ହେବାରେ ପୀୟୂଷଭାଣ୍ଡ, ଦେଖିଲି ନୟନେ ତୋର ଛଇଳ ରୂପ । ଗୃହିଁ ଯା ନ ଗଲି ଦ୍ରବି, ଶିରେ ପଡ଼ାଇଲି ପବି, ସବୁତା ମାଧୁରୀବଳେ ଧଏ ସନ୍ତାପ । ଅପବର୍ଗ ଫଳପ୍ରଦାନୀ । କେତକୀ ଭୃଙ୍ଗ ଭାବ କି ବହିଲି ଧନି ! ୧୨ ।

ତୋ କୁଟିଳ କେଶ କୃଷ୍ଣ, ବର୍ଣ୍ଣେ ଯା ଗଙ୍ଗା ନିକୃଷ୍ଟ, ହିମାଦ୍ରିରୁ ଓହ୍ଲାଏ କି ଲହରୀ ଖେଳେ । କରଭ ଶରଣି ଗଲା, ଜାନୁ ଚୂମ୍ବି କରେ ଲୀଳା, କାଞ୍ଚନଜଙ୍ଘ ନିତମ୍ବେ ଲଘିଛୁ ହେଲେ । ନେଣ ବନ୍ଦି ଗତି କି ଲିବି । ମଣେ ଭଗୀରଥ ଗଙ୍ଗା ଖୋଳିଲା ପରି । ୧୩ ।

କାନ୍ତ ମୁଖଶୋଭାବ୍ୟୂହ, ଦିଶେ ଯଥା ସରୋରୁହ, ଭ୍ରୂଲତା ମିଳିନ୍ଦମାଳା ପରି ଶୋଭିତ । ବିରାଜେ ଯହିଁ ମାଧୁରୀ, ଖେଳେ ଲାବଣ୍ୟ ଲହରୀ, କି ଅବା ଉପମା ସ୍ୱଭାବେ ସେ ବଚନ । ପଞ୍ଚ ଘନ ପୟୋଧରେ ତା । ଦିଶେ ଯଥା ସ୍ଥାଣୁ ଶିରେ ବିଧୁ ଉଦିତା । ୧୪ ।

ମୋହନ ବଶ ସହିତ, ନାସା ମୋତି ନାସାରେ ତ, ତିଳ ପୁଷ୍ପେ ହିମବିନ୍ଦୁ ଯଥା ଶୋଭଇ । ଗଣ୍ଡ ସ୍ୱଚ୍ଛ ଦରପଣ, ଝଳି ଦିଶେ ସୁକୃଶାଭନ, ମନ୍ଦାର ବନ୍ଧୂଲି ରଙ୍ଗେ କରଇ ଠାଣି । ଦନ୍ତପନ୍ତି ସୁଷମା ଧରେ । ମାଣିକ୍ୟ ରାଜଇ ଯଥା ହେମ କୁହରେ । ୧୫ ।

ଭଇ ଭରଜ ମାଧୁରୀ, କୁନ୍ଦତ କି ହେମଗିରି, ଝୀନବାସେ ବିରାଜନ୍ତି ଅତି ସୁଷମେ । ରବିକର ତୁଙ୍ଗଟିରି, ଯଥା ଚୁମ୍ବିଲା ମାଧୁରୀ, ଦାମୀଭାବ ମୋହେ ଟିରି ଫଳକେ ଭ୍ରମେ । ବିରାଜି କି ପୀୟୂଷ କୁମ୍ଭ । ପଲକେ ଅଶାନ୍ତି ସ୍ତମ୍ଭ ଭାଙ୍ଗନ୍ତି ଦମ୍ଭ । ୧୬ ।

ଉପମାର ତୁ ଉପମା, ବର୍ଣ୍ଣିବ କେତେ ସୁଷମା, ବିରାଜନ୍ତି ଦେହେ ତୋର ଯେ ଅଳଙ୍କାର । ତାଙ୍କୁ ଅଳଙ୍କାର ହୋଇ, ସୁଷମା ଅଛୁ ବଢ଼ାଇ, ମାରିଛୁ ବାନ୍ଧିବ ଦାସେ କୁସୁମଶର । ରଣିତ ନୂପୁର ନିକ୍ୱଣ । ଶୁଭି ଯାଉଛି ଶ୍ରୁତିକି ଧୀରରତନ । ୧୭ ।

---

ଶୂକରରୂପେ ଯେ ସମ୍ଭବ ଅର୍ଥାତ୍ କୃଷ୍ଣଙ୍କୁ ହରି ( ହରଣ କରି ନେଇ ) ସୁମନା ବାସ ଛାଡ଼ଇ ( ରାଧାଙ୍କ ବାସରେ ଛାଡ଼ିଲା ) । କାନ୍ତା କାନ୍ତ ପ୍ରୀତି ବହି ( ରାଧାକୃଷ୍ଣ ପ୍ରୀତି କଲେ ) । ରମାବାନ୍ଧବ ( କୃଷ୍ଣ ) ରତିପତି ଭାବାବେଶ ହେଲେ । କର ପୃଷ୍ଠରେ ଆଲିଙ୍ଗନ ( ହସ୍ତପଦ୍ମଦ୍ୱାରା ରାଧାଙ୍କୁ ଆଲିଙ୍ଗନ କରିବାରୁ ) ବିବସନରେ ( ବସ୍ତ୍ରଚ୍ୟୁତ ହୋଇ ) ସୁମନା ( ରାଧା ) ପ୍ରେମମୂର୍ଚ୍ଛା ହେଲେ ।

୧୧ଶ ପଦ । ପାରନ୍ଦ୍ର—ସିଂହ । ପ୍ରତିପଦର୍ଶିନୀ—ଦୁଷ୍ଟରଜସ୍କା ।

୧୩ଶ ପଦ । ହିମାଦ୍ରି—ହିମାଳୟ ପର୍ବତ । କରଭ—ହସ୍ତିଶାବକ, ( ଏଠାରେ ) ଐରାବତ । ଜାନୁ—ଜନ୍ତୁରଷି, ଉରୁସନ୍ଧି । କାଞ୍ଚନଜଙ୍ଘ—ହିମାଳୟର ଶୃଙ୍ଗବିଶେଷ, ସୁନା ପରି ବର୍ଣ୍ଣ ଦେଖାଯାଉଥିବା ଜଙ୍ଘ । ଭଗୀରଥ—ସୂର୍ଯ୍ୟବଂଶୀୟ ନୃପତିବିଶେଷ ( ଏ ବିଷ୍ଣୁଙ୍କ ନଖକୋଣରୁ ବହୁକଷ୍ଟରେ ଗଙ୍ଗାଙ୍କୁ ମର୍ତ୍ତ୍ୟକୁ ଆଣିଥିଲେ ) ।

୧୪ଶ ପଦ । ସରୋରୁହ—ପଦ୍ମ । ମିଳିନ୍ଦ—ଭ୍ରମର । ସ୍ଥାଣୁ—ଶିବ । ବିଧୁ—ଚନ୍ଦ୍ର ।

୧୭ଶ ପଦ । ନିକ୍ୱଣ—ଶବ୍ଦ, ସ୍ୱନ । ୧୮ଶ ପଦ । କାସ୍ଥାବଳି—ଦାଗସମୂହ ।

କାଷ୍ଠାବଳୀ ଦେଖିଲେ ତୁହି, ସଖି ! ତୋ ରୂପ ଧରାଇ, ମୋହିନୀ କି ଇନ୍ଦ୍ରଜାଲ ଅଛୁ ବିସ୍ତାରି । ଗୁରୁ ଭାବଭଙ୍ଗୀ ଯେତେ, ନାଚଇ ନେତ୍ର ଅଗ୍ରତେ, କାଣୀ ଦାସତେ କପଟ ଶୋଭାରେ ଧରି । ବାଣୀ କଲୁ ବୃଦ୍ଧି ସୁକେଶୀ । ଛଣାପୀୟୂଷବଚନା କରୁଣାରାଶି । ୧୮ ।

ଚତୁର କାମକଚୁମ୍ବୀ, ଦାଣେ ତୋ ପକ୍ଷ୍ମ ଚୁଚୁମ୍ବୀ, ସ୍ମରସରତରଙ୍ଗିନୀ ନେଇ ନିକ୍ଷେପେ । କୋଳ ଆଶା ନାହିଁ ଯେଣୁ, କାକୋଳ ଆଣିବ ତେଣୁ, ସହିବୁ ସ୍ୱଗ୍ରଣେ ଦାସନାଶସନ୍ତାପେ । ଦରଶନେ ଘନକୁନ୍ତଳା । ଶିବେ ଶିବମନ୍ଦିରେ କି କରିବୁ ଲୀଳା । ୧୯ ।

ବଢ଼ତ କୁସୁମ ହାସ, ଲୌହକୁ ଚୁମ୍ବକ ଦୃଶ୍ୟ, ଜଡ଼ାଇଛୁ ମନଭୃଙ୍ଗେ ତୋ ରଦବାସେ । କୁନ୍ଦସୁନ୍ଦର ଦଶନ, ତୁହିଁ ଅଙ୍ଗ ସୁଶୋଭନ, ନ ଦ୍ରବ ହୃଦୟୁ ପବ କଲି କି ଦୋଷେ । ସେ ଫଳ ଫଳିଲା ଏ କାଳେ । ଘନରସଦାମା ତୁଅ ଖେଦ ଅନଳେ । ୨୦ ।

ନ ଛାଡ଼ଇ ଯଥା ଜଳ, ମାନସସରରେ ଦ୍ରବ, ସରସ କଷତା ତଥା ମୋର ମାନସ । ତୋ ଲୀଳା ପଙ୍କଜ ପ୍ରାଣ, କୁନ୍ଦନ ଶରୀର ଶୋଭା, ପୟୋଧର-ଭାରନତ ମୁଖ-ସାରସ । ବଳଭୂକପାଳିତ ପରି । ଆଶା କୋକିଳ ପଳାଇ ନ ଦିଏ ଧରି । ୨୧ ।

ସୁଷମା ମୋହନ ଶରେ, ସୁଷମା ମୋହ ନ ସରେ, ଆଶା କରି ଶୋଭାବତୀ ହରିଣୀଦୃଶା । ପ୍ରେମ କଲା ମଲ୍ଲପ, ନ ଟଳେ ଚିର ସନ୍ତାପ, କରମେ ଲେଖିବା ଥିଲା ଏମନ୍ତ ଦଶା । ବିନତାସୁତର ଯେସନ । ହରି ଆଣି ନ ଗଲା ଭୁଜଙ୍ଗ ଅଶନ । ୨୨ ।

ତୁ ତ ସ୍ୱଭାବେ ବାଳୀଶ, ଭାବରେ କଲୁ ବାଳଶ, କୁଳିଶକୁ ଶମ୍ପା ପରି ଡରୁ କି ଧୀରି । ସୁଗୋଲ ରମ୍ୟ ନିତମ୍ବ, ଭାଙ୍ଗିଦେଲା ସବୁ ଦମ୍ଭ, ମାଗଇ ଅଭୟ ଡରେ ରସପସରି । ତୋର ପ୍ରେମ ଚଇତ୍ରରଥ । ଭ୍ରମିବାକୁ ଚାହେଁ ଜାତ ମୋ ମନୋରଥ । ୨୩ ।

କରନ୍ତେ ରେ ମଧୁହାସି ! ସ୍ମର ଅଶାନ୍ତରେ ବସି, ମଦନଶଳାକା ପରି ରଟଇ ନାମେ । ଥିବାରୁ ସୁରତ ଆଶା, ଗଣିବଣା ଏଣୀଦୃଶା, ଗଣିଠାରେ ଶଣ ଅଶା କରି ଜନମେ । ନିଅନ୍ତା କେ ଉଡ଼ାଇ ମୋତେ । ବୁଡ଼ାଇ ଦିଅନ୍ତା ତୋର ସ୍ନେହସରିତେ ।୨୪।

---

୧୯ଶ ପଦ । ପକ୍ଷ୍ମ—ପଲକ, ନିମେଷ । କାକୋଳ—ବିଷ ।

୨୦ଶ ପଦ । ଲୌହାକର୍ଷକ—ମଣି । ରଦବାସ—ଓଷ୍ଠ । ଘନରସ—ଜଳ, କର୍ପୂର, ଗାଢ଼ସ୍ନେହ ।

୨୧ଶ ପଦ । କୁନ୍ଦନ—ସୁନା, ପୟୋଧର—କରଜ, ସ୍ତନ । ସାରସ—ପଦ୍ମ । ବଳଭୁକ୍—କୁଆ ।

୨୨ଶ ପଦ । ମଲ୍ଲପ—ଲେଖା, ବିନତାସୁତ—ଗରୁଡ଼, ଭୁଜଙ୍ଗ—ସର୍ପ, ଅଶନ—ଭକ୍ଷଣ, ଭୋଜନ ।

୨୩ଶ ପଦ । ବାଳୀଶ—ସ୍ତ୍ରୀଶ୍ରେଷ୍ଠ, ବାଳଶ—ପାଗଳ; କୁଳିଶ—ବଜ୍ର, ଶମ୍ପା—ବିଜୁଳି, ଚଇତ୍ରରଥ—କୁବେର ଉଦ୍ୟାନ ।

୨୪ଶ ପଦ । ମଦନଶଲାକା—ସାରୀ, ଏଣୀ—ହରିଣୀ ।

ଦରପଣେ ଗ୍ଲାନି ପଶି, ଦଶି ଯା ନ ଦେଇ ଧରି, ମନୋହର ! ହୃଦର ଲଗାଇ କାହିଁକି । ମନ୍ଦାକ୍ଷରେ କିବା ସହି, ବିମଳ କମଳ ଦେହି, ହଠ କଲୁ ସରେ କାମଗରଳ ଠୋକି । ତରଳ ଝଣ୍ଟକହାସିନୀ । କଣ୍ଠାକ୍ଷେ ଯେ ବଶ ତାଙ୍କୁ ଏ ରୀତି ପୁଣି । ୨୫ ।

ସଂସାରେ ଯେତେ ସୁଷମା, ତହିଁରେ ଦଶୁ ତ ବାମା-ରତନ ଯହିଁକି ମୋର ଶ୍ରଦ୍ଧା ବଳଇ । ସ୍ୱପନଦ୍ୱିମୁଗ୍ଧ କରି, ଦେଖାଇ ରୂପମାଧୁରୀ, ଏତେ କପଟ କାହିଁକି କରୁ ସ୍ୱମୁହିଁ । କମ୍ବୁକଣ୍ଠୀ ଅମ୍ବୁଜମୁଖୀ । ଦେଖ କାମଶର ମାରେ କିରତେ ଯୋଖି । ୨୬ ।

ଶିବ ଚତୁର୍ଦ୍ଦଶୀ ଜାଣି, ଭେଟିବାକୁ ମଦାଳସି, ମନ ଠାଇ ଠାଇ ଧାଏଁ ଶିବମନ୍ଦିରେ । ସତେ କି ଶିବମନ୍ଦିରେ, ରହିବି ଶୋଭାବନ୍ଦରେ, ଦେଖିବି ଧୂଜବୁ ଶିବେ ଫୁଲସମ୍ଭାରେ । ସଖୀ ପଣ ହରୁଛୁ ଚିତ୍ତ, ଲୁଟି କରୁଛୁ ସଦମ୍ଭ ଧଇର୍ଯ୍ୟ ବିତ୍ତ । ୨୭ ।

ସ୍ୱଲୋଚନେ ! ସୁଲୋଚନେ, ହରିବୁ ଚିତ୍ତ ସୁମନେ, ସୁମନେ ପୂଜି ସୁମନେ ସୁମନହାରେ । ଦେବୁ କି ମୋର ଗଳାରେ, ସତେ ଲମ୍ବାଇ ମଧୁରେ, ମଦନ-ମଥନ ସାକ୍ଷୀ ଥିବେ ବଧୀରେ । ପିକକଣ୍ଠୀ ବୀଣାବଚନି ! କୀଣାଜନକୁ କରୁଣା ଉଣା ନ ଘେନ । ୨୮ ।

ଜୀବ ଥିବାଯାଏ ମୋର, କରୁଛୁ ଏ ଅଙ୍ଗୀକାର, ସେବୁଥିବି ହୋଇ ଚିର କଣା କୋୟୂର । ରମ୍ୟ ବଚନରେ ପ୍ରୀତି, କରୁଥିବି ଦିବାରାତି, ତୋଷୁଥିବି ମତି କହି ଗୁଢ଼ୁ ମଧୁର । କୋକନଦ ବନ୍ଧୁ ସହକେ । ଚିତ୍ତଭୃଙ୍ଗେ ଦିଅ ସ୍ଥାନ ପ୍ରୀତିପଙ୍କଜେ । ୨୯ ।

ଯୁବାକୁ ଯୁବତୀ ପ୍ରାପ୍ତି, ବଳଇ ସୁର-ସମ୍ମତି, ତା ବିନା ଜୀଇବା ସିନା ଲେଖା ମରଣ । ଭାବି ଭାବି ଠାଇ ଠାଇ, ଲେଖି ମୁଦାଲ୍ ଛିଠାଇ, ରାଜସୁତା ପ୍ରୀତିଲଭେ ନୃପନନ୍ଦନ । ରାଧାପ୍ରେମକାମୀ ଗୋବିନ୍ଦ । ସେ ଭାବ ଭାବଇ ଜାତି ଗୋଲୋକଚନ୍ଦ୍ର । ୩୦ ।

---

୨୫ଶ ପଦ । ଦରପଣ—ଦର୍ପଣ, ଆରଶି; ମନ୍ଦାକ୍ଷ—ଲଜ୍ଜା, ଲାଜ ।

୨୬ଶ ପଦ । ବାମାରତନ—କାମିନୀଶ୍ରେଷ୍ଠ, ସ୍ତ୍ରୀଶ୍ରେଷ୍ଠ ।

୨୭ଶ ପଦ । ମଦାଳସୀ—ମତ୍ତବିହ୍ୱଳା, କାମୁକୀ; ସମ୍ଭାର—ସମୂହ, ରାଶି ।

୨୮ଶ ପଦ । ସୁମନ—ଫୁଲ, ଦେବତା, ଉତ୍ତମ ମନ; ମଦନମଥନ—ଶିବ ।

୨୯ଶ ପଦ । ଅଙ୍ଗୀକାର—ସ୍ୱୀକାର, କୋୟୂର—କିଙ୍କର, ରମ୍ୟ—ମନୋହର, ଗୂଢ଼ ଖୋସାମତିଆ କଥା, କୋକନଦ—ରକ୍ତପଦ୍ମ, ପଙ୍କଜ—ପଦ୍ମ ।

୩୦ଶ ପଦ । ସୁର—ଦେବତା, ଛିଠାଇ—ଚିଠି, ନୃପନନ୍ଦନ—ରାଜକୁମାର ।

## ୩୩ଶ ଛାନ୍ଦ

### ରାଗ— ଭୂପାଳ

ସରସ ଛାନ୍ଦେ ରସ ସୁଧୀ ସ ଅନୁପ୍ରାସ
ଶବଳଗଣ୍ଡ ଚିହ୍ନାକ୍ତ ଲଭି ସନ୍ତୋଷ । ୧ ।
ସବୁଠେ ବାଲାଈଶ ଶିବ ପଦ୍ମିନୀ ରସ
ସବେଗେ ଯାଇ ତା ଛଟା କରେ ପ୍ରକାଶ । ୨ ।
ସଖି ! ଦମ୍ଭ ବିନାଶେ ସ୍ୱମ୍ଭୁ ରଙ୍ଗେ ପ୍ରକାଶେ
ସରମ ଭରମ କାହିଁ ରଖିବ ଲେଶେ । ୩ ।
ସରଳତା ପ୍ରକାଶ ଫଳାଉ କରେ ତୋଷ
ସରଗ ବିଭୂତ ଏ ଗୋ ଦିଏ ବିଶେଷ । ୪ ।
ସଖି ! ଏ ତ ସରସେ ସୁଧା ରଙ୍ଗେ ବରଷେ
ସଦ୍ଧା ହୃଦ ରସମୟ ବାଣୀକି ଭାଷେ । ୫ ।
ସାରଦେଙ୍କ ପୌରୁଷ ସେ ତ କଳି ବିବଶ
ଶିଳୀମୁଖ ଦରପର ମାରେ ରଭସ । ୬ ।
ଙ୍ଗୃଗ ବାଣୀ ଭାଷି ସ୍ନେହଭାବ ପ୍ରକାଶି
ସାରଦାଏ ବିଯୋଗିନୀ ଧୈର୍ଯ୍ୟ ସ୍ମରଣି । ୭ ।
ସୁଷମାକୁ ବରଷେ ସ୍ୱତଃ ରସାଏ ରସେ
ସ୍ୱରଭଙ୍ଗ ହେବେ ଜାତ ପୁଲକାବେଶେ । ୮ ।
ସୃଷ୍ଟି କରେ ରଭସ ସମ୍ଭାବନୀ ଅଭ୍ୟାସ
ସନ୍ଦୃଷ୍ଟ ଚତୁର ଭାବରାଶି ବିଶେଷ । ୯ ।
ସଖୀ ! ଏ ଔଷଧୀଶ ଶୁଭ୍ରାଂଶୁଶିଳା ଦୃଶ
ସରସାଇ ତରଳାଇ କିଏ ମାନସ । ୧୦ ।
ସୁରୁଚି ଲିପି ଦିଶେ ସାରଙ୍ଗେ କି ସାରସେ
ସୁମନ ଶର ଜଗାଇ ଚେତା ଗରସେ । ୧୧ ।

---

୧ମ ପଦ । ସୁଧୀ—ପଣ୍ଡିତ, ଶବଳ—ହଂସ ।
୨ୟ ପଦ । ଈଶ—ଶ୍ରେଷ୍ଠ ।
୩ୟ ପଦ । ସରମ—ଲଜ୍ଜା, ଭରମ—ଭ୍ରମ, ମର୍ଯ୍ୟାଦା ।
୪ର୍ଥ ପଦ । ସରଗ—ସ୍ୱର୍ଗୀୟ ।
୫ମ ପଦ । ସୁଧା—ଅମୃତ ।
୬ଷ୍ଠ ପଦ । ଶିଳୀମୁଖ—ଶର ( କାମର ଶିଳୀମୁଖ ଶର ଅଛି ), ଦରପର—କନ୍ଦର୍ପ, ରଭସ—ଶୀଘ୍ର, ବେଗରେ ।
୭ମ ପଦ । ସ୍ମରଣି—ସ୍ମର୍ଣ୍ଣକର, ଅଭ୍ୟାସ—ଭୂମିକା ।
୧୦ମ ପଦ । ଔଷଧୀଶ—ଚନ୍ଦ୍ର, ଶୁଭ୍ରାଂଶୁଶିଳା—ଚନ୍ଦ୍ରକାନ୍ତମଣି ।
୧୧ଶ ପଦ । ଲିପି—ଅକ୍ଷର, ସାରଙ୍ଗ—ଭ୍ରମର, ସାରସ—ପଦ୍ମ, ସୁମନଶର—କନ୍ଦର୍ପ ।

ସତେ ମୋହନ ଫାଶୀ ଶୋଭା ପାଉଛନ୍ତି ଦଶି
ଶୀତକର କରେ ପଦ୍ମ ତମ କି ମିଶି । ୧୨ ।
ସତେ ଯଥା ସୁଭୂଷା ସ୍ନେହେ ସଂଯୋଗୀ ଯୋଷା
ଶୋଭୁଛନ୍ତି ମହାଭାବେ ଏ ସୁରମ୍ୟ ଭୂଷା । ୧୩ ।
ସହସ୍ରାଂଶୁ ତାମଶ ସତେ କଲେ କି ନାଶ
ସଂହରୁଛନ୍ତି ମନ୍ତୁ ତମ ସବସ ଭାଷ । ୧୪ ।
ସାହ୍ଲାଦିତ ମାନସ ସନ୍ତାଉଛନ୍ତି ବିଶେଷ
ସଚକିତା ଗୃହକାକ ଏ ଘନ ରସ । ୧୫ ।
ସନ୍ତୋଷାର ମାନସ ସମ କଲ୍ପ ବାଳିଶ
ସ୍ନେହେ ମିଶା ହବେ ଭାବ ନ ଦଶେ ଦଶ । ୧୬ ।
ସଖୀଙ୍କ ପୁଣି ଭାଷେ ସତେ ଦେଖିବ ପୁଂସେ
ସରସେ ରସି ତୋଷିବ ଯୁବା ବପୁସେ । ୧୭ ।
ଶତହ୍ରଦାର ହାସ ସତେ ହେବ ପ୍ରକାଶ
ସଚକିତ ଶ୍ରୀତ ମରୁବାସୀଙ୍କ ଦେଶ । ୧୮ ।
ସେ ତ ସଦଗ ଶଶୀ ସ୍ନେହେ ବିଳାସେ ରସି
ମୁଖଶିଖୀ ଚଣ୍ଡ ଭୁଞ୍ଜେ କରମ ବସି । ୧୯ ।
ସୁର ଶିଖିକ ରସି ସୁରତରୁ ମନାସି
ସାଧୁଁ ରଙ୍ଗ କାମଟୋପେ ପଡ଼ୁଛନ୍ତି ଖସି । ୨୦ ।
ସାନୁମାନେ ସାରସ ସତେ ହସିବ ହସ
ଦୂର ଜଇଁବେ ଭାଗ୍ୟକୁ ବାରୁଣୀ ଦଶ । ୨୧ ।
ସେ ତ ଯାଅନ୍ତେ ଦଶି ସ୍ୱପ୍ନ ପର୍ଯ୍ୟେ ଅସି
ସମୀର ଜାଣନ୍ତି ଫାନ୍ଦେ ଧରଲ ବସି । ୨୨ ।
ସହ୍ର ବିରହନସା ସହ୍ର ହେଲ ନିରାଶା
ସେ ମୁକୁର ବିମ୍ବ ଅଲିଙ୍ଗନ ସଦୃଶ । ୨୩ ।
ଶଙ୍କା ପଳାନ୍ତା ଖସି ସେ ତ ମୋହିଲେ ରସି
ସ୍ୱଭୂ ଭଜ ଦିବାନିଶି ଗୋଲୋକ ଭାଷି । ୨୪ ।

---

୧୨ଶ ପଦ । ଶୀତକର—ଚନ୍ଦ୍ର ।
୧୪ଶ ପଦ । ସହସ୍ରାଂଶୁ—ସୂର୍ଯ୍ୟ ।
୧୫ଶ ପଦ । ଘନରସ—ନୀର (ବୃଷ୍ଟିଜଳ) ।
୧୮ଶ ପଦ । ଶତହ୍ରଦା—ବିଦ୍ୟୁତ୍ ।
୨୧ଶ ପଦ । ସାନୁମାନ—ପର୍ବତ, ବାରୁଣୀ—ପଶ୍ଚିମଦିଗ ।
୨୩ଶ ପଦ । ମୁକୁର—ଦର୍ପଣ । ବିମ୍ବ—ପ୍ରତିବିମ୍ବ ।
୨୪ଶ ପଦ । ସ୍ୱଭୂ—ଶ୍ରୀକୃଷ୍ଣ, ବିଷ୍ଣୁ ।

## ୩୪ଶ ଛାନ୍ଦ

ରାଗ—କଳଶୀର—(ମୁନିବର ବାଣୀ)

ଏଥିଅନ୍ତେ ଶୁଣ ଜନେ                    କୁମାର ଯଥାବଧାନେ
ଗମେ ଶିବ ଦରଶନ, ଭକ୍ତଙ୍କ ମନ ଯେ । ୧ ।
ବାଳାଭିବ ହୃଦେ ଧରି                    ସଙ୍ଗେ ଛନ୍ତି ସଖା ଗୁରି
ଅରୋହଣ ତୁରଙ୍ଗମ, ଅନନ୍ୟୋପମ । ୨ ।
ଅଙ୍କାକୁ ମଲ୍ଲ ଅନେକ                    ବଳବାନ ଏକୁ ଏକ
ସଙ୍ଗେ ଛନ୍ତି ଲକ୍ଷ ଗୁରି, ପ୍ରହରୀ ପରି । ୩ ।
ହେଉଅଛି ଅନୁମାନ                    ଗମେ କିବା ମହାସେନ
ତାରକା ନାଶିବା ପାଇଁ, ସୁସଜ୍ଜ ହୋଇ । ୪ ।
ଗଜ ବାଜୀ ଅଗଣନ                    ଭାରବାହୀ ପଶୁମାନ
ନାରୀ ପୁରୁଷ ଅନେକ, ବୃଦ୍ଧ ଯୁବକ । ୫ ।
ଶିବ ଚତୁର୍ଦ୍ଦଶୀ ଜାଣି                    ଭେଟି ହେବ ମଦାଳସୀ
ଶିବଦର୍ଶନ ଛଳନା, ପୂଜା ସୁମନା । ୬ ।
କାଶୀ ବିଶ୍ୱନାଥ ଯହିଁ                    ଲିଙ୍ଗରୂପେ ଛନ୍ତି ରହି
ସଖୀ ପଞ୍ଚମର୍ମ ଏହି, ଦର୍ଶନ ତହିଁ । ୭ ।
କୁମାର ଦର୍ଶନଲୋଭୀ                    ବସ୍ତ୍ରରେ ଶକ୍ତିରଶୋଭୀ
ଦେଖିବ ସତେ କି ବାଳି, ନବଛଇଳୀ । ୮ ।
ପୃଥୁରୋମାନେଣୀ ସତେ                    ଗୁହିଁ ଦେଉଥିବ ନେତେ
ପ୍ରବୀଣା ମତ୍ତଅଳସୀ, ରତଅବେଶୀ । ୯ ।
ସରି ଯାଉଥିବ ବାଧା                    ବୋଲି ହେଉଥିବ ସୁଧା
ନୟନକୋଣେ ଅନାଇ, କପାକୁ ପାଇ । ୧୦ ।
ଏଣେ ସେ ମତ୍ତକାଶିନୀ                    ସଙ୍ଗତେ ଘେନି ସଙ୍ଗିନୀ
ମନ୍ଦରେ କରିଛି ବାସ, ବହୁ ସନ୍ତୋଷ । ୧୧ ।
ମନ୍ଦରେ କି ଚନ୍ଦ୍ରାବଳୀ                    କୃଷ୍ଣସ୍ନେହ କୁତୁହଳୀ
ଛନଛନ ଚିତ୍ତ କରେ, ହୃଦୟ ଥରେ । ୧୨ ।
ଅବା ଅପର୍ଣ୍ଣା ତାପସୀ                    ରୁଦ୍ରଙ୍କୁ କାମେ ମନାସି
ଗଜରି ଶୃଙ୍ଗେ ବସଇ, ଉଦ୍‌ବିଗ୍ନା ହୋଇ । ୧୩ ।

---

୪ର୍ଥ ପଦ । ତାରକା—ଦୈତ୍ୟବିଶେଷ (ଏହାକୁ କାର୍ତ୍ତିକ ବଧ କରିଥିଲେ) ।
୯ମ ପଦ । ପୃଥୁରୋମା—ମୀନ ।
୧୦ମ ପଦ । କପା—ଲକ୍ଷ୍ମୀ । ୧୧ଶ ପଦ । ମତ୍ତକାଶିନୀ—ମଦାଳସୀ ।
୧୨ଶ ପଦ । ଚନ୍ଦ୍ରାବଳୀ—ମଲ୍ଲଗୃହିଣୀ (କୃଷ୍ଣଙ୍କ ଦର୍ଶନ ନିମିତ୍ତ ଶିବ ମନ୍ଦରରେ ଥିଲେ ।)
୧୩ଶ ପଦ । ଅପର୍ଣ୍ଣା—ଦୁର୍ଗା ।

ଦ୍ୱିଧା ଶଙ୍କା ଲଜ୍ଜା ଘେନି      ବସିଛୁ ନବ ଯୌବନୀ
ଯଥା ନବୋଦିତା ସୀତା, ତଥା ଶୋଭିତା । ୧୪ ।

ତାପସୀ କୁମାରୀ ପନ୍ଥ      ଗୁରୁପାଶେ ସହଚରୀ
ଘେରି ବସିଛନ୍ତି ଭୀରୁ, ସ୍ତୁରୁ ରମ୍ଭୋରୁ । ୧୫ ।

ମନ୍ଦିରେ ଲଗିଛି ଗୋଳ      ବଳାଛି ସିନ୍ଧୁ ଚହଳ
ବାଜେ ଜଗଜ୍ଝମ୍ପା ଭେରୀ, ଝଙ୍ଗ ମଧୁରୀ । ୧୬ ।

ଘଣ୍ଟା ମର୍ଦ୍ଦଳ ମୃଦଙ୍ଗ      ବାଦ୍ୟ ବାଜେ ନାନା ଢଙ୍ଗ
ଶୁଣି ଶୁଣି ଆସେ ବଳି, ଭଲାଙ୍କ ଭଳି । ୧୭ ।

କେତେ ରଙ୍ଗେ ପିନ୍ଧି ବାସ      ଅସଂଖ୍ୟ ନାରୀ ପୁରୁଷ
କରନ୍ତି ଦର୍ଶନ ଶିବ, ଜଣାଇ ଭାବ । ୧୮ ।

ବିଲ୍ୱପତ୍ର ଘନ ରସ      ଦେଇ କେ ପୂଜେ ଗିରୀଶ
କେ କାଳେ ବସି ସ୍ନହୋସେ, ଶ୍ରଦ୍ଧା ମାନସେ । ୧୯ ।

ଲମ୍ପଟୀ କପଟୀ କେତେ      ବୁଲୁଛନ୍ତି ନାନାମତେ
କରେ ଧରି ତରବାରି, ଜଗେ ପ୍ରହରୀ । ୨୦ ।

ନାହିଁ ଯାର ଅନୁଭବ      କାହୁଁ ଅବା ସେ ବୁଝିବ
ସେକାଳର ବାଳାଭାବ, କହି ନୋହିବ । ୨୧ ।

ଛନକା ଚିତ୍ତରେ ବହି      ଏଣେ ତେଣେ ଦାଏ ଚାହିଁ
କୁରଙ୍ଗନୟନା ରଙ୍ଗେ, କଥାପ୍ରସଙ୍ଗେ । ୨୨ ।

ନେହମାରେ ନିଉଛାଳି      ଭକ୍ତିରେ ପୂଜେ ତ୍ରିଶୂଳୀ
ରଙ୍ଗ ନିଧୁବନଶୀଳା, ଭାବପ୍ରବଳା । ୨୩ ।

ରସଲେଖା ଏହି କାଳେ      ପ୍ରବେଶ ହେଲା ମନ୍ଦିରେ
ସଙ୍ଗେ ଅଛି ପରିମଳା, ଚତୁରୀ ବାଳା । ୨୪ ।

ରସଲେଖା ମୁଖ ଚାହିଁ      ଚଞ୍ଚଳା ବେଗେ ଡାକଇ
ଆସ ଆସ ସନ୍ନ୍ୟାସିନୀ, ରସସଙ୍ଗିନୀ । ୨୫ ।

ଭଲ ନଟ ଲଗାଇଲ      ଯେଉଁ ଚାଦପଟ ଦେଲ
ପୂଜୁଁ ଅମ୍ଭ ସଖୀଚିତ୍ତ, କଲ ମୋହିତ । ୨୬ ।

ତାପସୀକି ମାନ୍ୟ କରି      ପରିମଳା କର ଧରି
କେମା ବସାଇଲ ପାଶେ, ଅତି ହରଷେ । ୨୭ ।

ଭୁବନମୋହିନୀ ଧୀରେ      କୁଶଳ ବାର୍ତ୍ତା ପଚାରେ
ଚତୁର ପଣେ ଚତୁରୀ, ଭଙ୍ଗୀକି କରି । ୨୮ ।

---

୧୭ଶ ପଦ । ବଳି—ଭୋଗ ।

୧୯ଶ ପଦ । ସ୍ନହୋସ—ଧ୍ୟାନ ।

୨୩ଶ ପଦ । ନିଉଛାଳି—ବନ୍ଦାପନା କରି । ତ୍ରିଶୂଳୀ—ଶିବ । ନିଧୁବନଶୀଳା—ଆମୋଦ-ନିପୁଣା, ପ୍ରୀତିପାରଗା ।

୨୬ଶ ପଦ । ନଟ—ଖେଳ ।

ପରିମଳା ଛନ୍ଦେ ହସି — ଯାହା ଲାଗି ଅଛୁ ବସି
ଏ ଜାଗରେ ଉଜାଗରେ, ଅସନ୍ତ ଖରେ । ୨୯ ।

ଥିଲୁ ସଙ୍ଗତେ ତାଙ୍କର — ପଥରୁ ହେଲୁ ଅନ୍ତର
ସଖି ! ତୋ ଦର୍ଶନ ପାଇଁ, ଉଦ୍‌ବେଗ ହୋଇ । ୩୦ ।

ଗୃହ ମିତ ସଙ୍ଗେ ଘେନି — ଅସନ୍ତ ବହୁ ସଇନି
ଯହିଁ କାଶୀରାଜଦ୍ୱାର, ହେଲୁ ଅନ୍ତର । ୩୧ ।

ଏପରି କଥାବଶେଷ — କେଲ୍ଲି ହାସ ପରିହାସ
ରଜନୀ ହେଲା ଉଚ୍ଛୁର, ବାଳା କାତର । ୩୨ ।

ଏଥୁଅନ୍ତେ ଘେନି ତସ୍ଥ — କ୍ଷୀରନାସ୍ୱୀ ଏ ପ୍ରବେଶ
ତାର ସ୍ୱରୂପ ଭଙ୍ଗୀ ଯେତେ, ଘେନ କାନ୍ତିରେ । ୩୩ ।

ଚୂଡ଼ାରେ ତୈଲଙ୍ଗୀ ଜୁଡ଼ା — ଖଞ୍ଜିଅଛୁ ଚମ୍ପାବେଢ଼ା
ସ୍ଥିର ଶମ୍ପା କି ତମିସ୍ରେ, ତଥା ଅଭ୍ରସେ । ୩୪ ।

ନାସାରେ ଶୋଭୁଛୁ ମୋତି — ମୋହି ନିଏ ଯେତେ ମତି
କୁଣ୍ଡଳ ରଙ୍ଗେ ଦୋହଲେ, ଗଣ୍ଡ ମଣ୍ଡଳେ । ୩୫ ।

ପାନଖିଲି ଗଣ୍ଡେ ଦଶେ — ଦରପଣେ ଜବା କି ସେ
ଝଟକ ହାସକୁ ଚାହିଁ, ଚିତ୍ତ ହଜଇ । ୩୬ ।

ପିନ୍ଧିଅଛୁ ନୀଳ ଶାଢ଼ୀ — ଦେହେଁ ଯାଇଅଛୁ ଜଡ଼ି
ଅମଳ କମଳ କି ସେ, ମୁଖ ବିକଶେ । ୩୭ ।

ରଜତ କଳଅ କରେ — କନକ ମାଳା କଣ୍ଠରେ
ଶୋଭୁଅଛୁ ବଡ଼ ତୋରା, ନୟନକାରୀ । ୩୮ ।

କଟିରେ ମେଖଳା ଶୋହି — ବିବେକ ଦିଏ ହଜାଇ
ପଡ଼ିଛୁ ଗୁରୁ ନିତମ୍ବ, ଭାଙ୍ଗଇ ଦମ୍ଭ । ୩୯ ।

ରଙ୍ଗ ରାଜୀବ ଚରଣ — ମଞ୍ଜୀରେ ଦିଶେ ଶୋଭନ
ଫୁଟି ପଡ଼ୁଅଛୁ ରଙ୍ଗ, ଶୋଭାତରଙ୍ଗ । ୪୦ ।

ତା ମନ୍ଥର ଗଜଗତି — ତରଳି ନେଉଛୁ ମତି
ସାରସ ଥାନ୍ତି ଅନାଇ, ମନ୍ଦାକ୍ଷ ବହି । ୪୧ ।

ପହଣ୍ଡ ପକାଇ ଦଣ୍ଡେ — ରହି ଗୁଲୁଥାଏ ଦାଣ୍ଡେ
ଫୁଲାଇ ଦିଏ ନାସିକା; ବଡ଼ ରସିକା । ୪୨ ।

ପରିମଳା ତାକୁ ଚାହିଁ — ପାଶକୁ ନେଲା ଡକାଇ
ପଗ୍ଭରଇ ବିବରଣି, ସୁଜନେ ଶୁଣ । ୪୩ ।

---

୩୩ଶ ପଦ । କ୍ଷୀରନାସ୍ୱୀ—ଭଣ୍ଡାରୁଣୀ ।
୩୪ଶ ପଦ । ଶମ୍ପା—ବିଜୁଳି । ତମିସ୍ର—ଅନ୍ଧାର ।
୩୮ଶ ପଦ । କଳଅ—ହାତଖଡ଼ୁ ।
୪୦ଶ ପଦ । ମଞ୍ଜୀର—ନୂପୁର ।

କାହାନ୍ତି ରାଜନନ୍ଦନ                    କାହିଁଗଲେ ସଖୀମାନ
ତୁ ତ ଏକାକିନୀ ହୋଇ, ଅଛୁ କିପାଇଁ । ୪୪ ।
ସୈନ୍ୟ ସାମନ୍ତ କାହାନ୍ତି                    କିଣେ କେହୁ ନ ଅଛନ୍ତି
ଲାଗଇ ବଡ଼ ସନ୍ଦେହ, ଚେଟିମା କହ । ୪୫ ।
ପଦ୍ମମାଳାମୁଖ ଚାହିଁ                    ଚେଟିମା ଧୀରେ କହଇ
ଶୁଣିଛନ୍ତି ଅଜ ମାନେ, ଭୂମ୍ଭୁଙ୍କ ମନେ । ୪୬ ।
ମେଘ ସ୍ତନିତକୁ ଯଥା                    ଶୁଣଇ ଚାତକ ତଥା
ରାଜନନ୍ଦନୀ ଶୁଣଇ ଚେଟିମା କହି । ୪୭ ।
"ବାହିନୀ ହେଲା ପ୍ରବେଶ                    କାଶୀରାଜପୁର ପାଶ
ସୈନ୍ୟେ ଭଟିଲା ଚହଳ, ଏମନ୍ତ ବେଳ । ୪୮ ।
ଗଡ ନଷେଧିଲେ ଅସି                    କାଶୀଚରେ ସୈନ୍ୟେ ପଶି
ନ କରିବାକୁ ଅବଜ୍ଞା, ନୃପତି ଆଜ୍ଞା । ୪୯ ।
ବିଷଧର ପ୍ରାୟ ହୋଇ                    କେବେ ନ ଶୁଣିଲେ କେହି
ବିଷକଣ୍ଠ ଦରଶନ, କେଣେ ଭଇଲେ । ୫୦ ।
ପ୍ରବେଶିଲେ କାଶୀବଳ                    ଲାଗିଗଲା ରଣଗୋଳ
ଯୁବରାଜ ହେଲେ ଜୟୀ, ନୃପ ବିଜୟୀ । ୫୧ ।
ପୁଣି ଅସି ସୁତା ଦ୍ୱାର                    ରଚିଲା ମାୟା ସମର
ଲଗାଇ ଦେଲା ଭେଲିକି, ପୂଜେ କାଳୀକି । ୫୨ ।
ନାରୀଙ୍କି ଛାଡ଼ି ପୁରୁଷ                    କଲା ସବୁ ଛାଗମେଷ
ଭଲେ ସେ କଥା ସ୍ମରଣ କମେ ପର୍ଣ୍ଣ" । ୫୩ ।
ବାମାଙ୍କ ନୟନେ ନୀର                    ଏଣେ ହେଲା ଝରଝର
କହୁଛୁ ଚେଡି ଚତୁରୀ, ମନ୍ତ୍ର କରି । ୫୪ ।
"କେଣେ ବୁଲି ମନ୍ତ୍ର କହି                    ଦେଲା ସେ ଧୂଳି ଉଡ଼ାଇ
ମନ୍ତ୍ରମୁଗ୍ଧ ଛାଗ ମେଷ, ନେଲା ତା ପାଶ । ୫୫ ।
କହିଲା ରଙ୍ଗେ ହୃଦରେ                    ଅଣ୍ଟାକରି ନବବାଳୀ
ଦେବୀ ପାଶେ ଦେବୀ ବଳି, ତୋଷିବି କାଳୀ । ୫୬ ।

---

୪୫ଶ ପଦ । ଚେଟିମା—ଦାସୀ ।
୪୭ଶ ପଦ । ମେଘସ୍ତନିତ—ମେଘଗର୍ଜନ ।
୪୮ଶ ପଦ । ବାହିନୀ—ସୈନ୍ୟଦଳ, ଥାଟ । ଚହଳ—ଗୋଳମାଳ ।
୪୯ଶ ପଦ । ଚର—ଦୂତ ।
୫୦ଶ ପଦ । ବିଷଧର—ସର୍ପ । ବିଷକଣ୍ଠ—ମହାଦେବ ।
୫୧ଶ ପଦ । ବଳ—ସୈନ୍ୟଦଳ ।
୫୨ଶ ପଦ । ସୁତା—କନ୍ୟା, ଝିଅ । ସମର—ଯୁଦ୍ଧ । କାଳୀ—ଦୁର୍ଗା, କାଳିକା ।

ଏକାଳେ ଯେ ସନ୍ନ୍ୟାସିନୀ ଯେ ଥିଲା ଅମ୍ବ ବାହିନୀ
ଲାଗେ ବଡ଼ ଅଚମ୍ବିତ, କଲା ଯେମନ୍ତ । ୫୭ ।

ଧରି କଦମ୍ବ ସୁମନେ ମନ୍ତ୍ରିଲା ଅତି ଯତନେ
ଫିଙ୍ଗିଦେଲା ବାମେତର, କରେ ସତ୍ୱର । ୫୮ ।

ମୋହ ଭାଜିଲା ନନ୍ଦନୀ ଉଠିଲେ ସର୍ବ ସଇନୀ
ପୁଣି ଲାଗିଗଲା ଗୋଳ, ବଡ଼ ପ୍ରବଳ । ୫୯ ।

ଗଣ୍ଡି ଶିରୀ ଗନ୍ଧ ଗୁଣ୍ଡ଼ ହେମପଦ୍ମ ପଡ଼େ ଝୁଣ୍ଡ଼
ବାଳାଙ୍କ କର୍ଣ୍ଣୁ ସେ କାଳେ, ଧନୁ ଟଙ୍କାରେ । ୬୦ ।

ଅଙ୍ଗଯୁବରାଜ ବୀର ରଚି ଅଦ୍ଭୁତ ସମର
ନୃପ ନୃପସୁତା ବାନ୍ଧି, କରିଲେ ବନ୍ଦୀ । ୬୧ ।

ସେ ବେନିଙ୍କୁ ଦୟା ବହି ଦେଲେ ପୁଣି ମୁକୁଳାଇ
ପ୍ରଶଂସିତ ଯୁବରାଜ, ଲଜ୍ଜିତ ରାଜ । ୬୨ ।

ନାରୀ ହେବାକୁ ଉତ୍ତର ସମରକ୍ଲାନ୍ତ ସୁଧୀର
ତୁମ୍ଭଙ୍କୁ ଭେଟିବା ପାଇଁ, ଦେଲେ ପଠାଇ । ୬୩ ।

ତାଲ୍ ସଫଳ ନୟନ କରିବେ କରି ଦର୍ଶନ
ନୃପସୁତା ସୁକେଶୀଙ୍କ, କହି ଏତକ" । ୬୪ ।

ହରଷ ବିଷାଦେ ପୂରି ଗଲା ଏକାଳେ କଶୋରୀ
କରି ସଦାଶିବ ଧ୍ୟାନ, ହେଲା ଉଚ୍ଛନ୍ନ । ୬୫ ।

ଭଷା ନ ହେଉ ପ୍ରକାଶ ଗଲେ ବାଳା ଛନ୍ଦବାସ
ଗୋଲୋକ ଚନ୍ଦ୍ରେ ଟିସ୍ରେଶ, ମିଳନ ଆଶ । ୬୬ ।

## ୩୬ ଶ ଛାନ୍ଦ

ରାଗ—ରୈତୀ

ସନ୍ଧ୍ୟା ସଞ୍ଚାରିକା ହୋଇ, ସବିତା ଦେଲା ମିଳାଇ, ବାରୁଣୀ ତରୁଣୀ ସଙ୍ଗେ ମଧୁରେ ନଗେ । ରବି ମୁଖ ହସ ହସ, ବାରୁଣୀ ସାଜିଲା ବେଶ, ଉକୁଣ୍ଠାଇଲା ହରିଦ୍ରା ମିଳନ ରଙ୍ଗେ । ନବ ନବ ବେଶେ ଛଇଲୀ, କିପୁର ମୋହିନୀ ଛବି ଧରିଲା ବାଳୀ । ୧ ।

---

୫୮ଶ ପଦ । ବାମେତର—ଡାହାଣ । ୫୯ଶ ପଦ । ସଇନୀ—ସୈନ୍ୟ ।
୬୦ଶ ପଦ । ହେମପଦ୍ମ—ସୁନାପଦ୍ମ, କର୍ଣ୍ଣାଳଙ୍କାରବିଶେଷ ।

ଖଗସ୍ୱନ ଗୁଞ୍ଜୁକର, ରବି ହରିତାଳ ଗୋଷ୍ଠୀ, ମୋହୁ କପଷ୍ଟିତ ବେଷେ ସେ କି ମଞ୍ଜିଲା ? ତପନ ଗଲେ ତଳକୁ, ଲଭି ପୁରୁଷାଯ଼ିତକୁ, କେଶ ମୁକୁଳି ବିପୁଳ ଅନ୍ଧାର ହେଲା । ଗର୍ଭକ ଶୋଭିଲେ ତାରକା । ତମ ଅଣିଲି ଅତନୁ ଏକାଳେ ଏକା । ୨ ।

ପୁରାଇଲା ଅନୁରାଗେ, ନବଦମ୍ପତିଙ୍କି ବେଗେ, ବିଭାଞ୍ଚନ ସମାହନରେ ପରି ପାଇତ । ଅତନୁର ଅନୁକୂଳ ବାଦ୍ୟ ବାଜିଲା କୋକିଳ, ଅଷ୍ଟ ଦଣ୍ଡ ଜାଣି ଶେଷେ ଠୋଇ ଚୂଡ଼ । ନଗରୁ ନିଭିଲା ଅଲୋକ । ବିରହିଣୀକି ତପୋଡ଼ିଲା ପ୍ରେମପାବକ । ୩ ।

ଏକାଳେ ଯୋଗଭଙ୍ଗିମା, ସଙ୍ଗତେ ଘେନି ସଙ୍ଗିମା, ଭିନ୍ନାଞ୍ଜନକେଶୀ ଶିବ ମନ୍ଦିରେ ଗଲା । ତା ଅଙ୍ଗି ଅର୍ଥାର୍ଥୀ ଭାବ, କଲା ଧ୍ୟାୟି ଶିବ ସ୍ତବ, ଧବଳାଭ ଭାବ ରଙ୍ଗ ଜବାଅଧର । ଶିବପୁରେ କି ସେ ରୋହିଣୀ । ଖୋଜେ ପ୍ରତିପଦେ ଚନ୍ଦ୍ର ନ ଲଭି ଧନୀ ।୪।

ଧୀର କରେ ଭକ୍ତି ପୁତ, ଶିରେ କରାଞ୍ଜଳି ସ୍ଥିତ, ମୃଣାଳ ମୂଳେ ଉଲଟି ପଦ୍ମ କି ଲମ୍ବେ । କିବା ପୀନ ପୟୋଧର, ପରଶି ଧ୍ୱଜେ ସୁନ୍ଦର, ବିଧୁକର କିବା ଦୁଇ ମେରୁକୁ ଚୁମ୍ବେ । ସ୍ଫୁରିତ ଅଧର ଶୋଭିର । ପକ୍ୱ ବିମ୍ବ ମୃଦୁ ବାତେ ଯଥା କମ୍ପଇ । ୫ ।

ଏକାଳେ ବାମନୟନ, ବାମା ବାମଜାନୁ, ତୁଣ୍ଡ, କମ୍ପିଲେ ଦକ୍ଷିଣେତର ବାହୁ ଶକୁନେ । ସୁଦତଭାଳୀ ତାଳେ ତାଳେ, ନାଚିଲା ପ୍ରେମେ ମଞ୍ଜୁଳେ, ଶିବଭାବାବେଶୀ ହେଲା ବାଳା ସଘନେ । ଧରି ଚଞ୍ଚଳାର କରକୁ । ବୋଲେ ବହ ଅଶୁତୋଷ ନବରସକୁ । ୬ ।

ଇନ୍ଦୁରେଖା ଭାବ ଜାଣି, ଚଞ୍ଚଳା ଚଞ୍ଚଳେ ଭଣି, ନବ ଉଲୁଣ୍ଠା ପୀଡ଼େ କି ସଖି ବିସ୍ତର । ଶୁଣି ନବ ରସ ଧନୀ । କାଟିବୁ ପାଞ୍ଚ ରଜନୀ, ଯୁଗେ ମଣୁ ଦଣ୍ଡେ ଯେଣୁ ତୁ ବିରହର । ସମବେଦନାକୁ ପ୍ରକାଶି । ନବ ରସ ଭାଷେ ଶୁଣେ ରତିଅଭେଶୀ । ୭ ।

ଶୃଙ୍ଗାରରସ ବଖାଣି, ଶିବକୋଳ ବଳାସିନୀ, ବାନର ଭାବେ ସୁରତ ଧନେ ଯାଚିଲେ । କମ୍ପାଇ ଶିର ସଘନେ, ଚନାଉଁ ନୟନକୋଣେ, ବାନରମୂରତ ଶିବ ଦଣ୍ଡକେ ହେଲେ । ରତିପତି ବଶ ମହେଶ । ବଳିଲା ହାନରରତିବନେ ମାନସ । ୮ ।

କରି ରେ ଟେକି କାର ଈଶ, ଅଉଁସିଲେ ବୀରକେଶ, ତ୍ରିପୁର ସଙ୍ଗତେ ମହାରଣେ ମାତିଲେ । ହେଲା ଯୁଦ୍ଧ ମହାଘୋର, ଶୁଭେ ଧର ମାର ମାର, ଅଷ୍ଟକୁଳାଚଳ ନାଗ ଭୟେ କମ୍ପିଲେ । ତ୍ରିଶୂଳ ବୁଲଇ ପ୍ରଖରେ । କାଟିଲେ ଦାନବ ଶିର ଶୋଣିତ ଝରେ ।୯।

---

୨ୟ ପଦ । ଖଗ—ପକ୍ଷୀ; ତପନ—ସୂର୍ଯ୍ୟ; ପୁରୁଷାୟିତ—ବିପରୀତ ରତି । ଗର୍ଭକ—କେଶସ୍ଥ ଫୁଲମାଳ; ଅତନୁ—କନ୍ଦର୍ପ ।

୪ର୍ଥ ପଦ । ଭିନ୍ନାଞ୍ଜନ—ଦଳିତାଞ୍ଜନ, ରୋହିଣୀ—ନକ୍ଷତ୍ରବିଶେଷ, ଚନ୍ଦ୍ରଙ୍କର ପ୍ରିୟତମା ପତ୍ନୀ ।

୫ମ ପଦ । ମୃଣାଳ—ପଦ୍ମନାଡ଼, ପୀନ—ସ୍ଥୂଳ, ବିଧୁ—ଚନ୍ଦ୍ର, ମେରୁ—ମେରୁ ପର୍ବତ ।

୬ଷ୍ଠ ପଦ । ତୁଣ୍ଡ—ଚଞ୍ଚୁଳ, ଶକୁନ—ଶୁଭାଶୁଭ ଚିହ୍ନ ।

୮ମ ପଦ । ରତିପତି—କନ୍ଦର୍ପ । ମହେଶ—ମହାଦେବ ।

୯ମ ପଦ । ବୀରକେଶ—ମୁଞ୍ଛ । ରଣ—ଯୁଦ୍ଧ । ଅଷ୍ଟକୁଳାଚଳ—୮ଟି ପର୍ବତ, ଯେ ପୃଥିବୀକୁ ରକ୍ଷା କରିଅଛି । ନାଗ—ହାତୀ । ତ୍ରିଶୂଳ—ଶିବଙ୍କ ଅୟୁଧ ।

ନିଜସୁତ ହାତେ ହାଣି, ବାନ୍ଧଲେ ତ୍ରିଶୂଳପାଣି, ମସ୍ତକ ଛୁନ୍ନ ଶରୀର କୋଳରେ ଧରି । ନୋହିଲା ନ ପାଇ ବଦନ, ଅଧୈର୍ଯ୍ୟ ହେଲେ କ୍ରନ୍ଦନ, କ ବର୍ମ ଦଳି କ ବର୍ମ ଦଳି କରିଗଲି । ମଣିଭଦ୍ର ନରେଶରଙ୍କୁ । କାଟି ଲଗାଇ ଗୁହିଁଲେ ବକ୍ରଭ୍ରୂଣ୍ଡ୍ର । ୧୦ ।

ଭାଗବତ ଶୁଣ ଶୁଦ୍ଧ, ଗୋଡ଼ାଇଲେ ତ୍ରିଅମ୍ବକ, ତ୍ରିଲୋକ ଭ୍ରମି ସେ ଖେଦେ ତଦ ନିଜ । କଳ୍ପବୃକ୍ଷ ନେତ୍ରେ ଦେଖି, ବସେ ଗୃଣ୍ଡେ ଶୁକପକ୍ଷୀ, ଦ୍ୱାରେ ହର ନେତ୍ର ବୃକ୍ଷ ହୋଇଲା । ବଢ଼େ ହର ଯେତେ ବଢ଼େ ସେ । ନଳ ଜାତ କରି ଯୋଖି ସେ କ ହୂଟସ । ୧୧ ।

ପୁନ ଶୁଣି ପାର୍ବତୀ, ବସିଥିଲେ ମଥା ପୋତ, ହର ଜାତ ହୃଦେ ମାନ ମହା ପ୍ରବଳ । ଅଜଗବ ବିଭଞ୍ଜନେ, ଉଛ ଗ୍ଲାନି ଦୁଃଖନେ, ଉମା ସଚକିତ ହେଲେ ସ୍ମେରୁଙ୍କ କୋଳ । ମନ୍ଦହାସ ହେଲେ ପ୍ରକାଶ । ଗିରିସୁତା ମାନନାଶ ଦେଖି ଗିରୀଶ । ୧୨ ।

ବୃକାସୁରେ ତୋଷ୍ଟ କରେ, ଗୋଡ଼ାଏ ଶିବ ପଛରେ, ଧରି ପରଖିବା ପାଇଁ କର ସ୍ପରଶି । ସୁରପୁର ଇନ୍ଦ୍ରପୁର, ବ୍ରହ୍ମା ଆଦି ଯେତେ ପୁର, ଭ୍ରମି ଅସ୍ଥିର ହୋଇଲେ କୈଳାସବାସୀ । ଭସ୍ମଙ୍କର ମଣିଲେ ସର୍ବ । ପ୍ରଚଣ୍ଡ ବେଗେ ଧାଇଁଲା ଖଳ ଦାନବ । ୧୩ ।

ଶିବ ହୋଇ ପ୍ରଚଣ୍ଡ, କାଟିଲେ ଦକ୍ଷର ମୁଣ୍ଡ, ଯଜ୍ଞକୁଣ୍ଡେ ସତୀ ପନ୍ଥ ଦେଲେ ଜୀବନ । ଗଣାଧିପତ ନ ଚିହ୍ନି, କୋଧେ ଜଳ ଶୂଳପାଣି, କାଟିଲେ ଖଡ୍ଗରେ ଦ୍ୱୈମାତୁର ବଦନ । ରୌଦ୍ରରସ ହେଲ ଏ ଧୀରେ । ଭାମନାଶ ହେଲେ ବିରୂପାକ୍ଷ କୋପରେ ।୧୪।

କୁମାର ସୁଧନ୍ୱା ଶିର, ଦେଖି ନେଲେ କରେ ହର, କଣ୍ଠ ମାଳ କଲେ ପୁଣ ରୁଧିରସ୍ରାବୀ । ମହା ଦୁର୍ଗନ୍ଧ କରଇ, ମକ୍ଷିକା ବେଢ଼ନ୍ତି ତହିଁ, ଶୁଷ୍କ ଶୋଣିତ କାଢ଼ିଲେ ଉତ୍ତୁଁକ ଭାବ । ଶିବଙ୍କର ବିଭତ୍ସ କାଣ୍ଡ । ଚଣ୍ଡୀଗୁମଣ୍ଡା ଶ୍ରୈବାନ୍ତ ସମୀପେ ମୁଣ୍ଡ । ୧୫ ।

ପାଣ୍ଡବ ଶିବିର ଦ୍ୱାରୀ, ହୋଇଥିଲେ ଶୂଳଧାରୀ, ଅଶ୍ୱତ୍ଥାମା କରୁ ସ୍ତୁତ କୈଳାସ ଗଲେ । ଦେବଗୁରୁ କଲେ ସ୍ତବ, ଶଙ୍କର ରଖିଲେ ଜୀବ, କୋପପାବକସାଗରେ ନେଇ ଫିଙ୍ଗିଲେ । ଆଶୁତୋଷ ନାମ ତାଙ୍କର । ନବରସ ସଖି । ଶତ୍ରେ ହର ବାଗୁର । ୧୬ ।

ବାମଦେବ ନବରସ, ଶୁଣି ସକଳେ ହରଷ, ବାରିଜଗନ୍ଧା ଲଭିଲ ଅପୂର୍ବ ପ୍ରୀତ । ଗତ ଦେଖି ଦଣ୍ଡେ ଦଣ୍ଡ, ବାନ୍ଧଇ କୁସୁମ କାଣ୍ଡ, ବେଳ ଜାଣି ଖଳ ପ୍ରକାଶଇ ଶକତ । ବିରହ ସତତ ପ୍ରଚଣ୍ଡ । ଅଶାରେ ଯେତିକି ସୁଖ ତେତିକି ଦଣ୍ଡ । ୧୭ ।

---

୧୦ମ ପଦ । କରୀ—ହସ୍ତୀ । ୧୧ଶ ପଦ । ତ୍ରିଅମ୍ବକ—ଶିବ ।

୧୨ଶ ପଦ । ଅଜଗବ—ଶିବଧନୁ, ଏହାଙ୍କୁ ଭାଙ୍ଗି ରାମ ସୀତାଙ୍କୁ ବିବାହ କରିଥିଲେ । ଗିରିସୁତା—ପାର୍ବତୀ ।

୧୩ଶ ପଦ । କୈଳାସବାସୀ—ଶିବ ।

୧୪ଶ ପଦ । ସତୀ—ଦକ୍ଷକୁମାରୀ, ଶିବଙ୍କ ପତ୍ନୀ । ଗଣାଧିପତ—ଗଣେଶ । ଶୂଳପାଣି—ମହାଦେବ । ଦ୍ୱୈମାତୁର—ଗଣେଶ ।

୧୫ଶ ପଦ । କୁମାର—କାର୍ତ୍ତିକ । ସୁଧନ୍ୱା—ଭକ୍ତଶ୍ରେଷ୍ଠ (ଅର୍ଜୁନ ଏହାର ମସ୍ତକ କାଟିଥିଲେ । ଏହାଙ୍କର ମୁଣ୍ଡ ଶିବମାଳାର ମେରୁ ଅଟେ) । ରୁଧିର—ରକ୍ତ । ଶୋଣିତ—ରକ୍ତ ।

୧୬ଶ ପଦ । ଦେବଗୁରୁ—ବୃହସ୍ପତି । ଶକ୍ର—ଇନ୍ଦ୍ର ।

୧୭ଶ ପଦ । ବାମଦେବ—ଶିବ । ବାରିଜଗନ୍ଧା—ପଦ୍ମଗନ୍ଧାନାୟିକା; ପଦ୍ମିନୀ ।

ଝଲ୍କଣ୍ଠାରେ ଅନୁରାଗ, ହେଲା ମଧୁରେ ସଂଯୋଗ, ତୁଳାକୋମଳାଙ୍ଗୀ କ ଅତୁଳା ବାଡକା । ପୂର୍ବ ସ୍ମୃତ ବିସ୍ମରଣା, କରନ୍ତୁ ଏକ ଧାରଣା, ପଢଠାରୁ ବଳ ଅଛି ଅଛି ବିଭ କା । ଭାନ୍ତଗଡ ଦାସ୍ତବଧାମୀ । ମଣେ କାଷ୍ଠିତ ଶବଦ ଆଗତ ଧ୍ୱନି । ୧୮ ।

ଚଳକେ କୁରଙ୍ଗୀତୋଳା, କରଇ ତରଙ୍ଗମାଳା, ପଦସ୍ପନ୍ଦେ ଶ୍ରୁତ ଭେଦ ଗୃହିଁଲ ପର । ଉଲ୍ଲଣ୍ଠାରେ କୃଶୋଦରୀ, ରହନ୍ତି ସେ ଶୋଭା ଧରି, ଚିତ୍ତରେ ଖେଳାଇ ଚନ୍ଦ୍ରା ଊର୍ମି ଭଙ୍ଗୀ । ଶିବେ ଅନାଇଛନ୍ତି ନୟନେ । ଦ୍ୱାରଦେଶ ଗୃହନ୍ତ୍ୱଅଛି ନୟନକୋଣେ । ୧୯ ।

ପ୍ରଥମା କେ ହୋଇ ତହିଁ, ଦ୍ୱିତୀୟାକୁ ରଙ୍ଗେ କହି, କେଉଁକାଳେ ପୁରୁଷକୁ ନାହିଁ ପରତେ । ନିଜ ସୁଖଲଭେ ନାରୀ, ମହତ ନିଅନ୍ତି ଧରି, ନ ଭାବି ପ୍ରମଦା ଦୁଃଖ କଷ୍ଟତେ ଚତେ । ଦ୍ୱିତୀୟା ନୋହିଲ ସମ୍ମତ । ବୋଇଲ କପୋତୀ ଲାଗି କପୋତ ହତ । ୨୦ ।

ସେ ପୁଣି କହିଲ ସତ, କହିଲ ଯା ପ୍ରାଣମିତ, ହରି କି ନ କଲେ ବୃନ୍ଦାବତୀଙ୍କ ହରି । ଦ୍ୱିତୀୟା କହଇ ହରି, କି ନ ଦଲେ ସହଚରି ! ତା ବିନା କି କରନ୍ତି ସେ ଗ୍ରହଣ ବାରି । ତୃତୀୟା କହଇ ଉଚିତ । ନିଜେ ନ ଦେଜଲେ କାହୁଁ ତେଜେ ସତୀତ୍ୱ । ୨୧ ।

ପ୍ରଥମା ପଶ୍ଚୁରେ ତହିଁ, କିଛିହିଁ ବୁଝିଲ ନାହିଁ, ତୃତୀୟା କହଇ ବିଧୁ ତାରା ହରିଲେ । ଚନ୍ଦ୍ରେ ଚନ୍ଦ୍ର ନ ବରିଲ, ତାରା ସତୀ ବୋଲାଇଲା, ଦେବସଭାରେ ଏ ଭାବେ ପ୍ରସ୍ତାବ କଲେ । ଜଳନ୍ଧର ହେଲ ନିହତ । କର୍ମବନ୍ଧନକୁ କେ ବା କରେ ଅଯୁତ । ୨୨ ।

ଚତୁର୍ଥୀ ବୋଲଇ ତହୁଁ, ସାବିତ୍ରୀ ଆଣିଲ କାହୁଁ, ଯେବେ କର୍ମବନ୍ଧ ସ୍ଥିର ମୃତ ଜୀବେଶ । ଚଞ୍ଚଳା ଶୁଣି କହଇ, ସେ ପତିଙ୍କି ଆଣି ନାହିଁ, ସତୀପଣୁ ପୁରସ୍କାର ଦେଲେ ଜୀବେଶ । ସମସ୍ତ ସଂସାରେ ଅସ୍ଥିର । ଏକ ଧର୍ମ ସତ୍ୟ ସିନା ଅଟଇ ଚିର । ୨୩ ।

ଏସନ ବାଣୀଗୃହୁରୀ, ଶୁଣି ତୋଷେ ରସାଦରୀ; ଏହାଉତାରେ ଚାଲିଲ ପୁଂସ-କୁଞ୍ଜର । ପ୍ରବେଶ ହେଲ କିଶୋର, ଏକାଳେ ଚକ୍ର ପ୍ରହାର, ବିଷାଦ-ନକ୍ର ପଲକେ କଲ ସଂହାର । ଦେଇ କରିଗତିକି ଗତି । ଢାଳି ଦେଲ ବଳଇ ଯା ସୁରବିଭୂତି । ୨୪ ।

ହରିକଟୀ ହରିସମ, ପୁଂସ ମନ ମାତଙ୍ଗମ, ଆକର୍ଷି ଲଂଘିଲ ଧୈର୍ଯ୍ୟ ଗ୍ରହୁ ମୋଡକ । କାମଗୁଣିଆ ସେକାଳେ, ଶାନ୍ତିକି ହରି କୌଶଳେ, ଉରଜସଂପୁଟେ ନେଇ ରଖିଲ ତାଙ୍କି । ମୋହିନୀ ନାଗରେ ଲଗାଇ, ଉଚ୍ଚାଟନ କଲ ପ୍ରେମମନ୍ତ୍ରକୁ କହି । ୨୫ ।

---

୧୮ଶ ପଦ । ବାଡକା—ବାତବେଗାକାନ୍ତା; ପାଗଳୀ ।

୧୯ଶ ପଦ । କୁରଙ୍ଗୀ—ହରିଣୀ । ଊର୍ମି—ଢେଉ ।

୨୦ଶ ପଦ । କପୋତୀ କପୋତ—ଭାଗବତରେ ବର୍ଣ୍ଣିତ ଅଛି ।

୨୧ଶ ପଦ । ବୃନ୍ଦାବତୀ—ଜଳନ୍ଧରର ପତ୍ନୀ ।

୨୨ଶ ପଦ । ତାରା—ବୃହସ୍ପତିଙ୍କ ପତ୍ନୀ ।

୨୩ଶ ପଦ । ସାବିତ୍ରୀ—ଅଶ୍ୱପତିଙ୍କ କନ୍ୟା, ସତ୍ୟବାନଙ୍କ ପତ୍ନୀ । ଜୀବେଶ—ସ୍ୱାମୀ, ଯମ । ଚିର—ଚିରସ୍ଥାୟୀ, ନିତ୍ୟ ।

୨୪ଶ ପଦ । କୁଞ୍ଜର—ଶ୍ରେଷ୍ଠ, ହସ୍ତୀ; ଚକ୍ର—ଚକ୍ରାକାର ବିଷ୍ଣୁଙ୍କର ଆୟୁଧ; ନକ୍ର—କୁମ୍ଭୀର; କରିଗତି—ଗଜଗମନା ସ୍ତ୍ରୀ, ହାତୀର ଗତି; ଗତି—ମୁକ୍ତି, ଆଶ୍ରୟ ।

ମୋହନ ବେଶରେ ଫ୍ରଂସ, ପ୍ରମଦା କଲା ଅବଶ, ପୁଲକ ସଞ୍ଚାର ଦେହେଁ ସ୍ୱେଦାଙ୍କୁ ବ୍ୟାକେ । ସ୍ଥିର ଶମ୍ଭାଶୋଭା ଧରି, ନାଗରେ ବିମୁଗ୍ଧ କରି, ବିଦଗ୍ଧ ହେମବରନା ବିମୁଗ୍ଧା ରାଜେ । ଦମ୍ଭ ନାଶ ସ୍ତମ୍ଭ ପ୍ରକାଶ । ଏହାକୁ ଅପେକ୍ଷା ଯେଣୁ ଶୋଭା ବିଶେଷ । ୨୬ ।

ଚଞ୍ଚଳା ଅନନ୍ଦ ହୋଇ, ରସିକେ ଦେଲା ଚେତାଇ, ଧୀର ନାଗରମଣିକି ଏକାନ୍ତ ବିଜେ । ସହଚରୀ ସଙ୍ଗେ ଯେହ୍ନ, ଦେଖ ନବଯକ୍ଷବଳୀ, ବିମୁଗ୍ଧା ଭାବେ ଗୃହିଁଛି ପଦ-ସରୋଜେ । ଚକୋରୀ ସେ, ଚନ୍ଦ୍ରିକା ତୁମ୍ଭେ । ହୃଦସ୍କୁମୁଦେ ମୁଦ ଦେଲ ବିଶ୍ରମ୍ଭେ । ୨୭ ।

ଅଧୈର୍ଯ୍ୟ କୁମର ଶିବ, ଛଳ ତହୁଁ କଲେ ସ୍ତବ, କୃପା କର ନେହେ ଗୃହା ସୁମନାବର । ସୁରତରଙ୍ଗିଣୀବର, ବାଞ୍ଛା ପୂର୍ଣ୍ଣ କର ମୋର, ଦାସ ଡାକ କର୍ଣ୍ଣେ ଶୁଣି କର୍ପା ବଧିର । ଅଶୁତୋଷ ସୁମନ ହୋଇ । ଭ୍ରସିଯାଏ କୃପା ନେହେ ଦଅ ଅନାଇ । ୨୮ ।

ଚତୁରୀ ସଖୀଏ ତହିଁ; ସ୍ତବ ଶୁଣି ସ୍ତବ ବାହି, ଈଶ୍ୱର ମଣି ସ୍ୱଜନୀ ଧୀରେ ଭଜଇ । ସେ ଗଉରୀବର ଭାବ, ସୁମନଙ୍କୁ ଅସ୍ତୁ ସେବ, ଅଗତିକି ଗତି ଦେବାର ସେ ପାଞ୍ଚଇ । ହର ହର କପର୍ଦ୍ଦୀ ତାର । ରତି ଉତଏ ତୁଳାରେ ହେବେ ଯାହାର । ୨୯ ।

ସୁରଭି କାଳ ବିସ୍ମେହୀ, କାମ-ପରବଶେ ସହି, ଚନ୍ଦ୍ରହାସ ଧରି କର୍ପା ହର ନିଧନ । ତା ବାଞ୍ଛା ହେବ କି ପୂର୍ଣ୍ଣ, ଶୂଳୀ ଭଜେ ରାଜନନ୍ଦନ, ବିଷକଣ୍ଠେ ବହି ଅବା ଏତେ ଦାରୁଣ । ସଖୀଭାବେ ତୋଷେ ଡାକୁଛି । ପଞ୍ଚଶର ନିହନ୍ତକ ଭାବ ବହୁଛି । ୩୦ ।

ଏ ରସ ମାଧୁରୀଭାବ, ବର୍ଣ୍ଣ ବର୍ଣ୍ଣନ ସରବ, ରସଲେଖା ଏଣେ ଧୀରେ ଭଣେ ମଧୁର । ବିଳମ୍ବ ହେଲଣି ନିଶା, ପ୍ରଲମ୍ବକୁନ୍ତଳା ଯୋଷା, ନିଶାକରମୁଖୀ ବନ୍ଧୁ ସତ୍ୱର ବର । ପରିମଳା କର ହୃଦର । ଭ୍ରମେ ନାରୀ ସ୍ୱଭାବକୁ ଏ କି ସୁନ୍ଦର । ୩୧ ।

---

୨୬ଶ ପଦ । ସ୍ତମ୍ଭ—ଜଡ଼ଭାବ ।

୨୭ଶ ପଦ । ମୁଦ—ଆନନ୍ଦ ।

୨୮ଶ ପଦ । ରାଜପୁତ୍ରର ଶିବଙ୍କୁ ସ୍ତବ ଓ ଇନ୍ଦୁରେଖାକୁ ଇଙ୍ଗିତ, ଏହି ଦୁଇ ଅର୍ଥରେ ହୋଇଅଛି । ସୁମନା—ଦେବତା, ନାରୀ; ବର—ଶ୍ରେଷ୍ଠ, କାନ୍ତ; ସୁରତରଙ୍ଗିଣୀ—ଗଙ୍ଗା, ଉତ୍ତମ ରତନପୁଣା ।

୨୯ ଓ ୩୦ ପଦ—ସଖୀ ଶିବଙ୍କୁ ସ୍ତବ କରିବା ସଙ୍ଗେ ସଙ୍ଗେ ରାଜପୁତ୍ରଙ୍କୁ ରାଜକନ୍ୟାର ଇଙ୍ଗିତ ଦିଅ ହୋଇଛି ( ଦୁଇ ଅର୍ଥରେ ) ।

୨୯ଶ ପଦ । ଈଶ୍ୱର—ଶିବ, ପ୍ରଭୁ, କାନ୍ତ । ଗଉରୀ—ଶ୍ୟାମା, ଦୁର୍ଗା, ଗୌରବର୍ଣ୍ଣା ନାରୀ । ହର—ଶିବ, ହରଣ କର ।

୩୦ଶ ପଦ । ସୁରଭି—ମନୋହର, ଗୋ; କାମପର—ଶିବ; କାମପରବଶ—କାମା-ସକ୍ତରେ; ଚନ୍ଦ୍ରହାସ—ଶିବଙ୍କ ଖଡ଼୍‌ଗ, ବଧୂହାସ ।

୩୧ଶ ପଦ । ନିଶାକର—ଚନ୍ଦ୍ର ।

ସଖୀ ଦେଲେ କହେ ଏସନ, ଯେ ଜୀବନ ଯଉବନ, ସମର୍ପି ଯାଅଇ ଆଜ ଫି ରଖେ ପୁଣି । ବନ୍ଧୁ ବର ଶୁଭକାଳେ, ଏହି ଚନ୍ଦ୍ର ସ୍ୱୟମ୍ବରେ, ଦିଅନ୍ତୁ ତୁମ୍ଭ କରେ ଶୁଭ ବନ୍ଧନ ଦେବନ । ସବୁ ସଖୀ ଦେଲେ ସମ୍ମତ । କରଭୋରୁ ତଳ ମୁଖ ସଲଜ୍ଜେ ନତ । ୩୨ ।

ଯଥା ଶିରୀଷ କୁସୁମ, ଫାଙ୍ଗିଲ ଦଣ୍ଡେ ସୁଷମ, ସ୍ପର୍ଶିସରେ ତଥା-ହୋଇଛନ୍ତି ଏ ନୂତନା । ଲୋଭ ସ୍ନେହ ଲଜ୍ଜା ମାନ, ହୋଇ ଅପୂର୍ବ ମିଳନ, ବିଚିତ୍ର ନାରୀ ରୂପେ କି ତହିଁ ଶୋଭନା । ହରଧନୁ ଭଙ୍ଗାନ୍ତେ ଅବା । ରାମ ପାଶେ ସତୀ ସୀତା ହୋଇଛନ୍ତି ଉଭା । ୩୩ ।

ଏଣେ ଦେଖି ବାଳିକା କହି, ଶଙ୍କସୁତେ ବଳି ଦେଇ, ଲୋଡୁଥିଲୁ ଯା ଦର୍ଶନ ଏ ସେହି ବର । ନ ଦେଖି ଯାହାଙ୍କୁ ଝୁରୁ, ଦେଖି ଏତେ ଲଜ୍ଜା କରୁ; ଅଧୋମୁଖୀ ହୋଇ କମ୍ପାଁ ନାଗରୀବର । ସଖୀ ବାଣୀ ଆସାର ହୋଇ । ପ୍ରଂସ ଅନୁରାଗାଙ୍କୁର ଦେଲା ବଢ଼ାଇ । ୩୪ ।

ମଣି-କାଞ୍ଚନ ସଂଯୋଗ, ହେଲା ଜାଣି ଶିବଯୋଗ, ଏକାଳେ କୁମର ନିଜ ମୁଦ୍ରିକା ନେଇ । ଭୂଷଣଭୂଷାଙ୍କୁ ଧୀରେ, ସ୍ନେହ ମନେ ସହ୍ରେ, ଧାର ମଧ୍ୟମା ଅଙ୍ଗୁଳି ଦେଇ ଶୋଭାଇ । କରେ କର ରହିଲା ଜଡ଼ି । ଲୋହକୁ ଚୁମ୍ବକ ଯଥା ନ ପାରେ ଛାଡ଼ି । ୩୫ ।

ଉଭୟ ସହିତ ମନ, ସମର୍ପି ରମାରଞ୍ଜନ, ସୁମନହାର ସୁମନେ ପ୍ରଂସ ଗଳାରେ । ଦେଲା ଲମ୍ବାଇ ସତ୍ୱରେ, ମାନସେ ଏ ଲକ୍ଷ୍ୟ ଧରି, ଶୋଭା କି ପୁଞ୍ଜେ ବସନ୍ତ ନବ ଆଦରେ । ପୁଣି ସେ ଶୋଭାକୁ ଅନାଇ । ତବ ବିସ୍ମୃତେ ତାହାଙ୍କୁ ଉପମା ସେହି । ୩୬ ।

ଏକକୁ ଅପରେ ଚିଣି, ହେଲେ ତରୁଣ ତରୁଣୀ, ଏଣେ ମୃଦୁ ମୃଦୁ ହସି ଚଞ୍ଚଳା ଭାଷେ । ହେବ ଯେବେ ସ୍ୱୟଂବର, ନାଗରୀ ଚରିତ ବର, ହେଲା ଆଜ ତବ ପ୍ରେମ ଅଧୀନା ରସେ । ବିରହ ବିରହ ନ ଦେବ । ଦେଲେ ନାରୀହତ୍ୟାଦୋଷ ବହିବ ଧ୍ରୁବ । ୩୭ ।

ଏକାଳେ ଦଶିଲ ପ୍ରାଚୀ, କୁଙ୍କୁମ ଚାନ୍ଦ୍ରରେ ରୁଚି, ଜାଣି ନିଶା ଶେଷ ଜାୟାପତି ହତାଶ । ଶୋଭା ହାଟ ଗଲା ଭାଙ୍ଗି, ଖେଦେ ପୁଂସ ତେଜି ସଙ୍ଗୀ, ସଖୀ ସଙ୍ଗେ ଗମେ ବାଳା ହୋଇ ବିରସ । ବାଧୁରେ ସରିଲା ଏ ରସ । ରାଧା କୃଷ୍ଣ ମିଳନକୁ ଗୋଲୋକ ଅଂଶ । ୩୮ ।

---

୩୨ ପଦ । କରଭୋରୁ—ସୁନ୍ଦରୀ ସ୍ତ୍ରୀ, ଯାହାର ଉରୁ ହାତୀଶୁଣ୍ଢପରି ।

୩୪ଶ ପଦ । ଶଙ୍କସୁତ—କାକ; ବଳି—ଖାଦ୍ୟଦାନ; ଆସାର—ବୃଷ୍ଟିପତନ; ଅନୁରାଗ—ସ୍ନେହ; ଅଙ୍କୁର—ଗଜା ।

୩୫ଶ ପଦ । କାଞ୍ଚନ—ସୁନା; ଶିବଯୋଗ—ଶୁଭଯୋଗବିଶେଷ; ମୁଦ୍ରିକା—ମୁଦି, ଭୂଷଣଭୂଷା—ଅଳଙ୍କାରମାନଙ୍କର ଅଳଙ୍କାରସ୍ୱରୂପ ଯେଉଁ ସ୍ତ୍ରୀ; ମଧ୍ୟମାଙ୍ଗୁଳି—ମଝି ଅଙ୍ଗୁଠି ।

୩୮ଶ ପଦ । ପ୍ରାଚୀ—ପୂର୍ବଦିଗ; ରୁଚି—ମନୋହର; ନିଶା—ରାତି; ଜାୟା—ସ୍ତ୍ରୀ; ଖେଦେ—ଦୁଃଖରେ ।

## ୩୭ଶ ଛାନ୍ଦ

### ରାଗ—ଚନ୍ଦ୍ରାକାମୋଦୀ

କର ଶ୍ରବଣ ମନ ଦେଇ ସୁଜନ    ଛାନ୍ଦ ରସ ଉଦ୍ଦୀପକ,
କରଇ ବିଚାର ଚନ୍ଦ୍ରଧ୍ୱଜ ବୀର    ଘେନି ସଚିବ ନାୟକ ।
କନ୍ୟା ଦ୍ରବ୍ୟ ହାଟର, କରୁ ବରଣ ବରତଳର । ୧ ।
ରସାରେ କେ ଅଛୁ ସୁଷମା ସମାନ    ସୁକୁମାରୀ କୁମାରୀର,
ରଜନୀଶମୁଖୀ ଇଚ୍ଛାବରଣକୁ    କରାଇବା ସ୍ୱୟମ୍ବର ।
ରଞ୍ଜି ବିଚାର ପୁର, ରସାପତିସୁତଗଣେ ବର । ୨ ।
ମନରେ ବିଚାରେ ଅଜ ତନ୍ନାପୁରେ    ବର କେ ହେବ ସୁଷମ,
ମଦନେ ବୋଲନ୍ତି ସୁଷମାରେ ସାର    ହର ହେଲେ ତାଙ୍କୁ ବାମ ।
ମଧୁ ଦଶେ ସୁଷମ; ମରେ ବଞ୍ଚି ଭାଗ ଏ କରମ । ୩ ।
ତଳେ ସମ ତାଙ୍କୁ ହୁଅନ୍ତା ସିତାଂଶୁ    ନ ଥିଲେ ନାନା ସୁରତ,
ତୀବ୍ର ଚନ୍ଦ୍ରା ଜାତ ଭାବେ ଯେବେ    ହୟଗ୍ରୀବ ଅପସରି ପତ ।
ତନ୍ତ୍ରେ ଚନ୍ଦ୍ରାରେ ମତ, ତ୍ରିଦଶପତି ନେତ୍ର ଅତ । ୪ ।
ହରଷ କାହିଁକି ଅନନ୍ତ ଦେବେ ସେ    ବହନ୍ତି ବିଷ ଦୁଃସହ,
ହରସୁତ ଅସେ କୁଞ୍ଚିତ ମନକୁ    କୁମାର ହେବାରେ ମୋହ ।
ହର ସଚିବ କୋହ, ହରିକଣ୍ଠୀ କେ ହେବ ବିବାହ । ୫ ।
ରସିଲେ ଅମରେ ମାନବୀରେ ସତ    ଅସି ଭୈମୀ ସ୍ୱୟମ୍ବର,
ରସାରେ ପ୍ରମାଣ ସୁରଠାରୁ ବଳି    ଅଛନ୍ତି ସୁନ୍ଦର ବର ।
ରଚେ ସୁମନ୍ତ୍ରୀ ଗୀର, ରସୁ କନ୍ୟା ବାଛୁ ଇଚ୍ଛା ବର । ୬ ।
ସରଳା ବାଳିକା ବରିବ ଇଚ୍ଛାକୁ    ଅଧିକ କି ଅଛୁ ତୋଷ,
ସତ୍ୱର ବରଣ କରୁ ଗୁରୁ ନୃପ—    ସୁତେ ବୁଲି ଦେଶ ଦେଶ ।
ସତ ବୋଲେ ନରେଶ, ସମ୍ଭବ ତହିଁରେ ସନ୍ତୋଷ । ୭ ।
କୁଟିଳ କୁନ୍ତଳା ଚିତ୍ରପଟ ନେଇ    ଏକାଳେ ଦେଲେ ଗୁରୁଙ୍କୁ,
କୁରଙ୍ଗନୟନା ସ୍ୱୟମ୍ବରବାଣୀ    ବୁଝାଇ କହି ତାହାଙ୍କୁ ।
କୁମାର ବରିବାକୁ, କୁଶପାଣି ଅର୍ପିଲେ ମନକୁ । ୮ ।

---

ଏ ଛାନ୍ଦର ପ୍ରତ୍ୟେକ ପାଦର ଆଦ୍ୟ ପ୍ରାନ୍ତ ଅନୁପ୍ରାସ ଅଛି ।
୧ମ ପଦ । ସଚିବ—ମନ୍ତ୍ରୀ । ନାୟକ—ସାମନ୍ତ ।
୨ୟ ପଦ । ରଜନୀଶ—ଚନ୍ଦ୍ର । ତିମିର—ଅନ୍ଧାର ।
୩ୟ ପଦ । ମଦନ—କନ୍ଦର୍ପ; ମଧୁ—ବସନ୍ତ ।
୪ର୍ଥ ପଦ । ହୟ—ଘୋଡ଼ା; ତ୍ରିଦଶପତି—ଇନ୍ଦ୍ର ।
୫ମ ପଦ । ହରି—ସିଂହ ।
୬ଷ୍ଠ ପଦ । ଭୈମୀ—ଦମୟନ୍ତୀ ।
୮ମ ପଦ । କୁଶପାଣି—ପ୍ରଜାପତି, ବ୍ରହ୍ମା, ବିଧାତା ।

ଭରମ ରଜତ ଜପହାରେ ଦୂତ　　ଆଣିଲି ହାସ ଦୁର୍ଲ୍ଲଭ,
ଭଗବତୀପତ ଚନ୍ଦ୍ର କରେ ଯାହା,　　କେବଳ ଜାଣି କାର୍ଯ୍ୟ ଲଭ ।
ଭଲେ ଘଟିବ ଶୁଭ, ଭଣେ ମନ୍ତ୍ରୀ ନୃପ ତେଜ କ୍ଷୋଭ । ୯ ।
ଜନେ ଘେନ ଦୂତ ଦେଖାଇଲା ରାଜ—　　ସୂଚିତ ଚିତ୍ର କାମବୀଜ,
ଜଗତଶୋଭାର ଗୁରୁ ଚନ୍ଦ୍ରଭଙ୍ଗୀ　　ବୋଲିଣ ପ୍ରଣୟ ରଜ ।
ଜଡ଼ ହେଲେ ନୃପଜ, ଜର ଜର କଲା ମନସିଜ । ୧୦ ।
ହରଷ ତେଜିଲା କୁନ୍ତଳ ଭୂମାର　　କୁନ୍ତଳ ଦେଖି ବିରହ,
ହଟକେଶ୍ୱରକୁ ବିଦେହର ଏଣେ　　ଘାରିଲା ଭଙ୍ଗେ ବିଦେହ ।
ହରପରର ମୋହ, ହରିଣାକ୍ଷୀ ସିନ୍ଧୁ ଭଳି ସ୍ନେହ । ୧୧ ।
ରେବାପାରେ ଯେତେ ଭୂମାରେ ମଜ୍ଜିଲେ　　ଚିତ୍ର ଦର୍ଶନ ବ୍ୟାପାରେ,
ରେ-କାରେ ଅଭ୍ୟସ୍ତ କୁମାରେ ବିକଳେ　　ଚିତ୍ରେ ରହିଲେ ଗୋଲାଟରେ,
ରେଖା ଠାଣି ଭୁମିରେ, କେଶୁ ବଣିଲେ ଅନେକ ଭରେ । ୧୨ ।
ରାକା ଶର୍ମୀମୁଖ ଭୋଟ କଲା ଭ୍ରାଟ　　ଭଟିଲେ ସେ ବିବାଧରୀ,
ରାଜ ହେବ ସତେ ହୋଲାର　　ଭାବିଲେ ନନ୍ଦନହୋଲାର ପରୀ ।
ରାମା ସୁଷମାକାର, ରାଗଲତା ପ୍ରଣୟପସରୀ । ୧୩ ।
ମଗଧେ ମଗଧ କେତେଲେ କେରଳ　　କଲା ନାସା ଅନୁପମ,
ମଲ୍ଲପର ମାର-ବିବଶେ ମଲ୍ଲାର　　ଗୁରୁ ନିତମ୍ବ ସୁଷମ ।
ମସ୍ୟେ ଗ୍ରାସିଲ ଭ୍ରମ, ମଣେ ବେଣୀ କୃଷ୍ଣ ଭୁଜଙ୍ଗମ । ୧୪ ।
ଧରାମଣ୍ଡନାର ଚେଲେ ଚେଲ ବନ୍ଦୀ　　ଭଙ୍ଗୀରେ କଲୁ ଅବୋଧ,
ଧମାକଟକ ଛଟକରେ କଟକ　　ବାନ୍ଧି ନେଲା କାମବ୍ୟାଧ ।
ଧଇର୍ଯ୍ୟ ବିଦଗଧ, ଧବ ହେବାର ଲୋଡ଼ିଲା ବୋଧ । ୧୫ ।
ରସ ଅଗ୍ରରେ ବିଚଳିତ କ୍ରମଶ　　ନବ ପ୍ରେମେ ବଶ ତାର,
ରସବତୀ ଜନକ ଦେଖି ତାହାଲ　　ତାହାଲ ପରୀ ଅଧୀର ।
ରମଣୀର ଆଦର, ରଙ୍ଗେ ବଙ୍ଗ ତେଜିଲା ତାହାର । ୧୬ ।

---

୯ମ ପଦ । ଭରମ—ସୁନା, ରଜତ—ରୁପା । ଭଗବତୀ-ପତି—ଶିବ; କ୍ଷୋଭ—ଚଞ୍ଚଳତା ।

୧୦ମ ପଦ । ଗୁରୁ—ମନୋହର; ନୃପାତ୍ମଜ—ରାଜପୁତ୍ର । ମନସିଜ—କାମ ।

୧୧ଶ ପଦ । କୁନ୍ତଳ—ଦେଶବିଶେଷ, କେଶ । ହଟକେଶ୍ୱର—ନାଗର । ବିଦେହ—ଦେଶବିଶେଷ, ଅନଙ୍ଗ ।

୧୩ଶ ପଦ । ରାକା—ନବ ଋତୁମତୀ ସ୍ତ୍ରୀ, ପୂର୍ଣ୍ଣିମାତିଥି; ଭୋଟ—ଦେଶବିଶେଷ । ହୋଲାର—ଦେଶବିଶେଷ, ଶ୍ୱେତକରୀ ।

୧୪ଶ ପଦ । ମଗଧ—ଦେଶବିଶେଷ, ଭାଟ । କେରଳ—ଦେଶବିଶେଷ, ଭଳାର କେଳା । ମଲ୍ଲାର—ଦେଶବିଶେଷ । ମତ୍ସ୍ୟ—ଦେଶବିଶେଷ । ଭୁଜଙ୍ଗମ—ସର୍ପ ।

୧୫ଶ ପଦ । ଚେଲ—ବସ୍ତ୍ର, ପରିଚ୍ଛଦ, ଦେଶବିଶେଷ । କଟକ—ବଳୟ, ଓଡ଼ିଶାର ରାଜଧାନୀ ।

ନୀରଜନୀର ବୋଲନ୍ତକର ନେନେ,　　ଗୁହୁଁ ନୀରଜ ବରଣୀ;
ନିତମ୍ବ ମେଖଳା କମ୍ପାଇଲା ଦୁଃଖେ　　ଜାନାଉଛ କର୍ ଭୁଜ ।
　ନୀରଗତବାପ୍ପିନୀ, ନିରେଖଇ ଗ୍ରୀବା ଭାଣୀ ଧନୀ । ୧୭ ।
ତଳଫୁଲଜିଣା ନାସାଫୁଲ୍ଲ ଭଙ୍ଗୀ　　ତେଲଙ୍ଗୀ ହେଲା କରତ,
ତିଲୋତ୍ତମା ପୁଣ୍ଡ୍ରେ ଭୁଷିଲ, ଭୁଷିଲ　　କାଶ୍ମୀର ହେବ ଏ ରତ ।
　ତଳେ ନୋହି ବାରତ, ତନି ସନ୍ଧ୍ୟା ଦେଖିଲେ ମୁରତ । ୧୮ ।
ଧବ ହେବା ଭାବେ କର୍ଣ୍ଣାନ୍ତ ଯନ୍ତ୍ର ମୋ　　ଥିବ ଶୁଭ ପ୍ରାଲବଧ,
ଧର୍ଷଣୀଭବେର ଲଭନ୍ତି ଭ୍ରାବଇ　　ଭେଦ ହେଲେ ହେବ ବଧ ।
　ଧବ ଅଣିବ ସାଧ, ଧଗରେ ତା ବିନା ନାହିଁ ବୋଧ । ୧୯ ।
ରସନିଧି ଅଙ୍ଗଛନ୍ଦ ଦେଖି ଅଙ୍ଗ　　ଲୋଡ଼ିଲା ରଙ୍ଗେ ବିହାର,
ରତ ଅବେଶୀର ପୂର୍ବ ସ୍ମୃତ　　ଅସି ହୃଦ କଲ ଜରଜର ।
　ରସାବେଶେ ଅଧୀର, ରଙ୍କ ପରି ଛବି ଧରେ ତାର । ୨୦ ।
ମଣିବନ୍ଧ ଛନ୍ଦ ଦହେ ଅଜ ଦେଶ　　ନୃପତସୁତ ମରମ,
ମତ୍‌କାଶିମା ଶିବ ନେତ୍ରାଗ୍ନି ମିବେ　　କରଲେ ତପନ କାମ
　ମଣି କରମ ବାମ, ମଣ୍ଡିଗଲେ ଖେଦ ଅନୁପମ । ୨୧ ।
କୁନ୍ଦନଦେହାର ସୁଷମା ତରଙ୍ଗି　　ବୁଡ଼ାଇ ନୃପସୁତଙ୍କୁ,
କୂଳ ନ ଦେଖାଇ କଲା ହଟହଟା　　ଲଭିଲେ ଅକୁଳତାକୁ ।
　କୁସୁମେଷୁଭଦକୁ, କ୍ଷମାରେ ଲୋଡ଼ିଲେ ସେ ବର୍ଯ୍ୟାକୁ । ୨୨ । ?
ତେଣେ ରାଜଦୂତ ନୃଅନ୍ତ ଅନ୍ତର　　ଶିଖଣ୍ଡିଚୂଳ ଅରତେ,
ତେବେହଁ ଗୃହାଣୀ ରମଣୀମଣିର　　ଧଇର୍ଯ୍ୟ ରଙ୍ଗେ କରତେ ।
　ତେବେ କୃତ୍ସ ଅରତେ, ତେଣୁ ରମା ଘୋଷେ ଅନୁବ୍ରତେ । ୨୩ ।
ଜନମିଲା ହୃଦେ ଭାବ ରାଶି ରାଶି　　ସଢ଼ାଇଲା ନୃପାତ୍ମଜ,
ଜଗତମୋହିନୀ ଭାବେ ବରିବାକୁ　　ସତେ ହେଉଥିବ ସଜ ।
　ଜଡ଼ କରେ ମନୋଜ, ଜବ ତୋଷିବ କା ତେଜି ଲାଜ । ୨୪ ।
ନବୀନା ଏ କାଳେ କାନ୍ତର ଅକୁଳେ　　ଅଙ୍ଗନୃପତନନ୍ଦନ,
ନବୀନ ପ୍ରୀତକୁ ଗୁଣିବାକୁ ରଙ୍ଗେ　　ସତତ ଉଛନ୍ନ ମନ ।
　ନତ କରି ବଦନ, ନବକାନ୍ତଙ୍କୁ କରେ ଭଜନ । ୨୫ ।

---

୧୯ଶ ପଦ । ଧବ—ପତି । ସାଧ—ଇଚ୍ଛା, ଅଭିଳାଷ ।

୨୧ଶ ପଦ । ତପନ—ଉପଦ୍ରବ ।

୨୨ଶ ପଦ । କୁନ୍ଦନ—ସୁନା । କୁସୁମଶର-କନ୍ଦର୍ପ । ବର୍ଯ୍ୟା—ସ୍ୱୟମ୍ବର ସ୍ତ୍ରୀ ।

୨୪ଶ ପଦ । ମନୋଜ—କନ୍ଦର୍ପ ।

୨୫ଶ ପଦ । ସତତ—ସର୍ବଦା । ନବକାନ୍ତ—ମହାଦେବ, ବସ୍ତୁ ।

ରେଖ ରୂପ ଯାର ଲଖାଇଲା ନେତ୍ର    ମନ ସ୍ନେହଜମ୍ବାଳରେ,
ରେବତୀରମଣ ଅନୁଜ ତନୁଜ    ବାଣୀଜ ଅଙ୍ଗେ ରଙ୍ଗରେ ।
ରେମା ବିପଶ୍ଚିତରେ, ରେଖ ସୁଖ ନାହିଁ ମାନସରେ । ୨୬ ।
କାମରେ ପ୍ରିୟଙ୍କୁ କର ସ୍ମରଣ    ହର ଚିନ୍ତାର ରସିକା,
କାଳରେ ଭାବଲ ନ ଲଭିଲେ ତାଙ୍କ    ଜୀବନ ତେଜିବ ଏକା ।
କାମିନୀର ଏ ଦଶା, କାହିଁ ଛାଡ଼େ ପ୍ରେମିକେ ପ୍ରେମିକା । ୨୭ ।
ମଧୁହାର ଦ୍ୱିର ନୃପେ ଏଣେ ସ୍ଥିର    ଭାଷେ ବଚନ ସୁଷମ,
ମଣିଇ ତା ନୃପନନ୍ଦକୁମୁଦକୁ    ହେଲା ମୃଗମଲ ସମ ।
ମନ ଲଭେ ଅରାମ, ମଦ୍ରାଷୀର ତୋଷେ ନାହିଁ ସମ । ୨୮ ।
ଅନୁପ୍ରାସ ଗୋମୂତ୍ରଛନ୍ଦେ ନିର୍ମିତ    ଜନକ ଅଦେଶ ମୋର,
ଦୋଷବାଦେ ଏ ଗ୍ରନ୍ଥେଁ ଦେନ ଉପଦେଶ    ନମେ ସେ ଗୁରୁ ପୟର ।
ରାଧାକୃଷ୍ଣ ବିଶେଷ, ଶ୍ରୀଗୋବିନ୍ଦ ମନେ କରେ ଅଶ । ୨୯ ।

## ୩୭ଶ ଛାନ୍ଦ

ରାଗ—ଚିନ୍ତାଦେଶାକ୍ଷ

ବାମା ସ୍ୱୟମ୍ବର ରସେ ରସ ପଣ୍ଡିତ ।
ଶ୍ରବଣେ ତୁରିତ ହେବ ନାଶ ଦୁରିତ । ୧ ।
ରାମାପୂର୍ଣ ସୁଷମାରେ ଏ କୁସୁମିତ ।
ମଧୁହାସ ରସିକର ମୋହକ ଚିତ୍ତ । ୨ ।
ସ୍ୱୟମ୍ବରକ୍ଷେତ୍ର ଏଣେ ଅତି ସୁଷମ ।
ବନ୍ଧୁବଚନେ ବିଦିତ ମଧୁରେ ରାମ । ୩ ।
ସଲକ୍ଷଣେ ସାତକୁମ୍ଭ ଚିହ୍ନ ବିଭାତ ।
ବିଶେଷ ପ୍ରକାଶ ତହିଁ ମର୍କତ ଦ୍ୟୁତ । ୪ ।

---

୨୬ଶ ପଦ । ଜମ୍ବାଳ—କାଦୁଅ; ପଙ୍କ । ରେବତୀରମଣ—ବଳରାମ । ରେମା (ବିପଶ୍ଚିତ) ମାରେ ।
୨୮ଶ ପଦ । ମୃଗମଲ—ଚନ୍ଦ୍ର ।
୨୯ ପଦ । ଅନୁପ୍ରାସରେ ଗୋମୂତ୍ର ଛନ୍ଦ—

କ ର ମ ଛ    ହ ର ଷ କୁ    ଭ ଜ    ହ ରେ    ସ୍ୱ ମ
ଧ ଚ କ ଛ    ଧ ର ମ କୁ    ତେ ଜ    ନ ରେ    କା ମ ।

---

୧ମ ପଦ । ଦୁରିତ—ପାପ; ଦୁଷ୍କୃତ ।
୩ୟ ପଦ । ରାମର ବନ୍ଧୁବଚନ—ରାମା (ରାମାଃ) ।
୪ର୍ଥ ପଦ । ସାତକୁମ୍ଭ—ସ୍ୱର୍ଣ୍ଣ; ଛାତଟି କଳସ ।

ବାଳୀ ସୁଗ୍ରୀବେ ବହନ୍ତି କୁସୁମମାଳ ।
ରକ୍ଷପଣ୍ତ ତାଙ୍କର ଶୋଭା ଅତୁଳ । ୫ ।
ତାରାଗଣ ଅଙ୍କାରେ ରାଜେ ସୁମୁଖୀ ।
ମାରୁତ ଶୋଭନ୍ତେ ନୀଳା ଶ୍ରବଣ ନୋଖି । ୬ ।
ସୁବଳୟଶୋଭୀ ରାଜ୍ୟସୂଚିତ ବରାଜ ।
ବାଜେ ବିଭୂଷିତ ଅଙ୍ଗଦ ଯୁବରାଜ । ୭ ।
ଅଶୋକ ବିପିନ କାମ ତମ ପ୍ରକାଶେ ।
ଗୋଲ ପୂରିତ ସୁଷମା ଜଙ୍ଗେ ବିଶେଷେ । ୮ ।
କୁଶ ପାଶେ ବସିଛନ୍ତି ଭୂସୁର ମୂଳ ।
ଲବ ନ ଛାଡନ୍ତି ରାମତାରକ ଧ୍ୱନି । ୯ ।
ଜନକ ବରାଜମାନ ଅତି ହରଷେ ।
ଯୋଜନଗନ୍ଧା ସୁମନା ବାସେ ସୁବେଶେ । ୧୦ ।
ଅକ୍ଷୟ ଅକ୍ଷତ ଛବି ଦୂଷଣ ନାଶ ।
ସୂର୍ପରେ ତ ଖରେ ହୋଇଛନ୍ତି ପ୍ରକାଶ । ୧୧ ।
ବିଭୀଷଣ ଦିଶୁଛନ୍ତି ପଦାନ୍ତ ଅନ୍ତ ।
ମେଘନାଦ ମହାରଙ୍ଗେ କ୍ଷେବେ ବିଭ୍ରାନ୍ତ । ୧୨ ।
ଚନ୍ଦନକୁଟଲୀଳା ବିଶେଷରେ ପ୍ରକାଶେ ।
ଶକସୁତ ପରି ବରାଜନ୍ତି ବଦରେ । ୧୩ ।

---

୫ମ ପଦ । ବାଳ—ମର୍କଟରାଜ; ବାଳୀ—ବାଳା । ଋକ୍ଷ—ଭାଲୁ, ତାରା ।

୬ଷ୍ଠ ପଦ । ତାରା—ବାଳିପତ୍ନୀ, ନକ୍ଷତ୍ର । ମାରୁତ—ଭୀମ ଅର୍ଥାତ୍ ଭୟଙ୍କର, ହନୁମାନ । ନୀଳା—ଇନ୍ଦ୍ରନୀଳ, ନୀଳ ସେନାପତି ।

୭ମ ପଦ । ସୁବଳୟ—ଲଙ୍କାସ୍ଥ ପର୍ବତବିଶେଷ, ଉତ୍ତମ ବଳୟ । ଅଙ୍ଗଦ—ବାଳିପୁତ୍ର, ବାହୁ ନାମକ ଅଳଙ୍କାର ।

୮ମ ପଦ । କପି—କ, କୀଶ—ମର୍କଟ, ଏଠାରେ ହନୁମାନ୍ ।

୯ମ ପଦ । କୁଶ—ଶ୍ରୀରାମଙ୍କ ପୁତ୍ର, ଦର୍ଭ । ଭୂସୁର—ବ୍ରାହ୍ମଣ । ଲବ—ଲେଶ, ସମୟର ସୂକ୍ଷ୍ମାଂଶ, ଶ୍ରୀରାମଙ୍କ ପୁତ୍ର ।

୧୦ମ ପଦ । ଜନକ—ପିତା, ଜନକ ଋଷି । ଯୋଜନଗନ୍ଧା ସୁମନା—ସୀତା; ପାରିଜାତ ବା ପାରିଜାତ ତୁଲ୍ୟ ସୁବାସଯୁକ୍ତ ଫୁଲ । ଏଠାରେ ମନ୍ଦାର ବୁଝିବେ ।

୧୧ଶ ପଦ । ଅକ୍ଷୟ—ଅଖଣ୍ଡ; ରାବଣର ପୁତ୍ର । ଅକ୍ଷତ—ଅରୁଆ ଚାଉଳ । ଦୂଷଣ—ଦୋଷ ବା ପାପ, ଦୈତ୍ୟବିଶେଷ; ରାବଣର ମାଉସୀପୁଅ ଭାଇ, ସୂର୍ପ—କୁଲା, ସୂର୍ପଣଖା

୧୨ଶ ପଦ । ବିଭୀଷଣ—ବିଶେଷ ଭୟଙ୍କର; ରାବଣର ସାନ ଭାଇ । ମେଘନାଦ—ଇନ୍ଦ୍ରଜିତ, ମେଘଧ୍ୱନି ।

୧୩ଶ ପଦ । ଚନ୍ଦନକୁଟ—ଚନ୍ଦନକୁଟ, ବନ ବିଶେଷ । ଶକସୁତ—ଇନ୍ଦ୍ରସୁତ, କାକ ।

କୁମାରିକା ସୁବାସରେ ନେତ୍ର ଫୁଲସେ ।
ଶରମାର ଛବି କେତେ ରଙ୍ଗେ ପ୍ରକାଶେ । ୧୪ ।
ଭାର୍ଗବ ପରାଭବରେ ରାଜନ୍ତ ତହିଁ ।
ଅମନାତ୍ୟ ଗଣି ନୃପ ସଙ୍ଗତ ବହି । ୧୫ ।
ବାରଣ ଶୋଭିତ ରଙ୍ଗେ କଲ୍ଲୋଳ କର ।
ରାଜେ ବୃଷା ପରଚଣ୍ଡେ ଖରେ ପ୍ରଖର । ୧୬ ।
ରମ୍ଭା ଅପସର ଅଛ୍ନ୍ତି ପତାକା ଧର ।
ବଂଶିଜ ରାଜାଙ୍କୁ ଅଛ୍ନ୍ତି ବିବଶ କର । ୧୭ ।
ମାଣିକ୍ୟ ସ୍ତମ୍ଭେ ବିରାଜେ ଅଦ୍ଭୁତ ଶୋଭା ।
ବିଂଶନେତ୍ର ଦମ୍ଭ ଭଙ୍ଗେ ତାର ପ୍ରତିଭା । ୧୮ ।
ଚନେଚର ବନଚର ଛବି ବିଶେଷ ।
ମିତ୍ରବର ଲଭି ପ୍ରକାଶନ୍ତି ହରଷ । ୧୯ ।
ସୁରତରଙ୍ଗିଣୀ ପ୍ରାପ୍ତି ଯହିଁରେ ମୂଳ ।
ରଥୀ ହୋଇଛନ୍ତି ଦମ୍ଭେ ଉଦ୍‌ବେଗେ ମେଳ । ୨୦ ।
ଏକାଳେ ଜନକ ତାଙ୍କ ପରିଗ୍ରହିକା ।
ବୋଇଲ ଇଚ୍ଛା କରୁ ସୁତା ନୃପଙ୍କୁ ଦେଖା । ୨୧ ।
ବିମ୍ବାଧରୀ ଧରି କରେ କୁସୁମହାରେ ।
ବର ବରବର୍ଣ୍ଣୀ ବରିବା ବିଗ୍ରହେ । ୨୨ ।
ଧରାଶୋଭିଶୋଭା ସଭା ଦରିଛନ୍ତି ବଣ ।
ମନ୍ଦ ମନ୍ଦ ମନ୍ଦହାସ ଗତି ବିଶେଷ । ୨୩ ।
ଫୁଲଶରଶର ନୃପନନ୍ଦନେ ଘାରେ ।
ତରତର ତରଳ ନୟନଭଙ୍ଗୀରେ । ୨୪ ।
କା ମନ ମନୋଜ ବଶେ ଚୁମ୍ବଇ ବାଳା ।
ଭାବି ଭାବି ଭାବୀ ଗ୍ଲାନି କେ ଧରେ ପରା । ୨୫ ।
ବୃନ୍ଦ ବୃନ୍ଦ ବୃନ୍ଦାରକେ ତାକେ କେ ମନେ ।
ସୁମନା ସୁମନା ସୁମନା ସୁପ୍ରସନ୍ନେ । ୨୬ ।

---

୧୪ଶ ପଦ । କୁମାରିକା—ନବମଲ୍ଲିକା, ନଅଳଫୁଲ, ସୀତା । ସୁବାସ—ଉତ୍ତମ ବାସନା, ଉତ୍ତମ ଲୁଗା ଅର୍ଥାତ୍ ଅମ୍ଳାନ ବସ୍ତ୍ର । ନେତ୍ର—ଚକ୍ଷୁ, ପଥ, ରଥ । ଶରମାର—ମାରଶର; କନ୍ଦର୍ପ-ଶର; ସରମା ରାକ୍ଷସୀ—(ବିଭୀଷଣର ସ୍ତ୍ରୀ) ।

୧୫ଶ ପଦ । ଭାର୍ଗବ—ଶୁକ୍ରାଚାର୍ଯ୍ୟ, ପରଶୁରାମ ।

୧୬ଶ ପଦ । ବାରଣ—ହସ୍ତୀ, ଲଙ୍କପତି । ବୃଷାପର—ଇନ୍ଦ୍ରଜିତ; ବୃଷା—ଘୋଡ଼ା ।

୧୯ଶ ପଦ । ମିତ୍ର—ସୂର୍ଯ୍ୟ, ବନ୍ଧୁ ।

୨୫ଶ ପଦ । ଭାବୀ—ଭବିଷ୍ୟତ ।

୨୬ଶ ପଦ । ବୃନ୍ଦବୃନ୍ଦ—ଅସଂଖ୍ୟ; ବୃନ୍ଦାରକ—ଦେବତା ।

ସୁଷମ ସମରେ ଜଣା ଏଙ୍କୁ ଅଟେଇ ।
ବନ୍ଦ ବନ୍ଦ ବନ୍ଦୀ ଗ୍ରନ୍ଥେ ଦେଖାନ୍ତି ଟେକି । ୨୭ ।
ଏଣେ ଭୂଚକ୍ଷଣା ଦାସୀ ସୁଭଙ୍ଗଙ୍କର ।
କରବେତ୍ରଙ୍କୁ ଚଢ଼ାଏ ବର୍ଣ୍ଣି ବସ୍ତର । ୨୮ ।
ସ୍ତର ସ୍ତର ଦେଖ ମଞ୍ଜୁଳାପି ! ନୃପତି ।
ପତିପଦେ ବର ଯାଙ୍କୁ ବଳେ ତୋ ମତି । ୨୯ ।
ମତିମୋହିନି ! ମଣ୍ଡନ୍ତି ଏ ଯେ ମଗଧ ।
ମଗଧ ଗାଆନ୍ତି ଯାଙ୍କ ଗୁଣାନୁବାଦ ! ୩୦ ।
ବାଦ କର ଲକ୍ଷେ ରାଜା ଜିଣନ୍ତା ଏହି ।
ଏହି ପରି ଜରାସନ୍ଧବଂଶୀ ସୁମୁହିଁ । ୩୧ ।
ସୁମୁହୀଁ ମୁହିଁକୁ ମୋଡ଼ି ଚଳି ଗମନ ।
ମନ କଲେ କି କେତକୀ ଭୃଙ୍ଗ ସାମାନ୍ୟ । ୩୨ ।
ଦେଖ ଏ କୋଶଳପତି ନାଗରବର ।
ବ୍ରହ୍ମା ଭ୍ରୀତ ଶୁଣି ଯାର ଧନୁଟଙ୍କାର । ୩୩ ।
ବାରିଧି ହୃଦୟ ପାରିଧିରେ ଅଦରେ ।
କୁଟଜ ଫୁଟନ୍ତି ସଦା ନଗ ନଗରେ । ୩୪ ।
ନିମ୍ନଗାମୀ ନୀର କାହୁଁ ହେବ ସମ୍ମୁଖ ।
ଜବଗତି ଗଜ କରି ଚଳିଲି ଛଳି । ୩୫ ।
ଦେଖ ଏ ନେପାଳପତି ସାରସମୁଖି ।
ଚିର ଅନ୍ୱେଷଣେ ତାଙ୍କ ସମ ନ ଦେଖି । ୩୬ ।
ଦୁର୍ଜୟ ଦୁର୍ଗରେ ତୋଷେ କରନ୍ତି ବାସ ।
ରମା ଅଚଞ୍ଚଳା ପୁରେ କରେ ବିଳାସ । ୩୭ ।
ସୁର୍ଣ୍ଣ ବିନା ସୁର୍ଣ୍ଣମୁଖୀ ଆନେ କି ରସେ ।
ନାସାଶୋଭି ସାନ୍ତ୍ରେ ସେ ବସିଲେ ବିରସେ । ୩୮ ।
ଦେଖ ଏ ନୃପ ଶୋଭନ୍ତି କଳିଙ୍ଗେଶ୍ୱର ।
ପାରିବାର ଧୁଏ ଜାତ ପଦ୍ମପୟର । ୩୯ ।
ଧନ ମାନ ଧର୍ମ ଯଶ ଦେଶେ ପୁରିତ ।
ଯା ଅଭୟ ଲଭି ବଙ୍ଗ ହେବ କୃତାର୍ଥ । ୪୦ ।

---

୨୭ଶ ପଦ । ବନ୍ଦୀ—ଭାଟ ।
୩୧ଶ ପଦ । ଜରାସନ୍ଧ—ମଗଧରାଜ; ଦୈତ୍ୟବିଶେଷ ।
୩୪ଶ ପଦ । ବାରିଧି—ସମୁଦ୍ର । ପାରିଧି—ମୃଗୟାବିହାର । କୁଟଜ—ବଣମଲ୍ଲୀ; ଟିଭମଲ୍ଲିକା । ନଗ—ପର୍ବତ ।
୩୭ ପଦ । ରମା—ଲକ୍ଷ୍ମୀ ।
୩୯ ପଦ । ପାରିବାର—ସମୁଦ୍ର ।

ହେଠବଦନେ ଗମିଲା ଖେଳାଇ ଡୋଳା ।
ବାରଦ ବିନା କାହିଁ କି ଚେଳେ ଚପଳା । ୪୧ ।
ବୀରକେଶରୀ ଏ ଗୋ ପଞ୍ଚାବପତି ।
ରାଜ୍ୟେ ପୁଣ୍ୟତୋୟା ପଞ୍ଚନଦୀ ରାଜନ୍ତି । ୪୨ ।
ଅସ୍ତ୍ରଶସ୍ତ୍ରକୁଶଳ ଏ ରଣ-ପଣ୍ଡିତ ।
କାହ୍ୟ ଖଡ୍‌ଗ ତରବାରି ରଞ୍ଜିତ ହସ୍ତ । ୪୩ ।
ନୀରଦ ବିନା କେକୀ କି ରସଇ ଅନେ ।
ଫଳ କର ଯାନ୍ତେ ସେ ବସିଲେ ମଉନେ । ୪୪ ।
ମଣ୍ଡନ୍ତି ଗୋ ଦେଖ ଏ ନୃପତି ଅଯୋଧ୍ୟା ।
ଯହିଁ ରାମେ ତୋଷିଥିଲେ ସୀତା ଅରାଧ୍ୟା । ୪୫ ।
ସୀତା ରାମଧନ୍ୟା ସଦା ଦେଶେ ଉଜ୍ଜୁଳେ ।
କାଳେ ଦୁର୍ଜୟ ଅଟନ୍ତି ରଣକୌଶଳେ । ୪୬ ।
ଭୂଷା ସାମଞ୍ଜସ୍ୟେ କରୁ ଦେଖିବୁ ଜଣା ।
ଅଛଇ କୁଳମର୍ଯ୍ୟାଦା ଯଥା ପୁରୁଣା । ୪୭ ।
ମାନସର ବିନା କାହିଁ ରସେ ସାରସ ।
ବ୍ରହ୍ମାଣ୍ଡସୁନ୍ଦରୀ କଲ୍ପ ତାଙ୍କୁ ହତାଶ । ୪୮ ।
ଏ ପରି ଦେଖ ଗୋ ମାଳବାର ଅଧିପ ।
ତାଙ୍କ ରାଜ୍ୟେ ଘରେ ଘରେ ସୁବର୍ଣ୍ଣସ୍ତୁପ । ୪୯ ।
ବିଳାସେ ବିଚକ୍ଷଣତା ଯାଏ ତ ଦେଖା ।
ମାଦକ ଦ୍ରବ୍ୟ ସେବନ୍ତି କେତେକ ଏକା । ୫୦ ।
ସଖୀଙ୍କ ଏ କଥା ଅତି ଅକ୍ଷମ ହେଲା ।
ଅବଗୁଣ୍ଠନକୁ ଟାଣି ବେଗେ ଚଳିଲା । ୫୧ ।
କାଶ୍ମୀରପତିଙ୍କୁ ଦେଖ ଦେଖ ଲଳିତେ ।
ତୋ ଶୋଭାକୁ ଲୋଭ କରି ଗୃହାନ୍ତି କେତେ । ୫୨ ।
ସତ୍ୱର ଯାନ୍ତେ ସେଠାରୁ ମରାଳଗତି ।
ହସନ୍ତି କି ଭାବି ତେଣେ ଆନ ନୃପତି । ୫୩ ।
ଦେଖ ଶୈଳ ଅଧିପଙ୍କୁ ତୋ ଶୋଭା ଧ୍ୟାୟି ।
ଭଦ୍ରାବଣେ ସିଂହାସନେ ଅଛନ୍ତି ଶୋଇ । ୫୪ ।

---

୪୧ ପଦ । ବାରଦ—ମେଘ । ଚପଳା—ବିଜୁଳି ।
୪୨ ପଦ । ତୋୟ—ପାଣି, ଜଳ ।
୪୪ ପଦ । ନୀରଦ—ମେଘ ।
୪୮ ପଦ । ମାନସର—ମାନସରୋବର । ସାରସ—ହଂସ ।
୪୯ ପଦ । ଅଧିପ—ରାଜା । ସୁବର୍ଣ୍ଣ—ସୁନା । ସ୍ତୁପ—ଗଦା ।
୫୧ ପଦ । ଅବଗୁଣ୍ଠନ—ଓଢ଼ଣା ।
୫୩ ପଦ । ମରାଳ—ହଂସ । ୫୬ ପଦ । ଭଦ୍ରାସନ—ସିଂହାସନ ।

ବାମେ ବାମକେଶୀ ଗଲା ତହୁଁ ଚଞ୍ଚଳେ ।
ଚେତାପାର ବୁଡ଼ିଲେ ସେ ସନ୍ତାପଜଳେ । ୫୫ ।
ଦେଖ ଏ କୁନ୍ତଳ କାନ୍ୟକୁବ୍ଜ କାଶ୍ମୀର ।
ଭଦ୍ରାସନେ ବସିଛନ୍ତି ନୃପକୁମର । ୫୬ ।
ଏହାପରି ଗୋଟି ଗୋଟି ଯେତେ ସେ କହେ ।
ସିତାଂଶୁ ବିନା ଚକୋର ଆନେ କି ଗ୍ରହେ । ୫୭ ।
ଶେଷେ କହେ ଦାସୀ ଦେଖ ଦେଖ ସୁକେଶୀ ।
ଏ ଅଙ୍ଗ ନୃପତିସୁତ ତପନବଂଶୀ । ୫୮ ।
ଗୃହକ ସାରଦବାଣୀ ଶୁଣିଲା ପରି ।
ତ୍ରସ୍ତବଶେ ଅଧୋମୁଖୀ ଶୁଣେ ନାଗରୀ । ୫୯ ।
ବାଳା ଇଙ୍ଗିତ ଅଭିଜ୍ଞା ସେ ପରିଗୃହୀ ।
ମେଷଯୁକ୍ତେ କହେ ଗୁଣୀ ବିଶେଷ କରି । ୬୦ ।
ବୀଣାତେ ସାର ନବୀନ ରସାବେ ରବି ।
ବାମ୍ବରେ ନତତନୁଙ୍କୁ ନୂତନରେ ଭାବି । ୬୧ ।
ରିପୁ ସେବାନତ ରତନ ବାସେ ପୂରି ।
ରିହ ମାର ବିପେ ତ ସେବି ରମା ହରି । ୬୨ ।
ଶୁଣି ସ୍ନିହାବଲୋକନେ ଗ୍ରହେଁ ଅବଳା ।
ବଳାଶୋଭୀ ବାଳେନ୍ଦୁ ପୀରତିପ୍ରବଳା । ୬୩ ।
ବଳାଇ ମାନସ ଜନ୍ତର ଭାବନ୍ତି ।
ବଇଭବସାର ସୁଷମାରୁ ସ୍ତ୍ରବଇ । ୬୪ ।
କଇଲୁଣ୍ଠ ଦୃଢ଼େ ଭାବ ଭାବ ସୁମୁହାଁ ।
ଗୋମୂତ୍ରି ଛନ୍ଦ ହାରକୁ ଘେନି ଗମଇ । ୬୫ ।
ଯୁଝି ବନଜ କଳିକା ରଜନୀଗନ୍ଧା ।
ଜାଣି କନକକର୍ଣ୍ଣିକା ସଜ ସୁଗନ୍ଧା । ୬୬ ।
ପୁନରୁକ୍ତିବଦାଭାସ କରି ପ୍ରକାଶ ।
ଗଜଗତି କରି ଗତି ବହି ସନ୍ତୋଷ । ୬୭ ।

---

୫୮ ପଦ । ତପନ—ସୂର୍ଯ୍ୟ ।

୬୧ । ନବୀନ—ନୂତନ । ନତତନୁ—କନ୍ଦର୍ପ ।

୬୨ । ରିପୁ—ଶତ୍ରୁ । ରତନ—ଅଷ୍ଟ ରତ୍ନ । ରିହ—ହଂସା; ଅହନ୍ତା, ସ୍ୱର୍ଗ । ମାର—କାମ । ବିପେ—ବିପରେ (ରୂପକ) ଅର୍ଥାତ୍ ବିପକ୍ଷନ କରନ୍ତି କମ୍ବା ସ୍ୱଗକୁ ମାରିବା ବିଷୟରେ ରମା ଓ ହରିଙ୍କୁ ସେବନ୍ତି ।

୬୧, ୬୨ ପଦମାନ ମେଷଯୁକ୍ତ । (ଓଲଟାଇ ପଢ଼ିଲେ ଏକା ପରି)

୬୩ରୁ ୬୫ ପଦ । ସ୍ନିହାବଲୋକନ । ୬୪ଶ ପଦ । ଗୋମୂତ୍ରି ଛନ୍ଦ ।

୬୬ । ବନଜ—ପଦ୍ମ । କନକ—ଚମ୍ପା । କର୍ଣ୍ଣିକା—ଅଗବଥି ।

୬୭ରୁ ୬୯ ପଦ । ପୁନରୁକ୍ତବଦାଭାସ ।

ଫୁଲହାର ସୁମନରେ ଦେଲା ଲମ୍ବାଇ ।
ବାମନୟନା ସେ ଧାମ ନେନେ ଅନାଇ । ୬୮ ।
ଇନ୍ଦ୍ରପଦ ସୁନାସୀର ପଦେ ଆରତି ।
ଭାବି ଭାବି ରାଜସୁତ ଆନନ୍ଦ ଅତି । ୬୯ ।
ବାଜିଲା ପଞ୍ଚହ ଭେରୀ ଶଙ୍ଖ ମହୁରୀ ।
ହୁଳହୁଳି ଦେଲେ ତୋଷେ ଅଙ୍ଗନା ମିଳି । ୭୦ ।
ବନ୍ଦାଇ ନେଲେ ପୁରକୁ ଲଳନାଗଣ ।
କରି ବର କନ୍ୟା ବିଧି ଯଥା ପାଳନ । ୭୧ ।
ସୁଷମା ଅଙ୍କ ସେ ପୁରେ ରଚିଲା ନାଟ ।
ଅପୂର୍ବ ମିଳନରଙ୍ଗେ ଗାଇଲେ ଭାଟ । ୭୨ ।
ସ୍ୱୟମ୍ବର ଛାନ୍ଦ ଧୀରେ ହେଲା ଏ ଶେଷ ।
ଶ୍ରୀ ଗୋଲୋକ ଚନ୍ଦ୍ରେ ବଇଦେହୀବିଳାସ । ୭୩ ।

## ୩୮ଶ ଛାନ୍ଦ

### ରସକୋଇଲି—ବାଣୀ

ଦିବସ ବିନାଶି ଜାଣି ସଜନୀ, ବେଶ କଲେ ବସି ରମଣୀମଣି,
କେ ଫେଇଦେଲା ତା ଚିକୁରକୁନ୍ତଳ, କାଳନ୍ଦୀରେ ଖେଳେ କିବା କଲ୍ଲୋଳ ।
କେ ଚିକୁରଦଶୋଧୀ ତହିଁ,
ସୁବାସ ତଇଳେ କେଶ ଶ୍ୟାମଳା ଉପମା ଦୃଷ୍ଟି ବୁଡ଼ାଇ । ୧ ।
କେଶେ ପ୍ରସାଧନୀ ଚଳି ମଧୁରେ, ଉତ୍ତମାଙ୍ଗେ ମାଙ୍ଗ ଭଙ୍ଗି ବାମରେ,
ଖୋଷିକେନ୍ତ ଚୈଲଙ୍ଗୀ ଖୋଷାକୁ ଭିଡ଼ି, ତରୁଣ ଧଇର୍ଯ୍ୟ ଯିବାକୁ ଉଡ଼ି ।
ବିକଶିତ ଉଦବାସ,
ବିଲକ୍ଷ ମୁକ୍ତାରୁ ଅଧୋର୍ଦ୍ଧ୍ୱ ସ୍ଫୁରିତ ସମ୍ୟକ ଜ୍ୟୋତି ବିଶେଷ । ୨ ।
ଅଳକା ଅଳକା ଦେଶେ କେ ଦେଲା, କୁନ୍ତଳ ତଳକୁ ଭଲା ସାଜିଲା,
ଟୀକାଲହରୀ କେଶ ରାହୁ ହେଲାଇ, ମୁଖ-ଶଶୀକି କି ଅଛି ଗୋଡ଼ାଇ ।
ଖେଳେ ଅବା ସୌଦାମିନୀ,
ନୀଳ ଜୀମୂତରୁ ଓହ୍ଲାଇ ଅହ୍ଲାଦେ ସୁଷମା ସୁଧାବର୍ଷିଣୀ । ୩ ।

---

୭୩ । ବଇଦେହୀ—ସୀତା ।

---

୧ । କୁନ୍ତଳ—କେଶ; କାଳନ୍ଦୀ—ଯମୁନା; ଚିକୁର—କେଶ ।
୨ । ପ୍ରସାଧନୀ—ପାନିଅ; ଉତ୍ତମାଙ୍ଗ—ମସ୍ତକ ।
୩ । ସୌଦାମିନୀ—ବିଜୁଳି । ଜୀମୂତ—ମେଘ ।

କେ ସିଂହାଣୀ କର୍ଣ୍ଣେ ତାଟଙ୍କ ଦେଲା, ରବି ଶଶୀ କିବା ପ୍ରକାଶ କଲା,
ନେଇ ଉତ୍ପଳ ସେ ଶୋଭାକୁ ଗୁହିଁ, ଉଦ୍ଭ୍ରାନ୍ତ ମୁଦ୍ରିତ ରଙ୍ଗେ ହୁଅଇ ।
ଭାଇ କି ପଲ୍ଲକ ବ୍ୟାଜ,
ଅବା ଅନୁରାଗ ସୁଧା ରଖିଦେଲା ବାଳା କର୍ଣ୍ଣେ ମନସିଜ । ୪ ।
ନାସାରେ ଶୋଭାଇ ଦେଲା କେ ମୋତି, ଟଳାଇ ଦେବାକୁ ତାରୁଣ୍ୟ ଧୃତି,
ବାନ୍ଧିବାକୁ ବଳେ ଯୁବା ମନକୁ, ଶିଖାଇ ଦେବାକୁ ଭ୍ରମ ରଙ୍ଗକୁ ।
ଅଭ୍ରୁତୋପମା ପ୍ରକାଶେ,
ବଢ଼ାବେ ଶୃଙ୍ଗାର ପଥର ପାଳିଟି ବେପଥୁବଶେ ଜଳସେ । ୫ ।
ନାନା ରତ୍ନହାର କୁମ୍ଭସ୍ତମ୍ଭର, ଗଳା ଭୂଷାଇ କେ କଲା ରୁଚିର,
ହାଳ ରତ୍ନକର ଧୀର ତରଙ୍ଗେ, ନାଚେ କି ପଲ୍ଲକେ ସପଥ ରଙ୍ଗେ ।
କରେ ଶକ୍ରଗୃହଷେ ଜୁଲା,
ଅଭ୍ରମୁ କରଣୀ କୁମ୍ଭ ସମୀପେ କି ମଧୁରେ ଭରଇ ଖେଳା । ୬ ।
କାର୍ତ୍ତସ୍ୱର ବଳୟକୁ ସଜାଇ, ରଙ୍ଗେ ମଣିବନ୍ଧେ ଦେଲେ ପିନ୍ଧାଇ,
ହାତପାଶେ ମାନ୍ୟ ହସିଲା ଶୋଭା, ଶୋଭାର ଦେଖାଇ ଅପୂର୍ବ ପ୍ରଭା ।
ମୃଣାଳ ବେଢ଼ି ବିଜୁଳି,
ପ୍ରତିବମ୍ବିଲା କି ବରଜ ବାରିଦ ସମୀପରେ ରଙ୍ଗେ ଖେଳି । ୭ ।
ରତନ ଖଞ୍ଜା ବାଜୁବନ୍ଧ ନେଇ, ଭୁଜଶୋଭାଭୂକେ ଦେଲେ ପିନ୍ଧାଇ,
ଏବେ ଭୁଜଶୋଭା ଦ୍ୱିଜେ ଏ ମିଶି, ଅଭ୍ରସିଲା ରୁଦ୍ର ଶୋଭା ସରସି ।
କାନ୍ତିରେ କାନ୍ତି ମିଶାଇ,
ହାର ବାଜୁ ଛଳେ କନକ କି ଅବା ବାସ ତଳରେ ଲୁଚଇ । ୮ ।
ନିତମ୍ବେ ଶୋଭିଲା ମଣି ମେଖଳା, ଶୃଙ୍ଗାର କି ତନ୍ତୁଗୁଣ ବଢ଼ିଲା,
ସର୍ଜିବାକୁ ଜଗାଟନକୁ ଅତି, ପାଳି ସ୍ନେହ ଟାଳି ଦେବାକୁ ଧୃତି ।
କିବା ସ-ତଳ-ଭୂ ବର,
ସୁରତରଙ୍ଗିଣୀ ବହେ ପ୍ରୀତି ସମ ମୀନକେତନ ଆଦର । ୯ ।
ମଞ୍ଜୀର ପଦ୍ମରେ କଲେ ଭୂଷଣ, ଶୋଭାକୁ ଶୋଭାରେ ଦେଇ ଦୂଷଣ,
କଷଣ ଦେବାକୁ ହଂସମନକୁ, ବଢ଼ାଇବାକୁ ରହ ଆରତକୁ ।
ଅଜ ଯେ ଯହିଁକି ରୁଚି;
ମୃଗପ୍ରେକ୍ଷଣୀଏ ବିଭୂଷାଇ ଦେଲେ ତାଟ ମଧୁ ବାଛି ବାଛି । ୧୦ ।

---

୪ । ବ୍ୟାଜ—ଛଳନା । ମନସିଜ—କନ୍ଦର୍ପ । ୫ । ବେପଥୁ—କମ୍ପ ।
୬ । ପଲ୍ଲବ—ପୋଖରୀ । ଶକ୍ରଗୃହ—ଇନ୍ଦ୍ରଧନୁ । ଅଭ୍ରମୁ—ପୂର୍ବ ଦିଗ୍ଗଜ, ଐରାବତର ପତ୍ନୀ । ୭ । କାର୍ତ୍ତସ୍ୱର—ସୁନା
୮ । ବାଜୁ—ବାହୁର ଅଳଙ୍କାର ବିଶେଷ ।
୯ । ସ, ତଳ, ଭୂ—ସ୍ୱର୍ଗ, ପାତାଳ, ମର୍ତ୍ତ୍ୟ ।
୧୦ । ପ୍ରୀତି—ଏ ଅନଙ୍ଗବତୀ ବେଶ୍ୟା ବ୍ରତ କରି କାମଦେବଙ୍କର ପତ୍ନୀ ହେଲେ ।

କସ୍ତୁରୀ ତିଳକ ଗୋଳି ଏ କାଳେ, ସୁଚିତ୍ର ଲେଖିଲେ ଗୋରୁ କପୋଳେ,
ସ୍କନ୍ଧରେ ଘେନିଲି ସିନ୍ଦୂରବିନ୍ଦୁ, ପ୍ରାଚୀ ମସ୍ତକେ କି ପୂର୍ଣ୍ଣିମା ଇନ୍ଦୁ !
ଏମନ୍ତ ଶୋଭା ପ୍ରକାଶି,
ବାରୁଣୀ ମସ୍ତକେ ରବି ମଥାମଣି ଘେନି ବୋଲାଇଲା ଦାସୀ । ୧୧ ।
ଦେଲା କେ ଲଞ୍ଜିବିହୀନ କଜ୍ଜଳ, ବାମା ନୟନ ଦିଶିଲା ମଞ୍ଜୁଳ ।
କୃଷ୍ଣ ବ୍ୟାଳବାଳ ବିଜଇ କି ହେ, ପଣ୍ଡୁଙ୍କ କମଳଦଳ ପାରୁଶେ !
ଉକ୍ରୁଷ୍ଟ ଦୋଷ କି ବନ୍ଧି,
କଟାକ୍ଷ ମାନଙ୍କେ ଯୁବା ହୃଦୟକୁ ବିଷରେ ଦେବ ଜଳାଇ । ୧୨ ।
ଅଲକ୍ତ ରଞ୍ଜନ ପଦ୍ମରେ ପୁଣି, କଲା ତୋଷେ ଅସି କେଉଁ ସଙ୍ଗିନୀ,
ସଖୀ ପ୍ରୀତି ପରି ଦିଶେ ସୁନ୍ଦର, ତାଳା ମୃଦ ଯଥା ତଥା ବହଳ ।
ଦର୍ଶକ ନେତ୍ର କୁପଡ଼,—
ପରି ବିରଜିଲ ମଞ୍ଜିଷ୍ଠା ରାଗରେ ଅନୁତନେ ଧରି କାନ୍ତ । ୧୩ ।
ରୁଚିର ବସନ ଦେଲେ ପିନ୍ଧାଇ, ତା ଅଙ୍ଗଯଷ୍ଟିକି ରୁଚିବା ପାଇଁ,
ଘନଜଘନା ନିବଡ଼ ନୀବନ୍ଧି, ସଜାଡ଼େ ରଦନେ ରଦ ଲିହନ୍ତି ।
ଛଳି କହନ୍ତି କେଉଁ ସଖୀ,
ଏଡ଼େ କୋପ କିମ୍ପା ବହୁ ମଦନକୁ କାଳେ ନ ଥିବ ମୃଗାକ୍ଷି । ୧୪ ।
ବାରିକଗନ୍ଧା ବାମେ ଦିଶେ ତୋରି, ସୁଷମାର ସେ କି ବିଚିତ୍ର କାରି,
ଚୁରି ବିଧୂରଜ ଅଞ୍ଚଳେ ନେଇ, ବାନ୍ଧି ଦେଲା ରଙ୍ଗେ କେଉଁ ସୁମୁହାଁ ।
କେ ଭୁଞ୍ଜାଇଲା ତାମ୍ବୂଳ,
ଭାଷି କାନ୍ତ ଓଷ୍ଠ ମଧୁପାନ କାଳେ କରି ଦେବ ଏ ବାତୁଳ । ୧୫ ।
ବିଭୂଷଣ କରି ଭୂଷଣଭୂଷା, ମୁକୁର ଦେଖାଇଦେଲା କେ ଯୋଷା,
କହିଲା ରଙ୍ଗେ କେ ଛଳି ବାଳୀକି, କାନ୍ତଙ୍କୁ ଲଗାଇ ଦେବୁ ଭେଳକି ।
ତୁ କାମମୋହିନୀ ମନ୍ତ୍ର,
ବଚନ କହିଲେ ଜଣାଯାଏ ସତେ ବାଜୁଛି କି ବୀଣାଯନ୍ତ୍ର । ୧୬ ।
କରେ ଜୀବଧବ ମୁଦ୍ରିକା ନେଇ, କେ ସଖୀ ଏ କାଳେ ଦେଲା ପିନ୍ଧାଇ,
ମୃଦୁ ମଧୁସ୍ମିତ ସୁପ୍ରକଟାଇ, ଶିବପ୍ରିୟ ସ୍ମିତ ଭାଷିଲା ଏହି ।
ସେ କାଳ ଏ କାଳ ଦେଖି,
ସହାସ୍ୟ ତ୍ରପାରେ କଲା ଅବନତ ମୁଖ ପଙ୍କେରୁହମୁଖୀ । ୧୭ ।

---

୧୧ । ପ୍ରାଚୀ—ପୂର୍ବଦିଗ । ବାରୁଣୀ—ପଶ୍ଚିମ ଦିଗ (ଦିଗଙ୍ଗନା) । ୧୨ । ବ୍ୟାଳବାଳ—ସର୍ପଶିଶୁ । କମଳ—ପଦ୍ମ । ୧୩ । ମୁଦ—ଆନନ୍ଦ । ୧୪ । ରଦନ—ଦନ୍ତ । ରଦ—ଦନ୍ତ । ମୃଗାକ୍ଷୀ—ହରିଣ-ନୟନା । ୧୫ । ବାରିଜ—ପଦ୍ମ । କାରି—ବନ୍ଦୀଘର । ବିଧୂରଜ—କର୍ପୂରଗୁଣ୍ଡି । ଅଞ୍ଚଳ—ପଣତ ।

୧୬ । ମୁକୁର—ଆରସି, ଦର୍ପଣ । ଭେଳକି—କୁହୁକ ।

୧୭ । ଜୀବଧବ—ସ୍ୱର୍ଣ୍ଣ । ତ୍ରପା—ଲଜ୍ଜା । ପଙ୍କେରୁହ—ପଦ୍ମ ।

କଟିରେ କିଙ୍କିଣୀ ଦେଲା କେ ବାନ୍ଧି, କହ କାନ୍ତ ଶୂନ୍ଯ କରବ ବାନ୍ଧ;
ଶୃଙ୍ଖଳରୁ ଯେ କାଳେ ନିତମ୍ବ ଧୀରେ, ନାଦ କରବ ଏ ମୃଦୁ ମଧୁରେ ।
ନାସା ମୋତି ତାହା ଗୃହି,
ନୃତ୍ୟେ ହେବ ଘତ ରଣିତ ନୁପୁର ତାଳ ଦେବ ଘୁନ୍ନମୁହିଁ । ୧୮ ।
ଶିଥିଳ ଏକାଳେ ହେଲା ଦୁକୂଳ, ରଜନୀଶମୁଖୀ ଅଙ୍ଗ ବିକଳ,
ବହନ୍ତେ ରୋମାଞ୍ଚ ବ୍ୟାଜେ ପୁଲକ, ନାସାରୁ ଖସିଲା ମୋତି ମାଣିକ୍ୟ ।
କମ୍ପି ବାସ ଖସେ ଦେଖି,
ସଜାଡ଼ିଲା ନୀବି ଚକ୍ରବଦନୀ ବଦନେ ରଦନ ଚାକି । ୧୯ ।
ପୁଣି ବେଶକାରୀ କଲା ସୁବେଶ, ନାସାରେ ଖଞ୍ଜିଲା ମୋତି ସରସ,
ରଞ୍ଜି ନାଏ ସେ ଉ ଯୁବତୀ ମଉ, ଗଞ୍ଜିଦେବ ଶଙ୍କ ତରୁଣୀ ଧୃତ ।
ଭାଙ୍ଗିଦେବ ଶଠ ଦମ୍ଭ,
ସୁରତକାଳରେ ହେବ ଯେତେବେଳେ ତା ନୃତ୍ୟ ଛବି ଆରମ୍ଭ । ୨୦ ।
କେତକୀବରଣା ଶିରେ କେତକୀ, ଖଞ୍ଜେ ଚଞ୍ଚଳା ସେ ଦେଖ ମଉକୀ,
ଛଳ ଅଶେଷ ଗୃହିଁ କହେ କେ ରସେ, ଭୃଙ୍ଗ ଉପରେ କି କେତକୀ ବସେ ।
ବିପରୀତ ହେବ ମନେ,
ମାଧୁବନଶୀଳା ବିଧୁବଦନା ଏ ଯେମନ୍ତ କିଛୁ ନ ଜାଣେ । ୨୧ ।
ଉଟଙ୍କେ ଶିଶୁକର୍ଣ୍ଣ ଗଣ୍ଡ ମଣ୍ଡଳ, ସ୍ୱଭାବରେ ନିନ୍ଦେ ଯା ଗଣ୍ଡସ୍ଥଳ,
ମକରୀ ଲେଖିଲା ତହିଁ କେ ସଖୀ, ମକରକେତନ ମକର ସେହି ।
ଜିବା ଲାଗି ଅଳକାଳେ,
ଅନୁରାଗ ଲତା କଲା କି ରୋପିତ ମନୋଜ ମାନସେ ଭାଳେ । ୨୨ ।
କସ୍ତୁରୀକ ଗୋଳ କେଉଁ ଛବଳୀ, ଉରଜ ଚର୍ଚ୍ଚିଲା ଧବଳ ତୁଳା,
ଚର୍ଚ୍ଚେ କି ମାଳିନୀ ଧରି ଶ୍ରୀଫଳ, ବାଣୀପୂଜା ଲାଗି କର ମଞ୍ଜୁଳ
ମାନସେ ଅଛେ ଏ ପୁଣି,
ଯୁବା ଜୟ ପାଇଁ କଲା ସୁଶୋଭିତ ରତିକି ଚର୍ଚ୍ଚ ଘାରିଣୀ । ୨୩ ।
ମଣ୍ଡିଲେ ଏ ଭାବେ ଚନ୍ଦ୍ରବଦନା, ହାସ ପରିହାସ କଲେ ନବୀନା,
କେ ଭାବେ ସଂସାରେ ଥିବ କି ଜଣେ, ସମ ହେବ ତାଙ୍କୁ ତିଳ ପ୍ରମାଣେ ।
ସମ୍ଭବନ୍ତୁ କି ଶୋଭାଙ୍ଗୀ,
ବିଚକ୍ଷଣମୀର ବିଚକ୍ଷ ଧରଣୀ ପଞ୍ଚକ କରିବା ଲାଗି । ୨୪ ।

---

୧୮ । ନିତମ୍ବ—କଟିର ପଶ୍ଚାଭାଗ । ରଣିତ—ରୁଣୁଝୁଣୁ ହେଉଥିବା ।

୧୯ । ରଜନୀଶ—ଚନ୍ଦ୍ର । ବାସ—ବସନ । କରକରଦନୀ—ଡାଳିମ୍ବଦନ୍ତୀ ।

୨୧ । କେତକୀ—କିଆ ଜାତୀୟ ସୁବାସଯୁକ୍ତ ପୁଷ୍ପ; ଶିରୋଭୂଷଣବିଶେଷ । ବିପରୀତ—ଚତୁଃଷଷ୍ଟି ବନ୍ଧରୁ ଏକ ନାମ । ନାଧୁବନଶୀଳା—ପ୍ରୌଢ଼ନିପୁଣା ।

୨୨ । ଶିଶୁକର୍ଣ୍ଣ—ଛୁଆ ହାତୀ । ମକରକେତନ—କନ୍ଦର୍ପ । ମକର—ମଗର । ଅଳକାଳ—ମଧ୍ଯା । ମନୋଜ—କନ୍ଦର୍ପ ।

୨୩ । ଉରଜ—ସ୍ତନ । ମାଳିନୀ—ମାଳୀଣୀ । ଶ୍ରୀଫଳ—ନଡ଼ିଆ, ବେଲ । ବାଣୀ—ସରସ୍ୱତୀ ।

ବିରଞ୍ଚି ରଚନା ନ ହୋଏ ଜଣା, ଟିକେ ବୋଲେ କେ କଲା ନବ କଳ୍ପନା,
ଫୁଲଶର ଫୁଲ ମାଧୁରୀ ହରି, ସୁଧା ଅନୁରାଗ ଗୁଣେ କି ତାଳି ।
କାନ୍ତିକି ନବ ଛଇଳା,
ତ୍ରିପୁର ସୁନ୍ଦରୀ ଅଟେ ଏ ସହଜେ ହେବ ପତି ଗଳାମାଳା । ୨୫ ।
କେ ବୋଲଇ ଦେଖି ଆମ୍ଭ ସଖୀକି, ରଖି ପାରବେ କି ପତି ଧୃତିକି,
ସଖୀ ସଖୀଦମ୍ଭ ଭାଙ୍ଗିଲ ଲତେ, ପୀରତି ପୀୟୂଷ ଗୃହିବ ଏବେ ।
ଭଣେ ଶ୍ରୀଗୋପୀନାଥଚନ୍ଦ୍ର,
ରସିକ ହୃଦୟକୁମୁଦକୁ ମୁଦ ଦେବାକୁ ଏ ପୂର୍ଣ୍ଣଚନ୍ଦ୍ର । ୨୬ ।

## ୩୯ଶ ଛାନ୍ଦ

ରାଗ—ବସନ୍ତ

ଅଲଙ୍କାର ଧ୍ୱନି ରସ ସୁରସିକ ସାର
ସାରସମୁଖୀଏ ମଣ୍ଡି ଗଲେ କେଳିପୁର
ପୁରନ୍ଦରପୁର ହସେ ସେ ପୁର ସହଜେ
ହଜେ ବୁଦ୍ଧି ବିଧିର ତା ସୁଷମା ସମାଜେ
ମାଜେ ମାଧୁରୀକି ଜାତ ନବ ଶିଳ୍ପିବିଦ୍ୟା
ବିଦ୍ୟାଧରୀ ମୋହିବ ସେ ରମ୍ୟପୁର ସଦା । ୧ ।
ରସଦା ପ୍ରମଦା ସଖୀ ଲେଖି ତୋଷେ ଚିତ୍ତ
ସେ ଚିତ୍ତପୁରକୁ କଲେ ଅଧିକ ବିଚିତ୍ର
ବି-ଚିତ୍ର ଲେଖିଲେ ହଂସ ହଂସୀ ତୋଷେ ଯାଇ
ଶେଯାଇ ତଳ୍ପ ଜାଗରେ କେ ଦାମ୍ପତ୍ୟ ରହି
ବିରହୀ ବିଷାଦେ ତାହିଁ ପ୍ରିୟତମା ରସେ
ମାରସେନାନିବେଶ ସେ ପୁର କଲେ ତୋଷେ । ୨ ।
ପୁଣି କେ ଚିତ୍ରିଲ ହରି ହରି ରୁକ୍ମିଣୀକି
ନେଉଛନ୍ତି ଖରେ ଖ-ରେ ଗୃହବାସିନୀକି
ରୁକ୍ମଣ କୋଦଣ୍ଡ ଧରି ଧରନ୍ତିବେ ଜଗ
ରୁକ୍ମିଣୀ ସାରଥୀ ରଥୀ ସେ ବିଷ୍ଟରଶ୍ରବା
ବିଳସେ ଏକାନ୍ତେ କାନ୍ତେ ଗୃହିଁ ବିମ୍ବାଧରୀ
କମ୍ପେ ଧୀରେ ଧୀରେ ଅର୍ଦ୍ଧ ଓଢ଼ଣୀ କବରୀ । ୩ ।

---

୨୫ । ବିରଞ୍ଚି—ବିଧାତା । ସୁଧା—ଅମୃତ । ଅନୁରାଗ—ସ୍ନେହ । ତ୍ରିପୁର—ସ୍ୱର୍ଗ, ମର୍ତ୍ତ୍ୟ, ପାତାଳ । ୨୬ । ପୀୟୂଷ—ଅମୃତ । କୁମୁଦ—କଇଁଫୁଲ ।

୧ । ସାରସମୁଖୀ—ପଦ୍ମମୁଖୀ । ପୁରନ୍ଦର—ଇନ୍ଦ୍ର । ବିଦ୍ୟାଧରୀ—ଗନ୍ଧର୍ବକାମିନୀ ।

୨ । ବି-ଚିତ୍ର—ମନୋହର; ପକ୍ଷୀଚିତ୍ର ।

୩ । ହରି—ଶ୍ରୀକୃଷ୍ଣ; ହରଣ କରି । ଖରେ—ଆକାଶରେ, ଶୀଘ୍ର । ବିଷ୍ଟରଶ୍ରବା—ଶ୍ରୀକୃଷ୍ଣ ।

ହରଧନୁ ଭଗ୍ନ ରାମ ରାମନେତ୍ରୀ ବଭ୍ରା
ଲେଖିଲେ ଚତୁରା ଅଳୀ ଅଳୀ ମୋହେ ଶୋଭା
ଭୃଗୁରାମ ରାମବାଦ ଗାଥିରେ ଯେମନ୍ତ
ବୋଧେ ରଘୁବର ବରବରଣୀର ଚିତ୍ତ
ମଧୁଶଯ୍ୟା ଶଯ୍ୟାଶୋଭା ଦୀପ ଛୁଆଁ ଛୁଇଁ
ମଞ୍ଜିଷ୍ଠା ରାଗ ସୂଚକ ଚିହ୍ନ କଲେ ସହି । ୪ ।
ଧରି ନଟବର ଛବି କରେ ବେଣୁ ଧରି
ହରି ବ୍ରଜାଙ୍ଗନା ଚିତ୍ତ ନୀପମୂଳେ ହରି
ଭାନୁଜା ପୁଳିନେ ସଖୀଗହଣେ ଭାନୁଜା
ଜର ଯାଦବେ କନ୍ଦର୍ପେଶେ ବେଣ୍ଟି ସୁକରଜା
ହରିଣାକ୍ଷୀ ରାଧା ଫେରି ଫେଣ ଗୃନ୍ଦେଁ ହରି
ଭଡ଼ିଗଣ୍ଡ ଚିହ୍ନିଲେ ସ୍ମରେ ଯନୂ ଭରି । ୫ ।
ମାଧବୀ ମାଧବୀ କୁଞ୍ଜକୁଟୀ ମଧ୍ୟେ ଶୋଭେ
ମାନ ମାନବତୀ [illegible] ଅଧୋମୁଖୀ [illegible]
ବାଧୁ ବାଧୂରେ [illegible] ଭୂଏବେ ଶୋଭନ
ଥନ ଥନ ନେତ୍ରେ [illegible] ଯୋଗୀ ନବଘନ
ଭରଭରଦନା ମୁଖେ ଢୋଳେ ଖେଦେ ଦୂତୀ
ମାନ ମାନବଭଞ୍ଜନ ଚିହ୍ନିଲେ ଯୁବତି । ୬ ।
ପଞ୍ଚପରାସ୍ତଣା ସତୀ ସାବିତ୍ରୀ ଜୀବେଶ
ଜୀବ ଘେନି ପରଲୋକଗାଥିରେ ଜୀବେଶ
ଶୋଭେ ପଛେ ପଛେ ପଞ୍ଚବଧୂରା କାମିନୀ
ଧଣେ ଯଥା ଖର ରବିମୟୂଖେ କାମିନୀ
ସତ୍ୟବାନ ଜୀବଦାନ କଲେ ଯଥା ଚିହ୍ନ
ଲେଖିଲେ ସଖୀ ଯତନେ ସେ ବିଚିହ୍ନ ଚିହ୍ନ । ୭ ।
ପୁଣି କେ ଚଳିଲା ରଙ୍ଗେ କୃଷ୍ଣା ସ୍ୱୟମ୍ବର
ଲକ୍ଷ ବିନ୍ଧେ ଛଦ୍ମବେଶୀ ପାର୍ଥ ବୀରବର
କୁରୁପଞ୍ଚ ଯାରେ ବପେ ମାଣିକ୍ୟ ରତନ
ଲୋଭ ଚିରଯଉବନୀ ରମଣୀରତନ
ବନ୍ଦମେ ଶୋଭଇ ବାମ ଧନୁଧୃତକର
ଯାଜ୍ଞସେନୀ ବେଢ଼ି ଜଗ୍ଧ ବସୁଧୀନକର । ୮ ।

---

୪ । ରାମ—ଦାଶରଥି, ମୃଗ । ଭୃଗୁରାମ—ପରଶୁରାମ ।
୫ । ଭାନୁଜା—ଯମୁନା; ବୃଷଭାନୁସୁତା ରାଧିକା । ସୁକରଜା—ଉତ୍ତମ ନଖଚିହ୍ନ । ସ୍ତ୍ରୀ ।
୬ । ମାଧବୀ—ରାଧା; ମାଧବୀଲତା । ବାଧୂ—ଶ୍ରୀକୃଷ୍ଣ । ନବଘନ—ଶ୍ୟାମସୁନ୍ଦର, କୃଷ୍ଣ ।
୭ । ଜୀବେଶ—ଯମ; ଯମ । ରବିମୟୂଖ—ରବିକିରଣ । ଚିହ୍ନ—ଯମ, ଛବି ।
୮ । ଚିରଯୌବନା—ଦ୍ରୌପଦୀ । ଯାଜ୍ଞସେନୀ—ଦ୍ରୌପଦୀ ।

କୁରୁସଭା ଚାରୁ ଚାରୁ ଚାରୁ କଲେ ତୋଷେ
ପାଞ୍ଚାଳୀ କାତର ଭରତର ଦୁଃଶା ସ୍ୱେଷେ
କୃଷ୍ଣା ଉପବାସ ବାସ ବାସରେ କାଢ଼ଇ
ପଞ୍ଚ ସହୋଦର ଦର ଦରକଣ୍ଠୀ ଗୃହିଁ
ଟେକିଛି ପୁଷ୍କର କର କରଯୋଡ଼ି ହାସେ
ଦେଖୁଛନ୍ତି ବ୍ରହ୍ମର୍ଷି ଋଷି ଋଷି ବାସେ । ୯ ।
ଚାହିଁଲେ ଭଦ୍ରାହରଣ ରଣ ଅଳୀଅଳି
ସୁଭଦ୍ରା ସ୍ୟନ୍ଦନଶୋଭା ଶୋଭାବଳୀ ବଳି
ଦାରୁକ ବନ୍ଧା ରଥରେ ଥରେ ଖ-ରେ ଖରେ
ବାଳୀ ସ୍ନେହେ ହସି ମନ୍ଦ ମନ୍ଦ ବରେ ବରେ
ଅର୍ଜୁନେ ଗୃହିଁଛି ଭଦ୍ରା ଭଦ୍ରା ଯୋଗେ ଯୋଗେ
ପାଣ୍ଡବ ଯାଦବ ରଣରଣ ରାଗେ ରାଗେ । ୧୦ ।
ପୁଣି ଚାହିଁଲେ ବିପିନ ବିପୀନଜରଜା
ହର୍ମ୍ମ୍ୟରେ ଜହ୍ନାନପାଦ ପାଦ କରେ ପୂଜା
ସରଳ ଗୃହାଣି ହାଣି ସେ ରମଣୀମଣି
ଭରି ସୁଗୀତ ସୁଗୀତ ତୋଷେ ନରମଣି
ନ ହେଜି ନୃପତି ପତି ଅଟନ୍ତି ତାହାର
ଦେଖୁଛନ୍ତି ଅଙ୍ଗୁ ଅଙ୍ଗୁରୀୟ ଉପହାର । ୧୧ ।
ଶକୁନ୍ତଳା କଲେ ଲଭି ସୁକୁନ୍ତଳ ବହି
କଣ୍ୱମୁନି ଆଶ୍ରମରେ ଶ୍ରମରେ ଚାହାଇ
ମୃଗାସନେ ଉପବିଷ୍ଟ ଦୁଷ୍ମନ୍ତ ନରେଶ
ଅନସୂୟା ପ୍ରିୟମ୍ବଦା ସଖୀ ହସ ହସ
ସୁମନା ସୁମନହାରେ ଧରି ସୁମନରେ
ମୀନାକ୍ଷୀ ଅପାଙ୍ଗେ ଗୃହିଁଅଛି ନରବରେ । ୧୨ ।
ପୁଣି ଚାହିଁଲେ ଦୁଷ୍ମନ୍ତ ନରବର ବର
ଭଦ୍ରାସନେ ଦ୍ୱିଧା ଚିତ୍ତେ ବିଅଧୀର ଧୀର
ଶକୁନ୍ତଳା ଅଧୋମୁଖୀ ଶୋକ ଜରଜର
ଊର୍ଦ୍ଧ୍ୱବାହୁ ଋଷି ଶିଷ୍ୟ କମ୍ପେ ଥରଥର
ନୃପତିର କଣ୍ଠାଇ କରନ୍ତି ନାହିଁ ନାହିଁ
ଅସେ ପରୀ ଖସି ନଭୁ ଏହା ଗୃହିଁ ଗୃହିଁ । ୧୩ ।

---

୯ । ଚାରୁ—ମନୋହର; ଛବି । ପାଞ୍ଚାଳୀ—ଦ୍ରୌପଦୀ । ଦର—ଭୟ; ଶଙ୍ଖ ।
୧୦ । ଭଦ୍ରା—ସୁଭଦ୍ରା; ଶ୍ରୀକୃଷ୍ଣଙ୍କର ପତ୍ନୀବିଶେଷ । ସ୍ୟନ୍ଦନ—ରଥ । ରଣରଣ—ଉତ୍କଣ୍ଠା ।
୧୧ । ବିପିନ—ବନସ୍ଥ; ବିପୀନ—କଠିନ । ହର୍ମ୍ୟ—ଅଟ୍ଟାଳିକା ।
୧୨ । ମୀନାକ୍ଷୀ—ମୀନନୟନା ସ୍ତ୍ରୀ ।
୧୩ । ଭଦ୍ରାସନ—ସିଂହାସନ । ପରୀ—ଅପ୍ସରା; ଏଠାରେ ମେନକା ।

ସେ ସୁକୁମାର କୁମାର ଭରତ ଲେଖିଲେ
ପୁଣି ନଳବର ବରବର୍ଣ୍ଣୀ ଚିତ୍ରିଲେ
ବେଳା ଦିଶେ ଦିଶେ ସୁତ ପଣତକୁ ଧରି
ପିତା ମାତାର, ମାତାର ମୁଖେ ଦୃଷ୍ଟି ଭରି
ନୂପୁର ହାସ ବିଳାସ କାଶହାସୀ ଧନୀ
ରାଜେ ସିଂହଶିଶୁ, ଶିଶୁପିତା କାନ୍ତ ଘେନି । ୧୪ ।
ମଖଶାଳେ ଚିତ୍ର କଲେ ମଧୁରେ ରଙ୍ଗିଣୀ
ଯଜ୍ଞକରେ କୋଳେ ଘେନି ଜନକ ରଙ୍ଗିଣୀ
ଯୋଷାମଣି ମୁଖେ ଗୃହିଁଛନ୍ତି ରାଜଋଷି
ବଳ୍କଳାରୁ ପରିହିତ ସ୍ୱବିରାଜ ଋଷି
ଦେଉଛନ୍ତି ଉପଦେଶ ଚକ୍ଷେ ତପୋଧନ
ନେଉଛନ୍ତି ଏକମନେ ଶୁଭ ମନ୍ତ୍ର ଧନ । ୧୫ ।
ପୁଣି ଚିତ୍ର କଲେ ହରିଶ୍ଚନ୍ଦ୍ର ଶୈବ୍ୟା ରାଣୀ
ସୁତ ସଙ୍ଗତରେ କାଶୀ କ୍ଷେତ୍ରେ ଭଗ୍ନପ୍ରାଣୀ
କ୍ରୋଧକଷାୟିତ ନେତ୍ରେ ବିଶ୍ୱାମିତ୍ର ଋଷି
ହରିଶ୍ଚନ୍ଦ୍ରେ ଗୃହିଁଛନ୍ତି ଅଙ୍ଗୁଳି ନିର୍ଦ୍ଦେଶି
କି କହେ ଆଦର କାନ୍ତେ ଶୈବ୍ୟା ବିମ୍ବାଧରୀ
ଦ୍ୱିଜେନ୍ଦ୍ର ସମୀପେ ଭିକ୍ଷା କରେ ମୁଦ୍ରା ଧରି । ୧୬ ।
ମଧୁରେ ଚିତ୍ରିଲେ ନଳ ଦମୟନ୍ତୀ ବନେ
ପରିହିତ ଏକବାସ ପଲ୍ଲବ ଶୟନେ
ବନୌକା ସିଂହ ଶାର୍ଦ୍ଦୁଳ ଆଦି ବନଚର
ବୁଲୁଛନ୍ତି ଦିଶେ ଦିଶେ ଦିଶେ ଭୟଙ୍କର
ନିଦ୍ରାମଗ୍ନା ସତୀ କର ନ୍ୟସ୍ତ ପତି ପରେ
ପଡ଼ିଛି ଖଡ଼୍‌ଗେକ ତହିଁ ନବ ଶୋଭା ଧରେ । ୧୭ ।
ଦୁଃଶୀଳା ଟେକ କଲା ଚିତ୍ର ଈଶାନ ମନ୍ଦିରେ
ହୋଇ ଉଭା ଶମ୍ଭୁ ପୂଜା କରଇ ଭକ୍ତିରେ
ଅର୍ଜ୍ଜୁନ ପ୍ରତିଜ୍ଞା ସ୍ମରି ସତେ କି କମ୍ପଇ
ମୁକ୍ତକେଶା ନୟନରୁ ନୀର ଯାଏ ବହି
ସ୍ଫୁରିତ ଓଷ୍ଠରୁ ଅଧର ଦୁଃଖେ ମ୍ରିୟମାଣ
ବ୍ୟକ୍ତ କରେ ସତେ ଯେହ୍ନେ ମାଗେ ପତିପ୍ରାଣ । ୧୮ ।

---

୧୪ । ଦିଶେ—ଦିଗରେ, ଦେଖାଯାଏ ।

୧୫ । ମଖ—ଯଜ୍ଞ ।

୧୭ । ବନୌକା—ମାଙ୍କଡ଼ । ଶାର୍ଦ୍ଦୁଳ—ବାଘ ।

୧୮ । ଦୁଃଶୀଳା—ଜୟଦ୍ରଥର ପତ୍ନୀ, ଏ ସତୀ ସ୍ତ୍ରୀ । ଅର୍ଜ୍ଜୁନ ଜୟଦ୍ରଥକୁ ବଧ କରିବାର ପ୍ରତିଜ୍ଞା କଥା ଶୁଣି ସ୍ୱାମୀକୁ ରକ୍ଷା କରିବାପାଇଁ ଶମ୍ଭୁପୂଜା କରୁଥିଲେ ।

ମାୟାସୀତା ବିଦ୍ୟୁଜ୍ଜିହ୍ୱକୃତା ଇନ୍ଦ୍ରଜିତ
ପକାଇଛି ହାଣି ରଙ୍ଗେ ରାମ ମୂର୍ଚ୍ଛିତ
ମହୀରେ କାନ୍ଦି ଲକ୍ଷ୍ମଣ ଶ୍ରୀରାମ ଜାତରେ
କାନ୍ଦେ ଖେଦେ ସଙ୍ଗମିଳି କର କପାଳରେ
ବିଭୀଷଣ ସୁଗ୍ରୀବ ନଳ ନୀଳ ହନୁମାନ
ବୋଧେ ରାମେ ବିଭୀଷଣ ଚାହିଁଲେ ଏସନ । ୧୯ ।
ଉତ୍ତରପ୍ରରେ କେ ପୁଣି ଚାହିଁ ଲକ୍ଷ ରଙ୍ଗେ
ଯୁଦ୍ଧବେଶେ ଅଭିମନ୍ୟୁ ଦିଶେ କାନ୍ତା ସଙ୍ଗେ
କାନ୍ତକର ଧରି ଉଭା ବଦନେ ଅନାଇ
ଉତ୍ତରା କାତରା ହାସେ ଅଧର ସ୍ଫୁରାଇ
ଦ୍ୱାରଦେଶେ ଥାଇ ଗୁରୁଙ୍କ ଶିରକୁ ଉଡ଼ାଇ
ଗୋପନେ ନିସୃତ ବେଣୀ ଜନେ ଚିହ୍ନି ଗୁହିଁ । ୨୦ ।
ପୁଣି କେତେ ଅନୁକୂଳ ପ୍ରତିକୂଳ ଚାହିଁ
ଦମ୍ପତିଙ୍କି ଶିକ୍ଷା ଦେବା ପ୍ରାୟେ କଲେ ଚାହିଁ
ସୁବର୍ଣ୍ଣକାରୀ ନିମ୍ନପଟଳିକା ଚିହ୍ନି
ଚାହିଁଲ କେ ବାମନେତ୍ରା କୌତୁହଳ ବହି
ଲେଖିଲ କେ ଉଦ୍ଦୀପନ ଗୀତମାନ କରି
ସୁବାନେଶ ଗୁରୁଙ୍କଲୁ କରି ସୁଆକାର । ୨୧ ।
'ବ ର ହେ ଦ ବ ହେ ର ବ' ଅମ୍ବର ସଖୀର
'ର ସ ବ ହେ ହେ ହେ ଶ ର' ସେ ଫୁଲଶରର
'ହେ ବ ର ସ ସ ଶ ର ହେ' କାମେ ହେଲେ ମତ୍ତ
'ଦ ହେ ଷ ଦା ଦା ଷ ହେ ଦ' ମାନ କଲେ ଜାତ
ସର୍ବତୋଭଦ୍ର ଏ ପ୍ରାନ୍ତ ଷଡ଼କ୍ଷର ବ୍ୟୂହେ
ସଖୀଭାବେ ବିରଚିତ ଭାବ ବୀଜ ଚାହେଁ । ୨୨ ।

---

୧୯ । ରଙ୍ଗେ—ଯୁଦ୍ଧକ୍ଷେତ୍ରରେ । ବିଦ୍ୟୁଜ୍ଜିହ୍ୱ—ଏ ଜଣେ ମାୟାବୀ ରାକ୍ଷସ, ଏ ମାୟା ସୀତା କରିଥିଲା ।

୨୧ । ସର୍ବତୋଭଦ୍ର—ଶବ୍ଦାଳଙ୍କାର ବିଶେଷ । (ଏଥିରେ ପ୍ରଥମ ଗୁରି ପାଦର ଶେଷ ଛଅ ଅକ୍ଷରମାନଙ୍କୁ ବାଦ ଦେବାକୁ ହେବ । ଗୁରିପାଦର ଆଠ ଅକ୍ଷରମାନଙ୍କରେ ସର୍ବତୋଭଦ୍ର ହେବ । ଏହି ୪ ପାଦର ପ୍ରତ୍ୟେକ ପାଦର ଆଠ ଅକ୍ଷରମାନଙ୍କୁ ପାଦକ୍ରମେ ପଢ଼ି ବିଲୋମ (ଓଲଟାଇ ପଢ଼ିବା) କରି ପଢ଼ିବା ସଙ୍ଗେ ସଙ୍ଗେ ଯଥାକ୍ରମେ ୧ମ, ୨ୟ, ୩ୟ ଓ ୪ର୍ଥ ପାଦର ୧ମ ଅକ୍ଷରମାନ ଏବଂ ୪ର୍ଥ, ୩ୟ, ୨ୟ ଓ ୧ମ ପାଦର ୮ମ ଅକ୍ଷରମାନଙ୍କୁ ଓ ଏହି କ୍ରମରେ ଆଦ୍ୟ ପାଦରୁ ଆରମ୍ଭ କରି ପାଦମାନଙ୍କର ୨ୟ, ୩ୟ ଓ ୪ର୍ଥ ଅକ୍ଷରମାନଙ୍କ ସଙ୍ଗେ ପାଦମାନଙ୍କର ଶେଷ ପାଦରୁ ଆରମ୍ଭ କରି ୭ମ, ୬ଷ୍ଠ ଓ ୫ମ ଅକ୍ଷରମାନ ପଢ଼ିବାକୁ ହେବ ଓ ଯଥାକ୍ରମେ ବିଲୋମ କରିବାକୁ ହେବ) । ବହେରବ—ରବ ବହୁଅଛି । ଅର୍ଥାତ୍ ସେ ଏହି କଥା କହୁଅଛି । ରସବହେ—ରସ ଧାରଣ କରିଅଛି । ଶର—ବାଣ; ସର—ପୁଷ୍କରିଣୀ । ସରବ—ସର୍ବ; ସବୁ । ବହେ—(ମନରେ) ଧାରଣ କରେ; ମନେକରେ ।

ପୁଣି ସଜନୀଏ ଶେଯ ପଲ୍ୟଙ୍କେ ମଣ୍ଡାଇ
ଯଥାସ୍ଥାନେ ଉପସ୍କରମାନ ଦେଲେ ଥୋଇ
ଅତର ଗନ୍ଧପଣାରେ ଧୀରେ ଧୀରେ ସିଞ୍ଚି
ସୁବର୍ଣ୍ଣ ଝଞ୍ଜରେ ବାସନାର ଦେଲେ ସଞ୍ଚି
ରଖିଲେ ଚନ୍ଦନ ଚୁଆ ସ୍ୱର୍ଣ୍ଣସମ୍ପୁଟରେ
ଦେଲେ ଆଣି ଦର୍ପଣ ପଲ୍ୟଙ୍କ ପାଖରେ । ୨୩ ।
ଯଥାସ୍ଥାନେ ପୂଗପୀଠ ରଖିଲେ ଅଙ୍ଗନା
ମଣ୍ଡିଲେ ସୂତ୍ରରୁ ଛବି ଟାଙ୍ଗିଣ ଅଗଣା
ସଦ୍ୟ ବିକଶିତ ଫୁଲେ ଗୁନ୍ଥି ହାରମାନ
ସଜାଇ ରଖିଲେ କାଚପାନରେ ବହନ
ପିଲସୁଜ ପରେ ସ୍ୱର୍ଣ୍ଣ ପ୍ରଦୀପ ରଖିଲେ
ଏ ଭାବେ ସଖୀଏ କେଳିପୁର ମଣ୍ଡାଇଲେ । ୨୪ ।
ଭବ୍ୟ ବିସ୍ମୟେ ସେ ପୁର ବିରୋଧାଭାସଇ
ପ୍ରଦୋଷେ ଗଭସ୍ତି ହସି ଗବାକ୍ଷେ କ୍ରୀଡ଼ଇ
ଚତ୍ୱରରେ ଦିଶେ ରମ୍ଭା ଶୁକାଲାପେ ମତ୍ତ
ସମ୍ମୋହନ ଚିତ୍ରଲେଖା ରଙ୍ଗେ ସୁବଦିତ
ତୋରଣରେ ଲକ୍ଷ୍ମୀପତ୍ର ରାଜନ୍ତି ସୁମନେ
ସ୍ତମ୍ଭରେ ପାର୍ବତୀ ନାନା ଭଙ୍ଗେ ଉଛାଟନେ । ୨୫ ।
କେମା ମନକୁ ଆସିବ ନ ଆସିବ କିବା
ଭାବି ଭାବି ସଖୀ କଲେ ପୁର ଅତି ଶୋଭା
ଦେଖିଲେ ବଦନ ମନେ ଆସିବ ଏସନ
ସ୍ଥାନେ ସ୍ଥାନେ ରଖିଛନ୍ତି କି କାମ ଫୁଲବାଣି
ଅର୍ଥ ବୁଝିବେ ଯେ ନାନା ଶାସ୍ତ୍ରରେ ପଣ୍ଡିତ
ଶ୍ରୀ ଗୋଲୋକଚନ୍ଦ୍ର ବିରଚିତ ରମ୍ୟ ଗୀତ । ୨୬ ।

୨୩ । ସ୍ୱର୍ଣ୍ଣ ସମ୍ପୁଟ—ସୁନା ଫରୁଆ ।

୨୪ । ପୂଗପୀଠ—ପିକଦାନୀ ।

୨୫ । ଗଭସ୍ତି—ଅଗ୍ନିପତ୍ନୀ ସ୍ୱାହାଦେବୀ; ଚନ୍ଦ୍ରକିରଣ ଓ ସୂର୍ଯ୍ୟକିରଣ । ଗବାକ୍ଷ—ରାମାୟଣ-ବର୍ଣ୍ଣିତ ମର୍କଟ ସେନାପତି ବିଶେଷ; ଝରକା । ରମ୍ଭା—ଅପ୍ସରାବିଶେଷ; କଦଳୀବୃକ୍ଷ । ଶୁକ—ଶୁକଦେବ; ଶୁଆପକ୍ଷୀ । ଚିତ୍ରଲେଖା—ଅପ୍ସରାବିଶେଷ; ଅଙ୍କା ଯାଇଥିବା ଛବି । ତୋରଣ—ଫାଟକ । ଲକ୍ଷ୍ମୀପତ୍ର—ବିଷ୍ଣୁ; ଲବଙ୍ଗଲତା । ପାର୍ବତୀ—ଦୁର୍ଗା; ପଥରରେ କନ୍ଦିବା ପୁତ୍ତଳବିଶେଷ; ପ୍ରଜାପତି । ରଙ୍ଗ—କ୍ରୀଡ଼ା, ନୃତ୍ୟ, ଶୁକ୍ଳରକ୍ତାଦି ବର୍ଣ୍ଣ ।

## ୪୦ଶ ଛାନ୍ଦ

ରାଗ—କଳସା

କୁମାର ବିଳାସ ନବସ୍ଥାନେ ରସ ଧୀରେ ସ୍ଥିର କରି ସୁଚିତ୍ତ, କରି କରିଗତି ନାରୀ ଅନାଗତ । କଣ୍ଠେ ଘେନି ତାକୁ ମଦନ ବିଭ୍ରେମ ମୋହିଲ ନେଙ୍ଗେ ଜଗତ । କାମିନୀ । କଳାକର ମଥାମଣି ମଥାରେ । ରତ୍ନେ ରଙ୍ଗେ ତରୁଣ ଦର୍ପଣରେ । କର ନା ବିଳମ୍ବ କର ସଙ୍ଗରଙ୍ଗ ବିନୋଦେ ମନମଥରେ । ୧ ।

କଳାକରମୁଖୀ ସଖୀ ଏହି କାଳେ ବେଶ ସାରି ଘନକେଶୀର, କହେ ଅଳୀ ଭେଳ ଛଳ ସୁମଧୁର । କଲ୍ପ ଅଙ୍ଗ ଭଙ୍ଗ ବାଧି ଆମ୍ଭ ସଙ୍ଗ କର କାନ୍ତରେ ବିହାର । କିଶୋରି ! କାମପୀୟୂଷ ଚଖାଇବ ଅଙ୍ଗ । କରି ଦାଡ ପଳାଇବ ତୋ ଲାଜ । କମନୀୟ କାନ୍ତ ଲଭି କାନ୍ତପ୍ରୀତି ଭୁଲିବୁ ସଖୀସମାଜ । ୨ ।

କମ୍ବୁକଣ୍ଠୀକି କେ କହଇ ଏକାଳେ କାନ୍ତ କରମାଳୀ ପରାୟ, କମଳଣୀ ନ କରିବୁ ତୁ ଭୟ । କରେ ଦାରୁଭେଦ ମଧ୍ୟରେ ଷଟ୍‌ପଦ ଫୁଲକୁ ପୁଣି ଆଶୟ । କିଶୋରି ! କାନ୍ତ ଗୁହାରି ନେବେ ସୁଚିତ୍ତେ । କରକଞ୍ଜେ ଧରି ବୋଧି ଭସତେ । କରି ମୁଖ ନତ ରହିବୁ ସଙ୍ଗାତ ଶେଯରୁ ଖସି କାନ୍ଥରେ । ୩ ।

କୋକନଦା ଧରି କେ କହେ ଅଛଇ ନୟନ ଦଶଇ କହ୍ଲାର, କର୍ଣ୍ଣପାଟଳି ସୁମନ ସୁନ୍ଦର । କୋମଳ ଶିରୀଷ ଶରୀର ସରସ ନାସିକା ତଳ ସୁନ୍ଦର । କିଶୋରି ! କଞ୍ଜବାସରେ ବାସେ ତୋ ଶରୀର । କୁନ୍ଦ କୋରକ ଦଶନ ରୁଚିର । କାହୁଁ ମଧୁବ୍ରତ ବହିବ ବିରତ ଏକଥା ଚିତ୍ତେ ବିଚାର । ୪ ।

କେ କହଇ ପୁଣି କରିଗତି ତୋର କାନ୍ତ ତ ନାଗର-କୁଞ୍ଜର, କଣ୍ଠୀରବ କଟୀ ତୋର ରୁଚିର । କମଳନୟନା ଦେଖିବୁ ସହଜେ, ସେ ପୁଂସ କେଶରୀବର । କିଶୋରି ! କରଭୋରୁ ତୋର ମୃଗନୟନ । କାନ୍ତ ସ୍ୱଭାବେ ମୃଗଜାତି ଘେନ । କାହିଁକି ନ ହେବ ମାନସ ସରସ ଜାତରେ ଜାତ ମିଳନ । ୫ ।

---

୧ । କଳାକର—ଚନ୍ଦ୍ର ।

୨ । ସମାଜ—ସମୂହ; ଗୋଷ୍ଠୀ ।

୩ । କମ୍ବୁ—ଶଙ୍ଖ । କରମାଳୀ—ସୂର୍ଯ୍ୟ । କମଳିନୀ—ପଦ୍ମବନ; ପଦ୍ମିନୀ ସ୍ତ୍ରୀ । ଷଟ୍‌ପଦ—ଭ୍ରମର । କଞ୍ଜ—ପଦ୍ମ ।

୪ । କୋକନଦ—ନାଲି ପଦ୍ମ । କହ୍ଲାର—କଇଁ । ପାଟଳିସୁମନ—ପାଟଳିଫୁଲ । ମଧୁବ୍ରତ—ମଧୁପାନ କରିବା ବ୍ରତ ଯାହାର; ଭ୍ରମର ।

୫ । କରିଗତି—ଗଜଗମନା । କୁଞ୍ଜର—ହସ୍ତୀ; ଶ୍ରେଷ୍ଠ । କଣ୍ଠୀରବ—ସିଂହ । କେଶରୀ—ସିଂହ । ମୃଗନୟନ—ହରିଣନୟନ । ମୃଗଜାତି—ଚାରିଜାତି ପୁରୁଷ ମଧ୍ୟରୁ ଏକତମ ।

କେ ବୋଲେ ଅଧୀର ଦେଖି କାନ୍ତ ତୋର ତରଳବ ମତ ବାଧିରେ । କୃପା ଜଳନିଧି ଦ୍ୱିଜେ ଅନ୍ତରେ । କହିବୁ ଯେ କାଟିଲ ଅବଲୋକନ ତୁ କାନ୍ତ ବଦନ ପୃଷ୍ଠରେ । କିଶୋରି ! କାମ ପୀଡ଼ିବ ତନୁକୁ ଆରତେ । କାମେ ମର୍ଯ୍ୟାଦା ରହିବ କି ଚିତ୍ତେ । କରିବାର ନୋହେ ସେ କାଳେ ସ୍ୱୀକାର ବରତଥିବୁ ସୁରତେ । ୬ ।

କେ ବୋଲେ କଲେ କି ବାଲବନ୍ଧ ଦୃଢ଼ ସମ୍ଭାଳିବ ସ୍ରୋତ ପ୍ରଖର, କାମେ କାମିନୀ ଗତ ସେ ପ୍ରକାର । କ୍ରୀଡ଼ା ରସେ ମତ ହେଲେ ରଙ୍ଗେ କର ଇଙ୍ଗିତରେ ସୀତ୍କାର । କିଶୋରି ! କାନ୍ତ ରତ ଖେଳେ ଯିବୁ ତୁ ମାତି । କହି ଚତୁରଶୋଭି ସଖୀତତି । କଲେ ଉଷ୍ମ ନେଇ କାନ୍ତପୁର ପାଶେ ଶୁଣାଇ ମଞ୍ଜୁ ଭାରତୀ । ୭ ।

କେ ଅତି ହରଷେ ଧୀରେ ଧୀରେ ଭାଷେ ତୁମ୍ଭେ ତ ନାଗରକୁଞ୍ଜର, କାଞ୍ଚି ଏ ସଖୀ ସ୍ୱଭାବେ ଅସ୍ଥିର । କରୁଁ ଅନୁନୟ ସଜନୀ ନିଚୟ ହୋଇବ ନାହିଁ ଅଧୀର । କୁମାର ! କରଭୋଗ ମୃଦେ କରିବତ କି । କାମେ ଅନୁରାଗେ ତୋଷି ମତକି । କାହୁଁ ଯଶ ହେବ ଅବଳା ଦହିଲେ ସଖୀଭାବେ କହୁଁ ଏତକି । ୮ ।

କରନ୍ତି ବିଡ଼ୌଜା ଭୋଗ ପାରିଜାତ କଳି ତେଜି ତୋଳି ସୁମନ, କଟାକ୍ଷକୁ ଭୋଗ ରଖି ତା ମନ । କରଇ ବାସମ ହରଠାରେ ହରି ହରଣୀରେ ଅଶୋଭନ । କୁମାର ! କରେ ଚକୋର ଚନ୍ଦ୍ରିକା ଅହାର, କରେ ନାହିଁ କି ସିତାଂଶୁ ଆଦର । କାନ୍ତି କୁଳେଶ୍ୱରି ଭୋଗ ସେହିପରି ନ ହୋଇ କାମେ ଅଧୀର । ୯ ।

କୋକନଦାଧର ନୟନ ଉତ୍ପଳ ପଦ୍ମକର ଅବ୍ଜ ପୟର, କଞ୍ଜମୁଖୀ ସ୍ତନନାଭି ପୁଷ୍କର । କମଳ ସୁବାସ ସରସୀଜ ହାସ ବଚନେ ମଧୁର ରୁଚିର । କୁମାର ! କୋକସ୍ତନୀ ଏ ପଙ୍କଜ କାନନ । କାମେ ଇନ୍ଦିନ୍ଦିର ହୁଏ ଉଚ୍ଛନ୍ନ । କଟିମାଳୀ ସରି କରେ ଗଳାମାଳ ତେଜକୁ କର ଖଣ୍ଡନ । ୧୦ ।

କର ସଜନୀର ସମର୍ପିଲୁ କର ଭୋଗ ସ୍ୱଭାବେ ସେ ତୁମ୍ଭର, କହୁଁ ସଖୀ ଭାବେ ଏତେ ମାତର । କହି ପେଲି ଦେଲେ କେଳିପୁରେ ଭଲେ ସୁଭାଷୀ ସଖୀନିକର । କିଶୋରୀ । କରେ ହେମବଲ୍ଲରୀ କି ଗମନ । କାଳେ ମୃଦୁଳ ବହିଲେ ପବନ । କର ମଞ୍ଜୁ ସ୍ୱର ପୟର ମଞ୍ଜୀର ଶୁଭେ ଏଣେ ରୁଣଝୁଣ । ୧୧ ।

---

୬ । ଦ୍ୱିଜେ—ଦ୍ୱିତୀୟରେ ।

୭ । ସୀତ୍କାର—ସ୍ୱୀକାର, ସମ୍ମତ । ସୁରତ—ପ୍ରୀତ । ତତି—ସମୂହ । ଭାରତୀ—ବଚନ, କଥା ।

୯ । ବିଡ଼ୌଜା—ଇନ୍ଦ୍ର । ପାରିଜାତ—ଦେବତରୁ ଫୁଲ । ( ଏହା ମର୍ତ୍ତ୍ୟରେ ନାହିଁ ) । କଟାକ୍ଷ—କାମିନୀର କୁଟିଳ ଦୃଷ୍ଟି; ଅପାଙ୍ଗ ( କାମିନୀଙ୍କ କଟାକ୍ଷ ସ୍ୱର୍ଗରେ ନାହିଁ । )

୧୦ । କୋକନଦ—ପଦ୍ମ, ପୁଷ୍କର, ଅବ୍ଜ, କଞ୍ଜ, ଉତ୍ପଳ, କମଳ, ସରସୀଜ, ପଙ୍କଜ । ଇନ୍ଦିନ୍ଦିର—ଭ୍ରମର ।

୧୧ । କିଶୋରୀ—ଯୁବତୀ, କୁମାରୀ । ବଲ୍ଲରୀ—ଲତା । ମଞ୍ଜୁ—ମଧୁର । ମଞ୍ଜୀର—ନୂପୁର ।

କପାଟକୁ କଳି ବାଳାସଖୀବ୍ରଜ ପୂର ପରସରୁ ଅନ୍ତର, କର ତରୁଣ ପୀୟୂଷ ଅହାର । କଟାକ୍ଷ ଧନିକା ଅତୁରତା ଏବା ଅନୁଭବୀଙ୍କ ଗୋଚର । ଯାମିନୀ । କାନ୍ତ କରକ ଅସଇ ଯେତକ । କାନ୍ତ ମୁକୁତକୁ ଲଭେ ତେତକ । କଙ୍କିଣୀର କ୍ଷଣି ମଣ୍ଡ ନେଇ କଣି ଦେଉଥାଇ ଗତ ଶ୍ରୁତକ । ୧୨ ।

କହୁଁ କହୁଁ ପୁଂସ ଆଗେ ହେଲ ଉଭା ଲଜ୍ଜାବତୀ ନାରୀ ଇନ୍ଦ୍ରାଣୀ, କବ ଗତ ସେ କ ସିନ୍ଧୁଦୁଲଣୀ । କାମେ କସ୍ତୁ ପାଶେ ଶୋଭାବତୀ ଉଭା ପୀତ ଅମିୟବର୍ଷିଣୀ । କଣୋସ୍ୱ । କଳାକରମୁଖୀ କେଳଭ ପର । କାନ୍ତି ତରୁଣେ ବାସୁ ଯା ବାହାର । କଞ୍ଜନ ସମୀପେ ହୋଇଅଛୁ ଉଭା ମୋହିନୀ ରୂପକୁ ଧର । ୧୩ ।

କୁମର ହାବଇ ସ୍ୱପ୍ନଶିରୀ ଏହା କେଉଁ ପୁଣ୍ୟବଳୁ ପ୍ରାପତ, କୁଶକେତୁ କଳ୍ପନାର ଅତୀତ । କଲ ଜୀବନ୍ୟାସ ମୋହନ ମନ୍ତ୍ରେ କେ କା ଘଟେ ଉର ଏମନ୍ତ । କଣୋସ୍ୱ । କବା କାମତାରକ ମନ୍ତ୍ର ଏହା, କୋଷ୍ଠୀ କେଳଭ ଦଳ ବପୁ ବନ୍ଧ । କରବାକୁ ନେଣ୍ଡ ଲୀଳାରେ ପବନ ବ୍ରୀଡ଼ାବତୀ ବଳସଇ । ୧୪ ।

ଭମ୍ପାଇଲ ତନୁ ଏବାଳେ ଅତନୁ ଯୁବାମଘବାର ପଳକେ, କଣ୍ଠୁକଲ୍ପ ଅଙ୍ଗ ପୁର ପୁଲକେ । କାନ୍ତ ହୃଦଚକ ମୁଦ ଦଳ ବନ୍ଦ ବିଧାନେ ସେ ଇନ୍ଦୁ ଝଟକେ । କାମରେ । ତାହୁଁ ଗ୍ରାସିଗଲା ଅସି ବିଭ୍ରମ । କଲେ କନକପ୍ରତିମା ସୁଷମ । କଣ୍ଠୀ ଗୃହୁଁ "ଧୂର୍ଜଟୀ" ଏ, ଆସ୍ମୃ କହୁ ସ୍ୱରଭଙ୍ଗ ହେଲ ବାମ । ୧୫ ।

କରଇ ରଚନ୍ ଚଞ୍ଚଳ ବଚନେ କର ଦାଣ୍ଡିଧାର ତନୟୁ, କର ଅନଙ୍ଗ ଶରଭୟୁ କ୍ଷମ୍ବୁ । କର ଚରଣ ଅସଘନ ମଦନକର ଉଭର ଆଥନ୍ତୁ । କମ୍ପଇ । କଞ୍ଜନନ୍ଦନର ଏ ତ ତଚନ । ଭର ରମଣ କଞ୍ଜନ ଗଞ୍ଜନ କଳମ୍ବସ୍ୱରର ମନ୍ଦ ପରଧର କର ନୟନ ନଳିନ । ୧୬ ।

କର ନାଥ ଧର ଗ୍ରୀବ ବର କଲ ପଲ୍ୟଙ୍କରେ ନେଇ ବସାନ୍ତେ, କରଷ୍ଟେରୁ ଶେଯୁଁ ଖସେ କୁଞ୍ଚିତେ । ଜମଳନା କ ସେ ଉପାବାତାହତେ ଭୁଙ୍ଗେ ପଡ଼ାଇ ଅରତେ । ଭୁମାର । କଞ୍ଜମୁଖୁ ବାସ ଦିଏ ଖସାଇ । କରେ ପ୍ରଉଢପଦର୍ଶିନୀ ବାରଇ । କହୁଁ ଗୁଣ୍ଠୁକଥା ଲଜକୋଳି ଯଥା ସଙ୍କୋଚପଙ୍କେ ରହଇ । ୧୭ ।

---

୧୨ । ବ୍ରଜ—ସମୂହ । ପରସର—ସୀମା । ଧନିକା—ସୁନ୍ଦରୀ ସ୍ତ୍ରୀ ।

୧୩ । ଇନ୍ଦ୍ରାଣୀ—ଶଚୀ, ଶ୍ରେଷ୍ଠା । ସିନ୍ଧୁଦୁଲଣୀ—ଲକ୍ଷ୍ମୀ । କେଳଭ—ରଭ । କଞ୍ଜନ—କାମଦେବ ।

୧୪ । କୁଶକେତୁ—ବିଧାତା । ବ୍ରୀଡ଼ାବତୀ—ଲଜ୍ଜାବତୀ ।

୧୫ । ଅତନୁ—କନ୍ଦର୍ପ । ମଘବା—ଇନ୍ଦ୍ର, ଶ୍ରେଷ୍ଠ । ଚକ—ସମୂହ, ଚକ୍ରବାକ । ଇନ୍ଦୁ—ଚନ୍ଦ୍ର, ଇନ୍ଦୁରେଖା । ଧୂର୍ଜଟୀ (ଡମରୁମଧ୍ୟା)—ଶିବ (ଡମରୁମଧ୍ୟା) ।

୧୬ । ଅସଘନ—ଶରୀର । କଞ୍ଜନନ୍ଦନ—ବ୍ରହ୍ମା । କଳମ୍ବ—ଶର । ସ୍ମର—କନ୍ଦର୍ପ । ପର—ଶତ୍ରୁ ।

୧୭ । ପ୍ରଉଢପଦର୍ଶିନୀ—ଲଜ୍ଜାବତୀ ସ୍ତ୍ରୀ; ଯେଉଁ ସ୍ତ୍ରୀର ମୁଖକୁ ଅନାଇଲେ ସେ ମୁଖକୁ ବୁଲାଇ ନିଏ ।

କହୁଁ ବୋଧ କାନ୍ତ ହୈକି ଚିବୁକକୁ ଅବନତ କରେ ସୁକେଶୀ, କାମେ କାନ୍ତ ଅଧୀରତା ପ୍ରକାଶି । କହେ ହେ ଚତୁର ଦାସକୁ ହତାଶ ନ କର କରୁଣାରାଶି । କିଶୋରୀ । କର କହେ ସ୍ୱଗତେ ସ୍ୱୀକାର, କାମ ଡୋଳା ଖେଳାଇ ନାଶକର । କହେ ଚପଳେ, ବାଳୀ ଶେଯରୁ ଖସାଇ ହଂସର ବଢେ ଆତୁର । ୧୮ ।

କୁବଳୟଶୋଭୀ କେଳିରେ ଲୋଭୀ କାନ୍ତ ବୋଇଲ ଶପଥ ଘେନ, କହୁଁ କୁମାରୀ ଭଜିଲ ମଉନ । କୀଶନରୀ ପରି ରତି ଲୋଭ କରି ଆନନ କଲା କମ୍ପନ । କିଶୋରୀ । ଏଲା ସମ୍ମତ ବୋଲି ହେ ନାଗରୀ । କାନ୍ତ ବୋଲେ ବସାଇ ସ୍ୱର୍ଗଶିରୀ । କରେ ରତିରସ ମାନସ କରନ୍ତ ବାଞ୍ଛି ସୁଧାର୍ଦ୍ଧ ଶର୍ବରୀ । ୧୯ ।

କରାଇ ସୁଠିଲ ଜଘନ ଏକାଳେ ଶୋଭାଙ୍ଗୀ ମୃଦୁ ଆଲୋଡ଼ନ, କରେ ନିତମ୍ବ ଚୁଲନ ଶୋଭନ । କି ରଙ୍ଗେ କରନ୍ତି ନୃତ୍ୟ ତାହା ଗୁହ୍ନି ଅଳକା କର୍ଣ୍ଣଭୂଷଣ । କାମିନୀ । କାମେ ପ୍ରକଟାଇ ଭୁଜମୂଳକୁ । କାନ୍ତେ ଦେଖାଇ ଉରଜ ଲୀଳାକୁ କରି ବ୍ୟାଜ ନିଦ୍ରା ସୁରସରଙ୍ଗିଣୀ ତୋଷଇ ରଙ୍ଗେ ପ୍ରିୟକୁ । ୨୦ ।

କାମିନୀ କାମରେ ଉପ୍ସୁକା କରେ ବାଳ ଭାବେ ମୁଗ୍ଧା ନାଗରୀ, କରେ ଅକୁଞ୍ଚନ ତନୁ ମାଧୁରୀ । କାନ୍ତ ନର୍ମଠରେ ଚୁଲନ୍ତେ ରସନା ଭାଷେ ଈଷି ଈଷି କରି । କିଶୋରୀ । କର ସ୍ମରଭଙ୍ଗେ ଈଶ ପ୍ରକାଶ । କହେ ମାର ନ ମାର କି ଏ ଭାଷ । କାମିନୀ ସିତ୍କାରେ ଭିଣ୍ଡ ନାଗରକୁ କରଇ କୃତ ପାର୍ଶ୍ୱ । ୨୧ ।

କରେ ଅନୁମାନ ପୁଂସ ଭୁଜଙ୍ଗମ ବାଲା ଚକ୍ଷୁଃଶ୍ରବା ସୁନ୍ଦରୀ, କାମମଦପାନେ ନପା ପାସୋରି । କେବେ ଲୁଟୁଛନ୍ତି କେବେ ଉଠୁଛନ୍ତି ଅଛି ଚୁମ୍ବନ ମାଧୁରୀ । କୋବିଦେ । କାଞ୍ଚିତରେ ନୋହେ ବନ୍ଧ ବିରତ । କାମ ଉପଭୋଗେ ବଢ଼େ ବହୁତ । କେତେ ରତିବନ୍ଧେ ମାତନ୍ତି ପ୍ରମୋଦେ ଚକ୍ର ଧେନୁକାଦି ଖ୍ୟାତ । ୨୨ ।

କିବା ଭାବେ ତରୁଲତା ଛନ୍ଦାଛନ୍ଦ ବନ୍ଧାବନ୍ଧ ପ୍ରେମେ ଦମ୍ପତି, କରେ ସ୍ମେରନ ବଦନ ପ୍ରତୀତି । କରେ ଶାଖାମାନ ଶୁଭଇ ମନ୍ମନ ପକ୍ଷ ମରମର ଅତି କୋବିଦେ । କୂଜନ କି ନକ୍ୱଣଇ କିଙ୍କିଣି । କୀଶ କୁଚ ଶୋଭା ଫଳ ବଖାଣି । କୁଟିଳକୁନ୍ତଳା ନିଟିଳଅଳକା କୁସୁମେ କି ଭୃଙ୍ଗଶ୍ରେଣୀ । ୨୩ ।

କର ସୁଅଣକ ମତ୍ତକାଶିନୀ ସେ ମୋହୁ ରଙ୍ଗେ ପୁଂସକୁଞ୍ଜର, କଳାକର ଚୁଳି ଦେଲ ନାଗର । କରଭୋରୁ ବିଚେଷ୍ଟାରେ ଯାନ୍ତେ ଶୋହୁ ହରିଲ ବର ଅମ୍ବର । କୋବିଦେ । କାମେ ମଜ୍ଜିଗଲ କାନ୍ତ ଉରତ । କରବାଳେ କଲ କ୍ଷତ ବହୁତ । କରକରଦନୀ ଫାମ ଗଳଷଣି ଧୀରେ କଲ ଫଙ୍କା ଜାତ । ୨୪ ।

---

୧୯ । କୁବଳୟଶୋଭୀ—ଧରାମଣ୍ଡନା । କୀଶ—ମର୍କଟ । ଶର୍ବରୀ—ରାତ୍ରି ।

୨୦ । ଉରଜ—ସ୍ତନ ।

୨୧ । ନର୍ମଠ—ଚୁଚୁକ, ଚିବୁକ । ଈଶ—ପଣ୍ଡ, ଶିବ । ମାର—କାମ କନ୍ଦର୍ପ ।

୨୨ । ଭୁଜଙ୍ଗମ—ସର୍ପ । ଚକ୍ଷୁଃଶ୍ରବା—ସର୍ପ । ନପା—ଲଜ୍ଜା । ଚକ୍ର—ରତିବନ୍ଧବିଶେଷ । ଧେନୁକ—ରତିବନ୍ଧବିଶେଷ ।

୨୩ । ମନ୍ମନ—କେଳିକାଳୀନ ଅସ୍ପଷ୍ଟ ଧ୍ୱନି । କୂଜନ—ପକ୍ଷୀମାନଙ୍କର କୋଳାହଳ । କୀଶ—ଉଲଗ୍ନ, ମର୍କଟ । ନିଟିଳ—ଲଲାଟ । ଅଳକା—ଚୂର୍ଣ୍ଣକୁନ୍ତଳ ।

୨୪ । ଅଣକ—ରତିବନ୍ଧବିଶେଷ । କରବାଳ—ନଖ ।

କନ୍ଦ୍ର ହେବ କାହ୍ନୁଁ କଳ୍ପ ବଚନରେ ତରୁଣ ତରୁଣୀ ଉଲାସ, କାମରଣେ କାମ୍ଳାପଟ ଅବଶ । କାନ୍ତ ବୋଲେ ଯେଜ୍ଞ ପ୍ରାଣ ପ୍ରେୟସୀକି କଟିଲ ତା ମନ .ସରସ । କୋବଦେ । କାମେ ହରକୋଳେ କ ସେ ହରଣୀ । କଳାକରକୋଳେ କବା ରୋହିଣୀ । କ ଖଗ ସମ୍ଭବ କରେ ଅସମ୍ଭବ ଇନ୍ଦ୍ରାଣିକାରେ ଇନ୍ଦ୍ରାଣୀ । ୨୫ ।

କାନ୍ତ ପ୍ରେମେ ପୃଚ୍ଛେ ଅରୁଣାଧରୀକି ଗ୍ରୁମୀକର କଟେ କେ ହତ, କନ୍ୟା 'ନାମେ' ଓଲଟାର କି ଖ୍ୟାତ । କସେ ରାଧା ହର ବଶୀଭୂତ କର କେ କନ୍ୟାର ନାମ କାନ୍ତ । କଶୋର । କେ ସେ ବେଳା ବର୍ଣ୍ଣେ ପ୍ରାନ୍ତେ ବହାସି । କଲେ ଯୋଗ ଫୁଲ୍ ଯିବ ବାହାର । କି ହେଲ ମାରୁତ ଲଭି ସୀତାପତି ବର୍ତ୍ତୁର ଚରେ ନାଗସି । ୨୬ ।

କୃଶୋଦରୀ କହେ ଅନ୍ତର୍ଲିପି ଏହି ବହିର୍ଲିପି ସଙ୍ଗେ ହୋଇଛୁ, କମ ଶବ୍ଦ ଯୋଗେ ଭାବ ବହିଛୁ । କଲେ ଯୁଗ୍ମ ବହିରନ୍ତର୍ଲିପି ଅନ୍ତର୍ବହିର୍ଲିପି ସୁଭାଷୁଛୁ । କୁବର । କହେ ଅ— 'ରସ ଭାବ ସଦା' ଯେନ । କହେ ବ— 'ସତୀ ବର ଦାସ' ଜାଣ । କଶୋର ରତନ ଭାବେ ପ୍ରାନ୍ତ ବର୍ଣ୍ଣ 'ଈ' କାରକୁ କର ଦାନ । ୨୭ ।

କାନ୍ତ କହେ କୁଶୋଭୀ ତୁ ରଙ୍ଗିଣୀରେ ଗାଣ୍ଡିବୀକ ଶ୍ୟାମା ସୁକଷୀ । କାମ କଟାଳେ ଛୁଣ୍ଡାଳି କୁବାସୀ । କାଳିକା ଯେମନ୍ତ ଗୁଣ ତୋ ତେମନ୍ତ ସମ ନୋହିବାର ନାରୀ । କୃଶାଙ୍ଗି । କେଡ଼େ ଶୁକର ନାସା ତୋ ଶୋଭାରେ, କାମେ ପାଚ୍ଛେନ୍ତି ଅଣିଛୁ ଲୋଭରେ । କାନ୍ତକୁ ସୁଷମା ସବୁ ଗୁଣେ ଓଣା! କୁରୁମ ସ୍ପୃଷ୍ଟ ସ୍ଫୀତରେ । ୨୮ ।

---

୨୫ । କ—କନ୍ଦର୍ପ । ଖଗ—ଶର । ଇନ୍ଦ୍ରାଣିକା—ଶଚୀପ୍ରବର୍ତ୍ତିତ ରତିବନ୍ଧବିଶେଷ ।

୨୬ ୨୭ । ଗ୍ରୁମୀକର—ସ୍ୱନା । ନାମେ ଓଲଟା—ମେନା ।

[ସ୍ୱନାକୁ (ପାରଦ) ଭସ୍ମକରେ— ରସ,
ମେନାର କନ୍ୟା— ସତୀ,
ରାଧାକର ବଶୀଭୂତ କରେ— ଭାବ,
(ଅଶ୍ବତ୍ଥ ପତ୍ର) କନ୍ୟା— ବର,
ବହାର ଯୋଗ କଲେ 'ସଦା' ରେ }
ସଦାବହାସି ଫୂଲ ହେବ } — ସଦା,
ହନୁମାନ ରାମଙ୍କୁ ପାଇ ହେଲେ— ଦାସ,]

ଅ—ଅନ୍ତର୍ଲିପି, ବ—ବହିର୍ଲିପି, ପ୍ରାନ୍ତ ବର୍ଣ୍ଣରେ 'ଈ' କାର ଯୋଗ କଲେ ଦାସୀ ହେବ । ନାୟକର ଭାବମାନଙ୍କୁ ନାୟିକା ପ୍ରାନ୍ତ ବର୍ଣ୍ଣରେ ଈକାର ଯୋଗ କରି ନଜର ଗୃଭୃତ୍ୱ ପ୍ରକାଶ କରୁଅଛି ।

୨୮ । ଏ ପଦ ଅପଶବ୍ଦାଳଙ୍କାର—

କୁଶୋଭୀ— ଧରିଶୋଭୀ, ଅସୁନ୍ଦର । ତୁ ରଙ୍ଗିଣୀ— ତୁ ରଙ୍ଗନପୁଣା, ତୁ ଘୋଡ଼ । ଗାଣ୍ଡିବୀକ—ଅର୍ଜୁନକୁ; ଗାଣ୍ଡିବକ—ରତିଦାୟିନୀ । ଶ୍ୟାମା—ଦ୍ରୌପଦୀ, କାଳକୁଳୁସୀ ସ୍ତ୍ରୀ । ସୁକଷୀ—ଉତ୍ତମ କରବଶିକ୍ଷା ସୁନ୍ଦରୀ । ଶୁକଷୀ—ଗୁହଖାଳ ଘୁଟୁର । ଛୁଣ୍ଡାଳି—ଯେ ଛୁଣ୍ଡାଏ, ପୁଂଶ୍ଚଳୀ । କୁବଶୀ—ସୁନ୍ଦରୀ । ପୂର୍ବ ପଦର ୨ୟ ବିଭକ୍ତି ଚିହ୍ନକୁ ଅର୍ଥାତ୍ ଛୁଣ୍ଡାଳିକୁ । କାଳିକା— ସୁନ୍ଦରୀ ସ୍ତ୍ରୀର ନାଭିର ନିମ୍ନକୁ ଥିବା କ୍ଷୁଦ୍ର କ୍ଷୁଦ୍ର ରୋମାବଳୀ; କାଳୀ ସ୍ତ୍ରୀ । ବାରନାରୀ ବେଶ୍ୟା । ଶୁକ—ଶୁଆ । ଶୁକର—ଘୁଷୁରି । ପାଚ୍ଛେନ୍ତି ଅଣିଛୁ—ଅଭିବାଦନ କରଛୁ, ଛୋଟୀ ସ୍ତ୍ରୀ ଅଣିଛୁ,

କାମ ଜଗ୍‌ସନ୍ଧ ହାର ବାର ବାର ପଡ଼ଇ ସବଳେ କି ମାଡ଼ି, କଳାକର ଚଳନକୁ ନ ଛାଡ଼ି । ଭଲ୍ଲ ଅଗମନ ପ୍ରାତଃ ଭୀମସେନ ଦେଲ ତାହା ଦେହ ଫାଡ଼ି । ଦୋଷଦେ । ତମୋଧ୍ୱନି ହେଲ ଏଣେ ପ୍ରକାଶ । କୁମୁଦନୀ ବିଯୋଗିନୀ ହୁତାଶ । କାମପାଳ ହର ଶ୍ରୀ ଗୋଲୋକ ଧର ଉଦ୍ଧବ କରେ ମାନସ । ୨୯ ।

---

## ୪୨ଶ ଛାନ୍ଦ

ରାଗ—ମାଳବ

(ମାନସଞ୍ଚାର)

ଅପୂର୍ବ ଛାନ୍ଦ ଏ ଘେନ ଧୀରେ ଧୀରେ । ଅଭିମାନ ଧୀର ଯମକରେ କରେ । ୧ ।
ଅମ୍ଭୋରୁହ ମୁଖେ ବିରାଗର ଗର । ଅସନ୍ତୋଷେ ଦ୍ରବି ଚଣ୍ଡୀବର ବର । ୨ ।
ଅଙ୍ଗରାଗ ଲୋପ କାନ୍ତକେ କାତରେ । ଅତ ଶଙ୍କିତା ଭିଡିତରେ ରିଭ୍ରରେ । ୩ ।
ଅଳସରଚନା ଛଡ଼ି ଥରଥର । ଅମ୍ବୁଜ ନୟନେ ନୀର ଝରଝର । ୪ ।
ଅତୁଳା ତୁଳାଙ୍ଗୀ ମନ ଛନଛନ । ଅଧୋମୁଖୀ ଶୁଖି ନେଇ ଥନଥନ । ୫ ।
ଅକଳନ୍ତ ଦୀର୍ଘଶ୍ୱାସ ବାରବାର । ଅମନ୍ଦ ଶରୀର କମ୍ପେ ଥରଥର । ୬ ।
ଅଙ୍କଇ ନଖାଗ୍ରେ ଗାର ବାମେ ବାରେ । ଅଧୀରେ ସମ୍ଭାଳି ବାସରେ ବାସରେ ।୭।
ଅଳକମାନେ ଏକାନ୍ତରେ କାନ୍ତରେ । ଅଧୃତ ସନ୍ତାପ ଅନ୍ତରେ ଅନ୍ତରେ । ୮ ।
ଅଧୀରାର ଶୁକ ନାସା ଫୁଲ୍ ଫୁଲ୍ । ଅରୁଣିମା ମୁଖଶୋଭାବଳୀ ବଲ୍ଲ । ୯ ।
ଅଙ୍ଗନା ରଞ୍ଜନ କର ଭ୍ରାଲେ ଭ୍ରାଲେ । ଅସମେ ହୃତ୍ତନ୍ତ୍ରୀ ନାଚେ ତାଳେ ତାଳେ ।୧୦।
ଅଜସ୍ର ଧାରରେ ନୀର ଝରଝର । ଅବଶେ ଅଳୀକ-ଅନାଦର ଦର । ୧୧ ।
ଅସମ୍ଭାଳଂଖେଦେ ଶୋକ ବେଗ ବେଗ । ଅନ୍ତର କି ଜାଣୁ ଅନୁରାଗ ରାଗ । ୧୨ ।
ଅମଳ ନୟନ ନଗ୍ନଇ ନ ଗ୍ନହିଁ । ଅମାପ ସନ୍ତପ୍ତ ଶୋକ କହି କହି । ୧୩ ।
ଅତ ଦୁଦାବେଗ ବିମ୍ବାଧର ଧର । ଅନ୍ତର୍ଦଗ୍ଧ ପିଣ୍ଡ ବସେ ଥର ଥର । ୧୪ ।
ଅନାଦରେ ଉମେ ତା ମାଧୁରୀ ଧୁରୀ । ଅନାଦୃତା ସତେ କି ସୁମର ମର । ୧୫ ।
ଅତ ବିଷାଦରେ ଝାଳ ଗମଗମ । ଅସଙ୍ଗ ପ୍ରସଙ୍ଗେ ଠାଣି ଉମଉମ । ୧୬ ।

---

କୃ—୨୪ା ବଦ୍ଧକର ଶନ୍ତ, ମନ୍ଦ । କୁରୁମ—କୂର୍ମ, କଚ୍ଛପ । କୁ ରୁମ—ଅସୁନ୍ଦର ପ୍ରେମ । ୨୯ । କଳାକର—କୃଷ୍ଣ, ଚନ୍ଦ୍ର । କାମପାଳ—ବଳରାମ ।

---

୧ । ଏ ଛନ୍ଦର ପାଦମାନଙ୍କର ଆଦ୍ୟ ଅକ୍ଷର 'ଅ' ଅନୁପ୍ରାସ ଓ ପ୍ରାନ୍ତ ଯମକ ହୋଇଅଛି ।

୨ । ଅମ୍ଭୋରୁହ—ପଦ୍ମ । ଚଣ୍ଡୀ—କୋପନା ସ୍ତ୍ରୀ, ମାନବତୀ ।

୪ । ଅମ୍ବୁଜ—ପଦ୍ମ ।

୭ । ବାସ—ବସନ । ବାସର—ବିବାହ ବହିର ଶୟନଗୃହ, ଦବସରେ ।

୧୫ । ଧୁରୀ—ଅଗ୍ରେ ।

ଅଚେତା ହୃଦମରେ ପ୍ରକାଶିତ ଶୀତ । ଅସୁପ୍ତା ଜ୍ୱଳନେ ତା ମୂରିତ ଚିତ୍ତ । ୧୭ ।
ଅନୁତାପ ଶେଷ ପରସଙ୍ଗ ସଙ୍ଗ । ଅଯାଚିତେ ମୁଖ ତା ବିଭଙ୍ଗ ଭଙ୍ଗ । ୧୮ ।
ଅଭିମାନେ ରୁଷେ ଗୀତ ସ୍ମର ସ୍ମର । ଅଭିନବ ଭାବ ବିମ୍ବାଧରୀ ଧର । ୧୯ ।
ଅନାଦର ଗୃହୁ କାନ୍ତର କାତର । ଅନାସକ୍ତା ସତେ ନାଗରବର ବର । ୨୦ ।
ଅତର୍କିତେ କୋହ ଅସେ ବାର ବାର । ଅନ୍ତର୍ହିତ ପାଶୁ କି ସମାର ମାର । ୨୧ ।
ଅସରସ ରଗେ ତାର ତନୁ ତନୁ । ଅକଳଙ୍କ ଅବ୍ଜମୁଖେ ଭାନୁ ଭାନୁ । ୨୨ ।
ଅଧରେ ନିବେଶେ ତା ସୁନ୍ଦର କର । ଅଦମେ୍ୟ ଜଳଇ ଶେଷ ମରମର । ୨୩ ।
ଅତନ୍ତ୍ର କରେ କି ଚିତ୍ତୁ ଦୂର ଦୂର । ଅବସାଦ ଶେଷ ମୋହ ଜରଜର । ୨୪ ।
ଅମୋଘ ଥିଲା ଯେ ଫୁଲଶର ଶର । ଅଭେଦ୍ୟ ଗଣେ କି ହୋଇ ଡରଡର । ୨୫ ।
ଅତଳ ବିରସ ବିମ୍ବାଧରୀ ଧର । ଅଯତ୍ନ ଶୋଭାରେ ରଜେ ଶିରୀ ଶିରୀ । ୨୬ ।
ଅମ୍ବର ଓଁଚାର ସୁନାସୀର ଶିର । ଅସାର ମଣେ କି ଜନ୍ମ ବାରବାର । ୨୭ ।
ଅଣୁଏ ଗୃହୁ ସେ ନ ମାନି ମାନି । ଅତନ୍ଦ୍ରିତା ପରୀ ସୁରମଣୀମଣି । ୨୮ ।
ଅହି ପରି ନିଜ ଭାଗ୍ୟେ ତମ ତମ । ଅଲକ୍ଷିତ ଉମେ ଗ୍ଲାନ ଦମଦମ । ୨୯ ।
ଅରଜ ଶେଷକୁ ସେ ବଧିବ ଧୀର । ଅପସରେ ଶୋଭା ସୁପସରୀ ସରୀ । ୩୦ ।
ଅରସିକ ପାଶେ ନାହିଁ ମାନମାନ । ଅଳପେ ଗୋଲୋକ ଭାଷେ ମାନ ମାନ । ୩୧ ।

---

## ୪୨ଶ ଛାନ୍ଦ

### ରାଗ—ନଳିନୀଗୌଡ଼ା

ରାଗ ଅନୁରାଗ ସ୍ନେହ ଅନନ୍ତର ମାନ,
ମଧୁର ପ୍ରଣୟର ଏ ପଞ୍ଚମ ସୋପାନ । ୧ ।
ଅଭିଷ୍ଟ ସିଦ୍ଧିରେ ଜାୟା ପତି ମତି ଭିନ୍ନେ ।
ଉଭୟ ହୁଅଇ ମାନ ଗୃହେ ଏକ ମନେ । ୨ ।
ହେମନ୍ତେ ହେମବରଣୀ ଏ ଭାବେ ମାନିନୀ ।
କୌଞ୍ଚସ୍ୱରେ ତୋଷେ ପୁଂସ ଭାଷି ଗୃହୁବାଣୀ । ୩ ।

ଆଦ୍ୟପ୍ରାନ୍ତ ଯମକ

ତୁ ହାନ ନ କର ସଖି । ବରଷେ ତୁହିନ
ମାନ କରୁ ରସାଳସା କେ ତୋର ସମାନ । ୪ ।
କେଶରୀକଟି ସମାନ ଅଛଇ କେ ସର
ଅପସର ଯିବ ରୂପେ ରମ୍ଭା ଅପସରୀ । ୫ ।

---

୨୧ । ମାର—କନ୍ଦର୍ପ । ୨୨ । ତନୁ—କୋମଳ, କୃଶ, ଶରୀର । ଭାନୁ—ସୂର୍ଯ୍ୟ, ଦୀପ୍ତି ।
୨୫ । ରତି—କନ୍ଦର୍ପ ସ୍ତ୍ରୀ । ଶାର—ଶର ।
୨୯ । ଅହି—ସର୍ପ ।

ରସାରେ ରହନ୍ତୁ ଜୀବ ତୋର ଭରସାରେ
ହସାରେ ଟଳେ ଯୋଗୁଁ ସିନା ମୋର ପ୍ରଶଂସାରେ ।୬।
ଜୀବଜୀବନେନ୍ଦ୍ରୀ ଯୋଗେ ଅଜ ଜୀବ ଶିବ
ସଦାଶିବ ହେଲୁ ବୋଲି ସେବେ ସଦାଶିବ ।୭।
ତରଳାକ୍ଷି ! ତେଜ ମାନ ଦିଅ ବେ ଉତ୍ତର
ସୁନାସୀରମଣି ମଣି ହର ସୁନାସୀର ।୮।

ମଧ୍ୟ ଯମକ

ଭାବବତୀ ବଳଶାର୍କବୟସୀ ସୁକେଶୀ
ଭାବ ମତ ମତଭବମୋହିନୀ ମଦାଳସି ।୯।
କୁମାର ମାର ମାରଣ ସହିବା ଯେପର
ଚତୁସ୍ର ଭୁବନେ ଜାଣି ପାରେ କି ନାଗରୀ ।୧୦।

ଅାଦ୍ୟ ମଧ୍ୟ ଯମକ

କରକରବଦନା ! ତର କରକରେ ଯେତ !
ପଞ୍ଚଶରଶର ସହି ! ସହିବା ନୋହୁ ତ ।୧୧।

ଶୃଙ୍ଖଳା

ରାଜୀବନୟନା ! କହି କାହିଁ ବାଣୀ ଭାଷି ।
ଭାଷି ଯାଏ ପରଜନ କମ୍ପା ବସୁ ରୁଷି ।୧୨।
ରୁଷିମୋହିନୀ ! ମୂରୁଛୁ ହେବ ମୁଁ କାହାର,
କାହାର କର ରଖିବ ହୃଦରେ ସ୍ୱମାବର ।୧୩।
ବରବରଣି ! ତୋହର ଅମର୍ତ୍ତ୍ୟ ସୁଷମା ।
ସମାନ ନୋହିବେ ତଳେ ରତ ତିଳୋତ୍ତମା ।୧୪।

ବିରୋଧାଭାସ

ଅନ ନ ଭାବଇ ସହି ଭାବଇ ଅନନ ।
ସୁମନ ହେବା ନ ବାଞ୍ଛେ ବାଞ୍ଛଇ ସୁମନ ।୧୫।
ସୁନାସୀର ପଦେ ଲୋଭେ ନ ଲୋଭେ ମୋ ମତ ।
ମୁ କତକ ଲୋଡ଼େ ସହି ! ନ ଲୋଡ଼େ ମୁକତ ।୧୬।

ପୁନରୁକ୍ତ୍ୟାଭାସ

ଶରଧାରେ ବସ ସହି ! ଶରଧାରେ ବଶ ।
କରବାଳେ ଭୂଷ ଅବା କରବାଳେ ଭୂଷ ।୧୭।

---

୮ । ସୁନାସୀ—ଉତ୍ତମ ନାସିକାବିଶିଷ୍ଟା ସ୍ତ୍ରୀ । ସୁନାସୀର—ଇନ୍ଦ୍ର ।
୯ । ବଳକ୍ଷାର୍କବୟସୀ—ଷୋଡ଼ଶୀ ଯୁବତୀ ।
୧୧ । କରକରବଦନା—ଡାଳିମ୍ବଦନ୍ତୀ । ପଞ୍ଚଶର—କନ୍ଦର୍ପ ।
୧୬ । ସୁନାସୀରପଦେ—ଉତ୍ତମ ନାସିକାବିଶିଷ୍ଟା ସ୍ତ୍ରୀର ପଦଯୁଗଳକୁ; ଇନ୍ଦ୍ରପଦକୁ ।
୧୭ । କରବାଳ—ନଖ, ଖଣ୍ଡା । ଭୂଷ—ଭୂଷିତ କର, ବନ୍ଧ କର ।

### ପ୍ରାନ୍ତ ଯମକ

ମାନ ତେଜି ଅଣି ଦାଅ ମୁକୁନ୍ଦ କଟକ ।
ତୋହ ବିନା ନ ଲୋଡ଼ଇ ବିଭୂତ ଭୂତକ । ୧୮ ।

### ଶ୍ଳେଷ୍ଟ

ଚଞ୍ଚଳ କର ସୁଦୟା ସୁରତରଙ୍ଗିଣି ।
ରତଶୀଳା ଗୃହ୍ନୁଧାଗ୍ଧ ସୁରସଦାୟିନୀ । ୧୯ ।

### ସଶ୍ଳେଷ୍ଟ

ବାମା ବିଭ୍ର ପ୍ରେମ ପ୍ରଭ୍ର ଭାବ ଭାବ ଭ୍ରମ ।
ଭବେ ବାମା ବାମ ଭାବ ଭାବେ ବିଭୁ ବାମ । ୨୦

### ଅବନା

ଅପଘନ ପଞ୍ଚଶର ଜଟଳ ଦହନ ।
ଚଳ ଚପଳ ନୟନ କରୁଛଇ ମନ । ୨୧ ।
କର ରଚନ ଚଞ୍ଚଳ ବଚନ ସରସ ।
ହରପର ଭୟ କ୍ଷୟ ମନ୍ଦ ମନ୍ଦ ହସ । ୨୨ ।
କଞ୍ଜନୟନ ଅଞ୍ଜନ ରଞ୍ଜଇ ମନନ ।
ପ୍ରଣୟ ପ୍ରସର କର ଅଧର କମ୍ପନ । ୨୩ ।
ବଜ୍ର-କରଜ ଇଚ୍ଛୁଇ ମନ୍ଦର-ଉରଜ ।
ଦାହ କର ଅଙ୍ଗ ରଖ ରସ ନ ତରଜ । ୨୪ ।

### ଗୋମୂତ୍ର ଛନ୍ଦ

ପ ଙ୍କେ ରୁ ହ ମୁ ଖୀ ପି କ ଭା ଷି ର ସ ବ ତୀ
ଅ ଙ୍କେ ବ ହ ସ ଖୀ ଶୁ କ ନା ସି । ତୋ ଷ ପ ତି । ୨୫ ।
ବା ମ ନେ ନ୍ଦା ସ୍ଥୁ ଶୀ ଳା ସୁ ହା ସୀ ନା ଶି ତ ମ
ହେ ମ ଗା ନ୍ଦୀ ର ସି କା ଘୁ କେ ଶି । ର ସି ର ମ । ୨୬ ।
ଚ ତୁ ଘି ରୁ ରୁ ନ ୟ ନା ବ ତୁ ସ୍ତ ନ ଟି ର
ଅ ତୁ ରେ ରୁ ଷୁ ନ ବା ନା । ମୋ ହୁ ମ ନ କ ସ୍ତି । ୨୭ ।

### ମଣ୍ଡୂକପ୍ଲୁତ, ଗୋମୂତ୍ରଛନ୍ଦ

ମା ର ହ୍ରା ସ ନା ଶ ସ ଖୀ ହା ସ ଡ କା କା ମେ ।
ଗ୍ଲ ର ଦା ସ ଦୋ ଷ ଦେ ଖି ରୋ ଷ ଫ କା ବା ମେ । ୨୮ ।

---

୧୯ । ସୁରତରଙ୍ଗିଣୀ—ଗଙ୍ଗା; ସୁରତରଙ୍ଗନିପୁଣା । ଗୃହ୍ନୁଧାଗ୍ଧ—ଇନ୍ଦ୍ରାଣୀ; ମନୋହର ପ୍ରବାହ । ରସ—ଜଳ । ସ୍ନେହ—ପ୍ରୀତି । ଏଥିରେ ପର୍ବତୀକୁ ଗଙ୍ଗାସ୍ୱରୂପ ଧରି ଯାଇଅଛି ।

୨୦ । ବାମ—ପ୍ରତିକୂଳ । ୨୨ । ହରପର—କାମଦେବ । ୨୩ । କଞ୍ଜ—ପଦ୍ମ ।

୨୬ । ହେମଗାନ୍ଧୀ—ସୁବର୍ଣ୍ଣାଙ୍ଗୀ ।

୨୭ । ରୁରୁ—ହରଣ । ଗିର—ପର୍ବତ । କରି—ହସ୍ତୀ ।

୨୮ । ମଣ୍ଡୂକପ୍ଲୁତରେ—( ପଦର ପ୍ରଥମ ଅକ୍ଷରକୁ ବାଦ ଦେଲେ ) ରସ ସର୍ଗ । ସର୍ବାମେ ।

ବିଭିନ୍ନ ଉପମା

ଅବ୍ଜମୁଖୁଁ ମଧୁ ଲୋଡ଼େ ମାନସ ଭ୍ରସଲ,
ନଖକଣ୍ଟକଛ ଭିଡ଼ ଲତା ବାହୁ ମୃଣାଳ । ୨୯ ।
ଅଦ୍ଭୁତ ବହୁଛି ପୃଥୁ ସ୍ତନ କଟୀ ସରୁ,
ଊର୍ଣ୍ଣନାଭସୂକ୍ଷ୍ମ ଫରି ମାନଙ୍କୁ ବିସ୍ତାରୁ । ୩୦ ।
ଲବଦାନେ କୁମନ୍ତଣା ବଧିକ ଅଚର,
ସୁକୀର୍ତ୍ତିକି କରୁ ଲୋପ ଅକୀର୍ତ୍ତି ବିସ୍ତାର । ୩୧ ।
ନୀର କଠିନରୁ ଯଥା କରକା ପ୍ରକାଶ ।
ଦେଖେଁ ସୁଧାବୃକ୍ଷ ତଥା ଫଳଲଣି ବିଷ । ୩୨ ।
ସ୍ତବକ ବକ୍ତ୍ରେ ନ ଡରେ ଘନକୁ ହା ଅଶ,
ଦୋଷ ଅଙ୍କୁରଭ କାହୁଁ ନେହ୍ନ ମୁଁ ହତାଶ । ୩୩ ।
ବାଦେ ଆଶାନ୍ଦସି କର ତମ୍ବା-ଜନ୍ମ-ତରି ।
କାମ-ମହାସିନ୍ଧୁ ସଖି ! ଯିବ ହେଲ ତରି । ୩୪ ।

ଇକାର ନିୟମ—

କଣିଛି କିଙ୍କିଣି କଣୀ ଟୀକ କାଧି ଗୀତ ।
ବନ୍ଧୁ-ପ୍ରୀତ ଯିବ ସିଦ୍ଧି ବୀଥୀ ଭିତ ଜିତ । ୩୫ ।

ଉକାର ନିୟମ—

ଚୁକୁ ଦୁକୁ ଦୁରୁ ଦୁଃଖୁ ଛୁରୁ ଭୁରୁ ଚୁଷ୍ଟୁ !
ମୁକୁରୁ ରୁଚୁ ତୁ ଭୁଲ୍ଲ ମୁଖୁ ସୁଧୁ ସୁସୁ । ୩୬ ।

ଏକାର ନିୟମ—

କେଶେ ବେଶେ ହେବେ କେ କେ ଦେଖେ ଦେଶେ ଦେଶେ
ଯେତେ ଦେଖେ ହେଲେ ଶେଷେ କେ କେ ଲେଶେ ଲେଶେ । ୩୭ ।

ଆକାର ନିୟମ—

କାହା ଦାହା ହାହା, କାହା ଯାହା କାୟା ବାଳା
ରାମା ଭାଷା-ଛାୟା ରୁହାଁ କାନ୍ତା ନାହା ମାଳା । ୩୮ ।

ଲଘୁ ଗୁରୁ—

ପଙ୍କଜାକ୍ଷି ! ସଞ୍ଚ ସଙ୍ଗ ରଙ୍ଗ ମଞ୍ଜୁ ଭକ୍ତି,

ଗୁରୁ ଲଘୁ—

ହ୍ରଦକ୍ରୀଡ଼ା ସ୍ମର ସ୍ମର କ୍ଷମ ଭ୍ରମେ କ୍ଲାନ୍ତ । ୩୯ ।

---

୨୯ । ଭ୍ରସଲ—ଭ୍ରମର । ମୃଣାଳ—ପଦ୍ମନାଡ଼ । ୩୦ । ଊର୍ଣ୍ଣନାଭ—ବୁଢ଼ିଆଣି ।
୩୨ । କରକା—କୁଆପଥର ।
୩୪ । ତରୀ—ନୌକା । ମହାସିନ୍ଧୁ—ମହାସାଗର ।
୩୫ । ବୀଥୀ—ମାର୍ଗ । ଭିତ—ଭୟ ।
୩୬ । ସୁସୁ—ସୁଉ ସୁଉ; ସାପ ଫଁ ଫଁ ହେଲା ପରି ଶବ୍ଦ ।

ଶ୍ଳେଷ—

ପରବତ ମଣି ସହ୍ର ! ବିଚ୍ଛେଦ କଷଣି ।
କର ରେ ସୁମନ ପସ୍ ବାଭାବ ଅନ-ନ । ୪୦ ।

ଅନ୍ତର୍ନିହିତ ଆଦ୍ୟପ୍ରାନ୍ତ ଯମକ—

ହର ହରଷ କା ? ମୋହ ତୁ ମୋହର ହର ।
କର କଚ-ବାଳ ଭୁଷି ହାସ୍ୟ କର କର । ୪୧ ।
ନିଶା ଶେଷ ଏବେ ହେଲ ଦେଖ ମଦାଳସୀ,
ମାନ ନ ତେଜିଲୁ ମନ୍ତୁ ସୁକୁଞ୍ଚିତକେଶୀ । ୪୨ ।
କୁମ୍ଭାଟୁଅ କହେ ଛାଳି ନିଶି ବେଗେ ପାହୁ ।
ହୁଁ ହୁଁ ହୁଁ ହୁଁ ହୁଁ ହୁଁ ହୁଁ ହୁଁ ହୁଁ ହୁଁ ହୁଁ ହୁଁ ହୁଁ ହୁଁ । ୪୩ ।
ନିବୃତ୍ତିଏ କୁମୁଦଙ୍କୁ ସିନା ଉଇଁ ଭାନୁ
ପ୍ରବର୍ତ୍ତାଇଲୁ କୁମୁଦ ମାନେ କୋଳ ଭାନୁ । ୪୪ ।

ଗଙ୍ଗାସ୍ରୋତ ଶୃଙ୍ଖଳା—

ଧବ ବଧୂ ଧୀରା ରାମା ମାନିମାନ ସତୀ
ବ୍ୟାଜ ଯଶ, ସତତ ଚୁଚୁକ କର ରତି । ୪୫ ।
ଧର ରମ ମନ ନବ ବର ରସ ସରେ
ମଜ୍ଜିପିବ, ବର ରଣ ଖରେ ରେ ଶିଖିରେ । ୪୬ ।

ଅଖଣ୍ଡିତ ଗଙ୍ଗାସ୍ରୋତ ଶୃଙ୍ଖଳା—

ବାମା ମାରୁ ରୁଷି, ଶିବେ ବେର ରଖ ଖର ।
ରସ ସଖି ! ଖିପ୍ରେ ପ୍ରେତ-ତମେ ମେଧି ଧୀର । ୪୭ ।
ରମି ମିତ ତର୍ ରାମା ମାର-ରଙ୍ଗେ ଗେହେ !
ହେଜ ଯଶ ସଦା ଦାର୍, ରାଗ ଗର୍ବ ବହେ । ୪୮ ।

ଗୋମୂତ୍ରିକାଛନ୍ଦଗତ ମଣ୍ଡୁକପ୍ଲୁତ—

ଥ ନ ଥ ନ ମୋ ନ ୟ ନ ଛ ନ ଛ ନ ମ ନ !
ଘେ ନ ସ ନ ମା ନ ଧ୍ୟା ନ ଧ ନ ମା ନ ମା ନ । ୪୯ ।

---

୪୦ । ପରବତ—ଶନ୍ଦ ପର୍, ପର୍ବତ । ସୁମନ—ଫୁଲ, ଦେବତା, ଭଲ ମନ ।

୪୪ । କୁମୁଦ—କଇଁ, କିସନନ୍ଦ ।

୪୫ । 'ଚୁଚୁ'କ—(ମୋର ଦୁଃଖ ଦେଖି ଅନୁକମ୍ପା ପ୍ରଦର୍ଶନ ପୂର୍ବକ) ଚୁଚୁ ଶବ୍ଦ କହ ।

୪୭ । ମାରୁ—ମାରୁଅଛୁ । ଶିବେ—ମଙ୍ଗଳରେ । ବେର—ଦେହକୁ । ଖିପ୍ରେ—ଚଞ୍ଚଳ । ପ୍ରେତ-ତମେ—ପ୍ରେତରୂପକ ଶ୍ରେଷ୍ଠକୁ । ମେଧି—ବଳି ଦେଇ ଅର୍ଥାତ୍ ନାଶ କର । ଧୀର—(ଗୁଣ ଜାତି ନାୟକ ମଧ୍ୟରୁ ଯେ କୌଣସି ନାୟକ ହୋଇପାରେ) ଏଠାରେ ମୋତେ ।

୪୮ । ତର୍—ଉଦ୍ଧାର କରଅ । ମାରରଙ୍ଗେ—କାମସମରରେ ବା ଖେଳରେ । ଗେହେ—ଗୃହରେ ।

ଭୃଷ୍ଟଛନ୍ଦ—

ହର୍ଷ ସହ ହସ ଶଶିହାସି ! ସହ୍ୟ ସୁଶ୍ରୀ

ଅନ୍ତସ୍ଥ ବର୍ଣ୍ଣ ଛନ୍ଦ—

ବାଳା ବଲ ଲର ବାର ବାର ରବ ବର । ୫୦ ।

ମାଳୋପମା—

ତାପିତ ହୃଦକୁ ବଧୂମୁଖି ! ତୁ ଚନ୍ଦନ,
କୁମୁଦ ଖେଦନାଶକୁ ଅମୃତଭୁଞ୍ଜନ । ୫୧ ।

ବର୍ଗ୍ୟ ଛନ୍ଦ—

ତାପନଦା ପୁଣି ଦେଖେ ତୋ ନୂତନ ଠାଣି ।
ବଦନପୋତା ଭାଟେ କି ଫଣା ଟେକି ଫଣୀ । ୫୨ ।

ଅବର୍ଗ୍ୟ ଛନ୍ଦ—

ବିଶ୍ୱରେ ରେ ଲସାଲସା ! ରସ ସର୍ବ ସାର ।
ସଂସାର ବିଷୟ ବିଷ ହୁଅ ରସବର । ୫୩ ।

ସିଂହାବଲୋକନ—

ମାନିନୀରତନ ଧନି ! ଅରେ ପ୍ରିୟତମା !
ତମାଲକେଶୀ ଖଞ୍ଜନନୟନା ଉତ୍ତମା । ୫୪ ।

ତମାଦ ମାନର କର କରଗତ ଦାସ ।
ବଶ କାନ୍ତ ସଦା ତୋର ବିଷାଦ ଅବଶ । ୫୫ ।

ବସନ୍ତ ତୁ କରୁ ମାନ ମାନସ ବିପିନ
ପୀନଉରଜା ନ କର ହୃଦୟ କଠିନ । ୫୬ ।

ମାଲ ଯମକ—

ଫୁଲଶରେ ଥର ଥର ଥରଇ ମୋ ଅଙ୍ଗ
ପ୍ରୀତଭାର ହର ହର ହରଭୋରୁ ସଙ୍ଗ । ୫୭ ।
ସ୍ନେହାଦର ଧର ଧର ଧରଣୀମଣ୍ଡନା ।
ଭାବର ଏକାନ୍ତ କାନ୍ତ କାନ୍ତସ୍ନେହାଧୀନା ୫୮ ।

ସର୍ବ ଯମକ—

ମାର ଜୀବ ଧବ ମାନେ ନେଇ ପର ଲୋକେ
ମାର ଜୀବ ଧବ ମାନେ ନେଇ ପରଲୋକେ । ୫୯ ।

---

୫୦ । ରବ ବର—ରବ କରୁ ଅଛ ଅର୍ଥାତ୍ କହୁଅଛ ।

୫୨ । ତାପନ—କାମର ତାପନ ନାମକ ଶର । ତାପନଦା ଠାଣି—ଠାଣି ତାପନକୁ ଦେଉଅଛି । ଫଣୀ—ଫଣାଯୁକ୍ତ ବିଷଧର ସର୍ପ ।

୫୫ । ମାନର ତମାଦ କର—ମାନକୁ ଶେଷ କର ।

୫୯ । ମାର—କନ୍ଦର୍ପକୁ । ଜୀବଧବ—ଯମ । ମାନେ—ମନେ କରେ । ନେଇ—ନେଉ-ଅଛି । ପରଲୋକେ—ପିତୃଲୋକକୁ ଅଥବା ଇହଲୋକରୁ ଅନ୍ୟ ଲୋକକୁ । ମାର—ନାଶ କରୁଅଛ । ଜୀବଧବ—ପତିକୁ । ମାନେ—ମାନବତୀ ହୋଇ । ନେଇ—ଭୁଲ । ପରଲୋକ—ଅନ୍ୟ ଲୋକ ।

ବାଳୀଶ ଭାବ ସତତ ରତପତ ଗୃହି
ବାଳଶ ଭାବ ସତତ ରତପତ ଗୃହି । ୬୦ ।

ଛେକାନୁପ୍ରାସ—

ଦନୁଜାରି ତନୁଜ ଅତନୁ ତନୁ ଘାରେ
ତନୁ ତନୁ ଦାନେ କି ସୁତନୁ କେବେ ସରେ । ୬୧ ।

ଉପମା ଶ୍ଳେଷ—

ମଙ୍ଗଳକୁ ଜାତ କରିବାରେ କ୍ଷମ ଛିତି ।
ମୃଗପତି ତୋଷେ ଶ୍ୟାମା ଶଶିମୁଖ ପରି । ୬୨ ।

ଅନୁପ୍ରାସ—

କୁଞ୍ଚିତକେଶି ! ରେ ଢୁଞ୍ଚି ଅସ ମୋ ପାଶକୁ
ମୁଞ୍ଚି ମାନ ଚଢ ରତି ସଞ୍ଚି ପ୍ରଣୟକୁ । ୬୩ ।

ମେଷଯୁଦ୍ଧ—

ମାର ଶର ବଭ୍ର ନାନା ଭାବ ରସ ରମା
ମାନ ତମ ସାର ଶେଷେ ରସା ମତ ନମା । ୬୪ ।
ରଜନୀ ରୂପାରେ ହାହା ରେ ସାରୁ ନିଜର
ରସା ସତ ! ରସେ ଶେଷେ ସେ ରତୀଶ ସାର । ୬୫ ।

ବ୍ୟାଜ ଏକାକ୍ଷରୀ—

ଶଶ ଶୋଷେ ଶେଷେ ଶେଷ ଶଶୀ ଶ୍ରୀ ସୁଶ୍ରୁଷେ
ଶାସୁ ଶଶ ଶଶି । ଶ୍ୱାସ ସୁସୁ ଶୋ ଶୋ ଶେଷେ । ୬୬ ।

---

୬୦ । ବାଳୀଶ—ନାରୀଶ୍ରେଷ୍ଠ । ରତଭବ—ରତ ଇଚ୍ଛା କର । ବାଳଶଭବ—ପାଗଳର ସ୍ୱଭ ।

୬୧ । ଦନୁଜାରିତନୁଜ—ଶ୍ରୀକୃଷ୍ଣଙ୍କର ପୁତ୍ର । ଅତନୁ—କାମଦେବ । ତନୁ—ଶରୀର, ସାମାନ୍ୟ ବା ଅଳ୍ପ । ୬୨ । ମଙ୍ଗଳ—ମଙ୍ଗଳ ଗ୍ରହ, ଶୁଭ । ଛିତି—ପୃଥିବୀ, ଧୀର ନାୟିକା । ମୃଗପତି—ସିଂହ, ଶଶଜାତୀୟ ପୁରୁଷ । ଶ୍ୟାମା—ଦୁର୍ଗା, କାଳୀ, ତପ୍ତ ସ୍ୱର୍ଣ୍ଣବର୍ଣ୍ଣା ସ୍ତ୍ରୀ । ୬୪ । ମାରଶର—ଫୁଲଶର । ବଭ୍ର—ଦୀପ୍ତି, ପ୍ରକୋପ । ରମା—ପ୍ରିୟା । ତମ—କୋପ । ସାର—ଶେଷ କର । ମତ ନମା—ମନକୁ ନୁଆଁଇ ଦିଅ । ୬୫ । ସାରୁ—ଶେଷ କରୁଅଛୁ । ନିଜର—ଆପଣାର ଲୋକକୁ । ରତୀଶ—କନ୍ଦର୍ପ । ସାର—ଶେଷ କର ।

୬୬ । ଶଶ—ଠେକୁଆ । ଶୋଷେ—ଶୋଷରେ, ତୃଷାରେ । ଶେଷ—ବିନାଶପ୍ରାପ୍ତ । ଶେଷେ—ଶେଷରେ । ଶଶୀଶ୍ରୀ—ଚନ୍ଦ୍ରର ଶୋଭା । ସୁଶ୍ରୁଷେ—ସୁଶ୍ରୂଷା କଲ ଅର୍ଥାତ୍ ଚନ୍ଦ୍ର ତାହାଙ୍କ ଶୋଭାରେ ଶଶକୁ ଧାରଣ କରିଅଛନ୍ତି । ଶଶି ! ହେ ଚନ୍ଦ୍ରମା (ଏଠାରେ ନାୟିକାକୁ ସମ୍ବୋଧନ) । ଶାସୁଁ—ଶାସନ କରୁ କରୁ । ଶଶ—ଶଶ ଜାତୀୟ ପୁରୁଷକୁ ଅର୍ଥାତ୍ ମୋତେ । ଶ୍ୱାସ ସୁସୁ—ଅର୍ଥାତ୍ ଦୀର୍ଘ ନିଃଶ୍ୱାସ ବହିଲାଣି । ଶେଷେ—ଶେଷରେ । ଶୋ ଶୋ—ଶୋଇଲା ଭଳି ହେଲଣି ବା ମଲାଭଳି ହେଲଣି ।

ଏକାକ୍ଷରୀ—

କୁକୁ କାକ କାକା କେକୀ କେକା କୁ କା କର୍କ
କୋକ କାକୁ କାକୁ କଂକ କେ କୋକୀ କେ କୋକ । ୬୭ ।
ଏକାକ୍ଷରୀ ରଙ୍ଗ ଉକ୍ତି ଶୁଣନ୍ତେ ସୁମୁଖୀ,
ହସିଲ ଖସିଲ ଚନ୍ଦ୍ର ନଭରୁ ଭାବଇ । ୬୮ ।
ଏ ଛାନ୍ଦରେ ଅଳଙ୍କାର ଯେତେବେ ଯୋଗାବଦେ
ଚନ୍ଦ୍ରାବଳୀ ପ୍ରସଙ୍ଗ ମାନେ ରାଧା ବନ୍ଦେ । ୬୯ ।
ଲୋଭେ କୃଷ୍ଣପଦ ଅରବିନ୍ଦ ମକରନ୍ଦ ।
ସଦା ପାନ ଗୋପେନ୍ଦ୍ରଙ୍କର ମାନସ ମିଳିନ୍ଦ । ୭୦ ।

## ୪୩ଶ ଛାନ୍ଦ

ରାଗ—ଗୁର୍ଜ୍ଜରୀ

କେଳିପୁରୁ ବାଳା ବାହୁଡ଼ା ବଳେ, ଚଳନ୍ତ ନାୟିକା ସଖୀ ସହକେ
ଅଲସ୍ୟ ଜୃମ୍ଭଣ ମନ୍ଥରଗତି, ମନ୍ଦ ବାତେ ଯଥା ହେମ ବ୍ରତତୀ
ଅବଶ, ଅଙ୍ଗ ଦଶେ ଯତନ
ଢେଳିଛୁ କି ପାରା ସଙ୍ଗ କାଞ୍ଚନ । ୧ ।

ଫିଟି କେଶ ଲମ୍ବେ କୁସୁମଗଭା, ଛାୟାପଥ ଶୋଭେ ଶରଦେ ଅବା
ଖଞ୍ଜନନୟନ ଅଞ୍ଜନ ଗାର, ଜଡ଼ି ବହ୍ନିପଢ଼ି ଦଶେ ସୁନ୍ଦର
କମଳେ, ଶିଶୁ ଭୃଙ୍ଗଶ୍ରେଣୀ କି,
ଲୀଳାରେ ଦେଖାଇ ପଦଠାଣିକି । ୨ ।

କପୋଳେ ସିନ୍ଦୁରବିନ୍ଦୁ ଉଚ୍ଛୁଳି, ଅନୁରାଗ ପରା ଯାଇଛୁ ଝଳି
ନାସାରୁ ଖସିଛୁ ଗଜମୁକୁତା, କେଶାଭ ସେବନେ ନ ହେଲ ଯୁକ୍ତା
ତାମ୍ବୂଲ, ବୋଲ ରଦନ ଦାଗ,
ଅଧରେ ପ୍ରକାଶେ କି କାମରାଗ । ୩ ।

---

୬୭ । କୁକୁ—କୁହୁଡ଼ା ଡାକ । କାକ କାକା—କାଉର କାକା ଶବ୍ଦ । କେକୀର କେକା—ମୟୂର ଡାକ । କୁ ମନ୍ଦ । କର୍କ—ସୁନ୍ଦର, ଭଲ । କୋକ—ଚକ୍ରବାକ । କାକୁ—ବକ୍ରୋକ୍ତି । କାକୁ—କାହାକୁ । କଂକ—ଯମ । କେ କିଏ ସେ । କୋକୀ—ଚକ୍ରବାକୀ । କେ—କିଏ ସେ । କୋକ—ଚକ୍ରବାକ । ଅର୍ଥାତ୍ ମୁଁ କେବାକ ଧର ବକ୍ରୋକ୍ତି କରୁଛ । ମୁଁ ଚକ୍ରବାକ ହେଲେ ତୁ ଚକ୍ରବାକୀ ।

୧ । ଜୃମ୍ଭଣ—ହାଇ । ବ୍ରତତୀ—ଲତା । ପାରା—ପାରଦ । କାଞ୍ଚନ—ସୁନା ।
୩ । ରଦନ—ଦନ୍ତ । ବାଦେ—ବିବାଦରେ ।

କାମ ସଙ୍ଗେ-ନିଦ୍ରା ହାରି କି ବାଦେ, ତା ତମ ବାମାକୁ ଦେଖାଏ ସ୍ୱାଦେ
ନେଇ ଦଶନଚ୍ଛଦ ରଙ୍ଗିମା ଅତି, ମୁଦ୍ରିତ ହେବାକୁ କରନ୍ତି ଗତି
କି ରଙ୍ଗେ, ଦିଏ ଫିଟାଇ ଲାଜ
ଦରବିକଶି କି ଆସଇ ଅବ୍ଜ । ୪ ।

ଦେଖି ଏ ଛବିକି ସଜନୀଗଣ, ବାମାକୁ କହନ୍ତି ଛଳ ବଚନ
ବର୍ତ୍ତୁଳ ଉରଜେ କରଜ କ୍ଷତ, କାନ୍ତ ଅନୁରାଗ କରେ ବ୍ୟକତ
ବିଧିରେ, ତହୁଁ ଲଜ୍ଜିତ ରଙ୍ଗ
କାମ ତାମ ସଙ୍ଗେ ଯୁଡ଼ିଛି ଅଙ୍ଗ । ୫ ।

ହାସ ଅଯତନ ସୁଷମା ଦେଖି, ମଧୁରେ ସମ୍ବୋଧି କହେ କେ ସଖୀ
ବାସର ବାସର ନ ପାଇ ଭେଦ, ବାସର କି ଅଛି ଜାଣି ବିଷାଦ
ଝୁରୁଛି, ସେ କି ନବ ଗୀତ କି
କରି ଯଥାବିଧି ସଙ୍ଗୀତକି । ୬ ।

ସ୍ୱେଦପଙ୍କ୍ତି ବିରାଜନ୍ତି କପୋଳେ, ଦାମନ୍ତି ସୁଷମ ସ୍ୱବେଣୀତଳେ
ସେ ଅହିବର କି ଗରଳ ବାନ୍ତି, କରିଛି ଏସନ ଅଟେ ପ୍ରତୀତ
ନାହିଁକି, ଶିଖୀ ତାଣ୍ଡବ ଦେଖି,
ନ ପାରିଲା କି ତା ବିଦ୍ୱେଷ ରଖି । ୭ ।

ଘର୍ମବିନ୍ଦୁସିକ୍ତ କକ୍ଷମୂଳକୁ, ଦେଖିଲେ ଏ ଭାବ ଆସେ ମନକୁ
ତହିଁ ନଖକ୍ଷତ ବାଳେନ୍ଦୁ ଦିଶେ, କି ଅବା ଭାର୍ଗବୀ ହାସ ପ୍ରକାଶେ
ବାହାରୁ ଅବ୍ଧିମନ୍ଥନୁ କିବା,
ଜଳ ପୃଷନ୍ତରେ ବିରାଜେ ଶୋଭା । ୮ ।

ବାତ୍ୟା ପରେ ଯଥା ପ୍ରକୃତି ଶୋଭା; ତେସନ ସଜନି ! ଦିଶେ ତୋ ପ୍ରଭା
କଟୀରୁ ମେଖଳା ଛୁଡ଼ି ରାଜନ୍ତି, ଥିଲା ଯେତେବେଳେ ସୁରତେ ମାତି
ଯେସନ, ମହାପ୍ରଳୟ କାଳେ,
ରବି ରଥରଜ୍ଜୁ ଛିଡ଼େ ବିକଳେ । ୯ ।

ବ୍ୟାଧିରୁ ଯେସନ ଲଭିଲେ ମୁକ୍ତି, ଦିଶଇ ସଖି ! ତୋ ସଜ ଆକୃତି
ସିତାଂଶୁବଦନ ଦିଶେ ମଳିନ, କେ ତମ ସୁଷମା କଲା ଲୁଣ୍ଠନ
ମାତଙ୍ଗ—ଦଳା ନଳିନ ବନ,
ଯଥା ତଥା ଦିଶୁ ରାମାରତନ । ୧୦ ।

---

୪ । ଅବ୍ଜ—ପଦ୍ମ । ୫ । କରଜ—ନଖ । ଅଙ୍ଗ—ଶରୀର ।
୬ । ବାସର—ବିବାହରାତିର ଶୟନଗୃହ; ଦିବସର; ବସନର ।
୭ । ଅହିବର—ସର୍ପରାଜ । ଶିଖୀ—ମୟୂର । ତାଣ୍ଡବ—ନୃତ୍ୟ ।
୮ । ବାଳେନ୍ଦୁ—ବାଳଚନ୍ଦ୍ର; ଦ୍ୱିତୀୟା ତୃତୀୟା ଚନ୍ଦ୍ର । ଭାର୍ଗବୀ—ଲକ୍ଷ୍ମୀ । ଅବ୍ଧି—ସମୁଦ୍ର । ପୃଷନ୍ତ—ଜଳବିନ୍ଦୁ ।
୯ । ମେଖଳା—ଗୋଠ; ଅଣ୍ଟାସୂତା; ଚନ୍ଦ୍ରହାର । ରଜ୍ଜୁ—ଦଉଡ଼ି ।
୧୦ । ତମ—ତୁମ୍ଭ । ମାତଙ୍ଗ—ହସ୍ତୀ । ନଳିନ—ପଦ୍ମ ।

ଆକାଶେ କ୍ଷିପ୍ର ବାରଦ ପରି, ଚନ୍ଦନ କସ୍ତୁରୀ ତୋ ଉରେ ଗୋରୀ ।
ଉର କାନ୍ତ ଉରସମ୍ଭୋଗ କାଳେ, ମଣୁ କାନ୍ତିତୃପ୍ତି ଅପିଛୁ ଭୋଳେ,
ଉରଜ, ଗିରି ସୁଷମା ଗୃହି,
ଘନ ଅନୁରାଗ ଥିବାରୁ ବହି । ୧୧ ।
ମତ୍ତ ହୋଇ କିବା ମତ୍ତକାଶିନୀ, ପୁରୁଷାଇତକୁ ଭଜିଲୁ ଧନି ।
ରଙ୍କନେହି ମନ୍ଥୁ ସୁରତରଣେ, ନାୟକପଥର ପଡ଼ୁଛୁ କେଣେ
ସଖି ତୋ, ନାରୀ ଦମ୍ଭକୁ ଚାହିଁ,
ଲାଜକୁ ଲୁଚାଇ ପଥର ହୋଇ । ୧୨ ।
ଜରଠା ରତିର ଦଶନ ପଡ଼ି, ଗଲା ପରା ! ଗଲେ ନୂପୁର ଛିଡ଼ି
ନ ଛାଡ଼ିଲା କାନ୍ତମନ୍ମଥ କି ମନ, ଢବ୍ରତେ ପଡ଼ିଲୁ ଧୀରା ଭଜନ
ଲଭିଲୁ, ସୁଖପ୍ରଦାନୀ, ପୀଡ଼ା,
ଥରି ଥରି କମ୍ପା ହେଉଛୁ ଛିଡ଼ା । ୧୩ ।
ଜଘନେ କି କାମଭଲ୍ଲର ପୀଡ଼ା, ଭୋଗିଛୁ ସଜନି ! ନ ତେଜ ବ୍ରୀଡ଼ା
ପୀଡ଼ା କରୁଛୁ ତ କୁସୁମକାଣ୍ଡ, ଦରପଣେ ଦେଖ ତୋ ଗୃହୁ ଚଣ୍ଡ
ନ ଜାଣୁ, କିଛୁ ମୁନିମୋହିନି !
ଅନଳକୁ ଜଳ ହେଲୁ ସଙ୍ଗିନି ! ୧୪ ।
କାନ୍ତ ମୁଖଚନ୍ଦ୍ର କି ରତିକାଳେ, ଗୃହିଁଥିଲୁ ରସସାଗରୀ ହେଳେ
ନିତମ୍ବ ବସନେ ଉର୍ମିକାଠାଣି, ବାସ ସାଗରେ କି ଲହରୀଶ୍ରେଣୀ-
ରହିଛୁ, ରତି କି ସଂଖ୍ୟା ଛଳେ,
ଚନ୍ଦ୍ରାରେଖା ଅଙ୍କା କାମ କପୋଳେ । ୧୫ ।
ଅନୁମିକା ଯଥା ସତ୍ତ୍ୱଦର୍ପଣରେ, ନଖକ୍ଷତ ଥିବ ତଥା ବିଗୁରେ
ନିତମ୍ବ ବସନ ଭିତରେ ଲୁଚି, ବାକଇନ୍ଦୁ ଜଣା ଛତ୍ରକ ପାଞ୍ଚି
ଧୂର୍ଜଟୀ, ପରେ ସେ ଖେଦେ ବସେ,
ମୁଦେ ଏ ତମ୍ବରୁ ତଳେ ବିଳସେ । ୧୬ ।
କୁତୂହଳଯୁକ୍ତ କଟାକ୍ଷ କରି, ମନ୍ଥିଲୁ କି ଚକ୍ଷେ ନବ ନାଗରୀ
ଭିଡ଼ିଲୁ ହୃଦେ କି ମଧୁରେ ରମି, ଯାଉଛୁ ବାହୁରେ ତୋ ବାଜୁ ନମି
ଯେସନ, ଗୁଣିଜନ ମାନସ,
ସମ୍ପଦେ ନ କରେ ମଦ ପ୍ରକାଶ । ୧୭ ।

---

୧୧ । ବାରିଦ—ମେଘ । ଉର—ବକ୍ଷ । ଉରଜ—ସ୍ତନ ।

୧୨ । ମତ୍ତକାଶିନୀ—ଉତ୍ତମା ସ୍ତ୍ରୀ । ପୁରୁଷାଇତ—ବିପରୀତ ରତି । ରଙ୍କ—ମୃଗ । ରଣ—ସମର । ନାୟକପଥର—ପଦକ; ହାର ମଧ୍ୟରେ ଥିବା ଶ୍ରେଷ୍ଠମଣି ।

୧୩ । ଜରଠା—ବୃଦ୍ଧା । ଦଶନ—ଦାନ୍ତ ।

୧୪ । ଭଲ୍ଲ—ଭଲ୍ଲ ଅସ୍ତ୍ର । ବ୍ରୀଡ଼ା—ଲଜ୍ଜା । ଦରପଣ—ଅରସି ।

ଅକର୍ଷିଲେ କେଶ କାମଭୋଳେ କି, ବିକସିତ ହାସବଦନ ଦେଖି
କିଙ୍କିଣୀ ସେଢାଲେ ଧରିଲ ତାନ, ମନ୍ମନ ରଚିଲ ମଧୁରେ ଗାନ
ନାଚିଲ, ଅଙ୍ଗଲତା ସୁନ୍ଦର,
ନିଜେ ସୁନ୍ଦରର ଥିଲ ତ ସ୍ମର । ୧୮ ।
ରାଧା ଜାଣି ଶ୍ୟାମା ସିନ୍ଧୁକଟିକି, ବୃଷଭରତକୁ ମଣକି ଡାକ
କୂଳବତୀ ସୀମା ଲଙ୍ଘିଲ ପରି, ସ୍ମରପର କୋଳେ ବସିଛୁ ଗୌରୀ
ଦିଶୁଛୁ, ଚକ ଚକ ରମଣୀ.
ସ୍ୱୟଂଭୂ ଶମ୍ଭୁରେ ଚଢ଼ିଛୁ ପାଣି । ୧୯ ।
ବେଳୁବେଳ ବଢ଼ି ପ୍ରୀତିମାଦକ, କଳକ ଘୁଡ଼କା ତୋ ଦକ ଦକ
ନିଶା ନ ଘୁଡ଼ିବ ବୋଲି ମଦନ, ସଙ୍ଗେ ଝୁଅଇଲି ଅଧର ପାନ
ରଙ୍ଗିଣୀ । ଭୋଗୀ ହାରକୁ ଧରି,
କାମ ନାଶିବାକୁ ଥିଲ କି ଡେରି । ୨୦ ।
ସୁକର ଧରିଲ ପୀନଜଘନେ, ଧରାକୂର୍ମପୃଷ୍ଠ ନିତମ୍ବେ ହେଲେ
ସୁଖାବ୍ଧିରେ ମୀନନେତ୍ର ଖେଳାଇ, କାନ୍ତ ରସେ ରଙ୍ଗେ ରସିଲି ଗୃହୀ
କେଶରୀ, ଅହୋ ହିରଣ୍ୟତନୁ,
ବିଦାରି କି କଲ ରଙ୍ଗେ ଅତନୁ । ୨୧ ।
ବା ମନ କି କଲେ ପାଦ ଦାନରେ, ଭାର୍ଗବ ଦହିଲ କ୍ଷତ୍ରିୟବରେ
ରୁଷି ରାମରୂପେ ଉତ୍କ୍ଷୁଳ ରସେ, ରେବତୀପତିକି ଗୁଲିଲେ ତୋଷେ
ସିଦ୍ଧାର୍ଥ, ହେଲ ଲଭି ପ୍ରେମକୁ,
କଲ କି ଅସିରେ ସ୍ମର ଅଙ୍ଗକୁ । ୨୨ ।

---

୧୮ । ମନ୍ମନ—କେଳିକାଳୀନ ଅସ୍ପଷ୍ଟ ମଧୁରଧ୍ୱନି । ସ୍ମର—କନ୍ଦର୍ପ ।

୧୯ । ଶ୍ୟାମା—ଦୁର୍ଗା, ସୁବର୍ଣ୍ଣବର୍ଣ୍ଣା ସ୍ତ୍ରୀ । ବୃଷଭରତ—ବୃଷଭ ସ୍ନେହ ଅର୍ଥାତ୍ ବୃଷଭ ଉପରେ ଚଢ଼ିବାସ୍ନେହ, ବୃଷଭରତବନ୍ଧ । କୂଳବତୀ—ନଦୀ; କୁଳବତୀ—କୁଳକାମିନୀ । ସ୍ମରପର—ଶିବ; କନ୍ଦର୍ପପରାୟଣ । ସ୍ୱୟଂଭୂଶମ୍ଭୁ—ଶିବ; କୁଚ । ପାଣି—ଜଳ; ହସ୍ତ ।

୨୦ । ମଦନ—ଧୁତୁରା ( ଧୁତୁରାମଞ୍ଜି ମାଦକଦ୍ରବ୍ୟ ଅଟେ ); କନ୍ଦର୍ପ । ଅଧରପାନ—ଅଧରପଣା; ପାଟିରେ ଖାଉଥିବା ପାନ । ଭୋଗୀ—ସର୍ପ, ବିଳାସୀ ।

୨୧ । ସୁକର—ସୁନ୍ଦର ( ଏଠାରେ ନାୟକ ) ବା ଉତ୍ତମ ହସ୍ତ । ଶୂକର—ଭଗବାନଙ୍କର ବରାହ ଅବତାର । ପୀନଜଘନେ ଯେ ଅର୍ଥାତ୍ ପୃଥିବୀ । ପୀନ ଉରଜ—କଠିନ ସ୍ତନ । ଧରା—ଧରିବା, ପୃଥିବୀ । କୂର୍ମ—କଚ୍ଛପ, ଭଗବାନଙ୍କର କମଠ ଅବତାର । ପୃଷ୍ଠ—ପିଠି । ନିତମ୍ବ—ସ୍ଫୀତ, ସ୍ତ୍ରୀକଟୀର ପଶ୍ଚାଦ୍ଭାଗ, ସ୍କନ୍ଧ, ତଟ । ହେଲେ—ଖେଳେ, ମନେ କରେ । ସୁଖାବ୍ଧି—ସୁଖସାଗର । ମୀନ—ମାଛ, ଭଗବାନଙ୍କର ମୀନାବତାର । କାନ୍ତରସେ—ପତିପ୍ରୀତିରେ; ମନୋହର ଜଳରେ । କେ ସରି—କେ ସମାନ; କେଶରୀ—ଭଗବାନଙ୍କର ନରସିଂହ ଅବତାର । ହିରଣ୍ୟ—ସୁବର୍ଣ୍ଣ; ହିରଣ୍ୟନାମକ ରାକ୍ଷସ, ପ୍ରହ୍ଲାଦର ପିତା । ଅତନୁ—କନ୍ଦର୍ପ, ଶରୀରହୀନ ।

୨୨ । ବା ମନ—ଅଥବା ମନ । ବାମନ—ଭଗବାନଙ୍କର ଖର୍ବ ଅବତାର । ଭାର୍ଗବ—ଶୁକ୍ର ( ଏଠାରେ ମଙ୍ଗଳଙ୍କୁ ଜାତ ଶୁକ୍ର ), ପର୍ଶୁରାମ । ରୁଷି—ରୁଷ୍ଟ ହୋଇ । ଋଷି—

ଚକ୍ରଧର ଅଗେ ବିଜୟୀ ସ୍ମର, ବହି ଶୁକ ନାଶ କେକି ମାଧୁରୀ
ଧରି ପୁଂସବ୍ୟାଘ୍ର କରି ତୁରଙ୍ଗ, ପାଦ ନବରାଗ ରଞ୍ଜିତ ଅଙ୍ଗ
ବୃଷକୁକୁଟ ସୁଷମା ବହି,
ଭୋଗୀ ଅଗେ ପଛେ ଭୋଗୀ ବସାଇ । ୨୩ ।

କାଞ୍ଚି କଣ୍ଟକର ଛଟକ ଧରି, କାନ୍ତେ କି ରତିରେ ଅଙ୍କ କରି
ଅଙ୍ଗରୁ ବିଦେହ ତାପ ନାଶିଲ୍, ମାଳବରେ କଣ୍ଠ ପକାଇ ଦେଲ୍
ଅତୁଳ, କରୁ ବିଚ୍ଛେଦ ଜାତ
ମଣିଲ୍ ଅତୁଳ ନାମ ଯଥାର୍ଥ । ୨୪ ।

ଏହିପରି ଛଳ କହିଲେ ଯେତେ, ସଖୀଙ୍କ ବଚନ କହିବା କେତେ
କରାଇଲେ କାଟିଲଗି ବାଳାଙ୍କୁ, ସ୍ନାନ ଭୋଜନାଦି ନୀତିମାନଙ୍କୁ
ତା ପରେ, ପଲ୍ୟଙ୍କରେ ମଣ୍ଡାଇ
ନିୟୋଗେ ରହିଲେ ସକଳ ସହି । ୨୫ ।

---

ମୁନି ( ଏଠାରେ ଦଣ୍ଡକାରଣ୍ୟବାସୀ ମୁନିଗଣ । ) ରାମ—ମନୋହର, ଭଗବାନଙ୍କର ଶ୍ରୀରାମ ଅବତାର । ରେବତୀପତି—ଚନ୍ଦ୍ର, ବଳରାମ ଅବତାର । ସିଦ୍ଧାର୍ଥ—ଅଭିଳାଷପରିତୃପ୍ତ; ବୁଦ୍ଧ ଅବତାର । କଳଙ୍କ—କଣ କରିଅଛ; କଳ୍କୀ ଅବତାର । ସ୍ମର—କନ୍ଦର୍ପ; ସ୍ମରଣ କର ।

୨୩ । ଚକ୍ରଧର—ଚକ୍ରବାକକୁ ଧାରଣ କଲ, ସୁଦର୍ଶନ ଚକ୍ରକୁ ଧରିଲ । ବିଜୟୀ—ଜୟଶୀଳ; ଅର୍ଜୁନ । ଶୁକନାଶ—ସଖୀକୁ ସମ୍ବୋଧନ; ଶୁଆର ନାଶ । କେକି ମାଧୁରୀ—କେ କେଉଁ ଶୋଭା । କେକୀ ମାଧୁରୀ—ମୟୂରର ଶୋଭା ଅର୍ଥାତ୍ ମୟୂରକଣ୍ଠ । ଧରି ପୁଂସବ୍ୟାଘ୍ର—ପୁରୁଷ ଶ୍ରେଷ୍ଠକୁ ଧାରଣ କରି । ତୁରଙ୍ଗ କରି—ତୁ କେଳିପରାୟଣା ହୋଇ । ପାଦ ନବରାଗରଞ୍ଜିତ ଅଙ୍ଗ ବୃଷକୁ—ତୋର ପାଦର ଯେଉଁ ନୂତନ ରଙ୍ଗ ଅର୍ଥାତ୍ ଅଳତା ରଙ୍ଗରେ ଶୋଭା ପାଉଥିବା ବଳବାନ୍ ବା ଶ୍ରେଷ୍ଠ ପୁରୁଷକୁ ଅଥବା ଷଣ୍ଢକୁ । କୁଟ ସୁଷମା ବହି ଅଗେ ଭୋଗି—କୁ କୁଟ (କପଟ) ଶୋଭାକୁ ଧାରଣ କରି ପ୍ରଥମରେ ତାଙ୍କୁ ଭୋଗ କରି । ପଛେ ଭୋଗୀ ବସାଇ ଦେଲ୍—ଅର୍ଥାତ୍ ନାୟକଙ୍କୁ ପଛେ (ଅଥବା ପୃଷ୍ଠ ଭାଗରେ ଷଣ୍ଢ ଅର୍ଥ ଧରିଲେ) ବସାଇ ଦେଲ୍ । ପୁଂସ—ଏକମାତ୍ର ପୁରୁଷ ଭଗବାନ ଶ୍ରୀକୃଷ୍ଣ । ବ୍ୟାଘ୍ର କରୀ ତୁରଙ୍ଗ ପାଦ ଧରି—ବାଘ, ହାତୀ ଓ ଘୋଡ଼ାର ପାଦକୁ ଧାରଣ କରି । ନବରାଗରଞ୍ଜିତ ଅଙ୍ଗ—ନଅଟି ରଙ୍ଗରେ ଅର୍ଥାତ୍ ନଅଟି ଶୋଭାରେ ଶୋଭିତ ହୋଇଥିବା ଶରୀର । ବୃଷ କୁକ୍କୁଟ ସୁଷମାକୁ ବହି—ଷଣ୍ଢର ଚୂଳ ଓ କୁକ୍କୁଟର ମଣ୍ଡଳକୁ ଧାରଣ କରି । ପଛେ ଭୋଗୀ ବସାଇ—ପଛ ପାଖରେ ସର୍ପ ଲାଙ୍ଗୁଳ ବହି । ଭୋଗୀ (ଏଠାରେ) ଅର୍ଜୁନ । ଅଗେ—ସମ୍ମୁଖରେ ବହିଲେ । ଏ ପଦରେ ଭଗବାନଙ୍କ ନବଗୁଞ୍ଜର ରୂପ ବର୍ଣ୍ଣନ ହୋଇଅଛି । (ଅନ୍ୱୟରେ ଚକ୍ରଧର ପଛେ ହେବ) ।

୨୪ । କାଞ୍ଚି ଓ କଣ୍ଟକ—ଦୁଇଟି ଅଳଙ୍କାର ଓ ଦୁଇଟି ଦେଶ । ଅଙ୍ଗ ଶରୀର; ଅଙ୍ଗ ଦେଶ । ବିଦେହ—କନ୍ଦର୍ପ; ବିଦେହ—ଦେଶ । ମାଳବରେ—ଶ୍ରେଷ୍ଠ ହାରକୁ । ମାଳବ—ଦେଶ-ବିଶେଷ । ଅତୁଳ—ଅଳଙ୍କାର ବିଶେଷ; ଅତୁଳନୀୟ ।

ବାଳା ନୟନକୁ ନିଦ୍ରା ନ ଆସେ, ଗତ ନିଶିଶେଷ ଭାଳେ ମାନସେ
ପୀରତର କାହିଁ ଅଛୁ କି ତୃପ୍ତି, ସେ କାଳେ କାନ୍ତକୁ ଲୋଡ଼େ ସୁଦାନ୍ତ
ମିହରେ, ହରେ ନିନ୍ଦାକୁ କେତେ,
ଅନ୍ତର ହେବାକୁ ସେ ବେଳ ମତେ । ୨୬ ।
ଅସିବାକୁ ନିଶି ଶିବରେ ଶିବେ, ଯାଚଇ ତପନ ପ୍ରଣୟୀଭାବେ
ବାଳାଚନ୍ଦ୍ରା କାହୁଁ ହଳ ହୋଇବ, ଦବା ବଚ୍ଛେଦକୁ ନିନ୍ଦେ ଦଇବ
ଅମିୟ, ରସ ଭଣେ ଗୋଲୋକ,
କର୍ଣ୍ଣମୁଖେ ପାନ କର ରସିକ । ୨୭ ।

## ୪୪ଶ ଛାନ୍ଦ

ରାଗ—ସାମଗୁଜ୍ଜରୀ

ମନୋହର ଭାବ ଘେନ ହେ ସାଧବ କାରୁଣ୍ୟ ବାର୍ଦ୍ଧିକ ବଗ୍ଧର
ବାଳୀ ଅଳୀ ଚେଳ୍ପି ଯିବ ଭାଳ ଭାଳ ଅଳୀକ ବୋଧଇ ଅଚ୍ଛୁରା
ହେ ସଖି ! ମନ୍ତୁ ନ ତେଜିବ କିଞ୍ଚିତେ,
ଭବ ସୁଧାମିଷା-ଭାଷା ଆଶା ଛାଡ଼ି ରସାରେ ବଞ୍ଚିବ କେମନ୍ତେ ? । ୧ ।
ନୟନେ ନାଚବ ପ୍ରୀତିଶ୍ରିତ ନାତ ଭୁଲିବା କି ଭାବ ଆଦର
ବିରଞ୍ଚି ରଚିଛୁ ଏ କି ତାପ ଭବେ ଲଭେ ଦୟା ଚିତ୍ତେ ନ କର
ହେ ସଖି ! ସଙ୍ଗିନୀ ସଙ୍ଗିନୀ ଭୁଲାଇ,
ଜଡ଼ାଇବ କେତେ ମତେ ଦୁର୍ଦ୍ଦଇବ ପିତା ମାତା ଲୋଭ ଛଡ଼ାଇ । ୨ ।
ହାସ କଉତୁକେ ସଙ୍ଗ ସୁଖ ଯେତେ ପଡ଼ୁଥିବ ମନେ ନିରତେ
ପାଷାଣ ହୃଦୟ ଫାଟିଯିବ ନିକି ଆଖି ଲୁହ ହେବ କେମନ୍ତେ
ହେ ସଖି ! ଛାଡ଼ି ରହିବ କି ପ୍ରକାରେ,
ଏ ପରାଣ ପରା ପରାଣସଙ୍ଗିନି ! ବଦାଉ ହେବ ମୋ ଅଧୀରେ । ୩ ।
ହେଲେ ତ କାତର ବୋଧିବ କେ ଚତ୍ତି ଏ ଚିନ୍ତା ପୋଡ଼ଇ ଅନ୍ତର
ଯାଉଅଛୁ ଛାଡ଼ି ପିଣ୍ଡରୁ ପରାଣ ହୃଦୟ ହେଉଛୁ ଅସ୍ଥିର
ହେ ସଖି ! ହଜିଯାଏ ଚେତା ବିକଳେ,
ରଙ୍ଗେ ସର୍ଖି-ସ୍ନେହ ସମ ଥିବ କାହିଁ ମନ ବୁଝୁନାହିଁ ଅକୁଳେ । ୪ ।

---

୨୬ । ମିହ—ସୂର୍ଯ୍ୟ; ରାଜପୁତ୍ରର ସଖା (କା ନଙ୍କର ସଖୀ) ।

---

୧ । ଅଳୀ—ସଖୀ । ରସା—ପୃଥିବୀ ।
୨ । ବିରଞ୍ଚି—ବିଧି ।
୩ । କଉତୁକ—କୌତୁକ, ଆମୋଦପ୍ରମୋଦ ।
୪ । ଚେତା—ଚେତନା; ଜ୍ଞାନ ।

ତରୁଣୀରତନ ନେତ୍ର ଥନ ଥନ କାନ୍ଦଇ ସନ୍ତାପେ ଅଧୀରେ
ସଜନୀନିକର ବିଗଳିତ ମନେ ବୋଧନ୍ତି ବାଳୀଙ୍କ କାତରେ
ଜନେ ଜନେ ! ଅପହରୁ ସନ୍ତାପକୁ,
ସାନ୍ତ୍ୱନାରେ ହିନା ବଢ଼ାଇଲେ ଅଳି ସ୍ମରାଇଲେ ସଖୀଭାବକୁ । ୫ ।

କେ ସଖି କହଇ ଶୁଣ ପ୍ରାଣସହି ଜୀରସାଇ ଦେବୁ ମନନ
କାନ୍ତପଦ ସେବା ଭଲେ ଅନ ଅନ ହେବ ମନ ସମାରତନ,
ହେ ସଖି ! ପ୍ରଜାପତିର ଏ ରଚନା,
ଦଇବ ଦାରୁଣ ନୁହଇ ଶୋଚନୀ ! ପତି ଲଭି ସତୀ ସୁମନା । ୬ ।

ଅସାର ସଂସାର ଅଶ୍ୱତ୍‌ଥ ପରାଏ ନୁହଇ କି ଆପ୍ତ ବଚନ
କାଲି କଥା ଆଜ ରହୁନ ତାହିଁକି ନିତ ନିତ ନବ ବିଧାନ
ହେ ସଖି ! ସଖୀସ୍ନେହ କାନ୍ତେ ଅରପି,
ଅତୁଳ ପ୍ରମୋଦ କର ଉପଭୋଗ ନବ ନବ ଭାବ କଳପି । ୭ ।

ବିରହରେ ଯାର ହୃଦ ନ ତରଳେ ବୋଲିବା ତାହାକୁ ପାଷାଣ
ସ୍ନେହେ ଚନ୍ଦ୍ରଶିଳା ତରଳେ ସଜନି ! ହେବ କିମ୍ପା ଶିଳ ଦୂଷଣ
ହେ ସଖି ! ଇତରରେ ସ୍ନେହ ବିଦିତ,
କି ବୋଲି ବୋଲିବା ସ୍ନେହହୀନ ଜନେ ମନରେ ନ ହୁଏ ଉଦିତ । ୮ ।

ପ୍ରାଣପରି ମଣିଥିଲୁ ସଜନୀଙ୍କି ଭୁଲି ଦିବସ ନ ସରିବ
ଅଶନି ମୁଣ୍ଡରେ ପଡ଼ିଲା ମଣୁଛୁ ମନକୁ ତୋ ଭାବ କି ଯିବ
ହେ ସଖି ! ଶ୍ରବଣେ ତୋ ମଧୁ ବଚନ,
ଶୁଭିଯିବ ଅହା କେମନ୍ତେ ରହିବୁ ଧିକ ଧିକ ଆମ୍ଭ ଜୀବନ । ୯ ।

ତୋ ପରି କିଏ ବା ନୟନେ ଦିଶିବ ମଧୁର ବଚନ ଭାଷିବ
କିଏ ସଙ୍ଗେ ଆଉ ଖେଳିବ ସୁରଙ୍ଗେ କିଏ କଉତୁକ ରଚିବ
ହେ ସଖି ! ବୋଧିବ ମାନସ କେ ଜାଣି,
ତୋ ସୁଖରେ ସୁଖ ହେଲଣି ବିରହ ସହି ତ ନୁହଇ ସଙ୍ଗିନି ! ୧୦ ।

କରି ଭୟାନକ ବୀଭତ୍ସ ଏ ପୁଣି ହର୍ଷ ଶୋକେ ହେବୁ ଅନ୍ତର
ଆଦିରସ ହୃଦେ ଜାତ ହେଲା ଦିନୁ ଅଦ୍ଭୁତ ନୁହଇ ଯିବାର
ହେ ସଖି ! ବୀରରସେ ହେଲୁ ଚଞ୍ଚଳ
ଶାନ୍ତରେ ଭୋଗ ତୁ ବିରହ ରୌଦ୍ରରେ କଲବଲ ହେବୁଁ ସକଳ । ୧୧ ।

---

୬ । ମନନ—ଚିନ୍ତା । ପ୍ରଜାପତି—ବିଧାତା ।

୭ । ଅଶ୍ୱତ୍‌ଥ—ଓସ୍ତଗଛ; ଯାହା କାଲିକୁ ରହେ ନାହିଁ । ଆପ୍ତବଚନ—ବିଶ୍ୱାସଯୋଗ୍ୟ ଋଷିବାକ୍ୟ । ଅରପି—ଅର୍ପି, ଅର୍ପଣ କରି । କଳପି—କଳ୍ପନା କରି ।

୮ । ପାଷାଣ—ପଥର; ଶିଳ । ଇତର—ନରଭିନ୍ନ ଅନ୍ୟ ।

୯ । ଅଶନ—ବଜ୍ର । ଶ୍ରବଣ—କର୍ଣ୍ଣ । ୧୦ । ବିରହ—ବିଚ୍ଛେଦ ।

୧୧ । ଆଦିରସ—ଶୃଙ୍ଗାର ରସ ।

ଢଳଢଳ ନୀର ନୟନେ ଝୁଅଇ କଲେ ଯେତେ ଦୃଢ଼ ହୃଦୟ
ନିଦାରୁଣ ହୃଦ ବିଚ୍ଛେଦ ସମ୍ଭବ ଭାବି ହେଉଛୁ କି ଅଥୟ
ହେ ସଖି ! ଅପରୂପ ସୃଷ୍ଟି ଜଗତେ,
ଦୁଃଖେ ସୁଖ, ସୁଖେ ଦୁଃଖ ଜଡ଼ିଅଛୁ ଈଶ୍ୱରରୁ ସିନା ଜାଣତେ । ୧୨ ।
ପଦ୍ମବନେ ଯଥା ଶିଶିର ପତନ ଗ୍ରୀଷ୍ମେ ମାର୍ତ୍ତଣ୍ଡ କିରଣ
ଗିରୀଶ ଉପରେ ଅଶନି ପଡ଼ିଲେ କରଇ ବିକଳ ଯେସନ
ହେ ସଖି ! ସେହିପର ହେବୁ ମିତଣୀ,
କିଏ ବା ସଖୀଙ୍କ ବିଷାଦ ଜାଣିବ, ସ୍ମରିବୁ କରୁ ଏ ଦୟିନ । ୧୩ ।
କରିବୁ ସଖୀଏ ମିଳି କାକୁ ବୋଧ ନୃପସୁତଗୁଣ ବଖାଣି
ତୋ ଚତୁରପଣ ଭୁଲିବୁ କେମନ୍ତେ ଯାଉଛୁ ଦେଇ ଏ ଭାଲେଣି
ହେ ସଖି ! ଶୂନ୍ୟ ଦିଶିବ ଏ ସଂସାର,
ଏ ସ୍ୱର୍ଣ୍ଣ ନଗର କର ଅନ୍ଧକାର ଶୋଭାଇବୁ କାନ୍ତ ମନ୍ଦିର । ୧୪ ।
ପତିପଦ ଗତି ପତିପଦ ମୁକ୍ତି ପତି ସଦା ସତୀ ଦେବତା
କି ହେବ ଜାଣିଲେ ହଜାଇଲୁ ବୁଦ୍ଧି ସଖୀ ଦମ୍ଭ ଭାଙ୍ଗେ ବିଧାତା
ହେ ସଖି ! ଧନ୍ୟବ ନିର୍ଲଜ୍ଜ ଜୀବନ,
ଜାନକୀ ବିରହେ ମନମାୟା ପରି ଲଭିବୁଁ କି ଜାତ ଜସଣି । ୧୫ ।
ସ୍ମୃତି ଅନ୍ତ ଠାଣି କଠୋର ନୟନ ରହିଛି ବିଚ୍ଛେଦ ଦେଖିବ
ନରମାଣି କଲ୍ପ କେତେ କାଳ ସ୍ନେହ ହୃଦକୁ ଅହ୍ନା କି ବାନ୍ଧିବ
ହେ ସଖି ! ଦୃଷ୍ଟି ଯାଉଥିବୁ ନୟନେ,
ଫାଟିବ ପରାଣ ପରାଣସଖି ! ଚେ ଦମ୍ଭ ଧରି ହେବ କେସନେ ? । ୧୬ ।
ଏମନ୍ତ ସମୟେ ଜରତା ପ୍ରମାତା ବାହୁନି କରଇ କନ୍ଦନ
ଚମ୍ପକଗୁଞ୍ଜି ନୟନପିତୁଳି ପଦ୍ମମୁଖେ କର ଗମନ
ମୋ ମାଳୀ ! ଅଙ୍କୁଣୀ ନୟନ ପସରା,
ଦରଦ୍ରର ଧନ ରୁକ୍ମିଣୀଚନ୍ଦନ ସୁବର୍ଣ୍ଣର ଶୋଭା ଅସରା । ୧୭ ।
ଶୁଭେ ତହିଁ କର ମୋ ସୁନାଥାଳୀ ଲୋ ଘର, ତୋଷି ପତିମନକୁ
ଗୁରୁଜନସେବାପରାୟଣା ହୁଅ ରଖି ତାଙ୍କଠାରେ ଭକ୍ତିକି
ମୋ ରାଣି ! ନ କହିବୁ କଟୁ ବଚନ,
ବହୁଭାଷିଣୀ ତୁ ନ ହେବୁ ଅଙ୍ଖିଲେ ! ଦେବୁ ମିଷ୍ଟାନ୍ନରେ ତୋ ମନ । ୧୮ ।
ସୋଦର ହେଲେହେଁ ନିର୍ଜନରେ ତାର ସଙ୍ଗେ ନ କରିବୁ ଆଳାପ
ପ୍ରତିବେଶିନୀଙ୍କ ମନ ଜାଣିଥିବୁ ନ କହିବୁ ବୃଥା ଜଳପ
ମୋ ଧନ ! ଓ ଅଛି କହିବ ଯେ ଜନ,
ନ ଜାଣି ତାହାକୁ ବିଶ୍ୱାସ ନ ଯିବୁ ଥିବୁ ସଦା କାଳେ ପ୍ରସନ୍ନ । ୧୯ ।

---

୧୨ । ଗିରୀଶ—ପର୍ବତଶ୍ରେଷ୍ଠ । ଦୟିନ—ଅନୁନୟ । ୧୪ । ବଖାଣି—କହି ।
୧୫ । ମନମାୟା—ସୀତାଙ୍କ ସଖୀବିଶେଷ । ୧୬ । ଜରତା—ବୁଢ଼ୀ ।
୧୮ । କଟୁବଚନ—କଡ଼ା କଥା । ୧୯ । ପ୍ରତିବେଶିନୀ—ପଡ଼ିଶା ଘରର ସ୍ତ୍ରୀ ।

ଦୂତୀ ଦୂତକାର୍ଯ୍ୟ କରେ ଯେ ବାଧିରେ ସତର୍କ ଥିବୁ ତ ତାଠାରେ
ବିନା ବେତନରେ ସେବକ ସେବକୀ କେବେହେଁ ନ ରଖିବୁ ଗୃହରେ
ମୋ ମାଅ ! ସଂସାରେ ଅଛନ୍ତି ଅନେକ,
ନାନା ପ୍ରତାରଣା କରନ୍ତି ସ୍ୱ ସ୍ୱାର୍ଥେ ହରଣ ଧରମ ଶୀଳକ । ୨୦ ।
ଆଳସ୍ୟଭାବକୁ ନ ଧରିବୁ, ଅଳି ବୃଥା ନ କରିବୁ ପତିଙ୍କି
ସଦାଗୃହେ ରହି ଗୃହିଣୀ କର୍ତ୍ତବ୍ୟ ତୋଷୁଥିବୁ ନିତ ମତିକି
ମୋ ରାଣୀ ! ଦେବତା ପୂଜିବୁ ଭକ୍ତିରେ,
ଦେବତା ସତୀର ପତି ଏ ଭାବକୁ ରଖିଥିବୁ ନିତ ମତିରେ । ୨୧ ।
ଅଟ୍ଟହାସ କେବେହେଁ ନ କରିବୁ, ଉପହାସ ନ କରିବୁ ପତିକି
ସବୁ ଅତ୍ୟନ୍ତରେ ଗର୍ହିତ ଏହା ଜାଣୁଥିବୁ ନିତ ମତିକି
ମୋ ରାଣି ! ପୁରାଣ ଜ୍ଞାନୀଙ୍କ ବଚନ
ମାନୁଥିବୁ ବୁଦ୍ଧି ରଖିଥିବୁ ତହିଁ ସୁଉପଯୁକ୍ତ ଅନୁମାନ । ୨୨ ।
ସତୀର ଗରବ ହିତୈଷୀ ବୋଲନ୍ତି ଉଚିତେ ସୁଧୀଏ ଜଗତେ
ସେହିପରି ହିତୈଷିଣୀ ମିଥ୍ୟା ଅଦ ମନ୍ତୁ ତ ତେଜିବୁ କାହିଁତେ
ମୋ ମାଳି ! ସଂସାରର ଗତି କୁଟିଳା
ଅଣି ଲହା ଗୁଡ ପଥର କଲେ ତ ଅନେକନ ମିଳେ ସୁବେଳା । ୨୩ ।
ବିପଦରେ କେବେ ପତିଙ୍କୁ ଅଧୈର୍ଯ୍ୟ ନ କରିବୁ ହୋଇ ଅଧୈର୍ଯ୍ୟ
କରିବା ଆଗରୁ ବିଚାରିବୁ ଭଲେ ଶୁଣୁଥିବୁ ପର ଗରଜ
ମୋ ଧନ ! ପତିମନ ଜାଣି ଖଟିବୁ
ଅବିଶ୍ୱାସୀ ହେଲେ ଶିଷ୍ଟ ଅନୁରାଗେ ଧରମ ପଥକୁ ଆଣିବୁ । ୨୪ ।
ନିଜ ମର୍ଯ୍ୟାଦାକୁ ରଖିଥିବୁ ସଦା ଅଣ୍ଟପଣକୁ ନ ବହିବୁ
ଲଜ୍ଜାକୁ ତଳେହେଁ ନ ଛାଡ଼ିବୁ ଅଣ୍ଟେ ନିଜ ଦୁର୍ବଳତା ତେଜିବୁ
ମୋ ରାଣି ! ପତି ସେପେ ନୋହି ବିରସ
ରଙ୍ଗେ ତାଙ୍କ ସ୍ନେହ ଦଣ୍ଡାଇ ଆଦରେ ମାଗିନେବୁ ଥିଲେ ତୋ ଦୋଷ । ୨୫ ।
ଏକାଳେ ପ୍ରବେଶ ହୋଇଣ ଅର୍ଥୀରେ କରନ୍ତି କାରୁଣ୍ୟ ଜନନୀ
ସୁତା ବିରହରେ ଯଥା ମାତା ଖେଦ ବର୍ଣ୍ଣି ପାରିବ କି ଲେଖନୀ
ଜନେ ହେ ! ମାତୃସ୍ନେହ ସମ ସଂସାରେ
କାହିଁଅଛି ସେ ଯେ ସ୍ୱର୍ଗୀୟ ପବିତ୍ର—ଦୃଷ୍ଟ ପଶୁପକ୍ଷୀ ଆଦରେ । ୨୬ ।

---

୨୦ । ପ୍ରତାରଣା—ଠକାମି ।
୨୨ । ଗର୍ହିତ—ମନ୍ଦ ।
୨୩ । ହିତୈଷୀ—ହିତକାରକ । ସୁଧୀ—ପଣ୍ଡିତ ।
୨୪ । ପର—ଅନ୍ୟ ଲୋକ । ଗରଜ—ଦରକାର ।
୨୫ । ଆଦରେ—ଆଦର କରି ।
୨୬ । ଲେଖନୀ କଲମ, ଲେଖନ ।

ଦେଲେ ସେ ବଦ୍ଧ ଫୁଲ୍ ଏତେ ବେଳେ ସୁତାକୁ ସମସ୍ତ ଭୂଷାଇ
ଚଞ୍ଚଳା ଚଞ୍ଚଳେ ଅତି ଯତନରେ ରଖିଲ କେମାକୁ ଦେଖାଇ
ଜନେ ହେ ! କେମା ଭର-କାଷ୍ଠଅଧାରେ
ଯେତେ ଯନ୍ତ୍ରକୁ ଦେଲେ ନରଗଣ କଳିବ କେ ତାହା ସଂସାରେ । ୨୭ ।
କାରୁଣ୍ୟ କାରୁଣ୍ୟ ମିଶି କଲ ଅଦ୍ଭୁତ କାରୁଣ୍ୟକୁ ଚଞ୍ଚଳ
ବକଳ ଅଧୀର ମହାଶୋକକଲ୍ଲୋଳ ବଳିଗଲ ସିନ୍ଧୁତଳ
ଜନେ ହେ ! ଅଚଳ ଲଭାଲେ ପଡ଼ତ
ଜଡ଼ ପକ୍ଷୀକୁଳ ନଦୀ କଳକଳ ପଶୁ ଧର ତୃଣ କବଳ । ୨୮ ।
ଶୁଭ କାଳ ଜାଣି ବରକନ୍ୟା ଦେନି ବଦାଇଲେ ପୁରକାମିନୀ
ସ୍ୱମ ସଙ୍ଗେ କବା ଜନକଭବନେ କାତର ଧରଣୀନନ୍ଦନୀ
ଜନେ ହେ ! ଶୋକ ଗଦଗଦ ସକଳ
ଶୋକ ସହିବାକୁ କେ ହେବ ସମର୍ଥ ରାଜସୁତ ଯହିଁ ବକଳ । ୨୯ ।
ହାଦୋଳାରେ ବଜେ ବରକନ୍ୟା ଦେନି ବରହେ ଭସାଇ ସେ ପୁର
ବାଜଣ ଉଠିଲ୍ଲ ଏକାଳେ ପଞ୍ଚହ ଜଗଝମ୍ପ ଶଙ୍ଖ ମଧୁର
ଜନେ ହେ ! ଇନ୍ଦୁରେଖା ଶୋକ ଅଶେଷ,
ବଞ୍ଜା ସାହୁକାଙ୍କ ହୃତ ଭାବ ତୋଷେ ଶୃଙ୍ଗରୋଲ୍ଲେଖ କରେ ପ୍ରକାଶ । ୩୦ ।

## ୪୫ଶ ଛାନ୍ଦ

ରାଗ—ଲଳିତ କାମୋଦୀ

ଗୃତକ ଘନ ଅନନ୍ଦ ଗୁଣବତୀ ସତୀକ
ବୁଧାନେ ଘେନ ଏ ନବ ଗୀତ ଦେଇ ମନ୍ତକ
ରସିକ—ସାର ଶେଖର ଭାଷେ ପ୍ରୀତି ସ୍ୱତକ
ସୁରତ ଶେଷେ କୋଳରେ ଧର ସ୍ୱଗବତୀକ । ୧ ।
ବନ୍ଧୁଲି ଅଧର ଧର ଧୀରେ ବୋଲେ ନାଗର
ବାନ୍ଧବ ସ୍ନେହ-ବନ୍ଧନେ ବାନ୍ଧେ ସ୍ୱମ ସାଗର
ସାବର୍ଣ୍ଣୀ—ଗତ ପ୍ରୀତରେ ପ୍ରେତପତ ନଗର
ଶିବାରତ ଧର ଶିବକଣ୍ଠେ ଗର ନାଗର । ୨ ।

---

୨୭ । ଭରକାଷ୍ଠ-ଅଧାର—ହାତବାକ୍ସ, ବାକ୍ସ ।
୨୮ । ଜଡ଼—ସ୍ତମ୍ଭୀଭୂତ । ୨୯ । ସମର୍ଥ—କ୍ଷମ ।
୩୦ । ଜଗଝମ୍ପ—ବାଦ୍ୟବିଶେଷ । ମଧୁର—ମଦ୍ଦର ।

---

୧ । ବୁଧାନେ—ପଣ୍ଡିତମାନେ । ୨ । ଗର—ବିଷ । ନାଗ—ସର୍ପ ।

ଭାମିନୀ ପ୍ରେମେ ଦାମିନୀ ଜଳଧର ଅଙ୍ଗରେ
ସୁରଙ୍ଗିଣୀ ତରଙ୍ଗିଣୀ ପାରାବାରେ ରଙ୍ଗରେ
ନଶ୍ୱର—ବିଶ୍ୱେଁ ଜୀବାତ୍ମା ବିଶ୍ୱ ଆତ୍ମା ସଙ୍ଗରେ
ପରାଣେ ପରାଣ ମିଶେ ପ୍ରଣୟ ତରଙ୍ଗରେ । ୩ ।
ପ୍ରୀତିରେ ପାର୍ଥ ସାରଥୀ ହୋଇ କୃପାସାଗର
ବଳାଙ୍କ ଦେଲେ ଅଭୟ ବ୍ରଜବାଳୀ ନାଗର
ଜାଳିଲେ—ଜାଳି ମନ୍ଦାକ୍ଷ ଚନ୍ଦ୍ରାବଳୀ ଜାଗର
ଛନ୍ଦ ଧରି ଭଜେ ହରି ଅନନ୍ୟାସ୍ୟ ନାଗର । ୪ ।
ଭବେ ମାତୃସ୍ତନ୍ୟ ସ୍ତବେ ଦବ୍ୟକ୍ଷୀର ପ୍ରୀତିରେ
ଫଳ ମୂଳ ଜଳସରି ମଙ୍ଗଳଦା ଚିତ୍ତରେ
କୁମାର—ଦେଖ ଷଣ୍ମୁଖ ପ୍ରୀତି ଧରି ମତିରେ
ମନୋରମା ଛାଡ଼େ ପ୍ରାଣ ଯୋଗାରୂଢ଼େ ଭୀତିରେ । ୫ ।
ପ୍ରୀତିରେ ବନଗାମିନୀ ସୀତା ରାମ ସହିତ
ଶନ୍ତାଙ୍କୁ ତ ଦେଲା ଚନ୍ଦ୍ରା ଶନିକୋପ ଅହିତ
ଭୀମଜା—ଭୀମ ବିପାକେ ଦେବେ ଦେଲା ଦହିତ
ପିତା ସତ୍ୟ ଧରି ମରିବାକୁ ସଜ ରୋହିତ । ୬ ।
ହର ହରଷେ ବଳସେ କୋଳେ ଧରି ଶିବାକୁ
ବୃଦ୍ଧାଙ୍ଗୁଳି କାଟେ ଏକଲବ୍ୟ ଗୁରୁ ନେବାକୁ
ଗାଙ୍ଗେୟ—ପଣ ଛିଡ଼ରେ ବ୍ରହ୍ମଚର୍ଯ୍ୟେ ଥିବାକୁ
ଅଞ୍ଜନାସୁତ ଧାଇଁଲା ରାମଦାସ ହେବାକୁ । ୭ ।
ପୀରତିରେ ପରୀକ୍ଷିତ ଜଲେ ନାମ ଶ୍ରବଣ
ମରାଇଲା ବିଭୀଷଣ ବିଭୀଷଣ ରାବଣ
ସୁଧନ୍ୱା—ତପ୍ତ ତଇଲେ ବସି ଧରେ ଜୀବନ
ମଣି କଉସ୍ତୁଭ ଗଣି ମିଥ୍ୟା ନିଜ ଲବଣ୍ୟ । ୮ ।

---

୩ । ଦାମିନୀ—ବିଜୁଳି । ଘନ—ମେଘ । ନଶ୍ୱର—ମରଣଶୀଳ ।

୪ । ପାର୍ଥ—ଅର୍ଜୁନ । ମନ୍ଦାକ୍ଷ—ଲଜ୍ଜା ।

୫ । ମନୋରମା କାର୍ତ୍ତିକେୟଙ୍କର ସ୍ତ୍ରୀ । ( ପରଶୁରାମଙ୍କ ସହିତ ଯୁଦ୍ଧରେ ସ୍ୱାମୀର ମୃତ୍ୟୁ ଅବଶ୍ୟମ୍ଭାବୀ ଜାଣି ସ୍ୱାମୀର ମୃତ୍ୟୁ ପୂର୍ବରୁ ଯୋଗାବଲମ୍ବନପୂର୍ବକ ନିଜର ପ୍ରାଣ ଛାଡ଼ିଥିଲେ ) ।

୬ । ଚନ୍ଦ୍ରା—ଶ୍ରୀବତ୍ସ ରାଜାର ପତ୍ନୀ । ଭୀମଜା—ଦମୟନ୍ତୀ ।
ରୋହିତ—ହରିଶ୍ଚନ୍ଦ୍ରର ପୁତ୍ର, ରୋହିତାଶ୍ୱ ।

୭ । ହର—ଶିବ । ଏକଲବ୍ୟ ଜଣେ ଶବରର ପୁତ୍ର । ରାଜଗୁରୁ ଦ୍ରୋଣ ଏହାର ଗୁରୁ ହେବାକୁ ଅସ୍ୱୀକାର କରିଥିଲେ । ଏ ମାଟିରେ ଦ୍ରୋଣଙ୍କର ପ୍ରତିମୂର୍ତ୍ତି କରି ଏହାକୁ ଗୁରୁରୂପେ ପୂଜା କରି ଅସ୍ତ୍ରଶସ୍ତ୍ର ଶିକ୍ଷା କରି ଦକ୍ଷତା ଲାଭ କରିଥିଲା । ଅସ୍ତ୍ର ବିଦ୍ୟାରେ ଦୈବାତ୍ ଥରେ ପାଣ୍ଡବ ଓ କୌରବମାନଙ୍କ ଠାରୁ ନିଜର ଉତ୍କର୍ଷତା ଦେଖାଇବାରୁ ଦ୍ରୋଣ ଗୁରୁ ଦକ୍ଷିଣା

ପ୍ରହ୍ଲାଦ ତରେ କି ହରିପ୍ରେମେ ଆସି ସ୍ତମ୍ଭକୁ
ନ ବାନ୍ଧନ୍ତି ବୃନ୍ଦଶ୍ରବାପଦ ଶୁକ ସନକ
ଜନକ—ଦେଲେ ଶୁକଙ୍କୁ ମୁଖେ ପ୍ରେମ ଚମକ
କିଶୋରୀ ନାମେ ବସିଲା ଅପବାଦ ଟମକ । ୯ ।
ପୀରତିର ଭାରତୀରେ କର ନୋହେ କଳଣା
ପୀରତି ସଂସାର ସାର ନାହିଁ ତାର ତୁଳନା
ବାହାରେ—ପ୍ରୀତି ପସ୍ୱ ଏ ଦିଶେ କେତେ ଛଳନା
ଇନ୍ଦ୍ରଜାଲ ସତ୍ୟ ସମ ସତ୍ୟେ ନୋହେ ଭରଣା । ୧୦ ।
ଅଗ୍ନି ପତଙ୍ଗ ପୀରତି ନୋହେ କେଉଁ ପୀରତି
ଚନ୍ଦ୍ରର କୁମୁଦେ ଯାହା ନୁହଇ ତା ସୁରତି
ଚକୋରେ—ବାଧୁ କାହିଁକି ଅରଜିବ କୀରତି
ବନଦେ ପ୍ରୀତି ନ ଦିଏ ବିଷକଣ୍ଠ ମୁରତି । ୧୧ ।
ଜଳଧରକୁ ଚାତକ କେଉଁ ତୋଷେ ନାହିଁ ତ
ପଦ୍ମକୁ ତୋଷଇ ରବି ପୁଣି ଦିଏ ଦାହ ତ
ଗାବରେ—ତୃଣ ପୀରତି କାହୁଁ ହେବ ଲିହାତ
କ୍ଷୀର ନୀରର ଦିଶଇ ଏକା ପ୍ରୀତି ବିହିତ । ୧୨ ।
ଲୌକିକ ପ୍ରେମରୁ ଭଗବତ ପ୍ରେମ ସୁନ୍ଦର
କାମ ଧରିଥାଇ ସଦା ବିଷଫଳ ମନ୍ଦର
ପ୍ରଣୟ—ବିନା ତେଣୁ ଏ ଜଗତଟି କନ୍ଦର
ବିଶ୍ୱପ୍ରେମ୍ମ ଈଶପ୍ରେମ ଏ ଯେ ହରି ହୃନ୍ଦର । ୧୩ ।
ପ୍ରୀତିର ଅଦ୍ଭୁତ ସ୍ରୀତ ଅଦ୍ଭୁତ ତା ସାଧନ
ପୀରତି-ଅନନ୍ଦସିନ୍ଧୁ ତ୍ୟାଗେ ଶାନ୍ତି ଶୋଧନ
ରୋଧଟି—ଚିତ୍ତବୃତ୍ତିର, ଭାବ କରେ ବର୍ଦ୍ଧନ
ପୀରତିବିହୀନ ଜନ ଜଗତରେ ନିର୍ଦ୍ଧନ । ୧୪ ।
ଅଣିମାଦି ଅଷ୍ଟ ସିଦ୍ଧି କାହୁଁ ହେବେ ପ୍ରୀତିକି
ମଙ୍ଗଳର ମଙ୍ଗଳ ଏ ନାଶେ ତାପତତିକି
ପ୍ରୀତିଅ—ପାଳେ ପ୍ରୀତିକି ତେଜି ମନୁ ଭ୍ରାନ୍ତିକି
ବରିଅଣେ ସହଜରେ ମୁକ୍ତିକି ଭକତିକି । ୧୫ ।
ପବିତ୍ର ମତ ପ୍ରୀତିର ସଦା ଅନୁଗୁଣୀ ।
ସ୍ୱାର୍ଥହୀନତା ତା ମୂଳ ସୂତ୍ର ଧର୍ମକାରିଣୀ
କରମ—ଫଳତ୍ୟାଗଟି ଏକା ଭବେ ତାରିଣୀ
ଅବଳରେ ନୋହେ ମତ ପ୍ରୀତିବିମ୍ବ ଧାରିଣୀ । ୧୬ ।

---

ସ୍ୱରୂପ ଏହାର ଦକ୍ଷିଣ ହସ୍ତର ବୃଦ୍ଧାଙ୍ଗୁଳିକୁ ମାଗିଲେ । ଏକଲବ୍ୟ ଅକୁଣ୍ଠିତଚିତ୍ତରେ ଏହା ସ୍ୱରୂପଙ୍କୁ ଦେଲା । ଗାଙ୍ଗେୟ—ଭୀଷ୍ମ । ଅଞ୍ଜନାସୁତ—ହନୁମାନ । ୯ । ବୃନ୍ଦଶ୍ରବା—ଇନ୍ଦ୍ର ।

ପାପ ପ୍ରଲୋଭନ ପ୍ରୀତି ଦୂରୁ କରେ ଜୁହାର
ପ୍ରୀତିରୁ ଅକ୍ଷୟ ସୁଖଶାନ୍ତି ହୋଏ ବାହାର
ପୀରତି—କେଉଁ କାଳରେ ନ ଲଭଇ କାହାର
ଶଶ ପୀରତିକି ଶଶୀ କରିଛନ୍ତି ବାହାର । ୧୭ ।
କିଣା ପୀରତିରେ ତୋର ଯୋଗି ଯୋଗଭଙ୍ଗିନୀ
ରସିକାମୁକୁଟମଣି ଶାନ୍ତିରସସଙ୍ଗିନୀ
ସୁଧାଂଶୁ—ହାସସୁଧାରେ ସୁଧା ବୋଲୁ ଢଙ୍ଗିଣୀ !
ବାଣୀ ଭରେ ମୂକ ପିକ ଷଡ଼ବଂଶ ରାଗିଣୀ । ୧୮ ।
ଭାଗ୍ୟତରୁକୁ ଚନ୍ଦନ କଲ୍ପ ହୋଇ ମଳୟ
ଧ୍ରୁବଲୋକୁ ବଳି ଲୋକ ହେଲା ଏହୁ ଆଳୟ
ମାନସ—ଅସୁଖ କଲେ ଭାତ ବଳ ପ୍ରଳୟ
ବାଞ୍ଛେ ଜନ୍ମେ ଜନ୍ମେ କରେ ହେବା ଜାଗି ବଳୟ । ୧୯ ।
ରଖେ ଭାବ ସଦାକାଳେ ପତିବ୍ରତା ଲଳନା
ସତୀ ସଙ୍ଗତିକି ଅବା ଜଗତେ କି ତୁଳନା
ବାଧିରେ—ସତୀ ଗର୍ବରେ ନାହିଁ କିଛି ଛଳନା
ସୁରୂପା ଯେ ପତିବ୍ରତା ବ୍ରତ କରେ ପାଳନା । ୨୦ ।
କାର୍ଯ୍ୟେ ମନ୍ତ୍ରୀ ସ୍ନେହେ ମାତା ସୁରସଭିକା ଚରଣେ
ଧରମେ ପତ୍ନୀ ସତତ ସର୍ବଙ୍ଗାତରଣେ
ବୁଧାନେ—ଧରା ସମାନ କ୍ଷମାଗୁଣ ଧାରଣେ
ସ୍ୱୟଂନେ ନଷ୍ଟଯୋଷିତା କାମତାପ ହରଣେ । ୨୧ ।
ପତି ଶୁଶ୍ରୂଷାରେ ସତୀ ଦେଇ ଥାଇ ଚିତ୍ତକୁ
ପ୍ରଜା ଅନୁପାଳନରେ ବଢେ ନୀତି ମତକୁ
ସାଧଇ—ବନ୍ଧୁ କଲ୍ୟାଣ ପାଳି ବୈଧୀ ନୀତିକୁ
ଅକୈତବେ କରେ କର୍ମ ବୁଝେ ପ୍ରୀତି ରୀତିକୁ । ୨୨ ।
ଧର୍ମ ଅର୍ଥ କାମ ମୋକ୍ଷ ସତୀ ପତ୍ନୀ ଅବର
ଅସାର ଧରାକୁ ସାର ସୁରାଳୟ କରଇ
ବାଚର—ପ୍ରେମ ସଲିଳ କାନ୍ତତାପ ସାରଇ
ଅଶ୍ରୁବିନ୍ଦୁ ଲୋକଭୂତିକି ଭବେ ଅଣି ପାରଇ । ୨୩ ।
ପତିପ୍ରେମେ ସତୀ ତୁଚ୍ଛ କରେ ସ୍ୱର୍ଗଭୂତିକି
ନିର୍ଜନ ରୋଗୀ ହେଲେ ସେ ଲଭେ ସେବା ଗତିକି
ପ୍ରେମିକା—ଶାନ୍ତ ସମାନ କେ ନ ଲଭେ ଶାନ୍ତିକି
ବ୍ରତ ତୀର୍ଥ ଯଜ୍ଞଫଳ ଭୋଗେ ତୋଷି ପତିକି । ୨୪ ।

---

୧୭ । ଶଶ—ଠେକୁଆ । ଶଶୀ—ଚନ୍ଦ୍ର । ୧୮ । ସୁଧାଂଶୁ—ଚନ୍ଦ୍ର । ୧୯ । ଅଳୟ—ଗୃହ ।
୨୧ । ଧରା—ପୃଥିବୀ । ଭଙ୍ଗାଚରଣେ—ହାସ୍ୟକୌତୁକରେ ।
୨୨ । ଅକୈତବ—ଅକପଟ । ୨୩ । ସୁରାଳୟ—ଦେବଲୋକ । ସଲିଳ—ଜଳ ।

ପର ପୁରୁଷ ଗୃହକୁ ମଣେ ଅହିଦଂଶନ
ପତି ଅସୁଖକୁ ମଣେ ଯଥା ବିଷ ଅଶନ
ବିଗୁରି—ଢଙ୍ଗରେ ପ୍ରେମିକା ମନ୍ଦାକ୍ଷକୁ ବସନ
ବାଞ୍ଛି ସତୀ ମତି ନିତି ପତି ପ୍ରୀତି ଅସନ । ୨୫ ।
କେତେ ଜନ୍ମ ଗଙ୍ଗାରେ ମୁଁ ହାସିଥିଲି ନାଗର !
ସେ ପୁଣ୍ୟବଳରେ ଲଭି କଲି ରସସାଗର
ସଖି ହେ ! ବିନା କ୍ଲେଶରେ ଲଭଇ କେ ମଣିକି
ହାତ ବଢ଼ାଇ କେ ଅଣେ ଅପବର୍ଗ ପାଣିକି । ୨୬ ।
ସତୀଙ୍କ ତେଜଇ ଯେତୁ ଶ୍ରେଷ୍ଠ ଯୋଗୀ ନୁହଇ
ଭବ ଅପାରଗତାରେ ଅଶାନ୍ତିକି ବହଇ
ସଖି ହେ ! କ୍ଷଣେ ନାରୀଙ୍କ ଛାଡ଼ନ୍ତି କି ଯେ ଶିବ
ଜନକ ପରି ଯେ ହେବ ସତୀଠାରେ ରସିବ । ୨୭ ।
ସତୀ ତେଜିଲେ ଚୈତନ୍ୟ ବୁଦ୍ଧ ରାଧାରମଣ
ସ୍ୱୟଂ ହରି କଥା କେବେଁ ଆନ ପରି ନ ମଣ
ସତୀର—ଅନୁମତିରେ କେହୁ ସତୀ ତେଜଇ
ନ ହୁଅଇ ଶ୍ରେଷ୍ଠ ଯୋଗୀ ଯୋଗୀଭାବେ ରାଜଇ । ୨୮ ।
ବେଶ୍ୟା ସଙ୍ଗତରେ କେହୁ ଲଭଇ କି ପ୍ରୀତିକି
ଅଶାନ୍ତି ସଙ୍ଗେ ଅରଜେ ବଳେ ଅକୀରତିକି
ସଖି ହେ ! ବେଶ୍ୟା ଛଳରେ ପର ମନ ମୋହଇ
ଶୟନେ ଗଣିକା ରୀତି ପତିବ୍ରତା ବହଇ । ୨୯ ।
ପ୍ରୀତି ବେଶ୍ୟା ଦେବ କାହୁଁ ଧନ ମୂଳ କରଇ
ମନକୁ ନ ଦେଇ କାଣେ ମୋହି ଜାଣି ପାରଇ
ସଖି ହେ ! ବାରଯୋଷିତ ଭୋଗ ରୋଧେ ମୁକ୍ତିକି
ଲଜ ସମ୍ଭ୍ରମ ଯେ ତେଜେ ବହିବ କି ପ୍ରୀତିକି । ୩୦ ।
ଶୟନସୁଖରତନ ସତୀ ଧୀରା ଭାମିନୀ
ଅଖଣ୍ଡ ଖେଦକୁ କରେ ଭୋଗ ପ୍ରିୟା ଭ୍ରମିନୀ
ସଖି ହେ ! ସତୀ ସଙ୍ଗତ ସାର ବିନା ପତିଙ୍କି
ସଂସାରୀ ଲଭେ ଗତିକି ଲଭି ହୃଷ୍ଟା ପ୍ରୀତିକି । ୩୧ ।
ଗୃହ ବାଣୀରେ ନାଗର ତୋଷେ ନାରୀରତନ
ଅରସିକ ମନ ଛନ୍ଦ କରି ଦେବ କଉନ
ଧୀରେ ହେ ! ସତୀ ପ୍ରଶଂସା କଲେ ଶାନ୍ତି ମିଳିବ
ଶ୍ରୀ ଗୋଲୋକଚନ୍ଦ୍ର ଭାଷେ ସତୀଙ୍କ କେ ବଳିବ । ୩୨ ।

୨୫ । ଅଶନ—ଭକ୍ଷଣ । ୨୭ । ଜନକ—ରାଜର୍ଷି ଜନକ । ୨୯ । ଅକୀରତି—ଅକୀର୍ତ୍ତି, ଅପଯଶ ।

## ୪୭ଶ ଛାନ୍ଦ

ରାଗ—ଚନ୍ଦ୍ରଭୈରବ

ଧୀରେ ଧେନ ଏ ଗ୍ରନ୍ଥ ନିଧିରେ    ଧୀରେ ଦେବ ଏ ମୁଦ ବାରିଧିରେ
ଧୀରେ କାନ୍ତ କାନ୍ତ ପ୍ରଶସ୍ତ ଏକାନ୍ତ
ମଜ୍ଜାଇବ ରସବାରିଧିରେ ହେ । କୋବିଦେ । ୧ ।
ବନ୍ଧ ଛନ୍ଦରେ ଦେଖ ବିବନ୍ଧ    ବନ୍ଧ ରଚି ପଢ଼ନ୍ତି ପ୍ରବନ୍ଧ
କବନ୍ଧନ ଅଶେଷେ ସୁରତବିଳାସେ
ମଣି ଭାବରୁ କାମ-କବନ୍ଧ ହେ । କୋବିଦେ । ୨ ।
ରତିମୋହିନୀ କାନ୍ତ ସୁରତ    ରତି ପ୍ରମାଣେ ନାହିଁ ବିରତ
ରତୀଶସୁନ୍ଦର ଫଳିତ ଅନ୍ତର
ଦିଏ ବିଦଗ୍ଧା ଗ୍ରନ୍ଥି କରନ୍ତି ହେ । କୋବିଦେ । ୩ ।
ଅନ କାହିଁ ନ ରଖି ଧିଆନ    ଅନନର ଲୋକନେ ଧିଆନ
ଆନନ୍ଦେ ଭାସନ୍ତି ଦେଖି ଜାୟାପତି
ତାଙ୍କ ପ୍ରମୋଦେ କେ ତୁଳା ଅନ ହେ । କୋବିଦେ ୪ ।
ମାନ କି ଅବା ଗୁମାନ ମାନ    ମାନସରେ ନ ଜାଣି ଏମାନ
ମାନସରେ ରହି ଯଥା ହଂସ ହଂସୀ
ତଥା କାନ୍ତକାନ୍ତା ସନମାନ ହେ । କୋବିଦେ । ୫ ।
ମତ୍ତକାଶିନୀ ନୋହେ ଅମତ୍ତ    ମତ୍ତ ନାଗର ଭାବେ ଉନ୍ମତ୍ତ
ମତ୍ତବାହୁଳରେ ଲୀଳାବିଳାସରେ
ପ୍ରକାଶିତ କାମ ଅଭିମତ ହେ । କୋବିଦେ । ୬ ।
ରସାମନ୍ତ୍ରନା କାନ୍ତ ଭରସା    ରସାଳସା ନ ହେଉ ନିରସା
ରସାଦରେ ପତି ତୋଷଇ ଯୁବତୀ
କରେ ସୁହାସୀ ମତୀ ସରସା ହେ । କୋବିଦେ । ୭ ।
ବର ସନ୍ତୋଷେ ସୁମନାବର    ବର ତୋଷଇ ସୁମନାବର
ବରଷଇ ପ୍ରୀତି ପତି ପତ୍ନୀ ତୃପ୍ତି
ସୁରପ୍ରଶଂସିତ ସେ ନବର ହେ । କୋବିଦେ । ୮ ।

---

( ଏ ଛନ୍ଦ ଛିଦ୍ରାବଲୋକନରେ ହୋଇଅଛି । )

୧ । ଧୀରେ—ପଣ୍ଡିତମାନେ, ମନରେ, ଅସ୍ତେ ଅସ୍ତେ । ବାରିଧି—ସମୁଦ୍ର ।
୨ । କବନ୍ଧ—ଚଳନଶୀଳ ମସ୍ତକହୀନ ଶରୀର ।
୩ । ରତୀଶ—କାମ । ବିଦଗ୍ଧା—ରସିକା ।
୪ । ଧୀ—ଉଦ୍ଦେଶ୍ୟ, ଧାରଣା, ମନ, ବୁଦ୍ଧି । ଅନ—ମର୍ଯ୍ୟାଦା । ଧିଆନ—ଧ୍ୟାନ ।
୫ । ମାନସରେ—ମାନସସରୋବରରେ । ୬ । ମତ୍ତକାଶିନୀ—ଉତ୍ତମା ସ୍ତ୍ରୀ ।
୭ । ନିରସା—ରସହୀନା । ୮ । ସୁମନା—ନାରୀ । ବର—ଶ୍ରେଷ୍ଠ, ଅତି, ପତି ।

ମାର ସ୍ୱବଶେ ବାମା କୁମାର ମାର ମଣି ସ୍ୱଶେଷିଶୁମାର
ମାର୍ତ୍ତଣ୍ଡ ସରେ ଧରନ୍ତି ଅବେଗେ
ବୋଲି ଦରପଦ୍ମ ମାର ମାର ହେ । କୋବଦେ । ୯ ।

ବନଜାକ୍ଷୀ ଯେନି ଉପବନ ବନଜହ୍ଲାଦ ମଣି ପାବନ
ବନଜନୀ ସଙ୍ଗେ ଭ୍ରାନ୍ତସେ ରଙ୍ଗେ
ଗନ୍ଧ ଦିଏ ସୁଗନ୍ଧ ପବନ ହେ । କୋବଦେ । ୧୦ ।

ପୁରଶୋଭନା ସେ ପ୍ରଭାପୁର ପୁର ଅନ୍ତର ଦିନେ ନୂପୁର
ପୁରନ୍ତ ପନ୍ତର ନ ଅଛି ଅନ୍ତର
କର ଗମେ ଖେଦେ ଆନ ପୁର ହେ । କୋବଦେ । ୧୧ ।

ପଦ୍ମ ସେକାଳେ ନୋହେ କୁପଦ୍ମ ପଦ୍ମ-ରଦ୍ଧର ଦିଏ କ୍ଷେପଣ
ପଦ୍ମ-ସାବର୍ଣ୍ଣୀର କରେ ନାର କାର
ଲହ୍ମ କା ହେବ ଥାଇ ସମନ୍ତ୍ରି ହେ । କୋବଦେ । ୧୨ ।

ଯୋଗ ଭାବ କାନ୍ତ ନୋଲେ ଯୋଗ ଯୋଗବର୍ଗିନୀ ଯୋଡ଼େ ସୁଯୋଗ
ଯୋଗ ଭୁବେ ହେଳେ ଏକକୁ ଅବେଳ
ତାପଦାହକ ହେଲୁ ବିଯୋଗ ହେ । କୋବଦେ । ୧୩ ।

ଦିନେ କାନ୍ତା ପଣ୍ଡୁବର୍ ଦୀନେ ଦିନେଶ କି ଦିଅନ୍ତି ଦୁର୍ଦ୍ଦିନେ
ଦୀନେ କାନ୍ତ ଭଣି ତାଙ୍କର ପଦ୍ମିନୀ—
ବନ୍ଧୁ ଘନରୁ ଅଣି ଦିନେ ହେ । କୋବଦେ । ୧୪ ।

ଧର ଖେଦ ଦିନେ ବିମ୍ବାଧରା ଧରଣୀରେ କାନ୍ତ କାନ୍ତ ଧର
ଧରିବ କେ ଜୀବ କହେ ଘୁଣ୍ଡି ଜୀବ—
ଧବ ବିଚ୍ଛେଦବେଦନା ଧର ହେ । କୋବଦେ । ୧୫ ।

କାନ୍ତ କାନ୍ତାକୁ କହେ ଏକାନ୍ତ କାନ୍ତ ସୋହାଗୀ କରେ ଶୋକାନ୍ତ
କାନ୍ତର ଚିହ୍ନାଇ ଫିଟାଇ ଫିଟାଇ
ଦୁଏ ବଳେ ଶଙ୍କାଅନ୍ତକାନ୍ତ ହେ । କୋବଦେ । ୧୬ ।

---

୯ । ଶିଶୁମାର—ତାରାଚକ୍ରବିଶେଷ । ମାର୍ତ୍ତଣ୍ଡ—ମାର୍ତ୍ତଣ୍ଡ, ସୂର୍ଯ୍ୟ ।
୧୦ । ବନଜାକ୍ଷୀ—ପଦ୍ମନୟନା ସ୍ତ୍ରୀ ।
୧୧ । ପୁରନ୍ତ—ଅଗରୁ ।
୧୨ । ସାବର୍ଣ୍ଣୀ-ପଦ୍ମ—ବିଧାତା । ପଦ୍ମ-ରଦ୍ଧ = ରନ୍ଧ୍ରପଦ୍ମ ।
୧୩ । ଯୋଗ—ମିଳନ, ଉପାୟ । ବିଯୋଗ—ବିରହ ।
୧୪ । ଦିନେଶ—ସୂର୍ଯ୍ୟ । ଦୀନେଶ—ଦୁଃଖିନୀ ସ୍ତ୍ରୀର ପତି । ପଦ୍ମିନୀ-ବନ୍ଧୁ—ସୂର୍ଯ୍ୟ, ପଦ୍ମିନୀ ସ୍ତ୍ରୀର ପତି ।
୧୫ । ଧରଣୀରେ କାନ୍ତ—ପୃଥିବୀରେ ସୁନ୍ଦର ।
୧୬ । ଅନ୍ତକାନ୍ତ = ଅନ୍ତକ + ଅନ୍ତ; ଅନ୍ତକ—ଯମ ।

ଘନବେଣୀ ଧନେ ଦେଖି ଘନ ଘନ ରସେ କାନ୍ତକୁ ସଘନ
ଘନ ଆଲିଙ୍ଗନ କରନ୍ତେ ବହନ
ଖସେ ଅଞ୍ଚଳ ଧନେ ଜଘନ ହେ । କୋବିଦେ । ୧୭ ।

କାଶହାସକୁ କରି ବିକାଶ ତା ସଙ୍ଗରେ କଲି କି ପ୍ରକାଶ
କାଶ କାଶ ହୋଇ କହୁଁ ଲାଜେ ସଖୀ
କାନ୍ତ ବୋଲେ କାହିଁ ଅବକାଶ ହେ । କୋବିଦେ । ୧୮ ।

ଫୁଲବନକୁ ଧନେ ଉତ୍‌ଫୁଲ ଫୁଲ ନାଗର ଅଣି ପ୍ରଫୁଲ୍ଲ
ଫୁଲଶର ଏହି କହୁଁ ଗୃହମୁହାଁ
ଜହେ କାହିଁକି ନାଗର ଫୁଲ ହେ । କୋବିଦେ । ୧୯ ।

ସାରସମୁଖୀ ଧନେ କାସାର ସାର କେଳିକି କାନ୍ତେ ପ୍ରସାର
ସାର ଶୋଭିକାନ୍ତ ବୋଲୁ ସେ ଏକାନ୍ତ
ବୋଲେ ତହିଁ ତ ସ୍ମରବିସାର ହେ । କୋବିଦେ । ୨୦ ।

ଖେଳାରସେ ବେଳାମତ ଖେଳା ଖେଳାଇ ପଣା ନ ଖେଳୁ ଖେଳା
ଖେଳାଖେଳା ମୋହି କାନ୍ତ ରଙ୍ଗେ କହି
ଖେଳା ପାଳି ହେବ ଶୁଚି ଖେଳା ହେ । କୋବିଦେ । ୨୧ ।

ରସିକ ଧନେ ଲୀଳାରେ ରସି ରସିକାକୁ କହଇ ଉରସି
ରସିବାକୁ ଶିବେ ଦିଗମ୍ବରୀ ହେବେ
ତୋଷ ସୁରତରଙ୍ଗିଣୀ ରସି ହେ । କୋବିଦେ । ୨୨ ।

କରଯୋଡ଼ୁ ଦେଖି ସୁଧାକର କରକରଦନା କାନ୍ତକର
କରେ ଯାଡ଼େ ରଙ୍ଗେ ଚଳାଇ ଅପାଙ୍ଗେ
କହି କୁମୁଦିନୀ ସୁଖକର ହେ । କୋବିଦେ । ୨୩ ।

ବରବରଣୀର ସେ ପୀବର ବରଷାରେ କି ସେ ସରୋବର
ବର ହଂସ ହୋଇ ଖେଳେ ରଙ୍ଗ ବହି
ଭଷେ ସ୍ନେହ ମୁକୁତା ଅବର ହେ । କୋବିଦେ । ୨୪ ।

---

୧୭ । ଅଞ୍ଚଳ—କାନି ପଣତ । ଜଘନ—ଜଙ୍ଘ ।
୧୮ । ଅବକାଶ—ଅବସର ।
୧୯ । ଫୁଲଶର—କାମର ଫୁଲଶର ।
୨୦ । ସାରସ—ପଦ୍ମ । ବିସାର—ମୀନ ।
୨୧ । ଶୁଚି—ପବନ, ଶୃଙ୍ଗାରରସ ।
୨୨ । ଦିଗମ୍ବରୀ—ନଗ୍ନା ।
୨୩ । ସୁଧାକର—ଚନ୍ଦ୍ର । କୁମୁଦିନୀ—କଇଁଫୁଲ; ଦୁଃଖିନୀ ।
୨୪ । ସରୋବର—ପୁଷ୍କରିଣୀ ।

ବସନଶୋଭୀ ବାମା ବିବଶ ବସନ୍ତ ସଙ୍ଗେ ହେଲେ ଅବଶ
ବସନ ପାଲଟେ ଯେଝାଲେ କପଟେ
କାନ୍ତ, କାନ୍ତା, ବୋଲେ ବସ ବଶ ହେ । ଢୋଲବଦେ । ୨୫ ।

ଶେଷଶାୟୀ ସଙ୍ଗେ ଶନ୍ତ୍ରେ ଶେଷ ଶେଷ ପଦେ ଗୋଲୋକ ବିଶେଷ
ଶେଷ ନୋହେ ପ୍ରୀତି ବଢ଼େ ନିତି ନିତି
ବର୍ଣ୍ଣି ପାରେ କେ କବି ନିଃଶେଷ ହେ । ଢୋଲବଦେ । ୨୬ ।

---

୨୫ । ବଶ—ବଶୀଭୂତ, ମୁଗ୍ଧ ।

୨୬ । ଶେଷଶାୟୀ—ହରି । ଶେଷ—ଶେଷଦେବ, ଅନନ୍ତ ।

# ଉତ୍ତର ଭାଗ

## ୪୭ ଛାନ୍ଦ

ରାଗ—ରାମକେଶୀ

| | |
|---|---|
| ବନ୍ଦେ ବିଧୁ ଶୋଭା ଯୁକତ | ଧର ତମକୁ ହର |
| ସର୍ବତାପ ନାଶ ରଙ୍ଗତେ | ସାନୁମାନେ ବିହର । ୧ । |
| କୁମୁଦ ରଙ୍ଗରେ ବଢ଼ାଇ | ପରଚକ୍ରେ ବିଦର |
| ସୁରଭି ମେଳରେ ଶିବଦ | ତୋଷ ସୁମନେ କର । ୨ । |

---

ଏ ଛାନ୍ଦ ଉତ୍ତରଭାଗର ପ୍ରଥମ ଛାନ୍ଦ । ଏଥିରେ ମଙ୍ଗଳାଚରଣରେ ଶ୍ରୀକୃଷ୍ଣ, ଶିବ ଓ ଚନ୍ଦ୍ରଙ୍କୁ ଭିନ୍ନ ଅର୍ଥରେ ସ୍ତବ କରାଯାଇଅଛି ।

୧ମ ପଦ । ଶ୍ରୀକୃଷ୍ଣଙ୍କ ଅର୍ଥରେ—ହେ ବିଧୁ ( କୃଷ୍ଣ ) ଆପଣ ଶୋଭାଯୁକ୍ତ ( ମନୋହର ) ଅଟନ୍ତି । ଆପଣ ମୋତେ ଧର ( ମୋତେ ରକ୍ଷା କର ) ଓ ତମକୁ ( ପାପକୁ ) ହର ( ହରଣ କର ), ସର୍ବତାପକୁ ( ମହାଦେବଙ୍କର ତାପକୁ ବା ତ୍ରିତାପକୁ ) ନାଶ କରନ୍ତୁ । ରଙ୍ଗରେ ସାନୁମାନେ ( ଶୀଳଶିଖରେ ) ବିହର ( ବାସ କରନ୍ତୁ ), ମୁଁ ଆପଣଙ୍କୁ ବନ୍ଦନା କରୁଅଛି ।

୧ମ ପଦ । ଶିବଙ୍କ ଅର୍ଥରେ—ହେ ବିଧୁ ଶୋଭାଯୁକ୍ତ ହର ( ଚନ୍ଦ୍ରଶେଖର ମହାଦେବ ) ଆପଣ ତମ ( ତମଗୁଣକୁ ) ଧର ( ଧରନ୍ତୁ ) । ଆପଣ ସର୍ବତାପକୁ ( ତ୍ରିତାପକୁ ) ନାଶ କରନ୍ତୁ ଓ ରଙ୍ଗରେ ସାନୁମାନେ ( କୈଳାସ ଶିଖରରେ ) ବିହର (ବାସ କରନ୍ତୁ ), ମୁଁ ଆପଣଙ୍କୁ ବନ୍ଦନା କରୁଅଛି ।

୧ମ ପଦ । ଚନ୍ଦ୍ରଙ୍କ ଅର୍ଥରେ—ହେ ଶୋଭାଯୁକ୍ତ ବିଧୁ ( ମନୋହର ଚନ୍ଦ୍ର ) । ଆପଣ ତମକୁ ( ଅନ୍ଧକାରକୁ ) ହର ( ହରଣ କରନ୍ତୁ ), ମୋତେ ଧର ( ରକ୍ଷାକର ) ସର୍ବତାପ ( ମହାଦେବଙ୍କର ବିଷଜ୍ୱାଳାକୁ ) ନାଶ କରନ୍ତୁ । ରଙ୍ଗରେ ସାନୁମାନେ ( ଉଦୟଗିରି ଓ ଅସ୍ତଗିରିରେ ) ବିହାର କରନ୍ତୁ । ମୁଁ ଆପଣଙ୍କୁ ବନ୍ଦନା କରୁଅଛି ।

୨ୟ ପଦ । ଶ୍ରୀକୃଷ୍ଣଙ୍କ ଅର୍ଥରେ—ହେ କୃଷ୍ଣ ! ଆପଣ କୁ ( ପୃଥିବୀର ) ମୁଦ ( ଆନନ୍ଦକୁ ) ରଙ୍ଗରେ ବଢ଼ାନ୍ତୁ । ପରଚକ୍ରେ ( ଶତ୍ରୁମାନଙ୍କୁ ବା ବିଧର୍ମୀମାନଙ୍କୁ ) ବିଦର ( ବିନାଶ କରନ୍ତୁ ) । ସୁରଭି ମେଳରେ ( ଦେବତାମାନଙ୍କର ଭୟ ସମୟରେ ) ଶିବଦ ( ମଙ୍ଗଳଦାତା ହୋଇ ) ସୁମନେ ତୋଷ କର ( ଦେବତାମାନଙ୍କୁ ତୋଷ ଦିଅନ୍ତୁ ) କିମ୍ବା ସୁରଭି ମେଳରେ ( ତୁଳସୀ ସର୍ବଦା ଆପଣଙ୍କ ସଙ୍ଗରେ ଥାଏ ) ଆପଣ ଶିବଦ ( ମଙ୍ଗଳଦାତା ) ଓ ସୁମନେ ( ସାଧୁମାନଙ୍କୁ ) ତୋଷ ଦିଅନ୍ତୁ ।

୨ୟ ପଦ । ଶ୍ରୀକୃଷ୍ଣଙ୍କ ଅର୍ଥ ଅନ୍ୟପ୍ରକାର—ହେ ହରି ! ଆପଣ ପୃଥିବୀର ଆନନ୍ଦକୁ ରଙ୍ଗରେ ( କ୍ରୀଡ଼ାରେ ) ବଢ଼ାଇ ପର ( ଶତ୍ରୁମାନଙ୍କୁ ) ଚକ୍ରେ ( ଚକ୍ରଦ୍ୱାରା ବା କୂଟରେ ) ବିଦର ( ମାରନ୍ତୁ ) ଏବଂ ସୁରଭି ମେଳରେ ( ଗୋବତ୍ସ ସଙ୍ଗରେ ) ଥାନ୍ତୁ ଏବଂ ମଙ୍ଗଳଦାତା ହୋଇ ସାଧୁମାନଙ୍କର ତୋଷ ସାଧନ କରନ୍ତୁ ।

ବନ୍ଦିତ ଅମ୍ବରବାସ ହେ      କରେ ମଦନ ଧର
ତାରାପତି ଭାବେ ସନ୍ତାପେ      ନାନାରଙ୍ଗେ ବିହର । ୩ ।

---

୨ୟ ପଦ । ଶିବଙ୍କ ଅର୍ଥରେ—ହେ ଶିବ, ଆପଣ ପୃଥିବୀର ଆନନ୍ଦକୁ ରଙ୍ଗରେ ବଢ଼ାଇ ପରଚକେ ( କାମର କୁଟମାନଙ୍କୁ ) ବଦର ( ନାଶ କରନ୍ତ ବା ଶତ୍ରୁମାନଙ୍କୁ ନାଶ କରନ୍ତ ) ଏବଂ ସୁରଭି ମେଳରେ ( ଆପଣଙ୍କ ସଙ୍ଗରେ ଧାତୁରି ଥାଏ ) ଆପଣ ମଙ୍ଗଳଦାୟୀ ଅଟନ୍ତ ଓ ସାଧୁମାନଙ୍କୁ ତୋଷ ଦଅନ୍ତ ।

୨ୟ ପଦ । ଚନ୍ଦ୍ରଙ୍କ ଅର୍ଥରେ—ହେ ଶିବ, ଆପଣ କୁମୁଦ ରଙ୍ଗରେ ବଢ଼ାନ୍ତ ଅର୍ଥାତ୍ କିରଣସୁଧାଦ୍ୱାରା କଇଁ ଫୁଲକୁ ଫୁଟାନ୍ତ ଏବଂ ଆପଣ ପର ( ଶତ୍ରୁର ) ଚକେ ( କୁଟମାନଙ୍କୁ ) ବିଦର ( ପ୍ରକାଶ କରିଥିଲ ) । ଏଠାରେ ମୋହିନୀକନ୍ୟାର ସୁଧାପରିବେଷଣ ଓ ରାହୁର ଶିରଶ୍ଛେଦନକୁ ଲକ୍ଷ୍ୟ କରାହୋଇଛି । ସୁରଭିମେଳରେ ଅର୍ଥାତ୍ ଦେବତାମାନେ ଯେତେବେଳେ ଭୟରେ ପଡ଼ିଥିଲେ, ଆପଣ ଶିବଦ ( ମଙ୍ଗଳଦାତା ବା ଅମୃତପ୍ରଦ ହୋଇ ) ସୁମନେ ତୋଷକର ( ଦେବତାମାନଙ୍କୁ ତୋଷ ଦେଇଅଛନ୍ତି ଅର୍ଥାତ୍ ଆପଣଙ୍କଠାରୁ ଅମୃତ ପାନ କରି ଦେବତାମାନେ ଅମର ହୋଇଅଛନ୍ତି ) ।

୨ୟ ପଦ । ଚନ୍ଦ୍ରଙ୍କ ଅର୍ଥ ଅନ୍ୟପ୍ରକାର—ହେ ଚନ୍ଦ୍ର ! ଆପଣ କୁମୁଦ ରଙ୍ଗରେ ବଢ଼ାନ୍ତ ( କିରଣ ଦେଇ ପୃଥିବୀର ଆନନ୍ଦକୁ ବଢ଼ାନ୍ତ ) । ପର ଚକେ ବିଦର ( ଶତ୍ରୁଜ୍ଞାନ କରି ଚକ୍ରବାକ ପକ୍ଷୀ ଓ ପକ୍ଷିଣୀକୁ ବିରହ ଦୁଃଖରେ ପଡ଼ାଅ ) । ସୁରଭି ମେଳରେ ( ଅର୍ଥାତ୍ ମନୋହର ପଦାର୍ଥମାନଙ୍କ ମଧ୍ୟରେ ) ଆପଣ ଗୋଟିଏ ଶିବଦ ( ମଙ୍ଗଳଦାତା ) ଓ ସୁମନେ ତୋଷକର ( ଅନେକ ଫୁଲକୁ ) ତୋଷ ଦଅନ୍ତ ବା ପ୍ରସ୍ଫୁଟିତ କରାନ୍ତ ।

୩ୟ ପଦ । ଶ୍ରୀକୃଷ୍ଣଙ୍କ ଅର୍ଥରେ—ହେ କୃଷ୍ଣ ଆପଣ ଅମ୍ବରବାସ (ଦିଗମ୍ବର ବା ଶିବଙ୍କର) ବନ୍ଦିତ ( ବନ୍ଦନୀୟ ଅଟନ୍ତ ) । ମଦନ କରେ ଧର ( କନ୍ଦର୍ପ ଆପଣଙ୍କ ପୁତ୍ର ଥିବାରୁ ହାତରେ ଧରି ଖେଳାଅ ) । ତାରାପତି ଭାବେ ( ବାଳକ ଭକ୍ତମାନଙ୍କୁ ) ସନ୍ତାପେ ( ଦୁଃଖ କରି ) ନାନାରଙ୍ଗେ ବିହର ( ନାନାପ୍ରକାରେ ହରଣ କରିଅଛ ) ଅର୍ଥାତ୍ ବିଦ ଶରଯନ୍ତ୍ରଣାଗ୍ରସ୍ତ ବାଳକ ତାହାର ଅନ୍ୟାୟ କର୍ମ ଦେଖାଇ ଦେଇ ମୁକ୍ତି ପ୍ରଦାନ କରିଅଛ ।

୩ୟ ପଦ । ଶେଷପାଦ ଶ୍ରୀକୃଷ୍ଣଙ୍କ ଅର୍ଥ ଅନ୍ୟପ୍ରକାର—ତାରାପତି ଭାବେ ସନ୍ତାପେ ( ବୃହସ୍ପତି ସନ୍ତାପ କରି ଆପଣଙ୍କୁ ଭାବନ୍ତ ) । ଆପଣ ନନାରଙ୍ଗରେ ବିହାର କରନ୍ତ ଅର୍ଥାତ୍ ସତ୍ୟ, ତ୍ରେତା ଦ୍ୱାପର ଓ କଳରେ ଯଥାକ୍ରମେ ଶୁକ୍ଳ, ରକ୍ତ, ପୀତ ଓ କୃଷ୍ଣବର୍ଣ୍ଣ ଧରି ବିହାର କରନ୍ତ ।

୩ୟ ପଦ । ଶିବଙ୍କ ଅର୍ଥରେ—ହେ ବନ୍ଦିତ ଅମ୍ବରବାସ ( ହେ ବନ୍ଦନୀୟ ଶିବ ) ଆପଣ କରେ ( ହସ୍ତରେ ) ମଦନ ( ଧାତୁରି ) ଧର ଅର୍ଥାତ୍ ଭାଙ୍ଗରେ ଘୋଟି ଖାଇବାକୁ ଧରିଥାଅ ।

ତାରାପତି ( ଚନ୍ଦ୍ର ) ସନ୍ତାପେ ଭାବେ ( ବୃହସ୍ପତିଙ୍କ ଅଭିଶାପଗ୍ରସ୍ତ ହୋଇଥିବାରୁ ଆପଣଙ୍କୁ ଭାବନ୍ତ ) । ଆପଣ ନାନାରଙ୍ଗରେ ବିହାର କରନ୍ତ ଅର୍ଥାତ୍ କେତେବେଳେ ବ୍ୟାଘ୍ରାମ୍ବର ପିନ୍ଧି, କେତେବେଳେ ବା ନଗ୍ନ ହୋଇ, କେତେବେଳେ ବୃଷଭରେ ଚଢ଼ି ଓ କେତେବେଳେ ସର୍ପହାର ବା ବିଭୂତି ଭୂଷିତ ହୋଇ ଭ୍ରମଣ କରନ୍ତ । ଅଥବା ଆପଣ କେତେବେଳେ ଭୂତଗଣଙ୍କ ସହ କ୍ରୀଡ଼ାରେ ରତ ହୁଅନ୍ତ ଓ କେତେବେଳେ ତାଣ୍ଡବରେ ଯୋଗ ଦଅନ୍ତ ।

୩ୟ ପଦ । ଚନ୍ଦ୍ରଙ୍କ ଅର୍ଥରେ—ହେ ଅମ୍ବରବାସ ( ହେ ଆକାଶବିହାରୀ ଚନ୍ଦ୍ର ) ଆପଣ ବନ୍ଦନୀୟ ଅଟନ୍ତ । ଆପଣ ମଦନ ( କନ୍ଦର୍ପକୁ ) କରରେ ( କିରଣରେ ) ଧରନ୍ତ । ବିବାହ ପରେ

ଶିଖୀ ଅଧିକାରୀ ଟିଉକା— ପଢ ଅଶ୍ରିଢ ଦାସ
ଉନ୍ନ ମୁରଉକ୍ଲ ଟୋଲେକ— ଚନ୍ଦ୍ର ଶନ୍ତେ ବଶେଷ । ୪ ।
ଖାବ ଦାଭ ଛବ ଦ୍ରବବ ବାସ୍ତୁ ବଧି ବାଖବ



ଖବ ଚବଡା ବାହୁବ କ ବାଖବବ ବସ୍ବ । ୫ ।



---

ଚନ୍ଦ୍ର ବନ୍ଦାପନାକୁ ଏଠାରେ ଲକ୍ଷ୍ୟ କରାଯାଇ ପାରେ । ଆପଣ ନାନାରଙ୍ଗରେ ବିହାର କରନ୍ତି । ଆପଣଙ୍କର ରୂପ ସବୁ ସମୟରେ ସମାନ ନ ଥାଏ । ଆପଣ ଶୁକ୍ଲପକ୍ଷୀୟ ଓ କୃଷ୍ଣପକ୍ଷୀୟ ଚନ୍ଦ୍ର ରୂପରେ ବିଭିନ୍ନ ତିଥିରେ ବିଭିନ୍ନ ରୂପ ଧାରଣ କରନ୍ତି । ହେ ତାରାପତି ( ଚନ୍ଦ୍ର ) ମୁଁ ସନ୍ତାପରେ ଆପଣଙ୍କୁ ଭାବୁଅଛି ।

ଚତୁର୍ଥ ପଦର ଶେଷ ପାଦର ଚନ୍ଦ୍ରଙ୍କ ଅର୍ଥ ଅନ୍ୟପ୍ରକାର—ତାରାପତି ଭାବେ ( ବୃହସ୍ପତିଙ୍କ ସ୍ତ୍ରୀ ତାରାକୁ ହରଣ କରିଥିବାରୁ ବୃହସ୍ପତିଙ୍କ ଅଭିଶାପରେ ) ସନ୍ତାପେ ( ଦୁଃଖରେ ) ନାନାରଙ୍ଗେ ବିହର ( ପନ୍ଦର ଦିନ ଛିଜୁଛ, ପନ୍ଦର ଦିନ ବଢୁଛ ) ଅର୍ଥାତ୍ ( ମହତ୍ ଲୋକର ଦୋଷକୁ ଦଣ୍ଡ ଅଛି ଶିକ୍ଷା ଦେଉଅଛ ) ।

ବିଦେହବିଧ୍ୱଂସୀ ବିକଳ୍ପି    ଧୀରେ ବିଭାବୟ
ବିଲୋକୟ ଛବି ବିଧ୍ୟାନେ    ବିନୋଦେ ବିସେବୟ । ୬ ।



୪ର୍ଥ ପଦ । ଶ୍ରୀକୃଷ୍ଣଙ୍କ ଅର୍ଥରେ—ହେ ଶ୍ରୀଶ ( ଲକ୍ଷ୍ମୀ ) ଅଧୀକାଶ ଶ୍ରୀକୃଷ୍ଣ ଗିରିଜାପତି ( ଶିବ ) ଅପଣଙ୍କର ଅଶ୍ରିତ ଦାସ ଅଟନ୍ତି ।

୪ର୍ଥ ପଦ । ଶିବଙ୍କ ଅର୍ଥରେ—ହେ ଶ୍ରୀଶ ଅଧିକାଶ ଗିରିଜା ( ଶୋଭା ଅଧିକାରିଣୀ ଦୁର୍ଗା )ଙ୍କ ପତି (ଶିବ) ମୁଁ ଅପଣଙ୍କର ଅଶ୍ରିତ ଦାସ ଅଟେ । ଅଥବା ହେ ବିଭୂତି ବା ଐଶ୍ୱର୍ଯ୍ୟ ଅଧିକାଶ ଶିବ, ମୁଁ ଆପଣଙ୍କର ଅଶ୍ରିତ ଦାସ ଅଟେ ।

୪ର୍ଥ ପଦ । ଚନ୍ଦ୍ରଙ୍କ ଅର୍ଥରେ—ହେ ଶ୍ରୀଶ ଅଧିକାଶ ( ମନୋହର ) ଚନ୍ଦ୍ର, ଆପଣ ଗିରିଜାପତିଙ୍କର ( ପାର୍ବତୀପତି ଶିବଙ୍କର ) ଅଶ୍ରିତ ଦାସ ଅଟନ୍ତି । ଶେଷ ପାଦ—ତିନି ମୂର୍ତ୍ତିଙ୍କୁ ( ଶ୍ରୀକୃଷ୍ଣ, ଶିବ ଓ ଚନ୍ଦ୍ରଙ୍କୁ ) ମୁଁ ସର୍ବଦା ଚିତ୍ତରେ ବିଶେଷ ଭାବରେ ଚିନ୍ତା କରୁଅଛି ।

୫ମ ପଦ । ( ଅଷ୍ଟଦଳ ଛନ୍ଦ )—ହେ ବିଷ୍ଣୁ, ମୁଁ ଆପଣଙ୍କର ( ବିଧି ବିଧାନକୁ ) ବିଭାବି ( ବିଶେଷରୂପେ ଭାବନା କରି ) ଓ ଆପଣଙ୍କର ଛବି ( ରୂପକୁ ) ଭାବି ଭାବି ଦ୍ରବିବି । ଭବ ଜଡତା ବିହବି ( କରିବି ) କି ବିସ୍ମରି ( ବିଗଳିତ ହୋଇ ) ବିଭାବିବି ( ବିଶେଷରୂପେ ଭାବିବି ) କିଛି ସ୍ଥିର କରି ପାରୁନାହିଁ ।

୬ଷ୍ଠ ପଦ । (ପଞ୍ଚଦଳ ଛନ୍ଦ) ଶିବଙ୍କ ଅର୍ଥରେ—ହେ ବିଦେହବିଧ୍ୱଂସି (ହେ କାମନାଶକ ଶିବ ) ଧୀରେ ବିକଳ୍ପି ( ବିଶେଷ ବୁଦ୍ଧିରେ କଳ୍ପନା କରି ) ବିଭାବିବି ( ବିଶେଷରୂପେ ଭାବିବି ) ବିଧ୍ୟାନେ ( ବିଶେଷ ଧ୍ୟାନଦ୍ୱାରା ) ଛବି ବିଲୋକିବି ( ଅପଣଙ୍କର ରୂପକୁ ଦେଖିବି ) ଓ ବିନୋଦରେ ( ଔତ୍ସୁକ୍ୟରେ ) ବିସେବିବି ( ବିଶେଷରୂପେ ସେବା କରିବି ) ।

କଳାକର ଶିବ ଶିରରେ ଡରେ ରଉସ ଭର



ଦର୍ଶେ ଦର ଦର ହରଷ ତୋଷ ରଖ ହେ ଖର । ୭ ।



---

୭ମ ପଦ । ( ଚତୁର୍ଦ୍ଦଳ ଛାନ୍ଦ ) ଚନ୍ଦ୍ରଙ୍କ ଅର୍ଥରେ—ହେ କଳାକର ( ହେ ଚନ୍ଦ୍ର ) ଡରେ ( ବୃହସ୍ପତିଙ୍କ ଅଭିଶାପ ଭୟ ହେତୁରୁ ) ରଉସ ( ଶୀଘ୍ର ) ଶିବ ଶିରରେ ଭର ( ଶିବ ମସ୍ତକରେ ନିଜେ ସ୍ଥିର ହୁଅ ବା ଶିବଙ୍କୁ ସେବକ ଭାବରେ ଭକ୍ତିରେ ମସ୍ତକରେ ରଖ ) ଅର୍ଥାତ୍ ଭୟରେ ତାଙ୍କୁ ମୁଣ୍ଡାଇଅଛ । ଦର୍ଶେ ଦର ( ଅମାବାସ୍ୟାରେ ଶେଷ କଳା ଥିବାରୁ ଆପଣ ସେଦିନରୁ ଭୟ କରନ୍ତି ) । ହେ ଚନ୍ଦ୍ର, ଆପଣ ହରହରଷ ଓ ତୋଷ ଖର ରଖ । ( ହେ ଚନ୍ଦ୍ର, ଆପଣ ଶିବଙ୍କର ହର୍ଷକୁ ଓ ଆପଣଙ୍କର ତୋଷକୁ ଚଞ୍ଚଳ ରକ୍ଷା କରନ୍ତୁ ) ଅର୍ଥାତ୍ ଆପଣଙ୍କର ଅଭିଶାପ ଭୟ ସଙ୍ଗେ ସଙ୍ଗେ ଶିବଙ୍କ ବିଷଜ୍ୱାଳାର ଉପଶମ କରି ତାଙ୍କ ଶିରରେ ଅବସ୍ଥାନ କରିଅଛ ।

ଅଷ୍ଟ ପଞ୍ଚ ଚତୁର୍ଦ୍ଦଳର ଫୁଲେ  ମୋ ଭକତଙ୍କ
ମିଶାଇ ପୂଜଇ ବାଭନେ  ନାଶ ତାପ ତତଙ୍କ । ୮ ।
ଜୟ ଶିରୀ ଅଧିକାରିଣୀ  ରମା କେଶବପ୍ରିୟା
ରାସରସେଶ୍ୱରୀ କିଶୋରୀ  ବୃଷଭାନୁ ତନୟା । ୯ ।
ସକାମୀ ସଂସାରେ କରନ୍ତି  ତୋତେ ଯେମନ୍ତ ସ୍ତବ
ବୃତ୍ତାକାରେ ଲେଖି ଜଣାଏ  ତାଙ୍କ ମୋହକ ଭାବ । ୧୦ ।



---

୧୧ଶ ପଦ ୧୬ ପ୍ରକାର ଅର୍ଥ ହେବ—ଗୋଟିଏ ଗୋଟିଏ ବୃତ୍ତ କାଟି ଗୋଟିଏ ଗୋଟିଏ ପାଦ ଲେଖି ଯେ କୌଣସି ଅକ୍ଷରରୁ ଆରମ୍ଭ କରି ଗୀତ ଲିଖିତ ବୃତ୍ତରେ ପଢ଼ିଲେ ସକାମୀ ପୁରୁଷ ଓ ସକାମୀ ସ୍ତ୍ରୀର ରାଧାଙ୍କ ସ୍ତବ ହେବ । ଅର୍ଥାତ୍ ପାଦକୁ ବୃତ୍ତାକାରରେ ଲେଖି ଏକ ଏକ ଅକ୍ଷର ଚ୍ୟୁତ ଓ ଦତ୍ତାକ୍ଷର କ୍ରମାନ୍ୱୟରେ କଲେ ଗୋଟିଏ ପାଦ ୧୬ ପାଦ ଗୀତ ହେବ ଓ ଏଥିରୁ ୧୬ ପ୍ରକାର ଅର୍ଥ ହେବ ।

୧୧ଶ ପଦ ୧ମ ପାଦ ୧ ଅର୍ଥ—ହେ ଲୋକମାତା ( ଲକ୍ଷ୍ମୀ=ରାଧା ) ଦା ( ଭାର୍ଯ୍ୟା ) ଓ ଧନ ଦିଅ । କୁମାର ( ପୁତ୍ରକୁ ) ତୋଷେ ରଖ ( ରକ୍ଷା କର ) ।

୨ୟ ଅର୍ଥ—ହେ ମାତା ଦା ( ଭାର୍ଯ୍ୟା ) ଓ ଧନର କ ( ସୁଖକୁ ) ଦିଅ । ଖ ( ଶରୀରକୁ ) ମାର ( କନ୍ଦର୍ପ ) ତୋଷ ଦେଉଛି, ଅର୍ଥାତ୍ ମୁଁ କାମପରାୟଣ ହୋଇଛି, କ ( କନ୍ଦର୍ପ )ର ମାତା=ରୁକ୍ମିଣୀ=ରାଧା ( ବୈକୁଣ୍ଠେ କମଳା ଦେବୀ, ଦ୍ୱାରବତ୍ୟାନ୍ତୁ ରୁକ୍ମିଣୀ, ଜାନକୀ ଦଣ୍ଡକାରଣ୍ୟେ, ରାଧା ବୃନ୍ଦାବନେ ବନେ ) ।

୩ୟ ଅର୍ଥ—ହେ ମା । ମୋତେ ସ୍ତ୍ରୀରୂପ ଧନ ଦିଅ, ପୁତ୍ରର ସନ୍ତୋଷ ପାଇଁ ଲୋକ ରଖ । ( ଅର୍ଥାତ୍ ପୁତ୍ରର ସନ୍ତୋଷ ସାଧନ ନିମିତ୍ତ ଲୋକ ରଖ ) ଅଥବା ପୁତ୍ରର ସନ୍ତୋଷ ପାଇଁ କ ( ସୁଖ ) ରଖ ।

୪ର୍ଥ ଅର୍ଥ—ହେ ଅଦା ( ଅ=ବିଷ୍ଣୁ, ଦା=ଭାର୍ଯ୍ୟା=ରାଧା ) ତ ( ରହ ) ଅଦ ଧନ ରଖ ( ମୋତେ ଦିଅ ) ହେ ଲୋକମାତା ! ତୋଷେ କୁ ( ମନ୍ଦ ବା ଅନିଷ୍ଟକୁ ) ମାର ( ନଷ୍ଟ କର ) ।

ଲୋ କ ମା ତା ଦ ଅ ଦା ଧ ନ ର ଖ କୁ ମା ର ତୋ ଷେ



୬ମ ଅର୍ଥ—କାମାଗ୍ନିର ତୋଷ ନିମିତ୍ତ ହେ ଲୋକମାତା ଦା ( ଭାର୍ଯ୍ୟା ) ଓ ଧନର ଖଂ ( ସୁଖ ) କୁ ଦଅ ।

୭ମ ଅର୍ଥ—ହେ ଅଦା ( ରାଧା ) ମୋର ଧନକୁ ରକ୍ଷା କର । ହେ ଲୋକମାତା ଅଦ ! ମଦକୁ ତୋଷ ହୋଇ ନଷ୍ଟ କର ।

୭ମ ଅର୍ଥ—ହେ ରାଧା ! ମୋର ଭାର୍ଯ୍ୟା ଓ ଧନକୁ ରଖ । ହେ ଲୋକମାତା ! ତୋ ଷେ—ଣେ ( କଲ୍ୟାଣରେ ) ମୋତେ କୁମାର ( ପୁଅ ) ଦଅ ।

୮ମ ଅର୍ଥ—ପୁଅର ତୋଷ ପାଇଁ ଧନ ରଖ, ହେ ଲୋକମାତା ! ଦା ( ଭାର୍ଯ୍ୟା ) ଦଅ ।

୯ମ ଅର୍ଥ—କ ମାତା ( ଲକ୍ଷ୍ମୀ ! ) ମୋର ପୁଅକୁ ରଖ ନାହିଁ । ସନ୍ତୋଷ ହୋଇ ମୋତେ ଭାର୍ଯ୍ୟା ଓ ଧନ ଦଅ, ଅଥବା ହେ ମାତା ! ମଦ ରଖ ନାହିଁ । ଲୋକମାନଙ୍କୁ ମାର ପକାଅ [illegible] ଭାର୍ଯ୍ୟା ଓ ଧନ ଦଅ ।

୧୦ମ ଅର୍ଥ—ହେ ଲୋକମାତା ! ର ( ସ୍ୱର୍ଣ୍ଣ ) ଖ ( ନଗର )କୁ ଅର୍ଥାତ୍ ମୋର ଏ [illegible] ମାର ( କାମ ) ର ତୋଷପାଇଁ ଦା ଧନ ( ସ୍ତ୍ରୀରୂପକ ଧନ ) ମୋତେ ଦଅ ।

୧୧ଶ ଅର୍ଥ—ହେ ମା ( ଲକ୍ଷ୍ମୀ ! ) ଖ ( ନଗର ) କୁ ( ମନ୍ଦ ) ବୋଧ ହେଉଅଛ । ହେ [illegible] ( ହେ ସପ୍ତଲୋକପ୍ରସବିନ୍ନ ! ) ମାର ତୋଷେ ( କନ୍ଦର୍ପ ମୋତେ ତୃପ୍ତି ଦେଉଛ ) ତା [illegible] ( କାମକୁ ଦଅ ) ଓ ଦା (ଭାର୍ଯ୍ୟା) ଧନ ଓ ର (ସ୍ୱର୍ଣ୍ଣ) ଦଅ ( ବା ଭାର୍ଯ୍ୟା ଧନର କାମକୁ ଦଅ ) ।

ଈ ଶେ ର ଖ ର ମା ଦେ ବ ର ଦେ ଖେ ସୁ ନ ସ ର ସେ । ୧୧ ।



୧୨ଶ ଅର୍ଥ—ହେ ଲୋକମାତା ! କୁ ମାର ତୋଷେ ( ମନ୍ଦ କନ୍ଦର୍ପର ତୋଷପାଇଁ ) ଦା ( ଭାର୍ଯ୍ୟା ) ଓ ଧନ ରଖ ଅର୍ଥାତ୍ ମୋତେ କାମିନୀକାଞ୍ଚନ ଦିଅ ଅଥବା ଭାର୍ଯ୍ୟା ଦିଅ । ଧ ( ଧନ ) ନ ଦିଅ ଅର୍ଥାତ୍ ମୋତେ ସ୍ତ୍ରୀ ଦିଅ ଧନ ପଛକେ ନ ଦିଅ ।

୧୩ଶ ଅର୍ଥ— ହେ ଲୋକମାତା ଆଦ ! ସନ୍ତୋଷରେ ମୋତେ ମାର ( ବିନାଶ କର ) ହେ—ଅ-ଦା ( ଲକ୍ଷ୍ମୀ ! ) ଧନର ଖ ( ସୁଖ ) କୁ ( ମନ୍ଦ ) ଅଟେ ।

୧୪ଶ ଅର୍ଥ—ହେ ଲୋକମାତା ! ହେ ମା ! ର ( କାମାଗ୍ନି ) ତୋଷପାଇଁ ଦା ( ଭାର୍ଯ୍ୟା ) ଓ ଧନର ଖ ( ସୁଖ ) କୁ ଦିଅ । ଅର୍ଥାତ୍ ଧନ ଉପଭୋଗ କରି ସୁଖ ଉପଭୋଗ କରେଁ ।

୧୫ଶ ଅର୍ଥ—ହେ ଲୋକମାତା ! ତୋଷେ ଦା (ଭାର୍ଯ୍ୟା) ଦିଅ, ଧ (ଧନ) ନ ( ଧନ ନ ଦିଅ ) କୁମାର ରଖ ( ପିଲା ପୁଅକୁ ରକ୍ଷା କର )

୧୬ଶ ଅର୍ଥ—ଲୋକମାତା ! ଷେ=ଶେ ( ଶୁଭରେ ) ଭାର୍ଯ୍ୟା ଓ ଧନ ଦେ, ଇହିରେ ତୋ=ତୋର ପୁଣ ମନ୍ଦ କାମକୁ ରଖ ନାହିଁ ଅର୍ଥାତ୍ ମୁଁ କାମନା ପରିପୂର୍ଣ ନ ହେବ ।

୧୧ଶ ପଦ—୨ୟ ପାଦର ୧ମ ଅର୍ଥ—ହେ ରମା ! ଈଶେ ( ମୋର ପତିକୁ ) ରଖ ଏବଂ ଏହି ବର ଦେ ମୁଁ ମୋର ପୁଅକୁ ସରସରେ ଦେଖିବି ।

୨ୟ ଅର୍ଥ—ହେ ରମା ! ଶେ ( ଶୁଭରେ ) ଦେବର ( ମୋର ଦିଅରକୁ ) ରଖ ( ରକ୍ଷା କର ) ହେ ଈ ( ଲକ୍ଷ୍ମୀ ), ଖେ ( ଶରୀରରେ ) ସୁ ( ଉତ୍ତମ ) ନ ( ନର ) ସରସେ ( ସରସ ହୋଇ ) ଦେ ( ଦିଅ ) ।

ନ ମାଗଇ ଅମ୍ବା ! ଏମନ୍ତ ଧାଅ ପଦେ ଭକତ ।
ତବ ଭାବାବେଶେ କାରତେ ବୁଦ୍ଧି ରହୁ ମୋ ମତ । ୧୨ ।
ତପଇ ଅମର ଭା ଗତ ବ୍ୟକ୍ତେ ନତ ନ ଦେବ,
ଦେବ ! ବହେ ରତ ରସାରେ ରମି ମୋହ ସୁଭାବ । ୧୩ ।

---

୩ୟ ଅର୍ଥ—ହେ ରମା ! ରଖ ( ରକ୍ଷା କର ) ହେ ବରଦେ ( ବରଦାୟିନି ! ) ଦେ ( ଦଅ ) ଖେ ( ସୁଖରେ ) ସୁତ ଈଶେ ( ତାର ପ୍ରଭୁଠାରେ ) ସରସେ ( ସରସଯୁକ୍ତ ହେଉ ) ଅର୍ଥାତ୍ ମୋର ପୁଅ ଯେପରି ତାର ପ୍ରଭୁକୁ ଭଲ ପାଉ ।

୪ର୍ଥ ଅର୍ଥ—ହେ ମା ! ଦେବର ଖର ( ଦୁଷ୍ଟ ) । ଦେଖେ ସୁ ( ମୁଁ କପରି ତାକୁ ଭଲ ଦେଖିବି ) ଈଶେ ( ମୋର ସ୍ୱାମୀଠାରେ ) ର ( ସେ କାଅଁ ) ଓ ତ ( ରତ୍ନ ) ସ ( ନାଶ ) ରସେ ( ଇଚ୍ଛା କରେ ) ।

୫ମ ଅର୍ଥ—ହେ ରମା ! ବର ଦେ, ମୁଁ ସୁତ ଦେଖେଁ । ସରସରେ ଈଶେ ( ମୋର ସ୍ୱାମୀକୁ ) ରକ୍ଷା କର ।

୬ଷ୍ଠ ଅର୍ଥ—ହେ ମା ତୁ ବର ଦେ, ମୁଁ ସୁତର ସ=ଶ ( ଶୁଭ ) ଦେଖେ, ରସେ ଈଶେ ( ମୁଁ ଯେପରି ସ୍ୱାମୀକୁ ଭଲ ପାଏ ) ରଖ ର ( ତାଙ୍କ ପାଇଁ ର ( କାମାଗ୍ନି ) ରଖ ବା ମୋ ପାଇଁ ର ( ସ୍ୱର୍ଣ୍ଣ ) ରଖ ଅର୍ଥାତ୍ ଏହା ଅନୁଗ୍ରହ ହେଉ ) ।

୭ମ ଅର୍ଥ—ହେ ରମା, ଦେବର ମୋ ସୁତକୁ ସ ( ସର୍ପ ) ଓ ର ( ଅଗ୍ନି ) ଦେଖେ ( ଜ୍ଞାନ କରେ ) କିନ୍ତୁ ସେ ସେଇଅ, ରଖ ( ମୋ ପୁଅକୁ ରକ୍ଷା କର ) ବା ଶେ ( ଶୁଭରେ ) ଈଶେ ( ତାର ପ୍ରଭୁ ବା ଖାମିନ୍ଦଦ୍ୱାରା ) ରଖ ( ରକ୍ଷା କରାଅ ) ।

୮ମ ଅର୍ଥ—ହେ ବରଦେ ! ( ବରଦାୟିନି ! ) ଖେ ( ସୁଖରେ ) ସୁତ ( ପୁଅ ) ଓ ସରସରେ ଈଶେ ( ମୋର ସ୍ୱାମୀକୁ ) ରଖ । ହେ ମା ( ଲକ୍ଷ୍ମୀ ) ର ( ସ୍ୱର୍ଣ୍ଣ ) ଦେ ( ମୋତେ ଦଅ ) ।

୯ମ ଅର୍ଥ—ହେ ଈ ( ଲକ୍ଷ୍ମୀ ) ର ( ସ୍ୱର୍ଣ୍ଣକୁ ) ସୁତ ସରସରେ ଦେଖେ ( ଭଲ ପାଏ ) ସେ ର ( ସ୍ୱର୍ଣ୍ଣ ) ଓ ଖ ( ସୁଖ ) ହେ ରମା ! ଦେବ ( ତାକୁ ଦଅ ) ।

୧୦ମ ଅର୍ଥ—ହେ ରମା, ମୁଁ ସୁତ ( ପୁଅ ) ଦେଖେ, ସରସରେ ସ୍ୱାମୀକୁ ଦେଖେ ଓ ତୁମ୍ଭେ ମୋର ଦୁଅରକୁ ରକ୍ଷା କର ।

୧୧ଶ ଅର୍ଥ—ହେ ଈ ( ଲକ୍ଷ୍ମୀ ! ) ଖେ ( ଇନ୍ଦ୍ରିୟରେ ) ସୁତ ସରସେ ( ସରସଯୁକ୍ତ ହୋଇଅଛୁ ) ସେ ର ( କାମାଗ୍ନି ) ଖର ( ପ୍ରଚଣ୍ଡ ) ହେ ମା ! ଦେ ( ତାର ଜାୟାକୁ ) ବରଦେ ( ବରକୁ ଦଅ ) ଅର୍ଥାତ୍ ମୋର ପୁଅ ଇନ୍ଦ୍ରିୟପରାୟଣ ହୋଇଅଛୁ, ତାର ଜାୟାକୁ ବର ଦଅ ( ପୁନ ତା ପ୍ରତି ଆସକ୍ତ ରହୁ ଇତ୍ୟର୍ଥ ) ।

୧୨ଶ ଅର୍ଥ—ସୁ ( ଉତ୍ତମ ) ତ ( ରତ୍ନ ) ଈଶେ ( ସ୍ୱାମୀଠାରେ ) ସରସେ (ଶୋଭାପାଏ); ହେ ରମା, ତାଙ୍କୁ ତୁ ( ରକ୍ଷା କର ), ତୁ ଏହି ବର ଦେ ମୁଁ ତାଙ୍କୁ ଦେଖେ ।

୧୩ଶ ଅର୍ଥ—ତ ( ରତ୍ନ ) ସରସେ ( ମୋତେ ସରସଯୁକ୍ତ କରେ ବା ମୁଁ ରତ୍ନ ଭଲ ପାଏ ) । ଈଶେ ( ସ୍ୱାମୀଠାରେ ) ର ( ସ୍ୱର୍ଣ୍ଣ ) ରଖ । ହେ ମା ! ମୋତେ ବର ଦେ ମୁଁ ତାଙ୍କୁ ସୁ ( ଉତ୍ତମ ) ଦେଖେ ଅର୍ଥାତ୍ ସେ ମୋତେ ଭଲ ପାଆନ୍ତୁ ।

ହସୁକ ବନଜ ଚତ୍ର ହେ ! ଉସୁ ଅବର ତର
ତାର କୂଳେ ମାତ ହେ ! ଗୃହ୍ନି ନମୋ ବର ହେର । ୧୪ ।
କାମ ସାଧି ବବ ବଭ୍ରବେ ମୂଢେ ନାଶି ଉହ୍ନଲ
କାଳ, ଆଦ୍ୟ ପ୍ରାନ୍ତ କ୍ରମ ଏ ଭଜ ପଦେ ସ୍ତୁବାଲ । ୧୫ ।

---

୧୪ଶ ଅର୍ଥ—ହେ ରମା ! ସରସେ ( ସନ୍ତୁଷ୍ଟ ହୋଇ ) ସ୍ୱାମୀଙ୍କୁ ରଖ, ମୋତେ ଏହି ବର ଦିଅ ମୁଁ ପୁଅ ଦେଖେଁ ।

୧୫ଶ ଅର୍ଥ—ହେ ରମା ! ମୁଁ ଈଶେ ( ସ୍ୱାମୀଙ୍କୁ ) ଉସେ ( ଭଲ ପାଏ ), ରଖ ( ତାଙ୍କୁ ରକ୍ଷା କର ) ଦେ ବର ( ତୁ ଏହି ବର ଦେ ) ମୁଁ ସୁତର ସ=ଣ ( ଶୁଭ ) ଦେଖେଁ ।

୧୬ଶ ଅର୍ଥ—ହେ ରମା ! ଶେ ( ଶୁଭରେ ) ଈଶଙ୍କୁ ରଖ । ହେ ବରଦେ ( ବରଦାୟିନି ! ) ଦେ ( ଦିଅ ) ଖେ ( ଶଯ୍ୟାରରେ ) ସୁ ( ଉତ୍ତମ ) ତ ( ରତି ) ଓ ସ=ଣ ( ଶୁଭ ) ଓ ର ( କାମାଗ୍ନି );

ବା

ହେ ରମା ! ଶୁଭରେ ମୋର ପତିଙ୍କୁ ରକ୍ଷା କର । ତାଙ୍କର ଦେ ( ଜାୟାଠାରେ ) ର ( କାମାଗ୍ନି ) ଓ ଖେ ( ଶଯ୍ୟାରରେ ) ସୁ ( ଉତ୍ତମ ) ତ ( ରତି ) ସ=ଣ ( ଶୁଭ ) ର (ପ୍ରେମ) ଦେବ ଅର୍ଥାତ୍ ଦିଅ ।

୧୩, ୧୪ ଓ ୧୫ ପଦମାନ ଆଦ୍ୟ ପ୍ରାନ୍ତ କ୍ରମରେ ହୋଇଅଛି । ସାଧାରଣ ଅର୍ଥରେ କଷ୍ଟାମୀ ଭକ୍ତର ରାଧାଙ୍କ ପ୍ରାର୍ଥନା ହେଉଅଛି, କିନ୍ତୁ ଆଦ୍ୟ ପ୍ରାନ୍ତ କ୍ରମ କଲେ ଯଥାକ୍ରମେ ପଦମାନଙ୍କରୁ ସୂର୍ଯ୍ୟ, ଗଣେଶ ଓ ଦୁର୍ଗା ବା କାଳିଙ୍କର ସ୍ତବ ବାହାରିବ । [ ପାଦମାନଙ୍କରୁ (ସର୍ବ ଯମକ କଲେ ) ସଂକ୍ଷିପ୍ତ ଭାବରେ ରବି, ଅଗ୍ନି, ଚନ୍ଦ୍ର, ଗଣେଶ, ନକ୍ଷତ୍ର, ଲକ୍ଷ୍ମୀ ଓ କାଳିଙ୍କ ସ୍ତବ ବାହାରିବ ]।

(ଆଦ୍ୟ ପ୍ରାନ୍ତକ୍ରମ—ଅର୍ଥାତ୍ ପାଦର ମୂଳ ଅକ୍ଷର ପରେ ପାଦର ଶେଷ ଅକ୍ଷର ଓ ପାଦର ୨ୟ ଅକ୍ଷର ପରେ ପାଦର ଶେଷ ଅକ୍ଷରର ପୂର୍ବ ଅକ୍ଷର ଏହି କ୍ରମରେ ଲେଖିବାକୁ ହେବ) ।

ଆଦ୍ୟ ପ୍ରାନ୍ତକ୍ରମରେ ଲେଖିଲେ ପଦମାନଙ୍କରୁ—

୧୩ ପଦ । ତବ ପଦେ ଇନ ଅଛି ମନ ରସେ ଭବ ଗତି
ଦେବ ବଭବସୁ ହେ ହର ମୋ ତମିର ରସାରେ ।

୧୪ ପଦ । ହରସୁତ କର ବଦନ ଅଜ ସୁରରତ ହେ
ତାର ରହେ କୁଶଳେ ରମାବତ ମୋହେ ନ ଗୃହି ।

୧୫ ପଦ । 'କାଳିମହିପାବଧୀ ଶିବନାସ୍ତି ଦେବୀ ମୁଁ ଭ୍ରବେ' ଏହିପରି ହେବ ।

୧୩ଶ ପଦ—ହେ ଦେବ ! ମୋହସୁଭବରମି (ମାୟାରେ ଯେ ଯେ ବିଷୟ ଅଛି ମୁଁ ତହିଁରେ ଆସକ୍ତ ହୋଇ) ରସାରେ ରତ ବହେ (ଐହିକ ସୁଖରେ ମଜ୍ଜିଅଛି) । ତେଣୁ ତପଲେ (ମୁଁ ତପ କରୁଅଛି) ଅମର ଭ ଓ ଅମର ଗତି ରୂପଦ-ବକ୍ଷେ (ବକ୍ଷରେ) ମୋର ନତି (ବିନମ୍ରତା ବା ସମ୍ମାନ) ନ ଦେବ (ଦେବ ନାହିଁ) ଅର୍ଥାତ୍ ଦେବତାମାନଙ୍କର ଯେଉଁ ପ୍ରଭୁ ଓ ସ୍ୱର୍ଗସୁଖଭୋଗ, ମୁଁ ସେମାନଙ୍କୁ ଗୃହ୍ନି ନାହିଁ ।

୧୪ଶ ପଦ—ମୋର ବନଜଚତ୍ର (ଚିତ୍ତପଦ୍ମ) ହସୁକ (ପ୍ରସନ୍ନ ହେଉ), ତର ଅବର (ଅବସର ପାଇ ଅର୍ଥାତ୍ ସମସ୍ତ ବିଷୟରୁ ଅବସର ଲାଭ କରି) ରସୁ (ଆପଣଙ୍କଠାରେ ଅନୁରକ୍ତ ରହୁ); ହେ ମାତ, ମୋତେ ଗୃହି କୂଳେ ତାର (ମୁଁ ଅଗାଧ ସମୁଦ୍ରରେ ଭାସୁଅଛି, ମୋତେ

କୁଳକୁ ଉଦ୍ଧାର କର) ନମୋ (ମୁଁ ଆପଣଙ୍କୁ ନମସ୍କାର କରୁଅଛି) ବିରସ ହେର (ମୋର ବିରସ ଭାବକୁ ଦେଖ) ।

୧୫ଶ ପଦ—ବିଭାବେ ବର (ବିଶେଷ ଭାବରେ ବରଣ କର) କାମ ସାଧି (କାମ ଉପଭୋଗ କର) ମୁଦେ ନାଶି (ପ୍ରକୃତ ସୁଖ ବା ଆନନ୍ଦକୁ ନାଶ କର) କାଳ ବହିଲ (କାଳଙ୍କ ବହିଅଛି), ମୁଁ ଉକ୍ତ ପଦରେ ଆପଣଙ୍କ ସ୍ତବ କଲି । ଏ ଆଦ୍ୟପ୍ରାନ୍ତ କ୍ରମ (ଏ ଉକ୍ତ ପଦ ଆଦ୍ୟପ୍ରାନ୍ତ କ୍ରମ) ।

୧୩ଶ ପଦ—(ସୂର୍ଯ୍ୟଙ୍କ ଅର୍ଥ)—ହେ ଇନ (ସୂର୍ଯ୍ୟ) ଗଛ ଭାବ (ସଦ୍‌ଗତି ଇଚ୍ଛା କରି) ତବ ପଦେ (ପଦ ବୃନ୍ଦଙ୍କୁ) ମନ ଅତ ରଏ । ହେ ଦେବ ବିଭାବସୁ (ସୂର୍ଯ୍ୟ) ରସାରେ ମୋ ତମିର (ପୃଥିବୀରେ ମୋର ବିଷୟାନ୍ଧକାରକୁ) ହର (ହରଣ କର) ।

୧୪ଶ ପଦ—(ଗଣେଶଙ୍କ ଅର୍ଥ) ହେ କରିବଦନ ହରସୁତ ଆଜ ଶୁଚ (ଶୁଚ ହୋଇ) ରତ (ଆପଣଙ୍କର ଅନୁରକ୍ତ ହୋଇଅଛି) । ତାର (ମୋତେ ଉଦ୍ଧାର କର) ମୁଁ କୁଶଳେ ରହେ; ମୋହେ (ମୋହରେ ପଡ଼ି) ରମାବିତ ନ ଗୃହି (ମୁଁ ଗୃହୁ ନାହିଁ) ।

୧୫ଶ ପଦ—(ଦୁର୍ଗାଙ୍କ ଅର୍ଥ) କାଳୀ ମହିଷମର୍ଦ୍ଦିନୀ ଦେବୀ ଚଣ୍ଡିଙ୍କି ମୁଁ ଭାବୁଅଛି ।

୧୩ଶ ପଦରୁ—ସୂର୍ଯ୍ୟଙ୍କ ଅର୍ଥ—୧୪ଶ ପଦରୁ ଗଣେଶଙ୍କ ଅର୍ଥ ଓ ୧୫ଶ ପଦରୁ କାଳୀଙ୍କ ଅର୍ଥ ସ୍ପଷ୍ଟରୂପେ ଜାଣାଯାଉଅଛି ।

ଏ ୫ ପାଦ ଗୀତ ସବଂଯମକ କଲେ ୫ ପଦ ଗୀତ ହେବ ।

୧୩ଶ ପଦର—୧ମ ପାଦର ୧ମ ଅର୍ଥ—ହେ ଇନ (ସୂର୍ଯ୍ୟ !) ତବ ପଦେ ମନ ଗଛ ଭାବ ଅତ ରଏ (ମୁଁ ମୁକ୍ତି କାମନା କରି ଆପଣଙ୍କର ଅନୁରକ୍ତ ହୋଇଅଛି) ।

୨ୟ ଅର୍ଥ—ହେ ଇନ ! ତବ ପଦେ ଅତ (ଅର୍ଥାତ୍ ତୁମ୍ଭ ପଦରେ ଅଚଳଶୟ ଭାବ କରିଅଛି) ଗଛ ଭାବ (ମୁଁ ଗଛ ଭାବୁଥିବାରୁ) ମ (ଯମ) କୁ ନ ରଏ (ଯମପୁରକୁ ଯିବାକୁ ଇଚ୍ଛା କରୁ ନାହିଁ ।)

୧୩ଶ ପଦର ୨ୟ ପାଦର ୧ମ ଅର୍ଥ—ହେ ବିଭାବସୁ (ଅଗ୍ନି !) ମୋର ତମିରକୁ ସଂସାରରେ ନାଶ କର ।

୨ୟ ଅର୍ଥ—ହେ ବିଭାବସୁ (ଚନ୍ଦ୍ର !) ମୋର ଅନ୍ଧକାରକୁ ସଂସାରରୁ ଅପହରଣ କର ।

୧୪ଶ ପଦ ୧ମ ପାଦର ୧ମ ଅର୍ଥ—ହେ କରିବଦନ (ଗଜାନନ) ହରସୁତ (ଶିବସୁତ ଗଣେଶ !) ମୁଁ ଆଜ ଶୁଚ ଭାବରେ ଆପଣଙ୍କର ରତ ହୋଇଅଛି ।

୨ୟ ଅର୍ଥ—ହେ ହରସୁତ ! ମୁଁ ଆଜ ବଦନ ଶୁଚ କରି ଆପଣଙ୍କ ରତ ହୋଇଅଛି; ଅର୍ଥାତ୍ ଆପଣଙ୍କୁ ଡାକୁଅଛି ।

୧୪ଶ ପଦ ୨ୟ ପାଦର ୧ମ ଅର୍ଥ—ହେ ରମା ! ମୋତେ ତାର ମୁଁ କୁଶଳେ ରହେ । ମୁଁ ମୋହେ (ମୋହରେ ପଡ଼ି) ବିତ ନ ଗୃହେ (ଧନ ସମ୍ପତ୍ତି ଗୃହୁଁ ନାହିଁ) ।

୨ୟ ଅର୍ଥ—ତାର (ହେ ନକ୍ଷତ୍ର !) ରହେ କୁଶଳେ (ମୁଁ ଭଲରେ ରହେ) ରମା ବିତ (ଲକ୍ଷ୍ମୀଙ୍କର ସମ୍ପତ୍ତି) ମୋହରେ ନ ଗୃହି (ଦରକାର କରୁ ନାହିଁ)

୧୫ଶ ପଦ ୧ମ ପାଦର ୧ମ ଅର୍ଥ—ମହିଷବଧୀ (ମହିଷାସୁରକୁ ବଧ କରିଥିବା) ଶିବ ନାରୀ ଦେବୀ କାଳୀଙ୍କୁ ମୁଁ ଭାବେ ।

୧୫ଶ ପଦ ୧ମ ପାଦର ୨ୟ ଅର୍ଥ—ହେ ମହିଷବଧୀ (ମହିଷମର୍ଦ୍ଦିନୀ) ଶିବନାରୀ କାଳି ! ଦେବ (ମୋତେ ସ୍ୱର୍ଗ ଦେ) ମୁଁ ଭାବେଁ (ମୁଁ ଭାବୁଅଛି) ।

ସତେ ତୋର ଦୟା ପ୍ରଂଶ୍ଲେବେ ଚଇତନ୍ୟ ଭଜିବ'
ରାଧେ ରାଧେ ଡାକି କି 'ପ୍ରେମାବେଶେ ଅଶ୍ରୁ ବର୍ଷିବ' । ୧୬ ।
ସେବକା ଭାବରେ ପ୍ରଂମୋଦେ ପୁଲକ ହଉଥିବ';
କମ୍ପ ହେଉଥିବ ବ'ଭାବ ସୁବର୍ଣ୍ଣବର୍ଣ୍ଣ ଛବ' । ୧୭ ।
ଡାକବ ଭକ୍ତରେ ଶ୍ରୀ'ରାଧା କରୁଥିବ କୀର୍ତ୍ତନ'
ଭାଗବତବୃତ୍ତେ ଶେ'ଷରେ ବଶ୍ୱମ୍ଭର ବନ୍ଦନ' । ୧୮ ।
ଜୟ କଳାକର ବଧୂ ହେ ରାଧାପ୍ରାଣବଲ୍ଲଭ
ମନୋହର ରାମଯୁକତ ତୋର ମହତ ଭାବ । ୧୯ ।
କେତେ କାଳେ କାମଜନକ ହେଉ କେତେ ମୂରତ
କେବେ ବଶାଖାରେ ଅଦର କେବେ ବା ବସୁପତ । ୨୦ ।
କେବେ ରୋହଣୀର ବାନ୍ଧବ କେବେ ମୃଗ ବନାଶ
ରଙ୍ଗେ ଦେଖି କେତେ ସୁମନା କରୁଥାଅନ୍ତି ରାସ । ୨୧ ।
କାବ୍ୟ କବତାରେ କବଏ କରୁଥାନ୍ତି ଅଦର
ନମୋନମଃ ତମପର ହେ ନମୋନମଃ ଶୁକର । ୨୨ ।
ଗୋଲୋକଚନ୍ଦ୍ରର ବପତ୍ତି ହର ଗୋଲୋକଚନ୍ଦ୍ର
ନର୍ବିଘ୍ନରେ ହେଉ ସମାପ୍ତ ମୋର ମଧୁର ଗ୍ରନ୍ଥ । ୨୩ ।
ଚନ୍ଦ୍ରଚୂଡ଼ କର ସୁକାଳେ ସୁତେ ରାଜ୍ୟାଭିଷେକ
ଅଚରଲେ ବାନପ୍ରସ୍ଥକୁ ମନେ ବହି ପୁଲକ । ୨୪ ।
କେତେଦନ ଅନ୍ତେ ଏମନ୍ତ ହେଲା ଘେନ ସୁଧୀରେ
ବୁଲୁଛନ୍ତି ରାଜଦମ୍ପତ ଉପବନେ ମୁଦରେ । ୨୫ ।
ରାଜ ଉପବନ ସୁଷମା ଗୁରୁ ସିନ୍ଧୁଲହରୀ
ଖେଳଇ ମଧୁର ବସନ୍ତେ ସନ୍ଧ୍ୟାକରଣ ଧର । ୨୬ ।
ଖେଳଇ ସରସୀ ସାହ୍ଲାଦେ ଗୃରୁହଂସ ରସନା
ଉଚ୍ଛୁଳ ଦ୍ୱିଗୁଣେ ଝଲକେ ରଙ୍ଗେ ମୀନନୟନା । ୨୭ ।

---

୧୬, ୧୭ ଓ ୧୮ ପଦମାନ ରାଧାଙ୍କ ସ୍ତବ ହୋଇଅଛି । ଏ ପଦମାନଙ୍କ ପାଦମାନଙ୍କର ଶେଷ ନଅ ଅକ୍ଷର ନେଇ ଭାଗବତ ବୃତ୍ତରେ ପଢ଼ିଲେ ଶ୍ରୀ ଶ୍ରୀ ଚୈତନ୍ୟ ଦେବଙ୍କ ପ୍ରତି ଭକ୍ତର ସ୍ତବ ହେବ ।

୧୯ ପଦଠାରୁ ୨୩ଶ ପଦ ପର୍ଯ୍ୟନ୍ତ ଦୁଇ ଅର୍ଥ—ଏକ ଅର୍ଥରେ ଏଠାରେ ଚୈତନ୍ୟଙ୍କୁ କୃଷ୍ଣ ରୂପରେ ଓ ଅନ୍ୟ ଅର୍ଥରେ ଚନ୍ଦ୍ରଙ୍କୁ ସ୍ତବ କରାଯାଇଅଛି ।

୧୯ । ବଧୂ—କୃଷ୍ଣ, ଚନ୍ଦ୍ର । ରାଧା—କଶୋରୀ ରାଧା, ଅନୁରାଧା ନକ୍ଷତ୍ର । ରାମ—ବଳରାମ, ମୃଗ ।

୨୦ । କାମଜନକ—କନ୍ଦର୍ପପିତା, କାମଜନ୍ମକାରୀ । ବଶାଖା—ରାଧାଙ୍କ ସଖୀ, ବଶାଖା ନକ୍ଷତ୍ର । ବସୁପତ—ରାଜା, ପୁନର୍ବସୁର ପତ ।

୨୧ । ରୋହଣୀ—ବଳରାମଙ୍କର ମାତା; ନକ୍ଷତ୍ର ବଶେଷ । ମୃଗ—ମାୟାମୃଗ, ଠେକୁଅ ।

୨୨ । ତମ—ପାପ, ଅନ୍ଧାର । ଶୁକର—ଶୂକରରୂପୀ; ସୁକର—ମନୋହର ।

ବୃନ୍ତେ ଥାଇ ରଙ୍ଗେ ଝୁଲନ୍ତି ଗୁରୁ ସୁମନାପନ୍ତି
ଲମ୍ପଟପଣକୁ ପ୍ରକାଶେ ଭୃଙ୍ଗ ଚପଳମତି । ୨୮ ।
ବଲ୍ଲରୀ ସାହ୍ଲାଦେ ଦେଉଛନ୍ତି ତରୁଗଳାକୁ ଛନ୍ଦ
ପ୍ରଣୟ ପୌରୁଷ ଗାଅନ୍ତି ପିକେ ହୋଇଣ ବନ୍ଦୀ । ୨୯ ।
ଫେଲିଙ୍ଗୀ ବସନେ ଅବୃତା ରାଜେ ସ୍ୱର୍ଗୀୟ କାନ୍ତି
ମନେ ଉପୁଜାଇ ବାସନ୍ତୀ ପିକବଚନ ଭ୍ରାନ୍ତି । ୩୦ ।
କିଏ ସେ କି ଗୀତ ଗାଉଛନ୍ତି ମନେ ବିଷାଦ ବହ୍ନି
ମରାଳମାଳିନୀ ସରସୀକୂଳେ ନିଶାରେ ରହି । ୩୧ ।
ବହି ଅସୁଥିଲା ସେ ବାଣୀ ମୃଦୁ ମଧୁର ଠାଣି
ଶୁକ ପିକ ବେଣୁ ବୀଣାକୁ ଗଜରବେ ନ ଅଣି । ୩୨ ।
"କାହାନ୍ତି ହୃଦୟରଞ୍ଜନ ବାଳା ସ୍ନେହ ଦେବତା!
ମଧୁର ସସ୍ମିତ ଅଧର ସତୀ ପ୍ରେମଭରତା । ୩୩ ।
କାହିଁ ସେହି ପ୍ରେମମୂରତି ବଡ ମତିକି ଅଟଣି
ହରଷ ଘନରସ ଢାଳୁ ଦଗ୍‌ଧା ବିଦଗ୍‌ଧା ପ୍ରାଣେ । ୩୪ ।
ଯା ବିରହ କରେ ନୀରସ ବାଳା ସରସ ପ୍ରାଣ
କାହାନ୍ତି ସେ ରସସାଗର କରି ତାପେ ଦହନ । ୩୫ ।
ବାସନ୍ତୀ ସୁମନେ କରନ୍ତି ମନ କେଡ଼େ ଚଞ୍ଚଳ
କାହିଁକି ଦିଅଇ ଯନ୍ତ୍ରଣା ଏ ମଳୟ ଅନିଳ" । ୩୬ ।
ପୁଣି ଉଚ୍ଛୁଳିଲା ଖେଳିଲା ବାମା କଣ୍ଠଲହରୀ
ଚକ୍ରମୋହିନୀଙ୍କ ପଛରେ "କିପାଁ ମରୁ ଲୋ ଝୁରି । ୩୭ ।
ହୃଦୟ ଫଟାଇ ଦିଅଇ ତୋର କରୁଣ ସ୍ୱନ
କାହିଁକି ଲୋ ଚକ୍ରବାକୀ ତୁ ଦୁଃଖେ କରୁ କାରୁଣ୍ୟ । ୩୮ ।
ଦଣ୍ଡିକ ବିରହ ହୃଦରେ ତୋର ସହି ନ ପାରୁ
ମୋ ପରି ନୋହୁ ଲୋ ! ଦାରୁଣ ଖେଦେ ମରୁଛୁ ଝୁରି । ୩୯ ।
କେତେ ବର୍ଷ ମୋର ହେଲଣି ପତି ହେଲେ ଅନ୍ତର
କେଡ଼େ ବିରହକୁ ସହୁଛି ଧିକ ହୃଦୟ ମୋର । ୪୦ ।
ହେଲା ଅଧିବାସ ନିଶାରେ ପ୍ରଭାତରେ ରାଜନ
ହୁଅନ୍ତେ ବିଧାତା କଲା ଲୋ ସତୀ ପତିଙ୍କ ଭିନ୍ନ । ୪୧ ।
ରେବ ନୃପତିର ସାମନ୍ତ ରାଜା ମୋର ଶ୍ୱଶୁର
ସ୍ୱାଧୀନତା-ରବି ଉଦୟ ହେଉ ହୃଦେ ତାଙ୍କର । ୪୨ ।

୨୮ । ବୃନ୍ତ—ଡେମ୍ଫ । ୨୯ । ବଲ୍ଲରୀ—ଲତା ।
୩୩ । ବିଦଗ୍‌ଧା—ରସିକା ।
୩୭ । ଚକ୍ରମୋହିନୀ—ଚକ୍ରବାକୀ ।

ଅକ୍ରମଣ କଲେ ନାଶୀଥେ ଚେଦ୍ୱ ସେ ଅବରୋଧ
ସେ ଫଳରେ ପତ୍ତି ହୋଇଲେ ବନ୍ଦୀଶାଳାରେ ବନ୍ଦୀ । ୪୩ ।
କରହର ଯେତେ ଯନ୍ତ୍ରଣା ତହୁଁ ବଳେ ଏ ଭାବ
ଫାଟି ଯାଉଅଛୁ ହୃଦୟୁ ଖେଦ କହି ନୋହିବ । ୪୪
ସୁନ୍ଦରପଣକୁ ଜଗତେ ତାଙ୍କୁ କି ପଟାନ୍ତର
ପାଶେ ଥିଲା ପର ଦଶି ଲୋ ! ହେଉଛନ୍ତି ଅନ୍ତର । ୪୫ ।
ପତ୍ତିବନ୍ଦୀ ହନ୍ତୁ ବଜୟାଗଡ଼ ତେଜିଲି ମୁହିଁ
ତାଙ୍କ ଭାବେ ହୁର ତାପସୀ ବେଶେ ଅଜ ବୁଲଇ । ୪୬ ।
ବାଲ୍ୟସଖୀ ଥିଲେ ମୋହର କାଶୀକେମା ଇନ୍ଦିରା
ତାଙ୍କ ପର ଜଣେ ମୋହନ୍ନା ଦେଖି ନ ଥିବ ଧରା । ୪୭ ।
ଭେଳକି ଲଗାଇ ଅଣାଇ ପୁଂସେ ନବନ୍ଧଇଲା
ବଚନ ନ ମାନେ ଯେ ସୁବା ଦ'ଏ ଚଣ୍ଡୀଙ୍କି ବଳି । ୪୮ ।
ଚେଦ କରେ ଅଙ୍ଗ ଜପ ବନ୍ଦୀ ତାଙ୍କୁ ସେ ଭାବେ ଦନେ
ଅଣିଲା ମୋହନୀ ଲଗାଇ ଗୃନ୍ଦୁଦନ୍ତ ଭୁବନେ । ୪୯ ।
ବଚନ ତାହାର ନ ମାନ୍ତି କହି ସଦମ୍ଭେ ରୋଷ
ହଳାହଳ ଦେଲା ମୋ କରେ ନାଶିବାକୁ ପୁରୁଷ । ୫୦ ।
ଦେଖି ସେ ସୁନ୍ଦର ଯୁବାଙ୍କୁ ସ୍ତମ୍ଭ ଭଜିଲି ଯଣେ
ମଜିଲି ପ୍ରଣୟେ ଭଜିଲି ରଙ୍ଗେ ତାଙ୍କ ଚରଣେ । ୫୧ ।
ଚତୁର ପଣରେ ବେନିଏ ପୁରୁଷ ହେଲେ ଅନ୍ତର
ସ୍ୱର୍ଗସୁଖ ତୁଚ୍ଛ ମଣିଲି କାନ୍ତେ କର ବିହାର । ୫୨ ।
ସେ ଥିଲେ ମୋହର ପାଶରେ ମୋର ଥିଲା ତ ସବୁ
ପାଶୁଁ ତେଜିବାକୁ ଯଣେହେଁ ନୋହେ ଆଦର ଭାବୁଁ । ୫୩ ।
ଇନ୍ଦିରା ସେକାଳୁ ପତିଙ୍କି ମୋର ଶତ୍ରୁ କରଇ
ସ୍ମରିଲେ ତା ଭାବ ସଖି ଲୋ ! ହୃଦ ଥର ଉଠଇ । ୫୪ ।
ଶୁଣୁଥିଲେ ରହି ସଙ୍ଗୀତ ତହିଁ ରାଜ-ଦମ୍ପତି
ରସଲେଖା ଭାବ ଅସିଲା ଏଣେ ଭୂପଙ୍କ ସ୍ମୃତି । ୫୫ ।
ତା ବିରହେ ରାଜ-ଦମ୍ପତି ଦୁଃଖ କଲେ ପ୍ରକାଶ
ଭବନେ ଚଳିଲେ ଗୋଲୋକ ଭାଷେ ଅପୂର୍ବ ରସ । ୫୬ ।

## ୪୮ଶ ଛାନ୍ଦ

ରାଗ—ନଳିନୀଗୌଡ଼ା ।

ଅନନ୍ତମଣ୍ଡନ ସୌର ଦୀନଦୁଃଖହର୍ତ୍ତା
କମଳିନୀସ୍ନେହୀ ସୁରକୁଳ ରକ୍ଷାକର୍ତ୍ତା । ୧ ।
ହେ ହର ଶ୍ରୀବତ୍ସ ମନ୍ଦଚିନ୍ତା ତାପ ହର
ନମୋନମଃ ଦୀନବନ୍ଧୁ ସୁତ ମୁଁ ତୁମ୍ଭର । ୨ ।

---

ପ୍ରଥମ ଦୁଇପଦ ପ୍ରତ୍ୟେକ ତିନି ଅର୍ଥରେ ହୋଇଅଛି । ( ପ୍ରଥମ ଅର୍ଥ ବିଷ୍ଣୁ, ଦ୍ୱିତୀୟ ଅର୍ଥ ଶନି ଓ ତୃତୀୟ ଅର୍ଥ ସୂର୍ଯ୍ୟଙ୍କ ସ୍ତବ )।

୧ମ ପଦ । ୧ମ ଅର୍ଥ—ହେ ଦୀନଦୁଃଖହର୍ତ୍ତା ( ଦୁଃଖୀ ଲୋକର ଦୁଃଖହରଣକାରୀ ) ଶଉରୀ = ଶୌରୀ ( ବିଷ୍ଣୁ ) ଆପଣ ଅନନ୍ତମଣ୍ଡନ ଅଟନ୍ତି ( ଅନନ୍ତ = ବାସୁକି ଉପରେ ଅବସ୍ଥାନ କରନ୍ତି ) । ଆପଣ କମଳିନୀ ( ଲକ୍ଷ୍ମୀ ) ଙ୍କର ସ୍ନେହୀ ( ପ୍ରଣୟୀ ) ଅଟନ୍ତି ଓ ସୁରକୁଳ ରକ୍ଷାକର୍ତ୍ତା ଅଟନ୍ତି ( ଦେବତାମାନଙ୍କୁ ରକ୍ଷା କରନ୍ତି )।

୧ମ ପଦ । ୨ୟ ଅର୍ଥ—ହେ ସୌରୀ ( ଶନି ) ଆପଣ ଦୀନଦୁଃଖହର୍ତ୍ତା ଅଟନ୍ତି ( ଦୁଃଖୀର ଦୁଃଖ ହରଣ କରନ୍ତି ) ଓ ଅନନ୍ତମଣ୍ଡନ ଅଟନ୍ତି ( ଆକାଶରେ ଅବସ୍ଥାନ କରନ୍ତି ) । କମଳିନୀସ୍ନେହୀ ସୁରର କୁଳରକ୍ଷାକର୍ତ୍ତା ଅଟନ୍ତି ( ପଦ୍ମବନକୁ ସ୍ନେହ କରୁଥିବା ସୂର୍ଯ୍ୟଙ୍କର ପୁତ୍ର ଅଟନ୍ତି )।

୧ମ ପଦ । ୩ୟ ଅର୍ଥ—ହେ ସୁର ( ସୂର୍ଯ୍ୟ ) ଆପଣ ଅନନ୍ତମଣ୍ଡନ ଅଟନ୍ତି ( ଆପଣ ଖ-ମଣି ଅଟନ୍ତି ବା ଆକାଶରେ ଅବସ୍ଥାନ କରନ୍ତି ) । ଆପଣ ସୌରୀ ଓ ଦିନର ଦୁଃଖହର୍ତ୍ତା ଅଟନ୍ତି ଅର୍ଥାତ୍ ପିତାରୂପରେ ଶନିଙ୍କର ଓ ସ୍ୱାମୀ ରୂପେ ଦିବସର ଦୁଃଖକୁ ହରଣ କରନ୍ତି । ଆପଣ କମଳିନୀ ସ୍ନେହୀ ( ଆପଣ ପଦ୍ମିନୀର ପ୍ରଣୟୀ ଅଟନ୍ତି ) ଓ କୁଳରକ୍ଷାକର୍ତ୍ତା ଅଟନ୍ତି ଅର୍ଥାତ୍ ଆପଣଙ୍କଠାରୁ ଇକ୍ଷ୍ୱାକୁ, ଇକ୍ଷ୍ୱାକୁଙ୍କଠାରୁ ମନୁ ଜନ୍ମ ହୋଇ ମାନବ ସୃଷ୍ଟି କରିଥିବାରୁ ଆପଣ କୁଳରକ୍ଷାକାରୀ ଅଟନ୍ତି ଅଥବା ଆପଣ ସୂର୍ଯ୍ୟବଂଶୀୟମାନଙ୍କର ରକ୍ଷାକର୍ତ୍ତା ଅଟନ୍ତି; କିମ୍ବା ପିତୃ ଉଦ୍ଦେଶ୍ୟରେ ଦିଆଯାଉଥିବା ଅର୍ଘ୍ୟକୁ ଆପଣ ଗ୍ରହଣ କରୁଥିବାରୁ ଓ ପିତୃମାନଙ୍କ କଲ୍ୟାଣରୁ ବଂଶର ଉନ୍ନତି ହେଉଥିବାରୁ ଆପଣ କୁଳରକ୍ଷାକର୍ତ୍ତା ଅଟନ୍ତି ।

୨ୟ ପଦ । ୧ମ ଅର୍ଥ—ହେ ହରି ( ବିଷ୍ଣୁ ) ଶ୍ରୀବତ୍ସ ( ଶ୍ରୀବତ୍ସ ବ୍ରାହ୍ମଣର ) ମନ୍ଦ ଚିନ୍ତା ଓ ତାପକୁ ହର ( ହରଣ କରିଅଛ ) । ଅର୍ଥାତ୍ ଶ୍ରୀବତ୍ସର ପଦାଘାତକୁ ଆଦରରେ ବକ୍ଷରେ ଧାରଣ କରିଥିବାରୁ 'ତିନିଦେବ ମଧ୍ୟରୁ କିଏ ବଡ଼' ଏହି ବିଷୟରେ ଶ୍ରୀବତ୍ସଙ୍କର ଯେଉଁ ଚିନ୍ତା ଥିଲା ତାହା ତାଙ୍କ ମନରୁ ଅପସାରିତ ହେଲା ଓ ତାଙ୍କର ସହଜ ଅଜ୍ଞାନତା ମଧ୍ୟ ବିଦୂରିତ ହେଲା । ହେ ଦୀନବନ୍ଧୁ ( ଦୁଃଖୀ ଲୋକଙ୍କର ବନ୍ଧୁ ) ମୁଁ ତୁମ୍ଭର ( ଆପଣଙ୍କର ) ସୁତ ( ପୁଅ ) ଅଟେ ଓ ନମୋନମଃ ( ମୁଁ ଆପଣଙ୍କୁ ନମସ୍କାର କରୁଅଛି )।

୨ୟ ପଦ । ୨ୟ ଅର୍ଥ—ହେ ହରି ଶ୍ରୀବତ୍ସ ମନ୍ଦ ( ସୂର୍ଯ୍ୟଙ୍କର ଶ୍ରେଷ୍ଠ ପୁତ୍ର ଶନି ) ଚିନ୍ତା ତାପକୁ ହର ( ମୋର ଚିନ୍ତା ଓ ତିନିତାପକୁ ହରଣ କର ) ହେ ଦିନବନ୍ଧୁ ସୁତ ( ଦିବାକର ପୁତ୍ର ) ମୁଁ ତୁମ୍ଭର ( ଆପଣଙ୍କର) ଅଟେ ଓ ଆପଣଙ୍କୁ ନମସ୍କାର କରୁଅଛି ।

୨ୟ ପଦ । ୩ୟ ଅର୍ଥ—ହେ ଦୀନବନ୍ଧୁ! ( ଦିନନାଥ ସୂର୍ଯ୍ୟ ) ମୁଁ ତୁମ୍ଭର ( ଆପଣଙ୍କର ଅଟେ ) ନମୋନମଃ ( ମୁଁ ଆପଣଙ୍କୁ ନମସ୍କାର କରୁଅଛି ) । ହରି ଶ୍ରୀବତ୍ସ ( କୃଷ୍ଣଙ୍କର ଶୋକଯୁକ୍ତ ପୁତ୍ର କନ୍ଦର୍ପ ସମ୍ବନ୍ଧୀୟ ) ମନ୍ଦ ଚିନ୍ତା ଓ ତାପକୁ ହର ( ହରଣ କର )।

ଏକାନ୍ତେ ବିହାରେ ଢ଼ନେ ବିପିନରେ ରାମା
କାନ୍ତେ ଭ୍ରମେ ଦେଖି ନାଥ ଅଟବୀ ସୁଷମା । ୩ ।
'ପଳଶୀ' ଢ଼ଛାରୁ ହେଲ ଅନ ଅନ ନେନ
କାନ୍ତ କହେ ଏ କି ରାତ୍ର ପରାଣ ସଙ୍ଘାତ । ୪ ।
ଦରସ୍ମୁଟେ ଗରୁ ଦୁଃଖେ ଭଣେ ପ୍ରିୟବତୀ
ଦର୍ଶି ଯାଉଛନ୍ତି ଆଜ ସୀତା ସୀତାପତି । ୫ ।
ଶ୍ରୀରାମ ପ୍ରାଣପ୍ରତିମ ଜନକନନ୍ଦନୀ
ସତୀ ନ ହେଲ ଅହା ସେ କି ଦୁଃଖଭୋଗିନୀ । ୬ ।
ପ୍ରସଙ୍ଗାନ୍ତରେ ବିଷାଦ ବିଗୁର ଲାଘବ
ପ୍ରେୟସୀଙ୍କି ଦେଖାଏ ସେ ବନ ଶୋଭା ଧବ । ୭ ।
ଦେଖ ଏଥି କଇଲାସ ଶୋଭାରେ ଅଟବୀ
ବହେ ବୃଷଭ ପଞ୍ଚାସ୍ୟ ପୁଣି ଶ୍ୟାମାଛବି । ୮ ।
ଅମରାବତୀରେ ଶୋଭେ ବନର ଏ ଦେଶ
ଐରାବତ ଶକ୍ର ସଙ୍ଗେ ସୁମନ ଅଶେଷ । ୯ ।
ବନେ ଏହି ଦେଶ ବଇକୁଣ୍ଠଶୋଭା ଧରେ
ସରସ୍ୱତୀ ନାରାୟଣୀ ମାଧବ ଛବିରେ । ୧୦ ।
ଅଳକାଶିରୀ କି ଧରେ ବିପିନେ ଏ ଦେଶ
ରାଜି କୁବେର ଗନ୍ଧର୍ବ ନର୍ତ୍ତକୀ ବିଶେଷ । ୧୧ ।
ବନେ ଏହି ସ୍ଥଳ ଧରେ ବ୍ରହ୍ମାପୁର ଶୋଭା
ବେଧା ସାବିତ୍ରୀ ଛବିରେ କେଡ଼େ ମନଲୋଭା । ୧୨ ।
ଦେଖ ରାଜପୁର ଶୋଭା ଧରେ ଏହି ସ୍ଥାନ
ଧବ ସହଚରୀବାର ରଙ୍ଗେ ବିଦ୍ୟମାନ । ୧୩ ।
ପ୍ରସଙ୍ଗାନ୍ତରକୁ ଯାଇ ନାସିକା ଫୁଲାଇ
ଦେଲ ହସି ମୁଖ ମୋଢ଼ି ତୋଷେ ରାମଚନ୍ଦ୍ରମୁହାଁ । ୧୪ ।

---

୩ୟ ପଦ—ବିପିନ—ଅଟବୀ, ବନ । ୪ର୍ଥ ପଦ—ପଳାଶୀ—ପଳାଶବୃକ୍ଷ, ରାକ୍ଷସ ।

୮ । ବୃଷଭ—ଢ଼କଢ଼ାଶୃଙ୍ଗୀ ଗଛ, ଷଣ୍ଢ । ପଞ୍ଚାସ୍ୟ—ସିଂହ, ଶିବ । ଶ୍ୟାମା—ନୀଳଦୁବା, କାଳିକା ।

୯ । ଅମରାବତୀ—ଇନ୍ଦ୍ରପୁରୀ । ଐରାବତ—ନାରଙ୍ଗ, ଇନ୍ଦ୍ରଙ୍କ ହସ୍ତୀ । ଶକ୍ର—ଇନ୍ଦ୍ର, ମଲ୍ଲି ଫୁଲ ।

୧୦ । ସରସ୍ୱତୀ—ସୋମଲତା, ଭାରତୀ । ନାରାୟଣୀ—ସତାବରୀ, ଲକ୍ଷ୍ମୀ । ମାଧବ—ମହୁଲ, ବିଷ୍ଣୁ ।

୧୧ । ଗନ୍ଧର୍ବ—କୋଇଲି, ମୃଗ, କିନ୍ନର । କୁବେର—ନନ୍ଦୀବୃକ୍ଷ, ଗନ୍ଧର୍ବରାଜ, କୁଅଣି । ନର୍ତ୍ତକୀ—ହସ୍ତିନୀ, ମୟୂରୀ ।

୧୨ । ବେଧା—ଶ୍ୱେତାର୍କବୃକ୍ଷ, ବ୍ରହ୍ମା । ଧବ—ସ୍ୱାମୀ, ଧଅଗଛ । ସହଚରୀ—ସଖୀ, ଦାସକେରଣ୍ଡାଗଛ ।

ବାଳାର ସରସ ଚିତ୍ତ ଜାଣି ଭଣେ କାନ୍ତ
ଏକାନ୍ତ ସ୍ଥାନରେ କାନ୍ତ ଅଛଇ ଦୁର୍ଦ୍ଦାନ୍ତ । ୧୫ ।
ଥାଉ ଥାଉ ସେ ରହସ୍ୟ ଭାଷେ ହରିଣାକ୍ଷୀ
ସନ୍ତତ କାମ ଅଳାପ ଉଚିତ ନ ଦେଖି । ୧୬ ।
ସ୍ୱମର୍ଯ୍ୟାଦା ଲଙ୍ଘିବାର ଉଚିତ ନୁହଇ
ଦାସୀ ଲଙ୍ଘିଲା ମର୍ଯ୍ୟାଦା କ୍ଷମ ଦୟା ବହି । ୧୭ ।
ସତେ ସୀତାପ୍ରେମ ଅଟେ କେମନ୍ତ ମଧୁର
ଲଙ୍କପତି ପ୍ରଣତି ତେଜିଲା ବାରବାର । ୧୮ ।
କାୟ ମନୋବାକ୍ୟେ ସଦା କରି ରାମ ଧ୍ୟାନ
ଶେଷେ ହରିହୁଣୀ ଅହା ଭେଟିଲି କଷଣ । ୧୯ ।
ନାୟକଙ୍କ କି ବିଶ୍ୱାସ କହୁ ବିମ୍ବାଧରୀ
ଗଦଗଦ କଣ୍ଠେ ଆଉ ନ ପାରେ ଉଚ୍ଚାରି । ୨୦ ।
ଶିଶୁସାରଙ୍ଗଲୋଚନ ହେଲା ଥନ ଥନ
କଣ୍ଟକିଲା ରୋମରାଜି ଶ୍ୱାସ ଘନଘନ । ୨୧ ।
ଜାନକୀ ଭାବାବେଶୀଙ୍କ ଭାଷେ ପ୍ରାଣକାନ୍ତ
ଅଶ୍ୱମେଧେ ସ୍ୱର୍ଣ୍ଣସୀତା ବହେ ରଘୁନାଥ । ୨୨ ।
ବିରହରେ ସୀତାପ୍ରେମ ଧରି ହୃଦେ ନିତ
ଜଗତକୁ ମହାଶିକ୍ଷା ଦେଲେ ଦାଶରଥି । ୨୩ ।
ରାମ ନୁହନ୍ତି କାମୁକ ପ୍ରେମିକ ସେ ଧୀର
ଐଶ୍ୱର୍ଯ୍ୟରେ ଭୋଗ କାମ ନ ଥିଲା ତାଙ୍କର । ୨୪ ।
କୁଚରିତ ସଇରିବେ ଅରୋପଇ ଦୋଷ
ଅନ୍ଧବିବରେ ଚନ୍ଦ୍ରମା ନୁହଇ ପ୍ରକାଶ । ୨୫ ।
ସମାନ ଗଣଇ ଅପରାଧୀ ଆନ ନରେ
ସନ୍ଦେହୀ ସନ୍ଦେହ କରୁଥାଇ ଚରାଚରେ । ୨୬ ।
ମୋଚି ହୋଇ ଶୁଚି ସେହୁ ଯଦି ହରି ଭଜେ
ଶୁଚି ହୋଇ ମୋଚି ସେହୁ ଯଦି ହରି ତେଜେ । ୨୭ ।
ପୂତାତ୍ମା ଜାନକୀକାନ୍ତ ଜାଣି ଏ ବୃତ୍ତାନ୍ତ
କଲେ ତ୍ୟାଗ ପ୍ରିୟତମା ପାଇଁ ପ୍ରଜାହିତ । ୨୮ ।

---

୧୬ । ହରିଣାକ୍ଷୀ—ମୃଗନୟନା ।

୧୮ । ଲଙ୍କପତି—ରାବଣ ।

୨୧ । ସାରଙ୍ଗ—ହରିଣ ।

୨୨ । ଅଶ୍ୱମେଧ—ଯଜ୍ଞବିଶେଷ ( ଏ ଯଜ୍ଞରେ ଅଶ୍ୱ ବଳି ଦିଆଯାଏ) ।

୨୬ । ଚରାଚର—ସ୍ଥାବର ଜଙ୍ଗମ । ୨୭ । ଗୋମୁକ୍ତଛନ୍ଦ ।

ଅମ୍ଳାନ ବାସରୁ ପୁଣି ଅଗ୍ନି ପରୀକ୍ଷାରେ
ଦଶରଥ ସାକ୍ଷ୍ୟ ବାଲ୍ମୀକି ଶପଥରେ । ୨୯ ।
ଜାଣିଲେହେଁ ସତୀ ଏ କି ହେଲା ବଡ଼ କଥା
କାନ୍ତ ହେବୁଁ ଜାଣିଥିଲେ କେମନ୍ତ ସେ କାନ୍ତା । ୩୦ ।
ଦକ୍ଷିଣ ନାୟକ ସମେ ବହୁ ନାରୀ ମୋହେ
ଧୃଷ୍ଟ ନିର୍ଲଜ୍ଜ ନାରୀରେ ତିରସ୍କୃତ ହୋଏ । ୩୧ ।
ଶଠ ମୋହି ଏକ କପଟରେ ଆନ ମୋହେ
ଅନୁକୂଳ ସଦା ଏକ ପ୍ରିୟବତୀ ବହେ । ୩୨ ।
ଯଥା ସତୀ ସୀତା ତଥା ରାମ ଅନୁକୂଳ
ଶ୍ୱରହରେ ପ୍ରେମ ପ୍ରକୃତି ଜାଣିଲେ ସକଳ । ୩୩ ।
ନାନାର୍ଥ ପଣ୍ଡିତା ଯେଣୁ ଥିଲା ବିମ୍ବାଧରୀ
ଭ୍ରମେ କାନ୍ତେ କହିଲା ଯା କଚିତ ବିଗ୍ରହ । ୩୪ ।
ଏହିକାଳେ ଧୀରୀ ମୁଖେ ସହାସ୍ୟର ରେଖା
ଦେଖେ କାନ୍ତ ବଳେ ବଳେ ଆସି ଦେଲା ଦେଖା । ୩୫ ।
ସୁହାସୀ ଖେଳାଇ କହେ ତୋଳା ଚଞ୍ଚରୀକ
ଶେଫାଳିରେ ଦେଖ ଭୃଙ୍ଗ ପର୍ଣନାୟକ । ୩୬ ।
ସାଧୁ ହୃଦେ କ୍ରୋଧ ପରି ଦିଶେ ଅଶୋଭନ
ଅବା ଯଶ ବିସ୍ତାରରେ ଯଥା ଅହଂଗୁଣ । ୩୭ ।
ଦେଖ ଶାଳ ତରୁ ଜଣ୍ଡା ହୋଇଛି ମଣ୍ଡନେ
ଊର୍ଦ୍ଧ୍ୱବାହୁ ବ୍ରହ୍ମଦର୍ଶୀ ଯଥା ହରିଧ୍ୟାନେ । ୩୮ ।
ବାତ ପ୍ରତାନେ ପଲ୍ଲବେ ପଡ଼ୁଛନ୍ତି ଝଡ଼ି
ହରିଙ୍କ ଶାପେ ଯେମନ୍ତ ମୋହ ଯାଏ ଛାଡ଼ି । ୩୯ ।
ଦେଖାଯାଏ ଅନେକ ଲାଗି ଶାଳରେ କାର୍ପାସ
ବେଶ୍ୟା ସଙ୍ଗୁ ସୁକୁଟୁମ୍ବ ସ୍ନେହ ଯଥା ନାଶ । ୪୦ ।
ଦେଖ ପଡ଼େ ଝଡ଼ି ପୁରି ବସନ୍ତେ ଭ୍ରମର
ଧୃଷ୍ଟତା ସଙ୍ଗେ ମର୍ଯ୍ୟାଦା ହେଲା ପରି ଦୂର । ୪୧ ।

---

୨୯ । ଅମ୍ଳାନବାସ—ଋଷିପତ୍ନୀ ସୀତାଙ୍କୁ ଦେଇଥିବା ବସ୍ତ୍ର । ଏହାର ଗୁଣ ଏପରି ଥିଲା ଯେ, ସତୀସ୍ତ୍ରୀ ପିନ୍ଧିଲେ ଏହି ଲୁଗା ମଳିନ ହେବ ନାହିଁ ଓ ପୋଡ଼ିଯିବ ନାହିଁ । ଦଶରଥ ସାକ୍ଷ୍ୟ—ଅଗ୍ନି ପରୀକ୍ଷା ସମୟରେ ଦଶରଥ ପିତୃଲୋକରୁ ଆସି (ସୂକ୍ଷ୍ମ ଶରୀରରେ) ସୀତା ସତୀ ବୋଲି କହିଥିଲେ ।

୩୬ । ଚଞ୍ଚରୀକ—ଭ୍ରମର । ଶେଫାଳି—ପୁଷ୍ପବିଶେଷ । ଭୃଙ୍ଗ—ଭ୍ରମର ।

୩୭ । ଅହଂଗୁଣ—ଆତ୍ମବଡ଼ିମାପଣ । ୩୯ । ମୋହ—ମାୟା, ଭ୍ରାନ୍ତି ।

୪୦ । କାର୍ପାସ—କ୍ଷୀର ।

ବୃକ୍ଷଅଙ୍କୁ ଚକ୍ଷୁଃଶ୍ରବା ଲୁଞ୍ଚି କୁଞ୍ଜେ ଏଡା
ଯଥା ଗୃହୁ ଗୃହାନ୍ତରେ ସ୍ୱାତନ୍ତ୍ୟ ନାୟିକା । ୪୨ ।
ବକୁଳିତ ସନ୍ଧ୍ୟାରେ ଗୁଞ୍ଜେ ଅଳି ମଧୁ
ଯଶସ୍ୱୀର ଯଶ ଯଥା ଗାଏ ତୋଷେ ସାଧୁ । ୪୩ ।
ଦୂରାନ୍ତରୁ ଦେଖ ଲର୍ଡା ଯାଉଅଛି ଚଟି
ହୃଦୟବାନର ହୃଦ ହୁଏ କି ବଳପି । ୪୪ ।
ହୁଅନ୍ତ ବାଳକ ଦୂରେ କପୋତବନିତା
ବିଭୁ ଦରଶନ ଆଶେ ଭକ୍ତ ଆତ୍ମା ଯଥା । ୪୫ ।
ମୁକୁଳି ବକୁଳ ରଙ୍ଗେ ବାଟରେ ସୁବାସ
ଜ୍ଞାନୋଦୟେ ମନୁଷ୍ୟର ଯେମନ୍ତ ପ୍ରକାଶ । ୪୬ ।
ରବେ ଶକ୍ରସୁତ ବସି ସଦା ଡାଳବନେ
ବହୁଭାଷୀ ହୁଏ ଯଥା ଜଳପି ସୁମନେ । ୪୭ ।
ଦେଖ ପଲ୍ଲବିତ ଶୀଳେ ପତତ୍ରିଙ୍କ ଲୀଳା
ସମ୍ପଦେ ବାନ୍ଧବଗଣ ଯଥା ମେଳା ମେଳା । ୪୮ ।
ନାଚଇ କଳାପୀ ମୋଦେ ଚନ୍ଦ୍ରିକା ସଜାଇ
ଦାତା ହୃଦ ଯଥା ଦୀନେ ସୁଦୟା ଦେଖାଇ । ୪୯ ।
ଲୋଟଣୀ ଭାଙ୍ଗୁଛି ପାରି ନଭେ କି ମଧୁର
ସଜ୍ଜନଙ୍କ ପୁଷ୍କରମେ ଯେମନ୍ତ ରୁଚିର । ୫୦ ।
ଘୁମୁରେ ପୁଂ ପାରାବତ ଡାକେ ଘୁରୁ ଘୁରୁ
ସଦା ଚଞ୍ଚଳ ଜନର ମନେ ଆଶା ପରି । ୫୧ ।
ବୃକ୍ଷରୁ ହରିଣୀ ଦେଖ ସତତ ଅଥୟେ
ସାଧୁ ଯଥା ହେଉଥାନ୍ତି ଦୁଷ୍ଟଜନ ଭୟେ । ୫୨ ।
ବୃଥା ଗର୍ଭୟେ ଶମ୍ବର ହେଉଛି ଉନ୍ମତ୍ତ
ଅଳପ ଜନ ଲଭିଲେ ଯଥା ବହୁ ବିତ୍ତ । ୫୩ ।
କି ନିଷ୍ଠରେ ଧ୍ରୁବେ ଦେଖ ବସିଛି ଟିଟ୍ଟିଭ
ଆତ୍ମଜ୍ଞାନୋଦୟେ ଯଥା ହୁଅଇ ମାନବ । ୫୪ ।

---

୪୨ । ଚକ୍ଷୁଃଶ୍ରବା—ସର୍ପ । ସ୍ୱାତନ୍ତ୍ୟନାୟିକା—ବାହ୍ୟଘରବୁଲା ସ୍ତ୍ରୀ; ସ୍ୱାଧୀନା ସ୍ତ୍ରୀ ।
୪୭ । ଶକ୍ରସୁତ—କାକ । ବହୁଭାଷୀ—ବୃଥା ଗଳ୍ପକାରୀ; ଗପୁଡ଼ା ।
୪୮ । ଶୀଳ—ବରଗଛ । ପତତ୍ରୀ—ପକ୍ଷୀ ।
୪୯ । କଳାପୀ—ମୟୂର । ଦାତା—ଦାନୀ । ଦୀନ—ଦୁଃଖୀଲୋକ ।
୫୦ । ନଭ—ଆକାଶ । ରୁଚିର—ସୁନ୍ଦର; ମନୋହର ।
୫୧ । ପୁଂ ପାରାବତ—ଅଣ୍ଡିରା ପାରା; ନର ।
୫୪ । ଧ୍ରୁବ—ଲଣ୍ଡାଗଛ । ଆତ୍ମଜ୍ଞାନ—ଜୀବାତ୍ମା-ପରମାତ୍ମାର ଏକଜ୍ଞାନ । ଟିଟ୍ଟିଭ—ଟେଁଟେଁୟା ପକ୍ଷୀ ।

ହେଉଛୁ ଦେଖାଇ ମହାକାଳ ଛା ସୁଷମା
ଅଜ୍ଞାନୀ ଯେମନ୍ତ ହୁଏ ଦେଖାଇ ଗରିମା । ୫୫ ।
ବସନ୍ତପକ୍ଷୀ ଦେହସ୍ଥ କୃଷ୍ଣ ଛା କି ଶୋଭି
ହିତୈଷୀ ଜନର ଯଥା ତାଡ଼ନା ପ୍ରତିଭି । ୫୬ ।
ମାଧବୀ ଝଙ୍କୁଲ ଦେଖ ବସୁଁ ପ୍ରଜାପତି
କୁସଂସର୍ଗେ ଯଥା ନର ଲଭେ ଅଧୋଗତି । ୫୭ ।
ପୁଂସ୍କୋକିଳ କି ମଧୁରେ ଧରିଛୁ ପଞ୍ଚମ
ନାମଯଜ୍ଞେ ଭକ୍ତ ଯଥା ଭଜେ ହରିନାମ । ୫୮ ।
ଦେଖ ଏ ସଞ୍ଚାଣ ହୁଏ ସଙ୍କ ନିରେଖ
ଅନ୍ତଶ୍ଚାରୀର ଅଟୁ କି କେଉଁ ଲୋକେ ସୁଖ । ୫୯ ।
ବୃଷ୍ଟିଭୟେ ବାୟୁ ନୀଡ଼ କରଇ ରଚନ
ଦୂରଦର୍ଶୀ ହୁଅଇ କି ପୂର୍ବୁ ସାବଧାନ । ୬୦ ।
ବଲ୍ମୀକକୁ ବିଦାରଇ ଆଗ୍ରହେ ଭଲ୍ଲୁକ
କରେ ନାଶ କୀର୍ତ୍ତିରାଜ ଯଥା ନୀଚଲୋକ । ୬୧ ।
ଦେଖ ଝାମ୍ପି ନେଲ ବଜ୍ରନଖୀ ଛା ଶିକାର
ଶୂରତା ବିନା କାହିଁରେ ମିଳେ ପୁରସ୍କାର । ୬୨ ।
ଏକାଳେ ଶାର୍ଦ୍ଦୂଳ ଶୃଙ୍ଗେ ଘୋର ରଡ଼ି କରୁ
ଅଲଗିଲ କାନନ୍ତେ ତ୍ରିବି ଭୟେ କଉରୋରୁ । ୬୩ ।
ଅଭୟ ବଚନେ କାନ୍ତ ବୋଧେ କିବା ଡର
ନ ଜଣା କି ପାଶେ ଜଗିଅଛୁ ପରିକର । ୬୪ ।
କାନ୍ତ ସ୍ନେହ ମାପି ବାଳାମଣି ତୋଷ ଅତି
କୃପାକଟାକ୍ଷ ପକାଇ ତୋଷୁଥାଇ ପତି । ୬୫ ।
ପ୍ରିୟତମା ଘେନି ସଙ୍ଗେ ବାହୁଡ଼ିଲେ ନୃପ
ଭେଟି ଅନୁଚରେ ପଥେ କଟକ ସମୀପ । ୬୬ ।
ଶ୍ରୀ ଗୋଲୋକ ଗୁରୁପଦ ଚିନ୍ତି ଛନ୍ଦ ଭଣେ
ଅଧମର ଦଶାଗ୍ରଣି ହର ଶୁଭକ୍ଷଣେ । ୬୭ ।

---

୬୦ । ଦୂରଦର୍ଶୀ—ଯେଉଁ ଲୋକ ଭବିଷ୍ୟତକୁ ଦେଖି ପାରେ ।
୬୧ । ବଲ୍ମୀକ—ହୁଇହୁଙ୍କା । ୬୨ । ବଜ୍ରନଖୀ—ବାଜପକ୍ଷୀ ।

# ୪୯ଶ ଛାନ୍ଦ

## ରାଗ—ଲଳିତ କାମୋଦୀ

## (ଶୁକ ସାରିକା ବିବାଦ)

ଶୁଣ ସାଧୁ ନନ୍ଦ ସମାଗ୍ର୍ୟ, ରାଣୀ ସଙ୍ଗେ ଧନେ ନରବର
ଥିଲେ ଉପବନେ ଶୁକ ଡାକେ ଛନ୍ଦେ ସାରୀଙ୍କ ଠାରି କି ବାରମ୍ବାର ଗୋ,
ରାଣୀ କହି । ଶୁକେ ସାରୀ ବିଭା ଦେବା ନେଇ । ୧ ।
ନେଲେ ରାଣୀ ଶୁକ ବେଗେ ଧରି; ନୃପ ସନ୍ନିଧିକି ଗଲା ସାରୀ ।
ରାଣୀ ବୋଲେ ସାରି ! ବର ଜାଅ ବରି ଶୁକ ଡାକେ ଏଣେ ହେ କିଶୋରି !
ସାରୀ ଶୁଣି । ଲାଜ ପଙ୍କେ ବଳେ ଗଲା ଲାଖି । ୨ ।
ଶୁକେ ପୃଚ୍ଛୁ ନୃପ ହସି ଗୃହେ, କିଶୋରୀଙ୍କ ଡାକୁ କପାଁ ତୁହେ
ଶୁକ କହେ ରାଧା ନାମେ ଝରେ ସୁଧା ଅହ୍ଲାଦନୀ ଏକା ସେ ବ୍ରହ୍ମାଣ୍ଡେ ।
ଶୁଣି ସାରୀ । ଭାଷେ ଜଗଦ୍‌ଗୁରୁ ବଂଶୀଧାରୀ । ୩ ।
ଶୁକ ଭାଷେ ବୃଷଭାନୁଜେମା, ଭାବବତୀ ଅତି ମନୋରମା
ମୃଦୁ ମଞ୍ଜୁଭାଷୀ କୃଷ୍ଣ ମୋହଫାଶୀ ଶତ ଆକର୍ଷିଣୀ ସୁଧାଧାମା
ସାରୀ କହି । କୃଷ୍ଣ ବିନୁ ରାଧା ଗତି କାହିଁ । ୪ ।
ଶୁକ ଭାଷେ ରାଧା ରସବତୀ, ଲଭିବାକୁ ମୁଦ୍‌ଧାରତି ରତି
ନାପିତ ଶବରୀ ହୁଅନ୍ତି କି ହରି ? ସାରୀ ଭାଷେ ଜାଣେ ରାଧାରୀତି
ମନେ ଆଣ । ସୁବଳ ବେଶେ କେ ବୁଲେ ବନ । ୫ ।
ଉଦାର ପଦପଲ୍ଲବ ଧନେ, ନ ମାଗିଲେ ହରି କି ଦାନ୍ତୁଣେ
ଶୁକ କହୁଁ ସାରୀ ବୋଲେ ସେ କିଶୋରୀ ନ ବୋଲେ କି ଧୂଳି ଶିରେ ଘେନେ
ପଦୁ ତୋଳ । ବ୍ରଜଗ୍ରାମୁଁ ଅସେ ଯେଉଁ ବାଳୀ । ୬ ।
ଶୁକ ଭାଷେ ବ୍ରଜରାଜସୁତା, ସଂସାରରେ ସାର ରାଗଲତା
ମୁରଲୀ ଭଜନ କରେ ଜାଣି ଧନ ରାଧା ନାମେ ନାଚେ ବନଲତା,
ସାରୀ ଉକ୍ତି । କୃଷ୍ଣଭାବେ ବନଦେବୀ ଦୂତୀ । ୭ ।
ଶୁକ ବୋଲେ ରାଧା ଶୋଭା ଗରୁ, ବଂଶୀ ପକାଇଲେ କୃଷ୍ଣ କରୁ
ତୋଳି ଦେଇ ଫୁଲ ହେଜୁ ଶୋଭା ମୂଲ୍ୟ ଜ୍ଞାନ ହରି ନେଲା କରଚୋରୁ
ସାରୀ କହେ । ଗଢ଼ି କେ ସଉଧେ କୃଷ୍ଣ ଗୃହେଁ । ୮ ।
ଶୁକ ଭାଷେ ବନେ ବନମାଳୀ, ନ ହେଲେ କି ରାଧା ଭାବେ କାଳୀ
ତା ଛଡ଼ା ସୁମନ ମଣ୍ଡି ଅପଘନ କି ସୁମନ ଶଠ କଳଶଳୀ
ସାରୀ ଭାଷେ । କୃଷ୍ଣ ଦ୍ରବ୍ୟେ ରାଧା ମନ ରସେ । ୯ ।

---

୧ । ନରବର—ରାଜା । ୩ । ଅହ୍ଲାଦନୀ—ଆନନ୍ଦ ଦାୟିନୀ ।
୭ । ମୁରଲୀ—ବଂଶୀ ।
୮ । ସଉଧ—ସୌଧ; କୋଠାଘର ।

ଶୁକ ଭାଷେ ହୋଇ ହସ ହସ, ଧଳା ରୂପେ ଯେବେ ପୀତବାସ
ରାଧା ଅନୁରାଗ ବଢ଼ୁଥିଲେ ବେଗ ସୁଦାମ ଆଗରେ ହେଲ କସ
ସାରୀ କହି । ଧଳା ରୂପ ହେଲ କଳା ତହିଁ । ୧୦ ।
ରାଣୀ ବୋଲେ କି ବୋଇଲୁ ସାର । ମୋ ଶୁକ ପାଶେ ତୁ ଗଲୁ ହାର
କିଶୋରୀର ଭାବ କେ ତାକୁ କଳିବ ନାହିଁ ନାହିଁ ଯାର ସମସର
ନୃପେ ଚାହିଁ । ମନ୍ଦେ ହସି ଦେଲ ଚନ୍ଦ୍ରମୁହାଁ । ୧୧ ।
ବାନ୍ଧବୀକି ଚାହିଁ ନୃପ ତୋଷ, ବୋଲନ୍ତି ମୁଖ ତ ହସ ହସ
ରସମୟୀ ରସ ସତତ ପ୍ରଶଂସ୍ୟ ସାରିକାକୁ ତେଣୁ ପରଶଂସ
ପୁଣି କହି । ଶୁକ ରେ ଯା ଜାଣୁ ଭଣ ତୁହି । ୧୨ ।
ଶୁକ ଭାଷେ ସର୍ବ ମନ ହର, କ୍ଷୁଦ୍ର କଳସୀରେ ଭର ନୀର
ସହସ୍ର ଯୁବତୀ ପାଶେ ରାଧା ସତୀ କେଶବମୋହିନୀ ରାସେଶ୍ୱରୀ
ବୋଲେ ସାରୀ । ମାୟାରେ ସେ ଭାବ କଲେ ହରି । ୧୩ ।
କୃଷ୍ଣେ ଦେଲେ ରାଧା ପାଦଧୂଳି, ରୋଗମୁକ୍ତ ହେଲେ ନରହରି
ଶୁକବାଣୀ ଶୁଣି ତହୁଁ ସାରୀ ଭଣି କୁରୁକ୍ଷେତ୍ରେ ସାକ୍ଷିକରେ ପୁରି
କୃଷ୍ଣ ପାଶେ । ଦ୍ୱାରକା କେ ମାୟାସଖୀ ପେଶେ । ୧୪ ।
ଭାଲେ କିଶୋରୀ ପଦଯାବକ, ମଣ୍ଡନ୍ତି କି କୃଷ୍ଣ ବୋଲେ ଶୁକ
ସାରଦାଏ ବୋଧ ସେବା ଅପରାଧ ବଳେ ବଡ଼ ହୁଏ କି ସେବକ
ପାପ ଦହେ । କୃଷ୍ଣପଦ-ନଖୁଁ ତୀର୍ଥ ବହେ । ୧୫ ।
ଭାଷିଲ ତୋଷେ ଶୁକ ଉଦ୍ଧତ, ରାଧା ପ୍ରେମ କୃଷ୍ଣେ କଲା ଭୂତ
ପାଲଟି ବାସକୁ ଲଭିଲେ ଶିରକୁ ମଣ୍ଡୁଥାନ୍ତି ହୋଇ କୃତକୃତ୍ୟ
ନୂକ୍ତ ଭକ୍ତ । କୃଷ୍ଣପ୍ରେମ ନେଲା ଜାତପତ । ୧୬ ।
ଶୁଣି ପୁଣି ରଙ୍ଗେ ଶୁକ ଭଣି, ଟିବା ପୂଜାଗଲେ ସୁଲକ୍ଷଣୀ
ସଙ୍କଳ୍ପେ ତାର ହୁହନ୍ତି ଭୂସୁର ହରଙ୍କର ପରା ଏ କରଣୀ
ସାରୀ ବାର୍ତ୍ତା । ସ୍ମର ବାସ ହରିନେବା କଥା । ୧୭ ।
ଶୁକ ବୋଲେ ଦରଶନ ଛଳେ, ସେ ଘାଟ ନିକଟ ବଟମୂଳେ
ହୋଇଣ ଅଥୟ କରନ୍ତି ବିନୟ ଚାହିଁବାକୁ ମୁଗୁଧା କୃପାଲେଳେ
ସାରୀ ହସେ । ଦେଖିବାକୁ ସଖୀଙ୍କି କେ ଭାଷେ । ୧୮ ।
ଶୁକ କହେ ନୀରେ ନାବ ବାହି, ଗୋପୀଙ୍କି ନେଇ ସେ ଭାବଗ୍ରାହୀ
ବଢ଼ୁଥିଲେ ମନ ଶ୍ରୀନନ୍ଦନନ୍ଦନ ରାଧା ବୋଲେ କର୍ଣ୍ଣଧାର ସେହି
ସାରୀ ଭାଷେ । ଦାସୀ ହୁଏ ବଡ଼ ପ୍ରଭୁପାଶେ । ୧୯ ।

---

୧୬ । ସୁକ୍ତ—ସାସ୍ତା ।
୧୭ । ସ୍ମର—ମନୋହର ।
୧୯ । କର୍ଣ୍ଣଧାର—ନାଉରିଆ ।

ଶୁକ କହେ ହରି ନିଜ ମୁଖେ, କହିଛନ୍ତି ଭକ୍ତେ ବଡ଼ ଦେଟେଁ
ନେଲେ ହରି ଧରି ଯେନେ ସେ କିଶୋରୀ ଯୋଗେଶ୍ୱରୀ କୃଷ୍ଣରୂପେ ସୁଖେ
ସାରୀ ଭାଷ । ଜାଣନ୍ତି ସେ କୃଷ୍ଣରୂପେ ରସ । ୨୦ ।
ନିକୁଞ୍ଜବିହାରୀ ନବଘନ, ମଦନ ଦହନ କରୁ ତୂର୍ଣ୍ଣ
ଶୁକର ଜଛାର ରାଧାଭାବ ମାର ଭଣ୍ଡାରେ ବପାକୁ ସେ ମୋହନ
ସାରୀ ଡାକେ । ଜାଣେ ହରି ଦକ୍ଷିଣାନାୟିକେ । ୨୧ ।
ଭାଷିଲ ହସିଲ ହୋଇ ଶୁକ, ଯେବେ ହରି ଦକ୍ଷିଣ ନାୟକ
ହେବେ କାହୁଁ ଗରୁ, ରାଧା ସତୀ ଗୁରୁ ଧୀରା ପ୍ରଣୟିନୀ ସୁକଳଙ୍କ
ସାରୀ ଭକ୍ତ । ମୂର୍ତ୍ତି ପ୍ରେମମୟୀ ସେ ଯେ ଜ୍ୟୋତି । ୨୨ ।
ଶୁକ ଭାଷେ ରାଧା ସେହି ଜ୍ୟୋତି, ଅଚ୍ୟୁତ ପୁରୁଷ ସେ ପ୍ରକୃତି
ବାସୁଦେବ ପିତା ଭାନୁସୁତା ମାତା ମାତାହିଁ ପିତାନ୍ତୁ ଗରୁ ଅତି
ଭାଷେ ସାରୀ । ହରିଙ୍କ କଳାସଙ୍ଗେକ ଗୋରୀ । ୨୩ ।
ହେଲ ଏବେ ଶୁଦର ଜନତ, ପୃଥିବୀରୁ ବେଡ଼େ ବଡ଼ ମାତ
ସ୍ୱର୍ଗୁ ଗରୀୟସୀ କ ଜହ୍ନବୀ ବେଶୀ ଜନ୍ମପୁର ପ୍ରସବିନୀ ସେ ତ
ସାରୀ କଥା । ଅନନ୍ତ ଆକାଶୁଁ ବଡ଼ ପିତା । ୨୪ ।
ଅଗେ ରାଧା ପଛେ ଶ୍ୟାମ ନାମ, ଶୁକ ବୋଲେ ବୋଲ ରାଧେ ଶ୍ୟାମ
କୁଞ୍ଜରନାୟିକା ବୋଲନ୍ତି ରାଧିକା କେ ବୋଲେ ସାରଙ୍କେ ତ୍ରିବିକ୍ରମ
କୁଞ୍ଜ ସିନା । କୃଷ୍ଣଙ୍କୁ ଯେନେ ସେ କଲେ ମନା । ୨୫ ।
ଉତ୍କଣ୍ଠିତା ହୋଇ ଆହା କେତେ, ସାରୀ ଭାଷେ କୁଞ୍ଜେ ରହି ରାତେ
ବୃଷଭାନୁସୁତା ହୁଅନ୍ତି ଖଣ୍ଡିତା ଝୁରି ଝୁରି ଶ୍ୟାମେ ନାନାମତେ
ଶୁକ ବୋଲେ । ବୃନ୍ଦା ବନରଙ୍ଗେ କେ ରାଧା ଭୁଲେ । ୨୬ ।
ସାରୀ ଭାଷେ ଥନ ଥନ ଅଛି, ଦେଖିଲେ ଏକାନ୍ତେ ନାନ୍ଦୀମୁଖୀ
ନ ଲଭିଲେ ବନ୍ଧୁ କହେ ରାଧା ଇନ୍ଦୁମୁଖୀ ଜୀବ ଯିବ ସଖି ସାକ୍ଷୀ
ଶୁକ କହି । କୃଷ୍ଣ ଦୁଃଖୀ ତଥା ବାଧା ସହି । ୨୭ ।
ଶୁଣି ତୋଷେ ରାଣୀ ନୃପରାଣ, ସାରୀଶୁକେ କଲେ ଧନ୍ୟ ଧନ୍ୟ
ଜଣେକର ଭାବ ଅନେକୁ ବଳିବ ଶେଷ ହେବ କାହୁଁ ଅଗଣନ
କୁହାକୁହି । ନମୋନମଃ ରାଧାକୃଷ୍ଣ କହି । ୨୮ ।
ସ୍ୱର୍ଣ୍ଣ ପିଞ୍ଜରାଏ ଆଣି ରାଣୀ, ଭରିଲେ ତହିଁ ପକ୍ଷୀ ପକ୍ଷିଣୀ
ନୃପ ତୋଷମନ ବୋଇଲେ ମିଳନ ହୋଇଲା ମଧୁରେ ଜାଣି ଶୁଣି
ରାଣୀ ଭଣି ! ସାରୀ ତୋଷ ପତିମନ ଜାଣି । ୨୯ ।
ବିମ୍ବାଧରୀ ମୁଖ ଚୁମ୍ବି ଧୀରେ, ବୋଇଲେ ନୃପତି ଧାତକାରେ
ବାନ୍ଧବ ! ତୋ ଭଙ୍ଗୀ ଦମ୍ଭ ଯେଏ ଭାଙ୍ଗି ସଙ୍ଗୀ କର ଜନ୍ମଜନ୍ମାନ୍ତରେ
ଶ୍ରୀ ଗୋଲୋକ । ଲୋଡ଼େ ନାମପଢ଼ା ସାରୀ ଶୁକ । ୩୦ ।

---

୨୫ । ତ୍ରିବିକ୍ରମ—ବାମନ, କୃଷ୍ଣ । ୨୬ । ବୃଷଭାନୁ ସୁତା—ରାଧା ।

## ୫୦ଶ ଛାନ୍ଦ

### ରାଗ—ନଳିନୀଗୌଡ଼ା

ତୁ-ଷାର ଋତୁ ଧରାରେ କ୍ରମେ ପ୍ରକଟିତ
ପ୍ର-ସରିଲା ଧନପତି ଦିଗୁଁ ଶୀତବାତ । ୧ ।
ଅ-ଶୋଭିଇଲା ମରୁତ ପ୍ରକୃତି ଏ ଶୁଭେ
କ-ଚ୍ୟୁତ * ପଲ୍ଲବେ ଶୁଖି ବ ରାଜି ଧୂରୁବେ । ୨ ।
ରା-ଜୀବେ ଏକାଳେ ହେଲେ ରସରେ ଦହନ
ବି-ଭ୍ରମରେ ନାନାରଙ୍ଗ ବାସେ କି ସୁମନ । ୩ ।

---

ଏ ଛାନ୍ଦର ପ୍ରଥମ ପାଞ୍ଚ ପଦ ଶୀତ ଋତୁ ବର୍ଣ୍ଣନ ହୋଇଅଛି ଓ ଏହି ପଦମାନଙ୍କର ପ୍ରତ୍ୟେକ ପାଦର ପ୍ରଥମ ଅକ୍ଷରଟିମାନ ଚ୍ୟୁତ କଲେ ବସନ୍ତ ଋତୁର ଅର୍ଥ ବାହାରିବ ।

୧ମ ପଦ । ଶୀତ ଅର୍ଥରେ—ତୁଷାରଋତୁ ( ଶୀତଋତୁ ) ଧରାରେ ( ପୃଥିବୀରେ ) କ୍ରମେ ( ଅଳ୍ପେ ଅଳ୍ପେ ) ପ୍ରକଟିତ ହେଲା ( ପ୍ରକାଶ ପାଇଲା ) । ( ଧନପତି ଦିଗୁଁ ) ଉତ୍ତର ଦିଗରୁ ( ଥଣ୍ଡାପବନ ) ପ୍ରସରିଲା ( ବହିଲା ) ।

୧ମ ପଦ । (ତୁ ଓ ପ୍ର ଚ୍ୟୁତରେ)—ବସନ୍ତ ଅର୍ଥରେ—ସାରଋତୁ (ଋତୁଶ୍ରେଷ୍ଠ ବସନ୍ତ) ଧରାରେ (ପୃଥିବୀରେ) କ୍ରମେ ପ୍ରକଟିତ ହେଲା । ଉତ୍ତର ଦିଗରୁ ବହୁଥିବା ଶୀତବାତ (ଥଣ୍ଡା ପବନ) ସରିଗଲା ।

୨ୟ ପଦ । ଶୀତ ଅର୍ଥରେ—ଏ (ଶୀତଋତୁ) ପ୍ରକୃତିକି ଅଶୋଭିଇଲା । ମରୁ ତ (ଏ ମରିଯାଉ) ଶୁଭେ (ଶୁଣାଗଲା) ଅର୍ଥାତ୍ ଲୋକମାନେ କହିଲେ ଏ ପ୍ରକୃତିକି ଶୋଭାହୀନ କଲା ମରିଯାଉ । ପଲ୍ଲବେ ଶୁଖି କଚ୍ୟୁତ (ଗଛମାନଙ୍କରୁ ପତ୍ରଗୁଡ଼ିକ ଶୁଖିଯାଇ ଝଡ଼ିପଡ଼ିଲେ) ଧୂରୁବେ (ଧୁବେ=ଲଣ୍ଡାଗଛମାନେ) ବିରାଜିତ ହେଲେ ।

୨ୟ ପଦ । (ଅ ଓ କ ଚ୍ୟୁତରେ) ବସନ୍ତ ଅର୍ଥରେ—ଏ ମରୁତ (ଏ ମଳୟ ପବନ) ପ୍ରକୃତିକି ଶୁଭେ (ମଙ୍ଗଳଭାବରେ) ଶୋଭିଇଲା (ଶୋଭାଯୁକ୍ତ କଲା) । ଚ୍ୟୁତ ପଲ୍ଲବେ (ଅମ୍ବ-ଗଛର ନୂତନ ପତ୍ରରେ) ସୁଖୀ ବ (ପକ୍ଷୀମାନେ) ଧ୍ରୁବେ (ଅଟଳ ଭାବରେ) ରାଜି (ଦେଖାଗଲେ) ଅର୍ଥାତ୍ କୋକିଳାଦି ପକ୍ଷୀମାନେ ଆମ୍ବ ବଉଳିତ ହେବାରୁ ଆମ୍ବଗଛମାନଙ୍କରେ ସତତ ଦେଖାଗଲେ ।

୩ୟ ପଦ । ଶୀତ ଅର୍ଥରେ—ଏ କାଳେ (ଶୀତ ସମୟରେ) ରାଜୀବେ (ପଦ୍ମସବୁ) ରସରେ ଦହନ ହେଲେ । ଅର୍ଥାତ୍ ଶିଶିର ପଡ଼ିବାରୁ ଜଳରେ ଥାଇଁ ପୋଡ଼ିଗଲେ । ବିଭ୍ରମରେ (ଲୋକମାନେ ଶୀତ ହେତୁ ଭ୍ରମରେ ପଡ଼ି) ନାନା ରଙ୍ଗବାସେ (ନାନାପ୍ରକାର ଶୀତବସ୍ତ୍ର ବ୍ୟବହାର କରି) କି ସୁମନ (ଅତ୍ୟନ୍ତ ଖୁସି ହେଲେ) ।

୩ୟ ପଦ । (ରା ଓ ବି ଚ୍ୟୁତରେ) ବସନ୍ତ ଅର୍ଥରେ—ଜୀବ (ପ୍ରାଣିମାନେ) ଏକାଳେ (ବସନ୍ତ କାଳରେ) ରସରେ ଦହନ ହେଲେ (କାମପୀଡ଼ାଗ୍ରସ୍ତ ହେଲେ) ଭ୍ରମରେ (ଭଅଁରମାନେ) ନାନାରଙ୍ଗ ଓ ବାସରେ (ବିଭିନ୍ନ ବର୍ଣ୍ଣ ଫୁଲର ବିଭିନ୍ନ ସୁବାସରେ ବା ନାନାପ୍ରକାର ବାସରେ) କି ସୁମନ ହେଲେ (ଅତ୍ୟନ୍ତ ପ୍ରୀତ ହେଲେ) ।

---

* ଚ୍ୟୁତ ଅର୍ଥ ଚୂତ—ପ୍ରବାଦ ଅଛି ଆମ୍ବ ସ୍ୱର୍ଗରେ ଥିଲା । ସ୍ୱର୍ଗରୁ ମର୍ତ୍ତ୍ୟକୁ ଚ୍ୟୁତ ହେବାରୁ ତାର ନାମ ଏହି ନାମ ହେଲା ।

ବି-ଭୂତଭୂଷିତା ଗୃଣ୍ଡେ ଦର୍ଶିଲା ପ୍ରକୃତ
ବି-ଶୀତ ଭୀରୁ ନାଚିଲେ ଦେଖାଇ ଅଦ୍ଭୁତ । ୪ ।
ତୁ-ହିନବଂଶ ଅଶୋଭା କଲା ହିଁ ଜଗତ
ଅ-ସାର ଶୋଭାରେ ଧନ ରହି କି କୃଶ ତ । ୫ ।
ଚ୍ୟୁତାକ୍ଷର କବି ଋତୁ ଧରିଲୁ ମୋହିଲା
ମଧୁମଙ୍ଗଳ ମଙ୍ଗଳେ ସଙ୍ଗୀତ ଗାଇଲା । ୬ ।
ବସନ୍ତେ ମହିଷୀ ପାଶେ ଆସି ପରିମଳା
ଧନେ ଦେଖେ ବିରସ ବଦନ୍ତୁ ରସକଳା । ୭ ।
ପଶୁରଇ ଏକାନ୍ତରେ ପୀରତପଣ୍ଡିତା
ମଣଇ କାଳି ନିଶିରେ ହେଲୁ କି ଖଣ୍ଡିତା । ୮ ।
ହେଲା କିଏ ଦଣ୍ଡେ ଏତେ ଗଜବାଜଗତି
କଲା ହୃଦୟୁ ପଥର ନ ଜାଣି ତୋ ସ୍ଥିତି । ୯ ।
ଶୁଖିଛୁ ସଜ ସରୋଜ ସହାସ ବଦନ
ନ ପାଳିଲେ ସଙ୍କେତ କି ଜୀବର ଜୀବନ । ୧୦ ।
ହସାଇଲେ ଲୋକ ସେ କି କଷାଇଲେ ମନ
ବରୋରୁ ! ଅତନୁ କଲା ତୋ ତନୁ ଦହନ । ୧୧ ।
କାହିଁକି ନୀର ଜନମ ନୀରଜନୟନ
ବଳାଙ୍କ କେମନ୍ତେ ସ୍ଥିତ ହେଲେ ସେ ଦାରୁଣ । ୧୨ ।
କହ ତୋ ସଖୀକି ସତ ତ୍ରିପୁରସୁନ୍ଦରି !
କି ବିମନା କଲେ କାନ୍ତ କି ସ୍ୱିତ ଅଚରି । ୧୩ ।

---

୪ର୍ଥ ପଦ । ଶୀତ ଅର୍ଥରେ—ପ୍ରକୃତ (ଈଶ୍ୱରସୃଷ୍ଟ ଯାବତୀୟ ପଦାର୍ଥ) ଗୃଣ୍ଡେ ବିଭୂତି-ଭୂଷିତା ଦର୍ଶିଲା (ଅର୍ଥାତ୍ ପାଉଁଶ ବୋଳା ହେଲା ପରି ଦେଖାଗଲା) । ବି-ଶୀତଭୀରୁ (ବିଶେଷ ଶୀତଗ୍ରସ୍ତ ଲୋକମାନେ ଅର୍ଥାତ୍ ବିଶେଷତଃ ରୋଗୀ ଓ ବୃଦ୍ଧମାନେ) ଅଦ୍ଭୁତ ଦେଖାଇ ନାଚିଲେ (ଶୀତରେ ଥରି ଥରି ଅପୂର୍ବ ରୂପ ଦେଖାଇଲେ) ।

୪ର୍ଥ ପଦ । (ବି ଓ ବି ଚ୍ୟୁତରେ) ବସନ୍ତ ଅର୍ଥରେ—ବସନ୍ତ କାଳରେ ପ୍ରକୃତ ଭୂତି-ଭୂଷିତା ଗୃଣ୍ଡେ ଦର୍ଶିଲା (ଶୋଭାରେ ଭୂଷିତ ହେଲାପରି ଦେଖାଗଲା) ଶୀତଭୀରୁ (ମଲ୍ଲୀଫୁଲମାନେ) ଅଦ୍ଭୁତ ଦେଖାଇ ନାଚିଲେ (ପ୍ରସ୍ଫୁଟିତ ହୋଇ ମନୋହର କାନ୍ତି ଦେଖାଇ ନାଚିଲେ) ।

୫ମ ପଦ । ଶୀତ ଅର୍ଥରେ—ତୁହିନବଂଶ (ଶିଶିର କଣାମାନ) ହିଁ (କେବଳ) ଜଗତକୁ ଅଶୋଭା କଲା । ଅସାର ଶୋଭାରେ ରହି ଧନ କୃଶ ହେଲା (ଶ୍ରେଷ୍ଠ ହେଲା) ।

୫ମ ପଦ । (ତୁ ଓ ଅ ଚ୍ୟୁତରେ)—ବସନ୍ତ ଅର୍ଥରେ—ହିନବଂଶ (ନୀଚ ବାଉଁଶ ଗଛସବୁ) ହିଁ (କେବଳ) ଜଗତକୁ ଅଶୋଭା କଲା—ଅର୍ଥାତ୍ ଏ କାଳରେ ବାଉଁଶ ପଲ୍ଲବିଲା ନାହିଁ, ସେହି କେବଳ ପ ଅଶୋଭା କଲା । ସାର ଶୋଭାରେ (ଏ କାଳର ମନୋହର ଶୋଭା ରହି) ଧନ (ବିରହୀ ବା କାତର ଲୋକମାନେ) କୃଶ ହେଲେ (ପ୍ରିୟାବିରହରେ ବା ଦୁଃଖରେ କ୍ଷୀଣ ହେଲେ) ।

୬ଷ୍ଠ ପଦ । ମଧୁମଙ୍ଗଳ—କୋଇଲି ।

ଶିରୀଷ ମୃଦୁଅଙ୍ଗୀ ତୁ କାମ ପଟଚଣ୍ଡ
କାନ୍ତ ନ ଥିବାବେଳେ କି ଉଣ୍ଡି ଦେଲୁ ଦଣ୍ଡ । ୧୪ ।
ଉନିଦ୍ରେ ନେଇ ତୋ ଦଶେ ରଙ୍ଗିମା ସୁକେଶି ।
କାନ୍ତ ଦାରୁଣପଣ କି ମନେ ଭାବୁ ବସି । ୧୫ ।
ପରମକେ । ଶୁଣ, ଶୁଣି ବୋଲେ ଗୁରୁଶୀଳା
ଗତ ନିଶି ସମାଗମର ଯେମନ୍ତ ହୋଇଲା । ୧୬ ।
ବାସକଶଯ୍ୟାରେ କାଲି ଉନିଦ୍ରରେ ଥିଲି
ଲଭି ନାଗରମଣିଙ୍କି ପ୍ରମୋଦେ ମାତିଲି । ୧୭ ।
ପ୍ରୀତି ଅବସରେ ଅନ ଦେଇ ପ୍ରାଣକାନ୍ତ
ବୋଇଲେ କହିବ ଯାହା ନେବ କି ସଙ୍ଗାତ । ୧୮ ।
ବିପରୀତ ମାଗିବେ କି ଏମନ୍ତ ଭାବିଲି
ବିପରୀତ ଭାଷ କିପାଁ ସବସେ ଭାଷିଲି । ୧୯ ।
କହୁଁ ସେବକୀ କି ବାକ୍ୟ ନ ପାଳିବା କ୍ଷମ
ତୋଷେ ନେଲେ କୋଳ କରି ନାଗର ସୁଷମ । ୨୦ ।
କଲେ ସେ ଗଣ୍ଡମଣ୍ଡଳେ ହସି ଚୁମ୍ବଦାନ
ସବୁ ଦନ୍ତ ବଳି କଲେ ପ୍ରସନ୍ନ ମୋ ମନ । ୨୧ ।
ଭାବିଲି ଏମନ୍ତ ସୁଖ ସ୍ୱର୍ଗେ କିବା ଥାଇ
କେଉଁ ଗୁଣେ ବୃଦ୍ଧଶ୍ରବା କରଇ ବଡ଼ାଇ । ୨୨ ।
ଉପୁଜିଲା ତତକାଳେ ପ୍ରଣୟ ସିତ୍କାର
ବାହୁଯୁଗେ ଅନୁରାଗେ ଦୃଢ଼େ କଲି କୋଳ । ୨୩ ।
ଦେଖିଲି ସେ କାଳେ କାନ୍ତ ବଦନସାରସ
ପୂର୍ବ ସୁଷମାରୁ ଲବେ ହୋଇଛୁ ନୀରସ । ୨୪ ।
ଭାବିଲି ବାହ୍ୟେ ମୋ ମନ କରନ୍ତି କି ତୋଷ
ପଶି ଚନ୍ଦ୍ରାକାନ୍ତ ହୃଦେ କରିଛୁ ବିରସ । ୨୫ ।
ଉଦାସୀନ ବାଣୀ ସଙ୍ଗେ ଅଟଳ ଗୃହାଣୀ
ତାଙ୍କ ହୃଦ ବିଷାଦ ମୋ ହୃଦେ ଦେଲା ଆଣି । ୨୬ ।
ନାରୀସ୍ୱଭାବେ ଶଯ୍ୟାରୁ ଗଲି ଅପସରି
ଭାଷିଲେ ନାଥ, ଦାରୁଣ ହେଉ ବିମ୍ବାଧରି । ୨୭ ।
କାତର ସ୍ୱନ୍ତୁ ଜାଣିଲି କାନ୍ତ ଗୁରୁଦୁଃଖ
ମାନ ତେଜି ରହିଲି ଅନାଇଁ ଚନ୍ଦ୍ରମୁଖ । ୨୮ ।

---

୧୪ ପଦ । ଉଣ୍ଡି—ଖୋଜି । ୧୭ ପଦ । ଉନିଦ୍ର—ଜାଗର ।
୧୮ ପଦ । ଅନ—ରଣ । ୨୦ । ସୁଷମ—ମନୋହର ।
୨୨ ପଦ । ବୃଦ୍ଧଶ୍ରବା—ଇନ୍ଦ୍ର ।

ତହୁଁ କରକଞ୍ଜେ ତୋଳି ମୋ ଚିବୁକ କାନ୍ତ
ବୋଇଲେ ଏ ଦାସେ ମାନ ନ କର ସଙ୍ଗାତ । ୨୯ ।
ସଜ କଲେ ରଦବାସ ଚୁମ୍ବନେ ନାଗର
ଅପସରାଇ ଅଣିଲି ସେ କାଳେ ଅଧର । ୩୦ ।
ଅଧୀର ହୋଇ ସଧୀରେ ଯେତେ କଲେ ଅଳି
ବଧିର ପରି ମାନିନୀ ଅଛୁରେ ରହିଲି । ୩ ।
ଝଷିଲେ ହେମାଙ୍ଗି ! ଭଙ୍ଗି ଅଙ୍ଗ କରୁ ଯେତେ
କାଲିଠାରୁ ନାଚର ମୋ ନୟନ ଅଗ୍ରତେ । ୩୨ ।
ଶୁଣି ଦାରୁଣ ବଚନ ମାନ ଗଲା ସରି
ଏହୁ ଭାବେ କଟିଗଲା ଅର୍ଦ୍ଧେକ ଶର୍ବରୀ । ୩୩ ।
ପଶୁରିଲି ଦାମୀରେ କି କପଟ ଯୋଗାଇ
ଅଧୋମୁଖ ହେଲେ ନାଥ ବଦନ ଶୁଖାଇ । ୩୪ ।
ଦେଖି ତାଙ୍କ ଭଙ୍ଗୀ ତହିଁ ଫଙ୍କା ଗଲା ଲଜ୍ଜା
ନେଲି ଦୋଷ ମାଟି ବଳେ ଗୁମାନ ବରଜି । ୩୫ ।
ନବରସେ ମାତୁଁ କାନ୍ତ ଜାତ କୁତୁହଳ
ତାଙ୍କ ପ୍ରେମେ ଫୁଟି ଥାଏ ମୋ ହୃଦକମଳ । ୩୬ ।
ପ୍ରଣୟିମ୍ନାକ ପ୍ରଣୟୀ ଲଭୁଏ ବା କିସ
ଧୀରେ ଧୀରେ ତାଙ୍କ ହୃଦ ହେଲା ପରକାଶ । ୩୭ ।
ଆଳାପେ ଗୃନ୍ତେ ବାଣୀକୁ ସେ କାଳେ ଜାଣିଲି
ଦୂରଦେଶେ ବହୁକାଳ ଯୁଦ୍ଧେ ଯିବେ ବୋଲି । ୩୮ ।
ପୁରୁଷସିଂହ ସମରେ ନ କରଇ ଡର
ସତେ ଅବଳା ହୃଦୟୁ ଆହା କି କାତର । ୩୯ ।
ଶୁଣିଲାବେଳୁ ମୋ ଚିତ୍ତ ଥୟ ନ ଧରଇ
ବାରଣ କରିବା ଯାହା ନିଷେଧ ଜାଣଇ । ୪୦ ।
କରେ ହେଲା ଯେବେ ଶତ୍ରୁ ସମରେ ନରେଶ
ଛିପୃସଙ୍ଗି ! ରାଜ୍ୟ ସଙ୍ଗେ କୀର୍ତ୍ତି ହୁଏ ନାଶ । ୪୧ ।
ସତ୍ୟ ନ ରଖଇ ଯେବେ ନରପତି ହୋଇ
ଅଧାର୍ମିକ ସେହି ନୃପ ଅଧୋଗତି ପାଇ । ୪୨ ।
କାତରତା ଅଶୂରତା କଲେ ପରକାଶ
ରାଜ୍ୟ ଧନ ଯଶ ମାନ ସର୍ବ ହୁଏ ନାଶ । ୪୩ ।
ବିବେକ ହୁଅଇ ବଣା ବୁଦ୍ଧି ଦିଶୁ ନାହିଁ
ଭାଣ୍ଡିବ କେମନ୍ତେ କାଳ ବନ୍ଧୁଙ୍କୁ ନ ରୁହିଁ । ୪୪ ।

---

୨୯ ପଦ । କରକଞ୍ଜ—ହସ୍ତପଦ୍ମ ।  ୩୦ ପଦ । ରଦବାସ—ଓଠ ।
୪୩ ପଦ । ଅଶୂରତା—ଅଯୋଦ୍ଧାପଣିଆ ।

ବୃଷ୍ଟିଏ ହେଲେ ଅନ୍ତର କୋଟିଯୁଗ ମଣେ
ଝରକ୍ଷଣୀ ବଞ୍ଚିବ ମୁଁ କହ କେଉଁ ଗୁଣେ । ୪୫ ।
ଚେଦ ନଗରକୁ ନାହା ଯିବେ ରଣ କରି
ଅଛବେ ମୋ ନାହିଁ ଭୟ ବୀରଙ୍କୁ ଡରି । ୪୬ ।
ରସଲେଖା ପଢ଼ ବନ୍ଧମୁକ୍ତ ହେବା ମୂଳ
ସଞ୍ଚାରିକା ଦୁର୍ଦ୍ଦଶାରେ ପଥ୍ୟଣ ଅକୁଳ । ୪୭ ।
ଅଳ କଲ୍ କଣିଙ୍ ମୁଁ ଯିବାପାଇଁ ରଙ୍ଗେ
ବୋଇଲେ ଯାଉଛୁ ସତ, ମନ ତୋର ସଙ୍ଗେ । ୪୮ ।
ଦୂରେ ଥାଇ ପୀରିତି କି ପାଳିବ ସୁକେଶି ।
ଚକୋରେ ଚନ୍ଦ୍ରିକା ବିନା କେ ପାରିବ ତୋଷି । ୪୯ ।
ସ୍ୱଭଙ୍ଗୁ ଜାଣିଲ୍ ମୁଁ ତାଙ୍କ ଖେଦ ପ୍ରଭ୍ରି
ଶୁଣିଛୁ ପୂର୍ବରୁ ଲଭେ ମୁଖଶଶୀ-ଶୋଭି । ୫୦ ।
ଭାଷିଲେ ବାଳବି ! ଯୁଦ୍ଧେ ନ କରେ ମୁଁ ଡର
ବଙ୍କିମନସ୍ତନା ! ହେବ୍ରି ତୋ ଭାବେ ଅଧୀର । ୫୧ ।
କରି ଅନମାନ ମନ ସଧୀଲେ ନାଗର
ବୋଇଲେ କୁଞ୍ଚିତକେଶି ! ଯାଉଛୁ ସମର । ୫୨ ।
ରସଲେଖା ଯତ୍ନେ ତୋତେ ଲଭିଛୁ ରଙ୍ଗିଣି !
ତା ପଢ଼କୁ ମିଳାଇବି ତାର ସଙ୍ଗେ ଆଣି । ୫୩ ।
ମିଳନରୁ ବଳି ଅଛି ଜଗତେ କି ସୁଖ
ଭାଷି କେତେ କଲେ ସ୍ନେହ ସେ କାମବଶିଖ । ୫୪ ।
ଏହି ଭାବେ ଗତ ନିଶା ସହ ! ଗଲ ପାହି
କେତେମତେ ଥପି ଚନ୍ତା ମନକୁ ଘାରଇ । ୫୫ ।
ଦଣ ଦଣ୍ଡ ହେଲ ଦିବା ନ ଅସିଲେ ପୁର
ଥୟ ନ ଧରଇ ଚିତ୍ତ ଗଲେ କି ସମର । ୫୬ ।
ଅବା ବୀରବେଶେ ତାଙ୍କୁ ଦେଖି ହେବ ଡର
ଏ ଭାବନାରେ ନାଗର ନଭଲେ କି ପୁର । ୫୭ ।
ପରିସ୍ତୁରିକା ଏକାଳେ ହେଲ ପରବେଶ
ଜଣାଇଲ ନବରଙ୍କୁ ଅସନ୍ତି ନରେଶ । ୫୮ ।
ପଦ୍ମମଳା ଗଲ ଚଳି ହୋଇ ତରତର
ପ୍ରବେଶିଲେ ଇନ୍ଦୁରେଖାପୁରେ ନରବର । ୫୯ ।
ରଜନୀଗନ୍ଧା ଦେଖିଲେ ହିମାଂଶୁ ଯେସନ
ସୁପ୍ରସନ୍ନା ହେଲ ତଥା ରମଣୀରତନ । ୬୦ ।

---

୪୭ ପଦ । ସଞ୍ଚାରିକା—ଦୂତୀ ।
୫୪ ପଦ । ବଶିଖ—ଶର ।

ହରିଥିଲ ଚନ୍ଦ୍ରାକାନ୍ତ ସୁମନା ମାରସ
ଛଳ ଛଳେ ଧଶୁଥିଲ ନେହ-ତାମରସ । ୬୧ ।
ବାହ୍ୟଶୀଳା ଗୁଣେ ଧୀର୍ ଜୋଗରେ ରହି
ଶ୍ରୀ ଗୋଲୋକଚନ୍ଦ୍ର ରମ୍ୟ ଛାନ୍ଦ ବିରଚଇ । ୬୨ ।

## ୪୨ଶ ଛାନ୍ଦ

ରାଗ—ପାହାଡ଼ିଆ କେଦାର

ଘେନ ବିଭୂଷ ଅପୂର୍ବ ରସ          ରଣ ଉଦ୍‌ଯୋଗେ ଅଙ୍ଗ ନରେଶ
ଡେଙ୍ଗୁରା ବାଜେ ଦେଶେ ବିଦେଶ ସଇନ ସାଜେ ଯେ,
ଅସେ ତେ ମଲ୍ଲ ଧରିଣ ଭଲ୍ଲ          କୃପାଣପାଣି ଶୋଭି ଅତୁଲ
ଅଙ୍ଗେ ଫଳକ ଦୋଳେ ତରିଶୂଳ ମଦେ ଗରଜେ ଯେ ।
ମହା ଉଦ୍ଗମେ କେ ବା ତ୍ରିଶୂଳ ଧରେ ଯେ,
ଖରଶାଣିତ ତରବାର ତା କରେ ଯେ,
କେ ବାଣାସନ ଧରି ଶୋଭନ          ଖଞ୍ଜି ତୂଣୀରେ ଶର ଯତନ
ସାଞ୍ଜି ବର୍ମରେ ଦେହ ଭୂଷଣ ମାତ ମତ୍ତରେ ଯେ । ୧ ।
ଅସ୍ତ୍ର ବାଜ ତା ଯୁଦ୍ଧବୃନ୍ଦରେ          ଶାଣିତ ହୁଏ ସୁତୀକ୍ଷ୍ଣ ଧାରେ
ତା ଦେହ ପୂର୍ବ ରଣ ପ୍ରହାରେ ବଙ୍କୁର ଦଶେ ଯେ,
ଅସେ ଆୟୁଧ କେବା ଅସ୍ଫାଳି          ଆହବରଙ୍ଗୀ ବୀରକେଶରୀ
କେ ଶୁର ବାହାସ୍ଫୋଟକ ମାରି ସମରବେଶେ ଯେ ।
ରଣରଙ୍ଗେ କେ ଚଣ୍ଡ ଶାର୍ଦ୍ଦୂଳ ସମ ଯେ
ନେହ ପଲାଶ ଅଙ୍ଗ କି ମନୋରମ ଯେ;
ଅନେକ ପାଣି ଶକଟେ ମିଳି          କମାଣ କେତେ ଆହବେ ବଳି
କେ ଧରିଅଛୁ ବନ୍ଧୁକ ଗୁଳି ଅତ ବିଷମ ଯେ । ୨ ।
ମଦେ ଅସଇ କେ ଅଶ୍ୱାରୋହୀ          ତୁରଙ୍ଗେ ରଙ୍ଗେ ଚକ୍‌କର ଦେଇ
ଆରୋଣ ମାତଙ୍ଗେ କେ ଝପଟାଇ ଅଙ୍କୁଶ ମାରି ଯେ,
ହ୍ରେଷା ବୃଂହିତ ରବେ ଚହଳ          ଗଜଗଣ୍ଡରେ ସଇନ ମେଳ
ବୀରରସ କି କରଇ ଖେଳ ଭୀତ ସଞ୍ଚାରି ଯେ
ଭୀମପ୍ରଚଣ୍ଡ ଚମୂନାୟକ ମେଳ ଯେ
ଏକେ କେ ଧରି ଶତ କେଶରୀ ବଳ ଯେ;
ଯେ ଯେତେ ଯୁଦ୍ଧେ ହୋଇଛୁ ଜୟୀ          ପଦକ ଗଳଦେଶେ ସୁହାଇ
ଏକୁ ଅନେକ ଜାଣନ୍ତା ନାହିଁ ରଣେ କୁଶଳ ଯେ । ୩ ।

୬୧ ପଦ । ତାମରସ—ପଦ୍ମ ।
୧ ପଦ । କୃପାଣ—ଖଣ୍ଡା । ୨ ପଦ । ଆହବ—ଯୁଦ୍ଧ । କମାଣ—ତୋପ ।
୩ ପଦ । ଚମୂନାୟକ—ସେନାପତି ।

ଅଶଇଶରୁ ଦୟା କାହାକୁ   ନାହିଁ ତ ଜଣା ମୋତେ ବାହାକୁ
ଅଭଙ୍ଗ ଯର ବ୍ୟୂହଭେଦଙ୍କୁ ଅତ ଦରପୀ ଯେ,
ଯମ ଯମର ଦୂତ ପରାୟେ   ରୁଣ୍ଡେ ହୁଅନ୍ତି ବଳ ଗର୍ବେଯେ
ସଇନ ସହ ସାମନ୍ତରାୟେ ଅସନ୍ତି ବ୍ୟାପି ଯେ ।
ତୁଣ୍ଡେ ବାଦକ ଘେନି ରଣ ବାଜଣା ଯେ,
ଶିଙ୍ଗା ଦୁନ୍ଦୁଭି ଯେତେ ନ ହୁଏ ଗଣା ଯେ;
କେ ସଜାଡ଼ଇ ବଜାଇ ଭେରୀ   କେବା ପରଖେ ଫୁଙ୍କି ମଧୁରୀ
କେ ପିଟେ ଢୋଲ ମାରେ ସୁସୂର ମନ ଫୁଲଣା ଯେ । ୪ ।
ରଣବେଶ କେ ନବ ଯୁବତୀ   ସାଜି ଦାଅଇ ମଦେ ତା ପତି
ମାଥା ସଜାଏ ଯୁତେ ଝଟିତ ବିଳମ୍ବ ଜାଣି ଯେ,
ବୀରାଙ୍ଗନା କେ ମନ ଫୁଲାଇ   ରଣ ସଙ୍ଗୀତ ମଧୁରେ ଗାଇ
ଭାଇ କି ଦାଏ ରଣେ ପଠାଇ କର ସୂଠାଣି ଯେ ।
ରଣେକଣ୍ଠୁକୁ ଜାତ କରାଇ ରଙ୍ଗେ ଯେ,
ବାଛୁ କେ ଦାଏ ଶାସ୍ତ୍ର ଶସ୍ତ୍ରକୁ ସଙ୍ଗେ ଯେ;
ମାଙ୍ଗଳଦରେ କୁମ୍ଭରେ ବାର   ଭରି ତୋରଣେ ରଖନ୍ତି ନାରୀ
ମଧୁରେ ହୁଳହୁଳିକି କରି ଘ୍ରାବତରଙ୍ଗେ ଯେ । ୫ ।
ଏକାଳେ ପଞ୍ଚ ଜ୍ୟୋତିଷ ବନ୍ଧୁ   ଅଙ୍ଗ ନୃବରେ ହୋଇ ବିନୟୀ
ଶୁଭକାଳ ଏ ଯାତ୍ରାର ପାଇଁ ମାହେନ୍ଦ୍ର ଯୋଗ ଯେ,
ପାତ୍ର ମନ୍ତ୍ରିଙ୍କି ଅନାଇଁ ଧୀରେ   ଦକ୍ଷିଣେ ବାତ ନେଇ ନାସାରେ
ବିଜେ ନୃବର ହାଦୋଳା ପରେ ଧରି ଖଡ଼ଗ ଯେ ।
କରି ଅଶିଷ ବିପ୍ରେ ପଢ଼ିଲେ ବେଦ ଯେ,
ପୁରକାମିନୀ କଲେ ମଙ୍ଗଳନାଦ ଯେ;
ଦାଜିଲା ଶୁଭ ବାଜଣା ଖରେ   ଗାଇଲେ ଭାଟ ସ୍ତବ ସୁସ୍ୱରେ
ପଞ୍ଚମାତଙ୍ଗବାହ୍ନ ସଙ୍ଗରେ ଅଗ୍ରେ ପ୍ରମୋଦ ଯେ । ୬ ।
ଥାଟକୁ ଚାହିଁ ଅଙ୍ଗନୃବର   ବୋଲେ ବିଜୟା ଗଡ଼ରେ ବୀର
ରଚ ଅଦ୍ଭୁତ ଘୋର ସମର ଶୌର୍ଯ୍ୟ ଦେଖାଇ ଯେ,
ପତ କ୍ଷତ୍ରିୟବୀର୍ଯ୍ୟରୁ ଜାତ   ଦର୍ପୀ ହର୍ଯ୍ୟକ୍ଷ ହେ ଖଣ୍ଡାୟୁତ
ସମରୋତ୍ସାହେ ପ୍ରଚଣ୍ଡେ ମାତ ବିଜୟ ପାଇଁ ଯେ ।
କରୁ ତ ଜୟଲକ୍ଷ୍ମୀ ବନ୍ଦେ ବନ୍ଦନା ଯେ,
ହେଉ ବିଜୟାଗଡ଼ ଐଶ୍ୱର୍ଯ୍ୟ ଚୂନା ଯେ;
ନୃପ ଆଦେଶେ ଚଳିଲା ଥାଟ   ବୀରେ ମାରନ୍ତି ରଣକୁ ହାଟ
ପରକଟାଇ ରସ ବିକଟ ଉତ୍ସୁକମନା ଯେ । ୭ ।

---

୪ ପଦ । ଅଶଇଶରୁ—ଅଶୈଶବରୁ, ପିଲାଦିନରୁ ।

ଗିରି କାନନ ପୁରି ସଇନ   ଚଳାଇ ଯଥା ସ୍ତନିତ ଘନ
ବାୟୁ ଯୋଗରେ ଏ ଅନୁମାନ ଶରଭ୍ରା କହୁ୍ୟ ଯେ,
କବା ସାଗରେ ଖେଳେ ଲହରୀ   ଉଷ୍ଣୀଷ ରାଜି ସେ ଶୋଭା ଧରି
ବର୍ଚ୍ଛା ବନ୍ଧୁକ ନକ୍ର ମକରୀ ଖେଳନ୍ତି ମଧ୍ୟେ ଯେ ।
ତାଳ ତାଳକେ ନାଚି ପଡ଼ଇ ପଦ ଯେ,
ଦଣେ ସମତାନୃତ୍ୟ ଉତ୍ତରି ଛନ୍ଦ ଯେ,
ଚମୂପତିର ଆଦେଶ ଯଥା   ମଠ ଚଞ୍ଚଳ ଗମନ ତଥା
ବୀରେ ଟେକନ୍ତି ନମାନ୍ତି ମଥା ବହି ପ୍ରମୋଦ ଯେ । ୮ ।
ତୁରଙ୍ଗାରୋହୀ ଧରଣି ତାଳ   ମାଡ଼ି ଚାଲନ୍ତି ଦଳକୁ ଦଳ
ଧ୍ୱନିତ ଦରେ ଟାପୁ ଚହଳ ଘୋଣା ଫୁତ୍କାର ଯେ,
ଗମଇ ରଥୀ ରଥକେ ଖରେ   କେତନ ଉଡ଼େ ବାୟୁଲହରେ
ଦରଦନ୍ତୀ ସମ ମାତଙ୍ଗବରେ ଉତ୍ତୋଳି କର ଯେ ।
ଅହି ଘୋଡ଼ାର ଘନଧୂଳି ଉଡ଼ଇ ଯେ
ଅକାଳେ କୁହୁଡ଼ି କି ମାଡ଼ିଆସଇ ଯେ,
ନଦୀ ପର୍ବତ ଗିରି କାନନ   ନବନିର୍ମିତ ସେତୁ ବହନ
ଲଙ୍ଘି ଚାଲନ୍ତି ବୀର ସଇନ ପ୍ରମତ୍ତ ହୋଇ ଯେ । ୯ ।
କୁଳ ଅଚଳ ସହିତେ ମହୀ   ବାସୁକି ଶିରେ ଭୟେ କମ୍ପଇ
ସମୁଦ୍ର କୂଳ ଲଙ୍ଘି ଆସଇ ପ୍ରଳୟ ମଣି ଯେ,
ବାହିନୀ ବେଗେ ଚେଦି ପ୍ରବେଶ   ହେଉ ପ୍ରବେଶ ସନ୍ଧ୍ୟା ପ୍ରବେଶ
ନବଦୁର୍ଗରେ କରିଲେ ବାସ ସଇନଶ୍ରେଣୀ ଯେ ।
ଦୁର୍ଗରକ୍ଷିଏ ଦୁର୍ଗ ରହିଲେ ଜଗି ଯେ,
ଗୁପ୍ତଚରଙ୍କୁ ଥିଲେ ପୂର୍ବୁ ବରଗି ଯେ;
ନାଟକେ ନିଶି ଯାପନ୍ତି ବୀରେ   କେ ନାନା ବାଦ୍ୟ ବାଜଣା କରେ
କେ ପଢ଼େ ବୀରରସ କାବ୍ୟରେ ହୋଇ ସରାଗୀ ଯେ । ୧୦ ।
ସୁପ୍ରଭାତଲା ତ୍ରିଯାମା ଏଣେ   ପିକ ଡାହୁକ ରାବିଲେ କଣେ
ଦହିଲା ନବ କାମିନୀଗଣେ କୁକ୍କୁଟ ରାବ ଯେ
ଜାର ଚଳାଇ ବାସେ ବିରାଗେ   ଫୁଟିଲେ କୋକନଦ ତଡ଼ାଗେ
କୁସୁମଲିହ ଚୁମ୍ବେ ସରାଗେ ହସିଲେ ରବି ଯେ
ରଙ୍ଗେ ତାରକାପ୍ରଭା କରି ବିନାଶ ଯେ
ଧୀରେ କୁମାରପୁର ହେଲା ପ୍ରବେଶ ଯେ;
ଚୁମ୍ବିଲା ଖର ଶିଖରଚୂଡ଼ା   ମାରଗରାଗ କରାଇ କ୍ରୀଡ଼ା
ସ୍ୱପ୍ନବିମୁଗ୍ଧେ ବହିଲା ପୀଡ଼ା ମାଗଧ ଘୋଷ ଯେ । ୧୧ ।

---

୮ ପଦ । ନକ୍ର—କୁମ୍ଭୀର । ୯ ପଦ । ଦରଦନ୍ତୀ—ଦଗହସ୍ତୀ । ଅହି—ସୂର୍ଯ୍ୟ; ପୃଥିବୀ ।
୧୧ ପଦ । ତ୍ରିଯାମା—ରାତ୍ରି । ଜାର—ବଟ । କୁସୁମଲିହ—ଭ୍ରମର । ତାରକା—ତାରା, ନକ୍ଷତ୍ର, ତାରକାସୁର ( ଏହାକୁ କାର୍ତ୍ତିକ ବିନାଶ କରିଥିଲେ ) । କୁମାର ପୁ( ସୁ )ର—ବାଳସୂର୍ଯ୍ୟ, ଯୋଦ୍ଧା, କାର୍ତ୍ତିକ । ମାରଗରାଗ—ବୈଦୁର୍ଯ୍ୟ ମଣିର ରଙ୍ଗ ।

ବଢ଼ାଇ ନିତ୍ୟକୃତ୍ୟ ହିତ   ସମରେ ବୀରେ ବଳାନ୍ତି ମତି
କେ ବହ୍ନି ମନେ ଅତି ଭୂପତି ଶିର ସଲଖେ ଯେ
କଳଙ୍କ ରେଖା ଖଣ୍ଡୁ ଚନ୍ଦ୍ର   ଛଡ଼ାଉଅଛି ଉଲ୍ଲାସ ବହ୍ନି
କେ ଶନୋଦରେ ଶୀତ ଭେଦଇ ଲକ୍ଷ୍ୟ ପରଖେ ଯେ,
ମନ୍ଦୁରାରୁ କେ ବାଜୀ ସଜାଇ ଅଣି ଯେ,
ଗଜେ ଭୁଞ୍ଜାଏ କଏ ପିଆଏ ପାଣି ଯେ,
କାହିଁ ନାୟକେ ହୋଇଣ ମେଳ   କରନ୍ତି ରଣ ଉଦ୍‌ଯୋଗ ଗୋଳ
କାହିଁ ଉଠୁଛି ବାଦ୍ୟ ଚହଳ କମ୍ପେ ଧରଣୀ ଯେ । ୧୨ ।

ଗ୍ରୀଷ୍ମ ବରଷା ଶୀତ ବସନ୍ତ   ହୋଇ ଶରତ ପୁଣି ହେମନ୍ତ
ଅଙ୍ଗ ନୃପତି ସମୀପେ ଦୂତ ପ୍ରକାଶେ ଖରେ ଯେ,
ବିରସ ବନ୍ୟା ଯାଉଛନ୍ତି କହି   ଦାନଭଞ୍ଜନ ସୁଷମା ବହି
କୁମୁଦ ଭାବ ଦିଏ ସ୍ମରୁଛି ତୁଳା ବିହରେ ଯେ,
ବ୍ୟାକରଣ ଅନ୍ବେଷରେ ଭାଷା ଯଥା ଯେ
ନୃପ ଭାବନା ସୀମା କଲା, ସେ ତଥା ଯେ,
ବୋଲି ନୃପଙ୍କୁ କାଶୀକୁମାରୀ   ରସଲେଖାର ପତ୍ରିକା ଧରି
ବନ୍ଦଶାଳାରୁ ନେଇଛନ୍ତି ହରି ଷଷ୍ଠମ ତଥା ଯେ । ୧୩ ।

କାଣେ ସୁନ୍ଦର ମନ୍ଦରସ୍ତନୀ   ରଙ୍ଗ ମନ୍ଦାରଅଧରୀ ଧନୀ
ଚେଦ ରାଣୀ ତା ମାତା ଭଗିନୀ ସେ ଯେ ମାଳିନୀ ଯେ,
ବିଦ୍ୟା ମନ୍ତ୍ରର ଯନ୍ତ୍ରରେ ଅତି   ସମରେ ଜିଣେ ନ କରେ ଭୀତି
ତା ନାମେ ନରନାରୀ କମ୍ପନ୍ତି ଜାଣି ନାଗ୍ରଣୀ ଯେ,
ରଣଙ୍କରଣି କାହିଁ ତା ଗଦ ପଦ ଯେ
ସାଧେ ଅସାଧ୍ୟ ବୀର କହିଲେ ମଦ ଯେ
ରଙ୍ଗ ରାଜୀବଚରଣୀ କାଳୀ   ପୁଜେ ଭକତି ରତରେ ବାଳୀ
ତାର ଉଦ୍ଦେଶ୍ୟ ନ ହୋଏ କଳି ବଡ଼ ବିପଦ ଯେ । ୧୪ ।

ଅବିବାହିତା ନବଯୁବତୀ   କ୍ରୋଧ ନ ଥିଲେ ବୋଲନ୍ତି ରତି
ଧରିଲେ ବୀଣା ସେ ସରସ୍ୱତୀ ବୋଲନ୍ତେ ଜନେ ଯେ,
ଦେଖିଲେ ଶୋଭା ନ ହେବ ଜଣା   ଭରିଛି ହୃଦେ ଯେ ଅକରୁଣା
ବଧେ କିରାତୀ ରୂପେ ଅଙ୍ଗନା ନୃପକୀ ରଣେ ଯେ ।

---

୧୨ ପଦ । ମନ୍ଦୁରା—ଘୋଡ଼ାଶାଳ ।

୧୩ ପଦ । ଗ୍ରୀଷ୍ମକାଳରେ ବିରସ ( ଜଳହୀନତା ), ବର୍ଷାରେ ବନ୍ୟା, ଶୀତରେ ଦାନ ଭଞ୍ଜନ ( ଦାନ ଶ୍ରେଷ୍ଠ ), ବସନ୍ତରେ ସୁଷମା ( ଶୋଭା ), ଶରତରେ କୁମୁଦ (କଇଁଫୁଲ) ଓ ହେମନ୍ତରେ ତୁଳା ବିହରେ ( ରେଜେଇ ଓ ତୋଷକ ଆଦି ବ୍ୟବହାର ହୁଏ ) ।

ଚେଦ ଅମାତ୍ୟଙ୍କି କରୁଛନ୍ତି ତୁଣ୍ଡ ଯେ,
ବେଗେ ଜଳାବ ରଣ ଅନଳକୁଣ୍ଡ ଯେ,
କଣ୍ଠୀରବ ଅନୁରୋଧେ ରାଜନ   ଦେଲି ଅପ୍ରିୟ ଭଦନ୍ତମାନ
ଅଗ୍ନି ଯୁଝିବ ଇନ୍ଦର ତୁଣ୍ଡ ବଳ ପ୍ରଚଣ୍ଡ ଯେ । ୧୫ ।

ଶୁଣି ଏମନ୍ତ କେତୁ ସାମନ୍ତ   କହଇ ସମେ ସେ ଇନ୍ଦ୍ରଜିତ
ସ୍ୱପନ୍ତୁ ମାୟାରଣେ ଯେମନ୍ତ ଅକଳପିତ ଯେ,
ଅଜ କି ରକ୍ଷା ଯୁଦ୍ଧେ କାହାର   ସାହା ଏଡ଼ାଲେ ଏକା ଈଶ୍ବର
ବସ୍ତ୍ରଗ୍ରହାର ବର ସମର ଅତି ବିଶାଳ ଯେ ।
ବୁଦ୍ଧି ବିବେକ ନେଇ ହରି ସେ କ୍ଷଣେ ଯେ,
ଯେବେ ପଶିବ ଦେବ ଦାନବ ରଣେ ସେ,
ତା ସଙ୍ଗେ ରଣ ନ ହୋଏ ହରି   ମାୟାରେ ନେବ ସକଳ ଧରି
ଦୁଃସାହସେ କି ହେବ ଉବୁର ବିଗୁଡ଼େ ମନେ ଯେ । ୧୬ ।

ହେଲକୁ ତୁମ୍ଭେ କହିଲ ସିନା   ଅଜ ଯେ ହୋନ୍ତା ଦେଖନ୍ତା କିନା
ଶୁଣି ଏ ବାଣୀ କହେ କେ ସେନା କି ତମତମେ ଯେ,
ପଳାଇଯାଉ ବୀର ଶିବରୁ   ଅବ ଦରପେ ଡରେ ଯେ ଭୀରୁ
ବୀରପୋଷାକ ସେ ନ ପହରୁ ଲଚୁ ସରମେ ଯେ ।
ନାରୀ ଅଞ୍ଚଳେ ଧୃଷ୍ଟ ମୁଖ ଲୁଚୁଇ ଯେ,
ନ ମାଡ଼ୁ ସୂତ କ୍ଷାନ୍ତ ସଂଗ୍ରାମଭୂଇଁ ଯେ,
ବାହା କାମୋଡ଼ କଶକ୍ତି ମୋଡ଼   ଗରଜେ, ଶିରେ କ୍ଷତ୍ରିୟ ଶାଢ଼ୀ
ତା ବଳ ମାଡ଼ ଦେବା ତ ଧାଡ଼ି ଖଣ୍ଡା ଖେଳାଇ ଯେ । ୧୭ ।

ବିହ୍ୱଳ ଅତ ଅଙ୍ଗନୃପତି—   ମତ ବିରାଟ ସାମ୍ରାଜ୍ୟ ସ୍ଥିତି
ଅଇଲ ଧରି ନବ ମୁଣ୍ଡିତ ବୃହନ୍ନଳା କି ଯେ,
ଉତ୍ତର ବୁଦ୍ଧି ଯେଣୁ ନ ଅସେ,   ବିଜୟୀ ଭାବେ ଅଜ୍ଞାତବାସେ
କାଯ୍ଯୁ ଇନ୍ଦ୍ର ବରିବ କସେ କରି ତେଲିକି ଯେ ।
ଶାପେ କେ କ୍ଲୀବ କଲା କାହିଁକି ହେକେ ଯେ,
ପଙ୍କିଲେ ଅପସରି ସହିବା ଲାଜେ ଯେ,
ପୁଣି ସେ ତେଜ ଚିନ୍ତା ସକଳ   ଯୁଝିବା ସ୍ଥିର କଲେ ଚଞ୍ଚଳ
କେମାକୁ ଶିକ୍ଷା ଦେବା କୁଶଳ ତାପସୀ ବ୍ୟାକେ ଯେ । ୧୮ ।

---

୧୬ ପଦ । ଅକଳପିତ—ଅକଳ୍ପିତ, କଳ୍ପନା କରି ହୁଏ ନାହିଁ ।

୧୮ ପଦ । ବୃହନ୍ନଳା—ବିରାଟପୁରରେ ଛଦ୍ମବେଶୀ ଅର୍ଜୁନ । ଉତ୍ତର—କବାବ, ବିରାଟ ରାଜାଙ୍କର ପୁତ୍ର । ବିଜୟୀ—ପରଜୟୀ, ଅର୍ଜୁନ । ଅପସରି—ଘଞ୍ଚ; ଅପସରା—ଅପ୍ସରା (ଏଠାରେ ଉର୍ବଶୀ) ।

ଦେଖିଲେ ଉଦନ୍ତ ଅଙ୍ଗନୃପତି   ରସକଲେଖାରୁ ପଠାଇ ଦୂତୀ
କହୁ କୋପନା ଇନ୍ଦିରା ଅଛି ଦେଖ ସୁନ୍ଦରୀ ଯେ ।
କାଶୀ ସମରେ ଯେ ସନ୍ନ୍ୟାସିନୀ   ଥିଲା ଗୁହାଗେହ ଅସ୍ତ୍ର ଧାରିଣୀ
କର ଯତନ ଆସିବ ଘେନି ଶୁଭେ ଅଜର ଯେ ।
ଘୋର ଆହବେ ଜୟ ଇନ୍ଦିରା ଦେବ ଯେ,
ତବ ମଙ୍ଗଳ ମୋର ଯଶ ବଢ଼ିବ ଯେ,
ଏଣେ ଦକ୍ଷିଣ ବାମ ନୟନ   ନୃପତି ରସକେଳୀଙ୍କ ଘେନ
ସ୍ଫୁରିଲେ ଯଥାକ୍ରମେ ବଚନ ଜ୍ୟୋତିଷେ ଶୁଭ ଯେ । ୧୯ ।
ବେଗେ ଏକାଳେ ଦେହର ବଳ   ରଣାଙ୍ଗଣେ ହୋଇଲେ ମେଳ
ଗଳଗାଜିଲେ ଉଚ୍ଚଲେ ଘୋଳ ଅତି ଭୀଷଣ ଯେ,
ଅସ୍ତ୍ର ଝନ୍‌ଝନ ଧନୁଟଙ୍କାରେ   ଗିରିତଟିନୀ ବନ ମୁଖରେ
ଅନେକ ଶିଙ୍ଗା ବାଜିଲା ଖରେ ମହୀ କମ୍ପନ ଯେ ।
ଧାଇଁଲା ଅଙ୍ଗ ଥାଟ କୁହାଟ ଛାଡ଼ି ଯେ,
ପଡ଼ିଲା ନଭ ଛୁଇଁ କି ଘଡ଼ଘଡ଼ି ଯେ,
ମେଘେ ବିଜୁଳି କରେ କି ନାଟ   ଅଶୁଗ ଜିହ୍ୱା ଜଳେ ପ୍ରକଟ
ଦିଶଇ ଝଟ ଝଟ ମୁକୁଟ ପତାକା ଜଡ଼ି ଯେ । ୨୦ ।
ବାଧିଲା ରଣ ତୁମୁଳ ଘୋର   ବେଳକୁ ବେଳ ହେଲା ପ୍ରବଳ
ଉପସ୍ଥିତ କି ପ୍ରଳୟ କାଳ ଦେବ ଭାବନା ଯେ,
ବାସୁକି ଶିରେ ଧରା କମ୍ପିଲା   ଅରୁଣରଥ ରକ୍ତ ଛିଡ଼ିଲା
ଦିଗ୍ଗଜ ଭୟେ ରଡ଼ି ଛାଡ଼ିଲା ବେଧା ବିମନା ଯେ ।
ଭୈରବେ ବୀର ଧୂମକେତୁ ଯୁଝନ୍ତି ଯେ,
ରଣଲକ୍ଷ୍ମୀ କି ନରମୁଣ୍ଡେ ପୂଜନ୍ତି ଯେ,
ହୋଇ ସରିତ ବହେ ଶୋଣିତ   କୁମ୍ଭୀର ଛିନ୍ନ କଙ୍କାଳ ଶତ
ଉଣ୍ଡୁର କଟା ଚରଣ ହାତ ବୁଡ଼ି ଭାସନ୍ତି ଯେ । ୨୧ ।
ଗଜକୁ ଗଜ ବାଜୀକି ବାଜୀ   ରଥୀକି ରଥୀ ହୁଅନ୍ତି ଯୁଝି
ସାଦି ସାଦିର ସମରେ ମଜ୍ଜି କେ କାହା ତେଜେ ଯେ,
ଡାକି କେ କହେ ଗରଜି ଖରେ   "ରହି ରହିବ ଗୁପେ ତମରେ
ବୀର, ଜାଣୁ ତ ଚରବ ରେ ରେ ନାଗରୀ ବାଜେ" ଯେ ।
କର ବିଲମ୍ବ, ଗର୍ଜେ କେ ଶିର ଛାଡ଼ି ଯେ,
ଅସିଲା ସିଂହ ସଙ୍ଗେ ଶୃଗାଳ ଲଢ଼ି ରେ,
ଯା ପଳା ଅସି ଅଗରୁ ଖରେ   ଯିବୁ ତାହାଙ୍କ ଶମନପୁରେ
ବାହୁନିବ ତୋ କାନ୍ତା କାତରେ ମସ୍ତକ ଝୋଡ଼ି ଯେ । ୨୨ ।

---

୧୯ ପଦ । ଇନ୍ଦିରା—ଲକ୍ଷ୍ମୀ, କାଶୀ ରାଜକନ୍ୟା ।

୨୧ ପଦ । ବେଧା—ବିଧାତା । ଉଣ୍ଡୁର—ଧଣ୍ଡସାପ । ୨୨ ପଦ । ବିଲମ୍ବରେ—ରେ ମଢ଼ କ୍ଷେତ୍ର ବସିବ ଶିର, ରେ ରେ ବର୍ବର ତନ୍ତ୍ରିକା ରଣ୍ଡ, ଯେ ବାରାଙ୍ଗନା ।

ବୁଡ଼ିଲେ ଏଣେ ଦିବସନାଥ   ଫେରବ ରବ କଲେ ବିକଟ
ବେନି ଶିବିରେ ଚଳିଲେ ଥାଟ ଦିବାବସାନେ ଯେ,
ଖେଳାଇ ଖଣ୍ଡା ହସି ପ୍ରଚଣ୍ଡା   ଶୋଣିତ ପିଏ ରଣଚାମୁଣ୍ଡା
ନୃତ୍ୟ କବନ୍ଧ ଗଣ୍ଡାକୁ ଗଣ୍ଡା ରଣଶ୍ମଶାନେ ଯେ ।
ଶକୁନି ଶିବା ମନ ଉଲ୍ଲାସେ ବସି ଯେ,
ପାରଣା କଲେ ଶବ ରାଶିକି ଗ୍ରାସି ଯେ,
ନାରେ ଭଙ୍ଗୁର ଲୀଳାକୁ ସାର   ବନ୍ଧୁ ଅସ୍ଥିରୁ ଦେଲେ ପାସୋର
ଧନ୍ୟ ଏ ତତ୍ତ୍ୱ ଯେ ପାରେ ଧର ଗୋଲୋକ ଭୂଷି ଯେ । ୨୩ ।

## ୫୨ଶ ଛାନ୍ଦ

ରାଗ—ଭୂପାଳ

ବାଞ୍ଛ ଚକୋରଚନ୍ଦ୍ର ପ୍ରମୋଦଦାୟୀ
ରସଗ୍ରାହକେ ଛାନ୍ଦ ଉଲ୍ଲାସ ବହି । ୧ ।
ବିକଟ ପ୍ରାବୃଟ କି ମହାରାକ୍ଷସୀ
ଅସିଲା ଘୋଟି ଘୋର ତମ ପ୍ରକାଶି । ୨ ।
ବକମାଳିକା ଦନ୍ତପନ୍ତି ଦେଖାଇ
ପ୍ରକଟ ବିଦ୍ୟୁଦ୍ଧାସ ଚପଳେ ଶୋହି । ୩ ।
ଘନଘଟାରେ ଘଡ଼ଘଡ଼ି କି ନାଦ
ଅସାର ସ୍ୱେଦ କାନ୍ତି କୃଷ୍ଣ ବାରିଦ । ୪ ।
ଡାହୁକ ଡାକ ଭେକ ଶାମୁକ ଧ୍ୱନି
ଭୀତା ପ୍ରକୃତିରାଣୀ ଚିତ୍କାର ବାଣୀ । ୫ ।
ମହା ଜୃମ୍ଭଣେ କେତେ ଭୀମ ବିଭାସ
ଉଗ୍ରଚଣ୍ଡା ପୁଲୋମା କଲା ପ୍ରକାଶ । ୬ ।
ଦେଖି ଭୀଷଣ ଗତି ରୀତି ଅକୃତ
ଚମ୍ପାହାସେ ହସିଲା ଉର ପ୍ରକୃତ । ୭ ।
ରତ୍ନଜନନୀ ମଣି ବିଧୁ ତପନ
କଲେ ସମସ୍ତ ଜାଣି କାନ୍ତି ଗୋପନ । ୮ ।
ଭୃଙ୍ଗ ଶିଖରୀ ଶିଖେ କରି ବସତି
ଦେଖିଲା ଶିଖୀ ନୃତ୍ୟ ବନ୍ଧ ଉତ୍ପତି । ୯ ।

---

୨୩ । ଦିବସନାଥ—ସୂର୍ଯ୍ୟ । ଶକୁନି—ଶାଗୁଣା । ଶିବା—ବିଲୁଅ । ପାରଣା—ଉପବାସରେ ଭୋଜନ ।

---

୬ ପଦ । ପୁଲୋମା—ରାକ୍ଷସୀ ।

ନାଶାରେ ଜନମନ୍ତ୍ରୀ ମହାରାକ୍ଷସୀ
ରକ୍ଷକୁ ଲୁକ୍ଷପଣେ ଦିଅଇ ଗ୍ରାସି । ୧୦ ।
ହେଲେ ଜ୍ୟୋତିରଙ୍ଗଣେ ଜ୍ୟୋତି ଦେଖାଇ
ମାଗୁ ତେଜେ କି ମାଗୁ ତେଜ ନ ବହି । ୧୧ ।
ପ୍ରକୃତି କି ସେ କଲା ପ୍ରକୃତ ତାର
ତର ପ୍ରକୃତ ଦେଲା ଫଳସମ୍ଭାର । ୧୨ ।
ବରହୀଠାରୁ ଘନ ବରହ ନେଇ
ଚଳାଇଲା ଶାସନ ଦଣ୍ଡ ବରହୀ । ୧୩ ।
ଗୃତକ ନାଦହଳେ ବିଯୋଗୀ ବାଣୀ
ମାଟି ଅମ୍ବରତେ ଅଭୟପାଣି । ୧୪ ।
ଗୃହି ବିଧୁର କି ବିକଳ ଏ କାଳ
ମଣିଲା ହେଲା ଅବିକଳ ଏ କାଳ । ୧୫ ।
ଗୃହିଲା ହେଲା ଧର ଶୋଭା ଅଶାରେ
କାନ୍ତେ ଲୋଡ଼ିଲା ଧରାଶୋଭା ଆଶାରେ । ୧୬ ।
ସଜିଲା ସରୋଜିନୀ ସୁମନ ସରେ
ଜଡ଼ିଲା ସରୋଜିନୀ ସୁମନଶରେ । ୧୭ ।
ଦେଲା ପ୍ରମୋଦ ବିଷକଣ୍ଠ କାଳିକା
ଖେଦେ ଭଜିଲା ବିଷକଣ୍ଠ କାଳିକା । ୧୮ ।
ଭରିଲେ ନଦୀକୋଳ ଅଦଳମ୍ବନେ
ଲୋଡ଼ିଲା କାନ୍ତ କୋଳ ଅବଲମ୍ବନେ । ୧୯ ।
ଏକାଳେ ଗୃହି କେତେ ଦିନ ଦୁର୍ଦ୍ଦିନ
ଭାଳେ କାନ୍ତବିଚ୍ଛେଦ ଦିନ ଦୁର୍ଦ୍ଦିନ । ୨୦ ।
ହସିଲା ଗୃହବାସେ ସୁମନା ଯୁଈ
ମଣିଲା ଗୃହବାସେ ସୁମନା ଯୁଈ । ୨୧ ।
ଶଇଳ ଗାଏ କେତେ ନିର୍ଝର ସ୍ୱରେ
ଶଇଳସୁତା ନେଇ ନିର୍ଝର ସ୍ୱରେ । ୨୨ ।
ବିଳ ବନ୍ଧ ବିଧାନେ ଭୋଗୀ ଲୋଡ଼ିଲା
କାମେ ବନ୍ଧ ବିଧାନେ ଭୋଗୀ ଲୋଡ଼ିଲା । ୨୩ ।
କି ମଧୁର ସାଧବବଧୂ-ସୁଷମା
ଦେଲା ଚନ୍ଦ୍ରାଇ ଧବ ବଧୂ-ସୁଷମା ୨୪ ।

---

୧୨ ପଦ । ପ୍ରକୃତ—ଈଶ୍ୱରସୃଷ୍ଟ ଯାବତୀୟ ପଦାର୍ଥ, ପ୍ରଜା ।
୧୩ ପଦ । ବରହୀ—ମୟୂର ।
୨୩ ପଦ । ଭୋଗୀ — ସର୍ପ, ଭୋଗୀ ପୁରୁଷ ।
୨୪ ପଦ । ଚନ୍ଦ୍ରାଇ—ସ୍ୱରଣ କରୁଛି ।

ବିଲୋକେ ହେଲେ ପଥ ଦୁର୍ଗମ ଭୀରୁ
ମଣିଲା କାମପଥ ଦୁର୍ଗମ ଭୀରୁ । ୨୫ ।
ଦେଖିବାରେ ବିଦେଶ ଲୋକ ନ କର
ଜଳେ କାନ୍ତ ବିଦେଶ ଲୋକନ କର । ୨୬ ।
ବିହରିଲେ ସାରସତଙ୍କ ଜୀବନେ
ତେଜିଲା ଯୋଷା ରସଚଙ୍କ ଜୀବନେ । ୨୭ ।
ରଥେ ଜଗତପତି ଅଗଚ୍ଛଗତି
ଦେଖି ଲୋଡ଼ିଲା ପତି ଅଗଚ୍ଛଗତି । ୨୮ ।
ବିଲୋକେ ଧନୁ ରାଜେ ସୁନାସୀରର
ମୋହ କ୍ଷଣକେ ରାଜେ ସୁନାସୀରର । ୨୯ ।
ଧରି ଚିରିଲା ଶୂକର ଯଃ ରଦରେ
କର କପୋଳ ସ୍ମରକଜାର ଦରେ । ୩୦ ।
ଦେଖି ଦମ୍ଭୋଳି ଇନ୍ଦ୍ର ମାରେ ଛିଡକ
ବିଧୂରି ନଖେ ଚିରେ ମାରେ ଛିଡକ । ୩୧ ।
ସ୍ତନିତ ସହ ଘନ ବନ ବରଷେ
ଡାକଇ ବନ୍ଧୁ ନେନ୍ଦୁ ବନ ବରଷେ । ୩୨ ।
ଖେଦେ ବିଗୃର କରେ ସାରସ ଗତି
ସାର ଏକାଳେ ସିନା କାନ୍ତସଂଗତି । ୩୩ ।
ରସାରେ ଥିଲା ମୋ ଏମନ୍ତ ଭରସା
ରସାଇଥାନ୍ତି କେତେ ଦେଖି ବରଷା । ୩୪ ।
ସାର ପ୍ରମୋଦ କାହ୍ନୁଁ ହେବ ପ୍ରସାର
ସାରସ ପରି ଗଲେ ତେଜି କାସାର । ୩୫ ।
ଜୀବନ ଛାଳି ଘନ ନିଏ ଜୀବନ
ବନ ଅନଳ ପୋଡ଼େ ମନ-ଭବନ । ୩୬ ।
ବିରହିଣୀର କାହିଁ ଭୟ ପବିର
ଦରଦୂର ରବରେ ହେଲଣି ଦର । ୩୭ ।
ଟିଗ୍ରିଶ ଶୋଭା ରହିଁ ଭଜେ ଟିଗ୍ରିଶ
ଟିଗ୍ରିଶଅରି ବେନି ମତେ କୁଳିଶ । ୩୮ ।
ହା ! ରସେ ମହ୍ୱେ କଲେଣି ବିହାର
ହା' ରବ କରାଇ ମୋ କଣ୍ଠୁ ବାହାର । ୩୯ ।
ସରସୀକୂଳେ ଦେଖୁ ଶୋଭିଲେ ଶର
ସରସର ବିନ୍ଧଇ କୁସୁମଶର । ୪୦ ।

---

୩୦ ପଦ । ରଦ—ଦାନ୍ତ । ଦର—ଭୟ । ୩୧ ପଦ । ମାରେ—ବଜ୍ରକରେ, କାମରେ ।
୩୮ଶ ପଦ । ଟିଗ୍ରିଶଅରି—ବଜ୍ର, କନ୍ଦର୍ପ ।

ରଣି ରଣି ନାଦରେ କ୍ରୂସମୀରଣ
ରଣିରଣିରେ ନ ଚଳଇ ଚରଣ । ୪୧ ।
ଗର ଭକ୍ଷିଲା ମଣେ ଦେଖି ଝଗର
ଗରଧର ଏ କାଳେ ଭ୍ରବେ ନାଗର । ୪୨ ।
ରଙ୍ଗରଙ୍ଗିଣୀ ପୁଣି ତରଙ୍ଗରଙ୍ଗ
ରଙ୍ଗ କର ଉଠାନ୍ତି ଭବତରଙ୍ଗ ! ୪୩ ।
ମାଳତୀ ପରେ ଦେଖି ଭ୍ରମରମାଳ
ମାଳବେ ଗାଏ, ଘୋଷା 'ଅହା କପାଳ' । ୪୪ ।
ବାସେ କଅ ସୁରଭି କଣ୍ଟକ ବାସେ
କଣ୍ଟକେ ଦେହ ଭାବ କାନ୍ତ ପ୍ରକାଶେ । ୪୫ ।
ଜଳ ପୀବର ବର ଝାଞ୍ଜି କ·ମାରେ
ସ୍ନେହେ ପୀବରବର ମୋ ପ୍ରାଣ ଘାରେ । ୪୬ ।
ପ୍ରମୋଦତ ଧୀବର ବର ଏ କାଳେ
ଥିବେ ନୃବରବର ବର ବିକଳେ । ୪୭ ।
ବିରହେ ଲୋଡ଼ି ଅଙ୍ଗ ଅଙ୍ଗ ନାଶରେ
ବିରହେ ! ଲୋଡ଼ି ଅଙ୍ଗ ଅଙ୍ଗନାଶରେ । ୪୮ ।
ବିଲୋକି ବନେ ବନେ ପିକ ମାତବେ
ମଣେ ଭବନ ବନ ମୁକ୍ତସ୍ୱଭାବେ । ୪୯ ।
ରଙ୍ଗେ ଉଦ୍ୱଟ ତଦ୍ୱଟିବାର ଗୃହିଁ
ପରେତଦ୍ୱଟ ଉଦ୍ୱଟିଲା ମଣିଭ । ୫୦ !
କଦମ୍ବ କୋରକକୁ ଦେଖି ସୁନ୍ଦରୀ
ଝାଙ୍କୁରୁଁ ରୋମ ଭାବେ ଜରାଅବସ୍ଥା । ୫୧ ।
ନବ ସାରସ କଳି ବରଜି ଅଳି
କରଗଣ୍ଡମଦକୁ କରଇ ଅଳି । ୫୨ ।
ଭ୍ରମେ ଭ୍ରମର କେଳିଚନ୍ଦ୍ରିକା ଉନେ
ଅହା କି ଭାବେ ନାହା ଥିବେ ବିକଳେ । ୫୩ ।
ଦଶଇ ହସ ହସ ଏ କାଳେ ଜବା
ନ ଦଶେ ହସ ହସ ଏ କାଳେ ଯୁବା । ୫୪ ।
ସୁମନବାସେ ଦହି ହୁଏ ଅସ୍ୱଣି
ଶମନବାସେ ବଳେ ଲୋଡ଼ୁଛୁ ମନ । ୫୫ ।

---

୪୯ଶ ପଦ । ଭୁବନ—ଘର ।
୫୦ଶ ପଦ । ଉଦ୍ୱଟ—ଉଦ୍ୱଟଫଳ । ପରେତଦ୍ୱଟ—ଯମ ।
୫୧ଶ ପଦ । କୋରକ—କଢ଼ୀ, ମୁକୁଳ ।
୫୫ଶ ପଦ । ଶମନ—ଯମ ।

ଶୋଭେ କଦଳୀ ଅଶା ପତ୍ୟାଏ ମୋର
ମରେ କ୍ଲାଆଲୀ ଅଶା ଦେଖି 'ଭୃଙ୍ଗର । ୫୬ ।
ଶରକୁ ସରସର ମାରେ ଅତନୁ
ଧରସର କରଇ ସରସ ତନୁ । ୫୭ ।
ଏକାଳେ କାନ୍ତ ବିନା ଥାଇ କି ଗତ
ଅଙ୍ଗକାନ୍ତ ମୋ କାନ୍ତ ବିନା ଦୁର୍ଗତ । ୫୮ ।
ସୀମନ୍ତିନୀ ଅଳୋକ ଲୋକରେ ଭ୍ରାନ୍ତ
ଭାବେ ଗୋଲୋକ ଲୋକନାଥ ଚରିତ । ୫୯ ।

## ୫୩ଶ ଛାନ୍ଦ

ରାଗ—ଦେଶାକ୍ଷ (ଚଳଚଞ୍ଚଳ ବାଣୀ)

ରସ ରସିକେ ଛାନ୍ଦ ମନୋହର
ରସବତୀଙ୍କ ଗୁଣାର ବିଧୁର । ୧ ।
କାନ୍ତା କି ଦ୍ରବ୍ୟ ନ ପାରେ ବର୍ଣ୍ଣିଇ
ସେ ଯେ ବଳଇ ସକଳ ମାଧୁରୀ । ୨ ।
ଇନ୍ଦୁ ବିଧୁ ଚନ୍ଦ୍ରରୁ ସେ ଶୀତଳ
ଅବ୍ଜ କମଳରୁ ମୁଖ ମଞ୍ଜୁଳ । ୩ ।
ବଳେ ସୁବର୍ଣ୍ଣ କନକ କାଞ୍ଚନ
କୁନ୍ଦ ଦନ୍ତ ପୁଷ୍ପକୁ ଶୋ ଦଶନ । ୪ ।
ସୁଧା ଅମୃତ ପୀୟୂଷ ରତକ
ଶୋଭା ବିଭାରେ ଦିଅଇ କଉତକ । ୫ ।

---

୫୬ଶ ପଦ । କଦଳୀ—ପାଣିକେନ୍ଦୁଳ ଫୁଲ ।
୫୭ଶ ପଦ । ଅତନୁ—କାମ, କନ୍ଦର୍ପ ।

---

୩ୟ ପଦଠାରୁ ୫ମ ପଦ ପର୍ଯ୍ୟନ୍ତ ପୁନରୁକ୍ତବଦାଭାସ ହୋଇଅଛି ।

୩ୟ ପଦ । ଇନ୍ଦୁ—ଚନ୍ଦ୍ରମା । ବିଧୁ—କର୍ପୂର, ଚନ୍ଦ୍ର, ଜଳ । ଅବ୍ଜ—ଚନ୍ଦ୍ର, ପଦ୍ମ । କମଳ — ପଦ୍ମ । ଇନ୍ଦୁ, ବିଧୁ ଓ ଚନ୍ଦ୍ର ପୁଣି ଅବ୍ଜ ଓ କମଳ ପୁନରୁକ୍ତ ହୋଇଅଛି ।

୪ର୍ଥ ପଦ । ସୁବର୍ଣ୍ଣ ଉତ୍ତମ ବର୍ଣ୍ଣ । କନକ—ଚମ୍ପାଫୁଲ । କାଞ୍ଚନ—ସୁନା । କୁନ୍ଦ—କୁବେରର ନବରତ୍ନ ମଧ୍ୟରୁ ଗୋଟିଏ କଥି; କୁନ୍ଦଫୁଲ । ଦନ୍ତପୁଷ୍ପ—କୁନ୍ଦଫୁଲ । ସୁବର୍ଣ୍ଣ, କନକ ଓ କାଞ୍ଚନ ପୁଣି କୁନ୍ଦ ଓ ଦନ୍ତପୁଷ୍ପ—ପୁନରୁକ୍ତ ।

୫ମ ପଦ । ସୁଧା—ବିଜୁଳି, ଚନ୍ଦ୍ରିକା । ଅମୃତ—ଲହୁଣି । ପୀୟୂଷ—ଅମୃତ । ରତ—ସ୍ନେହ । ଶୋଭା—ସୁଷମା । ବିଭା—ଦୀପ୍ତି । ସୁଧା, ଅମୃତ ଓ ପୀୟୂଷ ପୁଣି ଶୋଭା ଓ ବିଭା ପୁନରୁକ୍ତ ।

ତାହିଁ ତା ବାଣୀ ଭାରତୀ ବାଣାରେ
ଲୀଚେ ବସନ୍ତଦୂତ ଯେ ଚୂତରେ । ୬ ।
କରି ବାରଣ ମାତଙ୍ଗ ଗତକୁ
କାମ ରଣରଣ ଅଣେ ମତକୁ । ୭ ।
କୁଚ-ଅଦ୍ରି ଗିରିଧରସୁତର
ମୀନ କୁବେଣୀ କି ଖଗ ତୂଣୀର ? । ୮ ।
ପ୍ରିୟ ପ୍ରାଣ ବନ୍ଧୁଜୀବ ଅଧରୀ
ପ୍ରାଣ ଯିବ ତ ତା ବିନା ବାହାରି । ୯ ।
ଶିବ ବହିତକୁ ଅଣେ ଭାମିନୀ
ଯେଣୁ ସେ ଶ୍ୟାମା ସୁରତରଙ୍ଗିଣୀ । ୧୦ ।
ପୁଣି ସ୍ୱଭାବେ ସେ ନାରୀ ଇନ୍ଦ୍ରାଣୀ
ଦିଏ ମଘବାଅଦରୀ ରମଣୀ । ୧୧ ।
ବାଳା ହଂସଗତରେ ସୁବାଦିତ
ଯୋଗେ ହଂସାରୂଢ଼ପଦ ମହତ । ୧୨ ।
ତରେ ବିଷ୍ଣୁପଦରେ ଅଧିକାରୀ
ରମା ସହଜେ ପଦ୍ମିନୀ ସୁନ୍ଦରୀ । ୧୩ ।
ବରାରୋହା ଅଣେ ରତି କଉତୁକ
ବଳେ ଅରପେ ଦର୍ପକ କୀର୍ତ୍ତିକୁ । ୧୪ ।

---

୬ଷ୍ଠ ପଦ । ବାଣୀ—ବଚନ, କଥା, ସରସ୍ୱତୀ । ଭାରତୀ—ସରସ୍ୱତୀ, ବଚନ, କଥା । ବସନ୍ତଦୂତ—କୋକିଳ, ଅମ୍ବଗଛ । ଚୂତ—ଅମ୍ବଗଛ । ବାଣୀ ଓ ଭାରତୀ ପୁଣି ବସନ୍ତଦୂତ ଓ ଚୂତ ପୁନରୁକ୍ତ ।

୭ମ ପଦ । କରି -କରି । କରୀ—ହସ୍ତୀ । ବାରଣ—ମନା, ହସ୍ତୀ । ମାତଙ୍ଗ—ହସ୍ତୀ । କାମ—କନ୍ଦର୍ପ, ଇମଣଇଚ୍ଛା । ରଣରଣ—କନ୍ଦର୍ପ, କାମ, ଉତ୍କଣ୍ଠା । କରୀ, ବାରଣ ଓ ମାତଙ୍ଗ ପୁଣି କାମ ଓ ରଣରଣ—ପୁନରୁକ୍ତ ।

୮ମ ପଦ । ଅଦ୍ରି—ପର୍ବତ । ଗିରି—ପର୍ବତ । ଧର—ପର୍ବତ । ଗିରିଧର—ଶ୍ରୀକୃଷ୍ଣ । ଗିରିଧରସୁତ—କାମଦେବ । କୁବେଣୀ—ଖାଲେଇ । ଖଗ—ଶର । ତୂଣୀର—ଶରମୁଣା । ଅଦ୍ରି, ଗିରି ଓ ଧର—ପୁନରୁକ୍ତ ।

୯ମ ପଦ । ପ୍ରିୟ—ବନ୍ଧୁ । ପ୍ରାଣ—ଜୀବନ । ବନ୍ଧୁ—ପ୍ରିୟ । ଜୀବ—ଜୀବନ । ବନ୍ଧୁଜୀବ—ବନ୍ଧୁଲିପୁଷ୍ପ । ପ୍ରିୟ ଓ ବନ୍ଧୁ ପୁଣି ପ୍ରାଣ, ଜୀବ, ପ୍ରାଣ ଓ ଯିବ (ଜୀବ) ପୁନରୁକ୍ତ ।

୧୦ମ ପଦ । ଶ୍ୟାମା—ଦୁର୍ଗା, ତପ୍ତକାଞ୍ଚନବର୍ଣ୍ଣା ସ୍ତ୍ରୀ । ସୁରତରଙ୍ଗିଣୀ—ଗଙ୍ଗା, ରତିକପୁଣା ।

୧୧ଶ ପଦ । ଇନ୍ଦ୍ରାଣୀ—ଶଚୀ, ଶ୍ରେଷ୍ଠା । ମଘବା—ଇନ୍ଦ୍ର ।

୧୩ ପଦ । ରମା—ଲକ୍ଷ୍ମୀ, ନାରୀ ।

୧୪ ପଦ । ରତି—କାମଦେବପତ୍ନୀ, ସ୍ନେହ । ଦର୍ପକ—କାମଦେବ ।

ଯେଣୁ ହାଟକ କଟକ ସୁନ୍ଦରୀ
ତେଣୁ ନାଗରୀ ଉତ୍ତମା ନଗରୀ । ୧୫ ।
ରସ ବହୁ କୁଳବତୀ ରଙ୍ଗିଣୀ
ତାପ ନାଶକୁ ସୁରତରଙ୍ଗିଣୀ । ୧୬ ।
ହୃଦ ଗମ୍ଭୀରତା କଳା ହେବ କି
ଅଳି ପ୍ରୋଷିତଭର୍ତ୍ତୃକା ବରକୀ । ୧୭ ।
ସତୀ କାନ୍ତା ପାଶେ ନାହିଁ ଯାହାର
ଅପବର୍ଗେ ହେବେ ଅବା କି ତାର । ୧୮ ।
ଅଷ୍ଟ କୁଳାଚଳ ହେଲେ ଅଯୁତ
କାନ୍ତା ବିନା ସେ ସକଳ ବ୍ୟର୍ଥ । ୧୯ ।
ଧିକ ଜୀବନ ଧରବାର ସିନା
ଯେବେ ପାଶେ ନାହିଁ ସତୀ ନବୀନା । ୨୦ ।
ଧିକ କୁବେର ସମ୍ପତ୍ତି ସଞ୍ଚୟ
ଧିକ ଧିକ ତ୍ରିପୁର ବିଜୟ । ୨୧ ।
ତାଙ୍କେ ପଙ୍କେରୁହମୁହିଁ ଅନାଇ
ମୋର ସଙ୍କେତକୁ ଥିବ କି ଗୃହିଁ । ୨୨ ।
ଗଣ୍ଡେ ସ୍ୱଚ୍ଛ କାଗଜ ପରି ତାର
ତହିଁ ସୁ-ଚୂର୍ଣ୍ଣକୁନ୍ତଳ ବେଭାର । ୨୩ ।
ଲେଖା ଧାଡ଼ିଏକି ମନ୍ଦ ମୋହନ
କରବାକୁ ପୁତ ମନ ନୟନ । ୨୪ ।
ତହିଁ ଲହୁଥିବ କି ସେ ପାଣିକି
ନେତ୍ରୁ ବିଷାଦେ ବୁହାଇ ପାଣିକି । ୨୫ ।
ସାର ଦେଇଥିବ କି ସରସତା
ହା ହା କି ନ କଲି ମନ୍ଦ ବିଧାତା । ୨୬ ।
ହସେ ଯେବେ ସୁଧା ଖସେ ମଣଇ
ସୁଧାରେଖା ସ୍ୱଚ୍ଛ ହେଲି କିପାଇଁ । ୨୭ ।
ମୋର ଆସିବାକାଳେ ସେ ସୁହାସୀ
ଖେଦେ ଶୁଖିଯାଇଥିଲ ରୂପସୀ । ୨୮ ।
ଦେଖି ଦିବସେ ଯା ଚନ୍ଦ୍ରବଦନ
ଚକବାକୀ ଦୁଃଖେ କରେ କ୍ରନ୍ଦନ । ୨୯ ।

---

୧୫ ପଦ । ହାଟକକଟକ—ସ୍ୱର୍ଣ୍ଣମୟ ରାଜଧାନୀ, ସୁନା ବଳୟ ।
୧୬ ପଦ । କୁଳବତୀ—ନଦୀ । କୁଳବତୀ—କୁଳକାମିନୀ ।
୨୨ ପଦ । ପଙ୍କେରୁହ—ପଦ୍ମ ।
୨୮ ପଦ । ରୂପସୀ—ସୁନ୍ଦରୀ, ରୂପବତୀ ।

ତହୁଁ ହଜାଇଥିବ କି ମାଧୁରୀ
ମୋର ବିରହେ କନକ ଗଉରୀ । ୩୦ ।
ହା ହା ନବନୀତ ମୃଦୁ ଅଙ୍ଗିନୀ
ହା ହା କାନ୍ତର ଏକାନ୍ତ ସଙ୍ଗିନୀ । ୩୧ ।
ହା ହା ମନୋଜ-ସନ୍ତାପ-ଖଣ୍ଡିନୀ
ହା ହା ଯୋଗୀ-ଯାଗ-ଯୋଗ-ଭଙ୍ଗିନୀ । ୩୨ ।
ନାଥ ନାଥ ଡାକିବାର ତରୁଣୀ
ତାପସାଗର ତରିବା ତରଣୀ । ୩୩ ।
କାହିଁ ସିଦ୍ଧି ଧରେ ଯେତେ ଗୌରବ
କୃପାକଟାକ୍ଷ ଭଙ୍ଗୀକି ନୋହୁବ । ୩୪ ।
ତୋଷେ ଫୁଲଇବା ନାସା ସୁରତ
ସମ ନ ହୋଇବେ ପଞ୍ଚ ମୁକତ । ୩୫ ।
ଶେଯେ ବସିବା ଲାଜ ଲାଜ ହୋଇ
ବ୍ୟାଜ ସରଗ ଭୁଞ୍ଜକି କରଇ । ୩୬ ।
ହୋଇ ଗେହ୍ଲାଇ ହଲାଇ ବଦନ
ଦିଏ ଯେ ସୁଖ କାହିଁ ତା ସମାନ । ୩୭ ।
ହସି ନ ହସିବା ହୋଇ ବସିବା
କହେ କି ଯୁଗର ହୋଇବା ମଘବା । ୩୮ ।
ଜାଣି ନ ଜାଣିବା ହେବା ଯୁବତୀ
ଅଜି ହୃଦୟୁ ଦିଅଇ କରୁତୀ । ୩୯ ।
ରଙ୍ଗ ବଚନେ ତା ଯେତେ ଭଙ୍ଗିମା
ଭାଙ୍ଗି ଦିଅଇ ଉପମା ଗାରିମା । ୪୦ ।
ବରାଙ୍ଗନା ପରସନ ତୁପତ
ସାନ କରଇ ଈଶାନ ବିଭୂତ । ୪୧ ।
ପ୍ରିୟାସଂଯୋଗ ଶାନ୍ତିରୁ କଳାକେ
ନାହିଁ ନ ଥିଲା ନୋହୁବ ତିଲୋକେ । ୪୨ ।
ବକେ ଦେବା ଧର୍ମସୁତ ଉତ୍ତର
ଶୁଣି ମାନବ କି ସାର ନାଗର । ୪୩ ।
କାନ୍ତା ଅଗ୍ରସୁ ତା ପନ୍ଥା ସଂସାରେ
କାନ୍ତା ବାରତା ବାରତା ବିଗୃହେ । ୪୪ ।

---

୩୩ ପଦ । ତରଣୀ—ନୌକା, ପୋତ ।

୩୫ ପଦ । ପଞ୍ଚମୁକତ—ପଞ୍ଚପ୍ରକାର ମୁକ୍ତି; ଯଥା—ସାଲୋକ୍ୟ, ସାରୂପ୍ୟ, ସାଯୁଜ୍ୟ, ସାର୍ଷ୍ଟି ଓ କୈବଲ୍ୟ ମୁକ୍ତି । କେହୁ କେହୁ ଚାରି ପ୍ରକାର ମୁକ୍ତି କହନ୍ତି ।

ସ୍ୱଚ୍ଛା ସଂଯୋଗୀକ ମୋଦ୍ୱା ଗଣଇ
କାନ୍ତାବରଣ୍ଡୀ ଅଷ୍ଟଙ୍ଗ ମଣଇ । ୪୫ ।
ସତେ କାନ୍ତା ଉଙ୍ଗୀ ମନପକ୍ଷୀଙ୍କ
ଧରିବାକୁ ଧରେ ଅଠାକାଠିଙ୍କ । ୪୬ ।
ଧନେ ଡାକିଲ କେତକୀବରଣୀ
ମାନ ରଖିଲ ପ୍ରେୟସୀ ନବୀନା । ୪୭ ।
ପୁଣି ଡାକନ୍ତେ ଚମ୍ପକଗନ୍ଧୀ
ନେଙ୍କୁ ମୁଞ୍ଚାଇଲ ବାରି ନାଗରୀ । ୪୮ ।
ବାଛୁ ଜୀବେଶ୍ୱରୀ ନାମ ଡାକଇ
ହେଜି ଅନେ ଦେବେ କାନ୍ତା ରୁଷାଇ । ୪୯ ।
ମନ ଦର୍ଶନେ ଚଞ୍ଚଳ ଯେଉଁକ
କାଳ ବିପରୀତେ ଗମେ ଡେଉଁକ । ୫୦ ।
ଲେଉଁଥିବ କି ଯୀରତରସ୍ଥଳା
ଭଲଶିତା ହୋଇ ବସେ ମନ୍ଥଳା । ୫୧ ।
ରସରଙ୍ଗିଣୀ ବୋଲେ ଡାକ କି
ଧରି ଜୀବ ରହୁଥିବ ସେ କାକ । ୫୨ ।
ତାର ତରଳ ସରଳ ବେଭାର
ଅଜ ସନ୍ତାପେ ଘାରଇ ଅନ୍ତର । ୫୩ ।
ନାଚ ଯାଉଛୁ ତା ଛବି ନୟନେ
ବୋଲି ଦେଉଛୁ କି ଖେଦ ଗୋପନେ । ୫୪ ।
ସ୍ନେହେ ବିଚ୍ଛେଦଭୟକୁ ବିଭାବ
ପଦେ ପଦ ଛନ୍ଦ ଶୋଏ ବାନ୍ଧବୀ । ୫୫ ।
ଅଜ ଯାଉଥିବ କନ୍ଦ୍ରା କେମନ୍ତେ
ବେଶବାସକୁ ନ ମଣି ଅରତେ । ୫୬ ।
କାମ୍ୟା ଛାମ୍ୟା ଭାବ ବହେ ସୁକେଶୀ
ଅଜ କି କରୁଥିବ ସେ ପ୍ରେୟସୀ । ୫୭ ।
ଜଳୁଥାଏ ସେ ଯେଣୁ ମୋ ଅଳାପେ
ସଢ଼ି ଯାଇଥିବ କେଡ଼େ ସନ୍ତାପେ । ୫୮ ।
ହୁଡ଼ ହୁଡ଼ାଇଲି ଖେଦେ ବାଳୀଶ
ଘୁଡ଼ ଅଇଲି ଯା ଦୂର ବିଦେଶ । ୫୯ ।

---

୪୭ ପଦ । କେତକୀ ଫୁଲରେ କଣ୍ଟା ଥିବାରୁ ଭ୍ରମର ବସି ପାରେ ନାହିଁ; ଅର୍ଥାତ୍ କେତକୀ ଭ୍ରମରକୁ ବସାଇ ଦଏ ନାହିଁ ।

୪୮ ପଦ । ଚମ୍ପାର ଉତ୍କଟ ଗନ୍ଧ ହେତୁରୁ ଭ୍ରମର ବସିପାରେ ନାହିଁ; ଅର୍ଥାତ୍ ଭ୍ରମର ଚମ୍ପାଫୁଲକୁ ଆଦର କରେ ନାହିଁ ।

ଏତେ ବିରହେ ଥିବ କି ପ୍ରକାରେ
ତଳୁଥିବ ହାର ନେତ୍ରନୀରରେ । ୭୦ ।
ନାସା ଫୁଲ ଝଡୁଥିବ ବିଷାଦେ
ଚୂଡ଼ି ସଢ଼ିଯାଇଥିବ ପ୍ରମାଦେ । ୭୧ ।
ବଡ଼ ଦୁର୍ଦ୍ଦାନ୍ତ ବିରହ-ଶାର୍ଦ୍ଦୂଳ
କରୁଥିବ ନେତ୍ରଶୋଭି ବିକଳ । ୭୨ ।
ଦେଉଥିବ ବାଧା କରିଗତକୁ
ଟାଳ ଦେଉଥିବ ଭୀରୁ ଧୂର୍ତ୍ତକୁ । ୭୩ ।
କାନ୍ତ ବଳିଆ ମିଳିଲେ ସଘନେ
ବାଘ ଓଜ ଯାନ୍ତା ଦୂର କାନନେ । ୭୪ ।
କାନ୍ତ ବିରହକାତର ଭାବନା
କଳ ହେବ କି ଅଗାଧ ସେ ସିନା । ୭୫ ।
ଅସୁଥିବ ପ୍ରିୟହୃଦ ଯେତକ
ଦାହ ହେଉଥିବ ଗାତ ତେତକ । ୭୬ ।
ପ୍ରିୟା ବିରହେ ଏ ଛାନ୍ଦ ରଚିତ
ଘେନ ରସିକେ ! ଏହାର ମହତ୍ତ୍ୱ । ୭୭ ।
ଏବେ ଶ୍ରୀ ଗୋଲୋକ ହୋଇ ବିରସି
କୃଷ୍ଣ ପଦାମ୍ବୁଜ ସଦା ଭାବଇ । ୭୮ ।

## ୫୪ଶ ଛାନ୍ଦ

### ରାଗ—ରାମକେରୀ

ପ୍ରୋଷିତପତିକା ଉଦ୍ୟାନେ ଦିନେ ବସି ବିମନେ
ସହିକି କହଇ ବ୍ୟଥା ତା ଖେଦେ ଏକାନ୍ତ ସ୍ଥାନେ । ୧ ।
ଏ ମଧୁ ପବନେ ମଧୁପ ବନେ ଦେଖିଛୁ କେତେ
ଏ ସବୁ କାହିଁକି ସଜନୀ ! ହେଉ ନ ଥିଲେ ପ୍ରତେ । ୨ ।
ଯାଉଛି ପିଣ୍ଡରୁ ପରାଣ ଛାଡ଼ି ସଖି ମୋହର
ଗ୍ରହାର କରନ୍ତି ଯାହାରେ ସେତ ହେଲେ ଭଗାର । ୩ ।
ବିରହିଣୀ ହୋଇ ମୁଁ ଥାଅନ୍ତି ଅଛି ଉଗ୍ରନ୍ତା କିଏ ?
ବନପ୍ରିୟ ମଧୁପଞ୍ଚମେ ଚିତ୍ତ ଉଚ୍ଛନ୍ନ ହୁଏ । ୪ ।

---

୭୨ । ନେତ୍ରଶୋଭି—ମୃଗନୟନା, କସ୍ତୁରୀ ଶୋଭାଯୁକ୍ତ ହରିଣୀ ଅର୍ଥାତ୍ ଯେଉଁ କୃଷ୍ଣସାର ହରିଣୀଠାରେ କସ୍ତୁରୀ ମିଳେ ।

୭୩ ପଦ । କରି—ହାତୀ । ଭୀରୁ—ଅବଳା, ଶୃଗାଳ ।

୭୪ ପଦ । ବଳିଆ—ବଳବାନ୍, ବଳିଆ କୁକୁର । ଓଜ—ତେଜ, ମର୍ଯ୍ୟାଦା ।

ବଢ଼ି କ୍ରମେ କ୍ରମେ କାହିଁକି ସଖି ! ହେଲି ଯୁବତୀ
ଆନ ଆନ ମୋତେ ଲାଗିଲା କ୍ରମେ କ୍ରମେ ଧରଣୀ । ୫ ।
ଯୌବନ ସଙ୍ଗତେ ଆସିଲା ସହଚର ମଦନ
ବଳେ ବଳେ ଆସି ଘୋଟିଲେ କୃପା-ଉତ୍କଣ୍ଠା-ଛନ୍ଦ । ୬ ।
ଅଙ୍ଗଯଷ୍ଟିକି ମୋ ନୂତନ ଛାଞ୍ଚେ ନିର୍ମାଣ କଲା
ପ୍ରତି ପ୍ରତୀକକୁ ଦୀପ୍ତିରେ ପୁଣି ରସାଣି ଦେଲା । ୭ ।
ଲୋଡ଼ୁ ନ ଥିଲି ତ ମଦନେ ବଳେ ପଶିଲା ମନେ
ପଶିଲା ନାହିଁ ତ ଶାସିଲା ମନ ନବ ବିଧାନେ । ୮ ।
ବଳାଇ ଦେଲା ମୋ ମାନସ ପୀରତିରେ ମିତଣି
ଲୀଳା କଟାକ୍ଷରେ ରଚିଲା କେତେ ନୂତନ ଠାଣି । ୯ ।
ବେଶ ଭୂଷଣରେ ଆଦର ବଢ଼ାଇଲା ସୁରଙ୍ଗେ
ମିଶାଇଲା ଶ୍ଳେଷ ଭାଷାରେ କୁଟିଳତା ଅପାଙ୍ଗେ । ୧୦ ।
ସୁହାସେ ରଖିଲା ସୌନ୍ଦର୍ଯ୍ୟ ସଙ୍ଗେ ଅନୁରାଗକୁ
ଦୀକ୍ଷା ଦେଲା କାଳେ ରଚିବା ନାସାଘୋଣା ଫୁଲକୁ । ୧୧ ।
ଗଢ଼ାଇଲା କେତେ ଆଶାରେ ନବ ନବ ଅଟ୍ଟାଳି
ଦୁରାଶା ବଳେ ବା ତହିଁରୁ କେତେ ଦେଇଛି ଟାଳି । ୧୨ ।
କାଳେ ପତି ସଙ୍ଗେ ସେ ସୁଖ ଆଣାଇଲା ଯେତିକି
ପତି ବିଚ୍ଛେଦରେ ପୁଣି ସେ ଦୁଃଖ ଦିଏ ତେତିକି । ୧୩ ।
ଏବେ ବୁଝିଲିଣି ସଖି ରେ ମନ ସର୍ବ ନିଦାନ
ମନେ ଯେବେ ସୁଖ ଜଗତ ତେବେ ସୁଖ ସଦନ । ୧୪ ।
ଯେବେ କରଥାନ୍ତି ସଜନି ମୋର ମନକୁ ମୋର
ହୁଅନ୍ତା କି କାଳେ ସେ ମିତ ପୁଣି କାଳେ ସେ ପର । ୧୫ ।
ବତାଇ ଦିଅନ୍ତା ଉପାୟ କେହୁ ଆଣନ୍ତି ଧରି
ଦୁଃଖ ଏଡ଼ିବାକୁ ସମୂଳେ ଦିଅନ୍ତି ନିପାତ କରି । ୧୬ ।
ଅଚିନ୍ତ୍ୟ ଶକ୍ତିରେ କ୍ଷଣେକେ ବୁଲି ପାରେ ବ୍ରହ୍ମାଣ୍ଡେ
ଭିତର ବାହାରେ ସର୍ବଦା ଘୂରିବୁଲେ ଦୁର୍ଦ୍ଦଣ୍ଡେ । ୧୭ ।
ଚିନ୍ତାସମଷ୍ଟିର ବିନା ସେ ମନ ନୁହଇ ଆନ
ମନୁ ପୁଣି ଜାତ ଚିନ୍ତା ତ ପରିଏ ବିବର୍ତ୍ତନ । ୧୮ ।
ଏବେ କି ଉପାୟେ ଧରିବି ଅଜ୍ଞ ନ ପାରେ ହେଜି
ସଂସ୍କାର ସମଷ୍ଟି ସେ ଯେଣୁ ସେ କି ମିଳିବ ଖୋଜି । ୧୯ ।
ସହସ୍ରାରେ ସ୍ୱପ୍ନାବସ୍ଥାରେ ଜାଣେ ସେ ମନ ପଶେ
ସୁଷୁପ୍ତିରେ ଆସି ପ୍ରାଣୀର ପୁଣି ହୃଦୟେ ବସେ । ୨୦ ।
ଜାଗ୍ରତେ ମସ୍ତିଷ୍କେ ରହଇ ସେହି ଚଞ୍ଚଳ ମନ
ନାଡ଼ୀଚକ୍ରେ ବୁଲେ ଯେ ବେଗେ ବିଦ୍ୟୁତ ନୋହେ ସମାନ । ୨୧ ।

ମନଧର୍ମ ସବୁକାଳରେ କାହିଁ ଥିବ ସେ ଲଗ୍ନ
ରହି ନ ପାରିବ ସ୍ୱତନ୍ତ୍ର ଜାଣେ ଏତ ଦର୍ଶନ । ୨୨ ।
ଏକକାଳେ ଦୁଇ ସ୍ଥାନରେ ନୋହେ ତାର ବସତି
ଭୂତହୁଁ ସୂକ୍ଷ୍ମ ସେ ସହଜେ ବାର ନୋହେ ତା ସ୍ଥିତି । ୨୩ ।
ଅତ କି ଉପାୟ କରିବି ମୋତେ ଦଣେ ନାହିଁ ତ
ପତିଭାବନାରେ ସେ ମନ ଏକା ଅଛୁ ନିଯୁତ । ୨୪ ।
ଅଭ କାହିଁରେ ତ ସଜନି, ନାହିଁ ମନ ମୋହର
ପତିଭାବନାରୁ ଯେବେ ସେ ହୋଇ ଯାଅନ୍ତା ଦୂର । ୨୫ ।
ତେବେ ତ ଜାଣୁଛୁ ମୋ ମନ ହୋଇ ଯାଅନ୍ତା ନାଶ
ଅଭ କାହିଁ ପାଇଁ ଘାରନ୍ତା ଭୀମ ବିରହ କ୍ଳେଶ । ୨୬ ।
ହେଉ ପଛେ ମୋତେ କ୍ଳେଶ ତ ସଖି ! ସହସ୍ର ଗୁଣ
ପତି ଭାବନାରୁ ବିରତ କ୍ଷଣେ ନ ହେଉ ମନ । ୨୭ ।
ଧର ସମ୍ମୋହନ କୁସୁମ ଶର ପ୍ରହାରୁ ମୋତେ
ଦାଳପକ ଅସି କୋକିଳ ଭୃଙ୍ଗସେନା ସଙ୍ଗତେ । ୨୮ ।
ଚନ୍ଦ୍ରକାଶାଳିନୀ ବସନ୍ତ ମଧୁ ଯାମିନୀ ହେଉ
ବିଚଳିତ କେବେଁ ନୋହିବି ପତି ଭାବନା ଥାଉ । ୨୯ ।
ପତିସ୍ନେହ ସ୍ମୃତି ସଜନି ! ହେଉଥାଉ ଉଗାର
ନେତ୍ରେ ନାଚୁ ପତି ମୂରତି ପଛେ ମରେ ମୁଁ ଝୂର । ୩୦ ।
ସ୍ୱପନରେ ତାଙ୍କୁ ନିରେଖେ ହେଲେ ନ ହେଉ ନିଦ
ଦେଖ ସଖି ନୋହେ ଅଧୈର୍ଯ୍ୟ ଛଳେ ନାହିଁ ମୋ ଖେଦ । ୩୧ ।
ନୟନୁ ଝରୁଛୁ ଲୋତକ ସୁହିଁ କହେ ଗୋଲୋକ
ଅନୁତାପାନଳେ ଜଳନ୍ତି ତେଣେ ନୃପତିଳକ । ୩୨ ।

## ୪୫ଶ ଛାନ୍ଦ

### ରାଗ—ଧାର୍ଦ୍ଦ

ଦିନେ ନିଶାମୁଖେ ଦୂତିକାକୁ ଦେଖେ ଇନ୍ଦୁମୁଖୀ ଇନ୍ଦୁରେଖା
ବିଷାଦକାଳିମା ବଦନ ସୁଷମା ଆଚ୍ଛାଦ ଦେଇଛୁ ଦେଖା
 ପୃଚ୍ଛେ ରମଣୀରତନ । କିପାଁ ଶୁଖିଛୁ ଚନ୍ଦ୍ରବଦନ ? । ୧ ।
ଧୀର ଥନଥନ ଚକିତ ନୟନ ବଦନରେ ନାହିଁ ଭାଷା
କିପାଁ ଥରଥର ସୁରଙ୍ଗ ଅଧର ଅଚଳଲ କେ ବା ହିଂସା
 ଫେଡ଼ି କହ ପ୍ରାଣସଖି ! କେଉଁ ଚିନ୍ତା କଲ ନିରମାଖୀ ? ୨ ।

---

୧ ପଦ । ନିଶାମୁଖ—ସନ୍ଧ୍ୟା ।

ଯତନେ ହେଲେ କେତେ ସଖି । ଖେଦଭାବେ ନ ଦେଖେ ଏ ଅପରୂପ
ଅଗରୁ ଦେଖିଲେ ହସି କୁହୁ ଥିଲେ ଅଜ କି ଗରୁ ସନ୍ତାପ
ମୁଖ ଯତନେ କାନ୍ଦ କାନ୍ଦ । କିଏ ମନ୍ଦ ପାଞ୍ଚିଲା କି ଛନ୍ଦ ? ୩ ।
ରସଲେଖା ଭଣି ଶୁଣ ରାଜରାଣି । ନାହିଁ କହିବାକୁ ବଳ
ବଚନ ବଳେ ଅଛି, ଅପଚନ୍ଦ୍ରାରାଣି, କରନ୍ତି କିପାଁ କବଳ
କି କହିବ ତୋପାଇଁ । ଶତ ଦମ୍ଭ କେ ଦେଉଛନ୍ତି ଭାଙ୍ଗି । ୪ ।
କାହିଁକି ଜନ୍ମିଲା ଚିତ୍ତ ଛନ ଛନ ଯତନେ ଅସାର ସଂସାର
ଯଷ୍ଟିଯାନ୍ତି ଅହା ମୋ ପରାଣନାହା ନେତ୍ରପଥେ ବାର ବାର
ବନେ ଝିଲ୍ଲୀରବ ଶୁଣି । ପ୍ରତେ ହୁଅଇ ବନ୍ଧୁଙ୍କ ବାଣୀ । ୫ ।
କଣ୍ଠରେ ଅମୃତ ଲଗିବାକୁ ଶତ ଅଶଙ୍କା ଚିତ୍ତେ ଉପୁଜେ
ବନ୍ଦୀରେ ନାଥ କି ସ୍ମରିଲେ ଦାସୀଙ୍କି କେ ବା କି ମନ୍ଦ ସରଜେ ?
କେହ୍ନେ ଧରିବି ମୁଁ ଚିତ୍ତ ? ଅପଚନ୍ଦ୍ରାର ଭୀଷଣ ରୀତ । ୬ ।
ଅହା ସେ ମଧୁର ସୁନ୍ଦର ଅଧର ସୁଧାବୋଳା ବାମ୍ଭଠାଣି
ତୁଣ୍ଡି ପଙ୍କୁ ଭଲ ଯଷ୍ଟି ଲଭିଗଲା ଦେଲା ଧୂର୍ତ୍ତତରୁ ହାଣି
ଦଶୁଥିଲା ନବ ବାଳି । ମୁଖେ ସରାଗ ନ ଥିଲା ଭଳି । ୭ ।
ସେକାଳୁ ଅନାଇଁ ଗଗନେ ଗଣଇ ବେନି ବେନି କରି ପକ୍ଷୀ
ଦେଖିଲେ ତ ପଟେ ଘଟୁ ଜୀବ ଛୁଟେ ସାନ୍ତ୍ୱନା କାହିଁ ନ ଦେଖି
ଜୀବ ଇତର ସକଳ । ଲକ୍ଷି ଅଯୁଗ୍ମେ ହୁଏ ବିକଳ । ୮ ।
ଦେଖୁ ବାଜପକ୍ଷୀ କପୋତକୁ ଲକ୍ଷି ନେଲା ଝାମ୍ପି ଖରତର
ସାହା ଯାଏ ଜଡ଼ ଦଏ କେ କରୁଣ୍ଡ଼ ନୀର ବହେ ଧାର ଧାର
ଡାକେ ଖେଦେ ପଦ୍ମାବର । ଭବପାରାବାର-କର୍ଣ୍ଣଧାର । ୯ ।
ବିହି ହେଲା ବାମ କରନ୍ତି କରମ ସଂସାରେ ସବୁଠୁଁ ହୀନ
ବିଷାଦ କଟାହେ ଘାଣ୍ଟି ମନ ଦହେ ଜଳଇ ଚିନ୍ତା ଇନ୍ଧନ
ଧିକ ଧିକ ଏ କପାଳେ । କାନ୍ତ ନ ସେବିଲି ଯୁବାକାଳେ । ୧୦ ।
ଧ୍ୟାନ ପରେ ଧ୍ୟାନ ହଜିଯାଏ ଜ୍ଞାନ ମନ ଧୋକା ଧକା ଖାଇ
ସତେ କି ନାଗର ସୁରସସାଗର ଚିରବନ୍ଦୀ ଥିବେ ହୋଇ
ଆଉ ନ ଦେବେ କି ଦେଖା ? ହୀନମାନୀ କପାଳେ କି ଲେଖା ? ୧୧ ।
ମୋ ପରି କି ଛାର ସରାଗ ଅଦର କରୁଥିଲେ ଅହା କେତେ
କିଏ ଜାଣିଥିଲା ? ବନବାସ ହେଲା ରାମ ରାଜା ହେବା ମାତ୍ରେ
ଧନ୍ୟ ଧନ୍ୟ ସତୀ ସୀତା । ପଛେ ଗୋଡ଼ାଇଗଲା ବନିତା । ୧୨ ।

---

୪ ପଦ । କବଳ—ଗ୍ରାସ । ୬ ପଦ । ଅମୃତ—ଛେପ ।
୮ ପଦ । ଘଟେ—ଗୋଟିଏ ମାତ୍ର ।
୯ ପଦ । ପଦ୍ମାବର—ଲକ୍ଷ୍ମୀପତି, ବିଷ୍ଣୁ ।
୧୦ ପଦ । କଟାହ—କରେଇ । ଇନ୍ଧନ—ଜାଳେଣି କାଠ ।

କେ କୁସୁମପାଣି ଥିଲି ମାକ ଶୁଣି ଦେଖିଲି ମୁଁ ତାଙ୍କୁ ନେଏଁ
ମୋହନ ସ୍ତମ୍ଭନ ବଶ ଉଚ୍ଚାଟନ ଥିଲା ପାଶେ ଅବିରତେ
ରତି ରତି କି ସେ କହି । ଦେଉଥିଲେ ମୋ ମନ ଫୁଲାଇ । ୧୩ ।
ଗଜସ୍ତ୍ରୀ କି କାଳୀ ବୋଲେ କିପାଁ ଶୁଳୀ ଯାଇଛୁ ସଂଶୟ ଏବେ
ଶଚୀ ଧବ୍ୟବଞ୍ଜ ବଳ ତୋର ଶୋଭା କହନ୍ତି ଅପୂର୍ବ ଭବେ
ଫୁଟି ଲାବଣ୍ୟ-ପଲ୍ଲବେ । ଧନ୍ୟ କମଳକଳିଟି ହେଲେ । ୧୪ ।
ପତି ଉପପତି ବୈଶିକ ବୋଲନ୍ତି ତିନି ଜାତରେ ନାୟକ
ସେ କହନ୍ତି ଧିକ ବୀଟ ବଇଶିକ ତାଙ୍କ ଜନ୍ମ ଯଶ ଧିକ
ସ୍ୱପ୍ନେ ନ ଚିନ୍ତି ଦକ୍ଷିଣ । ଏକ ସତୀ ସେବିବା ମୋ ପଣ । ୧୫ ।
ତାଙ୍କ ରସଭାଷ ନ ଲଭି ନିରାଶ ହେଉଥିଲା ଚିତ୍ତ କେତେ
ଲଢିବାରୁ ରଣ ଜାଚିଲା କାରଣ ଦହିବାକୁ କେତେ ମତେ
କି ବା ଇନ୍ଦିରା ଗମିଲା । ବନ୍ଦଶାଳାରେ ମନ ଥାଇଲା । ୧୬ ।
ଚିତ୍ତ ମୋ ଅଥୟ ଉପୁଜେ କି ଭୟ ଲାଗୁ ନାହିଁ ମନ କାହିଁ
ବିରସ ପରାଣ ନୀରସ ନୟନ ସରସ କାହିଁରେ ନାହିଁ
ଏହି ସଂସାର ନୀରସ । ଲାଗେ ଭୋଜନ ଶୟନ ବିଷ । ୧୭ ।
ଶ୍ରୀରାମ ଚରଣ ପରଶେ ପାଷାଣ ପାଇଲା ଜୀବନ କେବେ
କାନ୍ତଙ୍କ ଚରଣ ନ ଲଭି ପାଷାଣ ପାଲଟି ଗଲିଣି ଏବେ
ବନ୍ଧୁ ଭାବନାରେ ଅଛି । ଅଭାଗିନୀ ମୁଁ ବଞ୍ଚିବି କାହିଁ ? ୧୮ ।
ନାରୀମନ-ସୁନା ଯେ ରସିକ ସିନା ବିରହ-ଶିଳରେ କଷେ
ସେ ବନ୍ଦୀରେ ବଳେ ଅରାତି କବଳେ ପର ମୋ ଚିତ୍ତ ଧରଷେ
ଚିନ୍ତା କହିବି କାହାକୁ ? ଫାଟି ଫାଟି ପଡୁଅଛି ବୁକୁ । ୧୯ ।
କେତେ ସେ ବଢାଇ କହନ୍ତି ଛଡାଇ ଅଣିରୁ ବଧୂରୁ ସୁଧା
ସେ କାଳରେ ବୁଝି ନ ପାରିଲି ଅଜି ଲାଗଇ ମରମେ ବାଧା
ହେଲି କେତେ ହଟହଟା । ଜାଣିଥିଲି କି କରମ ଫଟା ? ୨୦ ।

### କୌତୁକପ୍ରଶ୍ନ (୨୧।୨୨।୨୩)

ଧନେକ ବହନ ପଚାରିଲେ ଧନ କହିବୁ ମୋ ନାମ ଗୋରୀ !
ମୁଁ ବୋଇଲି ଚାରି ଅକ୍ଷରେ ଶ୍ରୀହରି ନାମକୁ ତ ଅଛି ଧରି
ଅଦ୍ୟ ବେଳାରେ ଇନ୍ଦିରା । ପ୍ରାନ୍ତ ବେଳା ବୁଝେ ପତି ପରା । ୨୧
ଅଦ୍ୟ ବେଳା କଲେ ବିପରୀତ ଭଲେ ମନୋଜ ହୁଅଇ ଜାତ
ହସି କୋଳେ ନେଲେ କେତେ ସ୍ନେହ କଲେ ଲାଜେ କଲି ମୁଖ ନତ
ବିପରୀତ ଥିଲି କହି । ତେଣୁ ମୁଖେ ନ ପାରିଲି ଚାହିଁ । ୨୨ ।
ମୁଁ ଡାକିଲି ଧନେ ରସିକେ ସୁମନେ ତୁହି ସୁଧା ଚନ୍ଦ୍ରେ ରହି
ଗହନରେ ଘର ତୁହି ମୁନିବର ଗତି ତ୍ୱରା ବାତ ନୋହି
ସେ ବୋଇଲେ ଭଲ ବହି । ଅଛୁ ପଦ୍ମିନୀ ସଙ୍ଗକୁ ଲହି । ୨୩ ।

ଫୁଲବେଶେ ସାଜ ମୋ ମାନସ ରଞ୍ଜି କରୁଥିଲେ କୁତୂହଳୀ
କନକ ଅବେଶେ ପ୍ରାତେ ରଣବେଶେ ଆହବକୁ ଗଲେ ଚଳି
ଭୁଲି ରହିବ କେମନେ । ଝଣିଯାନ୍ତି ସ୍ମୃତି ଦରପଣେ । ୨୪ ।

ତେଜନ୍ତି ପରାଣ ଯେବେ ଜୀବଧନ ଅସନ୍ତେ ଭଲେ ମୁକୁଳି
ପ୍ରଣୟିନୀପଣ ଦେଖାନ୍ତି ବନ୍ଧନ ସୁଖେ ଦେଇ ଜଳାଞ୍ଜଳି
ମୋର ନ ଥାନ୍ତା ତ ଚିନ୍ତା । କାନ୍ତେ ନ କରନ୍ତା କେ ଅହନ୍ତା !

ବୋଧେ ଇନ୍ଦୁମୁଖୀ ଇନ୍ଦୁରେଖା ସଖି ! ଚେଦିଙ୍କ କାହିଁକି ଡର
ଯାହା ଭବିତବ୍ୟ ଅବଶ୍ୟ ଘଟିବ ଇନ୍ଦିରା ଅଦେଖୀ ଘର
ଭବେ ନିୟୁତର ଗତ । ରୋଧିବାକୁ କାହାର ଶକତ ? ୨୬ ।

ମାତା ଦେଇଥିଲେ ଶିବବର ପୁଳେ ନେଉଛୁ ତା ଧୀରେ ଘେନ
ମହାସିଦ୍ଧିଦାତା ଏ ନବ ବିଧାତା କରିବ ବାଞ୍ଛା ପୂରଣ
ଧର ଧବଳୀରେ ବସି । ଯାହା ମନାସିବ ଶିବ ଘୋଷି । ୨୭ ।

ଈଶାନବଚନ ବାରେକ ସୁମନ କରିଦେବ ବାଞ୍ଛା ସିଦ୍ଧି
ଅତି ଯତନରେ ରଖିଥିଲି ଘରେ ନିଅ କହି ଦେଲି ବିଧି
ପରଖେଦହରା ସତୀ । ନିସ୍ତରଙ୍ଗ ସାଗର ମୂରତି । ୨୮ ।

କୃତଜ୍ଞତାପୂର୍ଣ୍ଣ ନୟନ ଅଞ୍ଜନ ଲୋତକରେ ଗଲା ପ୍ଲାବି
ରସଲେଖା ଭାବେ ସତେ ମହାତ୍ୟାଗେ ଯାଉଛନ୍ତି କି ଅବା ଦ୍ରବି
ଧରୁ ଫୁଲ ପୁଲକରେ । ଅଜ ତୁଣ୍ଡରୁ ବାଣୀ ନ ସ୍ଫୁରେ । ୨୯ ।

କଷ୍ଟେ କୁପତରେ ଦୂତିକା ଜଗାରେ ଧନ୍ୟ ରାଜରାଜେଶ୍ୱର
ଏ ତବ କରଣି ଅଚମ୍ବିତ ମଣି ଧରଣୀରେ କାହିଁ ସର
ଅହା କି ନିଃସ୍ୱାର୍ଥ ତ୍ୟାଗ । ଯୁଗେ ଯୁଗେ ସ୍ମରିବେ ମାନବ । ୩୦ ।

କାଶ୍ୟପୀରେ ବସି ମୁଖେ ଶିବ ଘୋଷି କରରେ ଧରି ସୁମନ
ମୁକୁଳାଇ ପତି ବେଗେ ନରପତି ଆସନ୍ତୁ ମନାସେ ତୂର୍ଣ୍ଣ
ରସଲେଖା ସେହିକାଳେ । ବାଞ୍ଛି ଇନ୍ଦୁରେଖା ଶୁଭ ଭଲେ । ୩୧ ।

ଅନ ଅନ ଘର ଯୋଗ୍ୟ ପୁରସ୍କାର ଧରମର ତ ଧରମ
ଇନ୍ଦୁରେଖା ତୋଷ କେମନ୍ତେ ବିଦୁଷ ! ଅନୁଭବେ ହେବେ କ୍ଷମ
ଭାଷେ ଶ୍ରୀ ଗୋଲୋକ ରସ । ପିଅ କର୍ଣ୍ଣମୁଖେ ଏ ପୀୟୂଷ । ୩୨ ।

---

୨୪ ପଦ । ଅହବ—ଯୁଦ୍ଧ ।
୨୬ ପଦ । ଅଦେଖୀ—ଈର୍ଷାପରାୟଣା ।
୨୮ ପଦ । ନିସ୍ତରଙ୍ଗ—ଲହରୀଶୂନ୍ୟ ।
୩୧ ପଦ । କାଶ୍ୟପୀ—ପୃଥିବୀ ।

## ୫୬ଶ ଛାନ୍ଦ

### ରାଗ—ଲଳିତ କାମୋଦୀ

ଧୀରେ ଘେନ ଧୀରେ ଦବ୍ୟରସ,   ବିରହବିଧୁରି ଖେଦ ଭାଷ
ଥିରମଳା କର ଧରି ବିମ୍ବାଧରି,   ଭାଷଇ କି କଲେ ପରାଣେଶ
ଗୋ ପ୍ରିୟସହି । କି ବଲ୍ଗୁଣ ପରୁରିଲେ ନାହିଁ । ୧ ।
କରେ କେଡ଼େ ସ୍ନେହେ ଗଳାହାର, ଗଳା କାଟି ଏବେ କଲେ ପର
ଇଚ୍ଛାରେ ଜୀବନ ଦେଲି ବଳେ ଦାନ ତୁଚ୍ଛା ସିନା ବିହି ଦୂଷିବାର ?
ଗୋ ପ୍ରିୟଅଳି । ମନ ଆଶା ମନେ ମଲା ଭାଳି । ୨ ।
ଯୁବତୀଙ୍କ ପତିବିଚ୍ଛେଦରୁ, ବଳି କି ଦଣ୍ଡ ବ୍ରହ୍ମାଣ୍ଡେ ଗରୁ
ପିଣ୍ଡରୁ ପରାଣ ନାଅଇ ଛଡ଼ାଇ କେବେହେଁ ସହିବଟି କେଉଁ ଭୀରୁ ?
ଗୋ ପ୍ରିୟସହି । ଅକାଠ ହୃଦୟ କଲି ସହି । ୩ ।
କାଣନ୍ତି ସେ କେତେମତେ ପ୍ରୀତି, ଅନ୍ତରେ ସନ୍ତରେ ମୋର ନୀତି,
ଛୁଇଁଲେ ମନରୁ ଛାଇଁ କି ହୁଅଇ କବଳଇ ଅନୁବ୍ରତେ ଧୃତି
ଗୋ ପ୍ରିୟସହି । କରିବି କି ବୁଦ୍ଧି ଦିଶୁନାହିଁ । ୪ ।
ଦିନ ଦିନକର ପ୍ରୀତିଭାବ, କହିଲେ ମନରୁ ନ ସରିବ
ମରମରେ ମରି ଅବଳା ସହିବ, କି ଦାଉ ନ ସାଧେ କୁଦଇବ
ଗୋ ସହଚରି । ସରିଲଣି ତାଙ୍କୁ ଝୁରି ଝୁରି । ୫ ।
ଦିନେ ମୁଁ ଶାମଳୁଥିଲି କେଶ, ହସି ମୁଁରେ ହେଲେ ପରବେଶ
ରଙ୍କ ହୋଇ କଙ୍କତିକା କରୁ ନେଇ କଲେ କେତେ ହାସ ପରିହାସ
ଗୋ ପ୍ରିୟଅଳି । କି ମଧୁରେ ଦେଲେ ସେ ଶାମଳି । ୬ ।
କେଶ ବାନ୍ଧୁ ମୁଖ ଉଳଟାଇ, ବହିଲେ ଚୁମ୍ବନ ମୁଦା ବହି
ଲାଜରେ ପାଟଳ ହେଲା ଗଣ୍ଡ ମୋର, ବୋଇଲେ ମୂଲ୍ୟ କି ନ ମିଳଇ
ଗୋ ପ୍ରିୟସହି । ଉତ୍ତର ଦେବାକୁ ଥିଲା କାହିଁ ? । ୭ ।
ଗୁନ୍ଥୁଥିଲି ଦିନେ ଫୁଲ ବସି, ଏକାନ୍ତରେ ଦେଖି କାନ୍ତ ଆସି
ନ ଥିଲା ଗୋଚର ନେଲେ ଫୁଲହାର, ଲମ୍ବାଇ ମୋ କଣ୍ଠେ ଦେଲେ ହସି
ଗୋ ପ୍ରିୟସହି । ନବ ରତି ସାହା ହୁଅ କହି । ୮ ।
ସୁରତରେ ମୋ ପାଲଟି ବାସ, ପିନ୍ଧୁ ଦିନେ ହେଲି ହସ ହସ
ପୁରୁଷାଇତରେ ବସାଇଲେ ଛଳେ, ବୋଇଲେ ମୁଁ ନାରୀ ତୁ ପୁରୁଷ
ଗୋ ପ୍ରିୟସହି । ସେ ଭଙ୍ଗୀ ମୋ ମନୁ ଯାଉ ନାହିଁ । ୯ ।

---

୧ ପଦ । ପରାଣେଶ—ପ୍ରାଣନାଥ । ୩ ପଦ । ଭୀରୁ—ଅବଳା ।
୪ ପଦ । ଅନୁବ୍ରତେ—ସର୍ବଦା ।
୬ ପଦ । ଶାମଳିବା—( କେଶ ) କୁଣ୍ଡାଇବା । କଙ୍କତିକା—ପାନିଆ ।
୯ ପଦ । ପୁରୁଷାଇତ—ବିପରୀତ ରତି ।

ଉପବନେ ଦିନେ ଏକାନ୍ତରେ, ପ୍ରବେଶିଲେ କାନ୍ତ ସନ୍ନିଧିରେ
ଅଭିସାରିଣୀ କି ? ହସି ପଚାରନ୍ତେ, ଦେଲି ମଥା ପୋତି ସଙ୍କୋଚରେ
ଗୋ ପ୍ରିୟଅଳି ! ଦୋଷ ମାଟି କଲେ କେତେ ଅଳି । ୧୦ ।
ଖେଳୁଥିଲି ପଶା ଦିନେ ତୋଷେ, ପଣ ଥିଲା ହାରିବ ଯେ, ଶେଷେ
ଦେବ ରତିଦାନ ଜିତିଲେ ବହନ ଯାଚିଲେ ନେବାକୁ ରତିରସେ
ଗୋ ପ୍ରିୟଅଳି ! ନିଜ ଦହନରେ ଚଳି ଜଳି । ୧୧ ।
ଦିନେକ କୁଞ୍ଜରେ ଧୀରମଣି, ମୋର ଲୋଡ଼ୁ କ୍ଷୀର ଦେଲି ଆଣି
ବୋଇଲେ ତହିଁରେ ତୃଷା କି ମେଣ୍ଟିବ, ଦୁଧରେ ମିଶାଇଦେବ ପାଣି
ଗୋ ପ୍ରିୟଅଳି ! ଦେଲେ ସେ କପଟେ କର ଗୁଳି । ୧୨ ।
ଅଭୂଷଣ କର ବର ପଚାରିଲି, କହିଲେ ଭୂଷଣ କର ଛଳି
ଜାଣି ତାଙ୍କ ଗତି ଧାଡିକାରେ ଅତି, ଛଳା ଯାଉଥିଲି ପାଶୁ ଚଳି
ଗୋ ସହଚରି ! ବଳେ ନେଲେ କରେ କର ଧରି । ୧୩ ।
ବସାଇଲେ ରତି ଲମ୍ପଟରେ, ସେ କାଳରେ କୋଳେ ଅଙ୍କଟରେ
ପିବାକୁ ଉଚ୍ଛନ୍ନ ହେଲି ବହି ଛନ୍ନ, ମଣାଇ ନେଲେ କି କପଟରେ
ଗୋ ପ୍ରିୟଅଳି ! ସ୍ତମ୍ଭ ଦେଲ ବଳେ ଦମ୍ଭ ଟାଳି । ୧୪ ।
ଚୂରୁଥିଲି ଦିନେ ଘନସାର, ଏକାନ୍ତରେ ମୁଦି ନେତ୍ର ମୋର
ଆସିଲେ ନାଗର ବାସ ଛାଡ଼େ ସାର, କହି କାଢ଼ିନେଲେ ବାସ ମୋର
ଗୋ ପ୍ରିୟଅଳି ! 'ବାସେ ଲେଉଡ଼େ' କହି କଲି ଅଳି । ୧୫ ।
ବାସ ଘେନି ଚଳିଗଲେ ବାସେ, ରସାଇଲେ କେତେ ଭାବବଶେ
ରତି ପାଲଟରେ ଯାଚି ବାସ ଦେଲେ, କେ ତେମନ୍ତ ସରି ହେବ ରସେ
ଗୋ ପ୍ରିୟଅଳି ! ଯାଉ ନାହିଁ ଦିନ ଭଲି ଭଲି । ୧୬ ।
ଅଜି ଦିନେ ଭିନ୍ନ ଭଙ୍ଗୀ କଲେ, ଭୂଷଣରେ ମୋର ବେଶ ହେଲେ
ଏମନ୍ତ କାଳରେ ଆସୁ ପରଗୃହୀ, ମୋ ପିନ୍ଧା ପଣନ୍ତେ ଲଜାଗଲେ
ଗୋ ସହଚରି ! ବୋଲି କାମେ ସାହା ବିମ୍ବାଧରୀ । ୧୭ ।
ଖଟଣି କୁସୁମ ଆଣି ମୋର, ମାଳ୍ୟାଣୀ ରଖିଲା ଦିନେ ପୁର
ଫୁଲେ ଲିପି କରି ଲେଖିଲେ ଗୋପନେ, ପରିଜନେ ରଖ ସ୍ମରାବର
ଗୋ ପ୍ରାଣେଶ୍ୱରୀ ! ଅଳକା ମାଧବୀ ଯେଉଁପରି । ୧୮ ।
କୁନ୍ଦରେ ଲେଖିଲେ କୁନ୍ଦଦନ୍ତି, ପଦ୍ମରେ ପଦ୍ମିନୀ ଭାଗବତୀ
ମଲ୍ଲିରେ ମଲି ନ ଗୃହଁ ଦିବସରେ, ସେବତୀରେ ଲେଖି ସେ ସେବନ୍ତି
ଗୋ ଜବାଫୁଲେ ! ଜବାଧରୀ ସାହା ତୁଅ ଭଲେ । ୧୯ ।

---

୧୧ ପଦ । ଦହନ—ଅଗ୍ନି ।
୧୨ ପଦ । ପାଣି—ଜଳ, ହାତ ।
୧୫ ପଦ । ଘନସାର—କର୍ପୂର । ବାସ—ବସନ, ଗୃହ ।
୧୭ ପଦ । ପରଗୃହୀ—ଦାସୀ ।

ନଅଳୀରେ ଅଳୀ କର ସଖି ! ବଉଳେ ବଉଳ ହୋଇ ସୁଖୀ
ଅପରାଜିତାରେ ଅପରାଜିତାରେ ! ମରୁଆରେ ମରୁଆରେ ଲେଖି
ଗୋ ରଙ୍ଗିଣୀରେ ! ଦାସଭେ ରଙ୍ଗିଣୀ ରସ ଥରେ । ୨୦ ।

କେତକୀରେ କେତକୀବରଣୀ, ଅଗନ୍ଧ ଗନ୍ଧ କେ ତୋହ ବିନା
ଗୋଙ୍ଗବାଣେ ଭୃଙ୍ଗେ ଚାଣି ଫୁଲବାଣ ଚୁମ୍ବିଅନାରେ ତ ଚୁମ୍ବିଅନା
ଗୋ ଦବାରତେ—ଉପଯୁକ୍ତ ପନ୍ଥ କର ମୋତେ । ୨୧ ।

ଚାନ୍ଦନୀରେ ଦିନେ ଚନ୍ଦ୍ରକରେ, ରତ ଥିଲୁ ରଙ୍ଗ ଆଳାପରେ
ଘନ ଆଚ୍ଛାଦିଲା ସେ କାଳେ ଚନ୍ଦ୍ରମା, ଭାଷିଲେ ଲୁଚିଲା ବିଧୁ ଡରେ
ଗୋ ଚାନ୍ଦମୁହିଁ ! ତୋ ମୁଖ ସୁଷମା ସମ ନୋହି । ୨୨ ।

ପକାଇଲି ହୋଇ ଲାଜ ଲାଜ, ତାଙ୍କ ନେନେ ବଳେ ବିଧୁରାଜ
ମୟୂରପଦକେ ଶୋଭିଲୁ ପଲଙ୍କେ, ଭାଷିଲେ ଡାକିଲୁ ମନସିଜ,
ଗୋ ପ୍ରିୟଅଳି ! ନିଜ ଲାଜେ ନିଜେ ଗଲି ଜଳି । ୨୩ ।

ଦିନେ ଭାବେ ନାବେ ଡାକି ନେଲେ, ପରାଶର ଗାଥା ଆରମ୍ଭିଲେ
ଅଦୃଷ୍ଟରଜା କି ରଙ୍ଗେ ପଚାରିଲେ ବୋଇଲି ହେ ଦୃଷ୍ଟରଜା ଛଳେ
ଗୋ ଦେଲେ ହସି । ଦୃଷ୍ଟରଜାଙ୍କୁ କି ମଣେ ଭାଷି । ୨୪ ।

ସରମେ ମରମେ ଗଲି ଲାଜି, ବୁଜି ହୋଇ ରହିଗଲି ଆଖି
ଭାଷିଲେ ନ ଚାହିଁ ପରାଶର-ମେଘ ଏ ରାତିକି କରୁ ପ୍ରାଣ ସଖି !
ଗୋ ବାରବାର । ପୀଡ଼ିଲି କରରେ ତାଙ୍କ କର । ୨୫ ।

ଫଗୁଖେଳ ଦିନେ ମୋର ସଙ୍ଗେ, ହାସ କଉତୁକ କଲେ ରଙ୍ଗେ
ଫଗୁଗୁଣ୍ଡି ନେନେ ଲାଗିଲା ବୋଇଲି କି ସରାଗେ ବସାଇଲେ ଜଙ୍ଘେ
ଗୋ ସହଚରି ! ଦେଲେ ପିଞ୍ଚି ବାରି ଯନ୍ତ୍ର କରି । ୨୬ ।

ଚନ୍ଦନରେ ଦିନେ କାନ୍ତ ଅଙ୍ଗ, ମଣ୍ଡୁଥିଲି ସ୍ନେହେ ବହି ରଙ୍ଗ
ଗୋଳି କସ୍ତୁରୀକି ସେ କାଳେ ନାଗର କଲେ ବଳେ ପୟୋଧର ସଙ୍ଗ
ଗୋ ପ୍ରିୟଅଳି ! ତାଙ୍କ ସ୍ମୃତି ଧୃତି ଦିଏ ଟାଳି । ୨୭ ।

ବୋଇଲେ ଅବଳା ନୋହୁ ଗୋରି ! ବକ୍ଷେ ଧରୁ ବେନି ହେମଗିରି
ଶ୍ଳାଘା ସୁବର୍ଣ୍ଣକୁ ବହ୍ନି ଦାହନକୁ ହାରରୂପେ ସ୍ପର୍ଶେ କୁଚଗିରି
ଗୋ ପ୍ରାଣମିତ ! ଝୁରାଇଲା ସ୍ନେହ ଅପ୍ରମିତ । ୨୮ ।

ଦିଗମ୍ବର ବାଳୁତକି ଶିବେ, ଦିନେ ଦେବାପାଇଁ ମାଗି ଭାବେ
ତ୍ରିପୁର ଶିରୀକି ଲଗାଇକୁ କହି, ନ ମାନି ହରିଲେ ବାସ ଲବେ
ଗୋ ନଖଘାତ, କରି କହିଲେ ଏ ବିଧୁ ବ୍ୟକ୍ତ । ୨୯ ।

---

୨୦ ପଦ । ମରୁଆରେ—ମରୁଆ ଫୁଲରେ, ମରିବା ଲୋକରେ ।
୨୧ ପଦ । ଉପଯୁକ୍ତ ପନ୍ଥ—ଯୋଗ୍ୟ ପନ୍ଥ, ଉପପନ୍ଥ ।
୨୩ ପଦ । ମୟୂରପଦକ—ଶୃଙ୍ଗାର ସମୟରେ ପରସ୍ପରେ ଦିଆଯିବା ନଖଘାତ ଚିହ୍ନ ।
୨୪ ପଦ । ଅଦୃଷ୍ଟରଜା—ବାଳିକା । ୨୫ ପଦ । ପରାଶର-ମେଘ—କୁହୁଡ଼ି ।
୨୯ ପଦ । ଦିଗମ୍ବର ବାଳୁତ—ଉଲଗ୍ନ । ଶିବ—ଶୁଭ ।

ବିରହରୁ ହର ମୋ ହେଲେ ଦୂର, ଲଗାନ୍ତି ଜାଗି ସେ ହୃଦରେ ହର
କି ହାତରେ ଅହା ଭାଷନ୍ତି ପରାଣ—ବିଚ୍ଛେଦେ ଛାଡ଼ଇ ସମାଦର
ଗୋ ପ୍ରିୟସହି ! ତାଙ୍କ ଭାବ ମନ୍ତ୍ର ଯାଉ ନାହିଁ । ୩୦ ।
ବନେ ବାନ୍ଧୁଥିଲି ଫୁଲେ କେଶ, ବୋଇଲେ କାହିଁକି ଅଛୁ ଦାସ
କରି ଫୁଲେ ଫୁଲେ ଅଙ୍ଗଦ ବଳୟ ସାଜି ଦେଲେ ମୋର ଫୁଲବେଶ
ଗୋ ସହଚରି ! ଭାଷି ଅଳି ଯେନ ଫୁଲେଶ୍ୱରି ! ୩୧ !
ମନ୍ଦ ଗନ୍ଧବହ ବହୁ ବନେ, ଉଡ଼ାଇଲା ବାସ ମୋ ଜଘନେ
କାହିଁକି ରେ ମନ୍ଦ କରୁଛୁ ବିବ୍ରତ, ବୋଲି କାନ୍ତ ମିଳିଗଲେ ଛନ୍ଦେ
ଗୋ ପ୍ରିୟସହି ! ନ ପାରିଲି ମନ୍ଦାକ୍ଷରେ ରହି । ୩୨ ।
ଫୁଲପରି ମୋତେ ତୋଳିଥାନ୍ତି, ପାଶରୁ ନିମିଷେ ନ ଛାଡ଼ନ୍ତି
ବିଳାସୀ ବକ୍ଷକୁ ଫୁଲହାର ପରି, ଗଳାହାର ମୋତେ କରିଥାନ୍ତି
ଗୋ ଗଳାହାର, ବିଶ୍ଳେଷ ଭୟରେ କର ଦୂର । ୩୩ ।
କହୁଥିଲେ ଭାବ ନ ସରିବ, ବିଚ୍ଛେଦ ବିହ୍ୱଳି କୁହାଇବ
ଇନ୍ଦ୍ରସମ୍ପଦରେ କାହିଁ ସେହି ସୁଖ, କାନ୍ତପ୍ରୀତିଭାବ ଯାହା ଦେବ
ଗୋ ସହଚରି ! ତନ୍ନ ପୁର ଅଜ ଶୂନ୍ୟ ସରି । ୩୪ ।
ପତି ଭାବାବେଶେ ରସବତୀ, କାରୁଣ୍ୟ କରଇ ଦାବା ସତି
ଗୋଲୋକ କହଇ ଜଗତ ଅସାର, ସାର ସିନା କାନ୍ତା-କାନ୍ତ-ପ୍ରୀତି
ହେ ଯେନ ଧୀର, କାନ୍ତ ବିନା ସୁଖ କି କାନ୍ତାର । ୩୫ ।

## ୫୮ଶ ଛାନ୍ଦ

ରାଗ—ରେଖ୍ତି

କୁସୁମ କାନନେ ବନେ କରିଗତି ତୋଷ ମନେ
ଦେଖୁଥିଲି ବୁଲି ସଙ୍ଗେ କୁସୁମଖେଳା,
ଦେଖାଇଲି ଛଇଳୀଙ୍କି ଛୁଇଁଅନାରେ ଅଳିକି
ଜାଣି ପାରି ମୋ ଗତିକି ରତିକୁଶଳା ।
ଦର ଦରହାସେ ଯୁବତୀ,
ଭାଷିଲି ବଅଳ ବାସେ ସୁମନା ପ୍ରୀତି । ୧ ।

---

୩୧ ପଦ । ଅଳି—ବିନୟ; ପ୍ରାର୍ଥନା । ୩୨ ପଦ । ଗନ୍ଧବହ—ପବନ ।
୩୩ ପଦ । ବିଶ୍ଳେଷ—ଛଡ଼ାଛଡ଼ି ।

---

୧ ପଦ । ଛୁଇଁଅନାରେ—ଛୁଇଁଅନା ଫୁଲରେ; ରେ ଛୁଇଁଅନା—ହେ ଛୁଇଁଯୁକ୍ତ କଟାକ୍ଷ (ଅର୍ଥାତ୍ ରସିକଙ୍କୁ ଚୁମ୍ବନ କରିବା ପାଇଁ ତୋ ଦୃଷ୍ଟିରେ ଛୁଇଁ ଅଛି । ) ଅଳି—ଭ୍ରମର, ଅନୁନୟ । ବାସେ—ସୁଗନ୍ଧରେ, ଘରେ । ସୁମନା—ଫୁଲ ନାୟିକା ।

ଚନ୍ଦ୍ରମାରୁ ଦିନେ ଧନୀ          ଶରଦେ ଚନ୍ଦ୍ରବଦନୀ
ମୋର ସନ୍ନିଧିକି କରୁଥିଲା ଗମନ,
ପ୍ରିୟାକୁ ବୋଇଲି ତହିଁ          ଚନ୍ଦ୍ରମା ଏ ସୁଖଦାୟୀ
ଚକୋର ତୋଷ ବିଧାନେ ତା ସମ କାହିଁ ?
ସ୍ମର ଶାୟକରୁ ମୁକ୍ତରେ,
କହି ଗମୁଁ ମନ୍ଦହାସୀ ଧରିଲି କରେ । ୨ ।

ରଜନୀକର କରରେ          ଦିନେ ମାଗେଁ କହୁଁ ଧୀରେ
ରଜନୀକର ସେ ଦେଲା ଅଞ୍ଜଳି ଫେରି,
ତା ଚତୁର ଭଙ୍ଗି ଜାଣି          ଦେଲି ଯୋଡ଼ି ବେନି ପାଣି
ପଚାରିଲି କ୍ଷୀରେ ନୀର ମିଶେ କି ନାହିଁ ?
ମୋର ଚିତ୍ତ ଜାଣି ଛଇଳା,
ତରଳ ଦୁକୂଳ ସମ୍ଭାଳିଲା ମହିଳା । ୩ ।

ବଶେ ବିପରୀତ ମାଗେ          ବୋଲଇଁ ଦିନେ ଅନୁରାଗେ
ବଳେ ଧରି ପଦ ମଞ୍ଜାଳିଲା ସୁମୁହାଁ,
ଧରୁ ତା କରପଲ୍ଲବେ          ଜାଣି ମୋର ଭାବ ଲବେ
ବୋଇଲା ପରଶୁରାର ଗୁରୁ କି ଥାଇ !
ବୋଲୁ ଏ କି ଚିତ୍ତ ସଙ୍ଗିନୀ !
ଭାଷେ କାନ୍ତ ପଦସେବା ଗତରେ ଜାଣି । ୪ ।

ଦିନେ ଦରପଣ ପାଶେ          ଖୋଷୁଥିଲା ଫୁଲ କେଶେ
ପ୍ରତିବିମ୍ବ ଦେଖି ମୋର ସାରସଗଣ୍ଡ,
ଛଳେ ଥରଥର ହୋଇ          ଗଲା ଲୁଚି କାହିଁ ଯାଇ
ଅତୁରେ ତାକୁ ସଙ୍ଗିନୀ କହୁ କି ଚିତ୍ତ ।
ହସି ଭାଷେ ନବଛଇଳା,
ଶତ୍ରୁରୈରଙ୍କୁ ମୁକୁର ଯୋଗେ ଧରିଲା । ୫ ।

ତାର ଯେତେ ସନମାନ          ବଳଇ ତ ଅନୁମାନ
ଶୟନରେ ବାସ ଦିନେ ନେଇ ମୁଁ ହରି,
ଜାଣି ପ୍ରଦୀପ ଲିଭାଇ          ନ ଜାଣିଲା ହୋଇ ସଖୀ
ରସାଇ ରସେ ହରିଲା ମୋ ବାସ ଗୋଟି ।
ସିଦ୍ଧ ବାସ ଗୋପନେ ସତୀ
ହସିଲା ଜାଳି ପ୍ରଦୀପ ଚଣ୍ଡେ ସୁଦନ୍ତୀ । ୬ ।

---

୨ ପଦ । ସ୍ମର—ସ୍ମରଣକର, କନ୍ଦର୍ପ ।
୩ ପଦ । ରଜନୀକର—ଚନ୍ଦ୍ର, କର୍ପୂର । କ୍ଷୀର—ଦୁଧ । ନୀର—ପାଣି ।
୪ ପଦ । ବଶେ—ବଶୀଭୂତ ହୋଇ । ବଶେ—(ବିପରୀତ) ସେବ ।
୫ ପଦ । ସାରସ—ହଂସ, ପଦ୍ମ ।

ଶାରଦେ ସର ପୁଲନେ ଭ୍ରମୁଁ ଦିନେ ତୋଷ ମନେ
ଡାକିଲା ଅସ ସନ୍ନିଧି ସାରସଗଣ,
ସାରସମୁଖୀ ସେକାଳେ ସାରସୀଙ୍କ ଗୃହୀ ତୋଳେ
ଅନୁସରଣେ ତା କଲା ମନୁରଗଣ ।
ଧର ସଖୀ ଚରୁକ ଧୀରେ,
ବୋଇଲା ସବାଜ କମ୍ପି ମୂର୍ଚ୍ଛି ଦୋଷରେ । ୭ ।
ନିଦାଘେ ଦେଖି ଶଯ୍ୟନେ ଲେପେ ଚନ୍ଦନ ସୁମନେ
ବାନ୍ଧି ଶେଯେ ମଣ୍ଡି ଗୁରୁ-ଚନ୍ଦ୍ର-ବଦନୀ,
କି ଜେଉରେ ଜବାଧରି ଗୁଲଇ ବ୍ୟଜନ ଧରି
ବାସାଞ୍ଚଳେ ସ୍ୱେଦ ଦେହୁଁ ପୋଛୁ ସଙ୍ଗିନୀ ।
ଭାଷୁଁ ଶ୍ୟାମା ହେଜ ଦାରୁଣ,
ଅଙ୍ଗଜ ଶଙ୍କରେ କରେ ଶୀତଳ ପ୍ରାଣ । ୮ ।
ଗଣେଶ ଜନମ ଦିନ ଦିନେ ହୋଇ ପରସନ୍ନ
ଦିଶୁଥିଲା ଭୂଷା ଯୋଷା ନିଶାମୁଖରେ,
ଡାକିଲା ଚନ୍ଦ୍ରବଦନ । ନ ଶୁଣି ସେ ବରାନନୀ
ବଦନ ପୋଡି ତଳକୁ ଲୁଚି ସେ ଖରେ ।
ଭାଷୁଁ ରାଗ କମ୍ପି ସଙ୍ଗାତ,
ବୋଲେ ଗଲା ଜଣା ଯାର ରାଗ ଯେମନ୍ତ । ୯ ।
ସରସୀପୀଠରେ ଦିନେ ବାନ୍ଧବୀ ବସି ବାଳନେ
ଦେଖୁଥିଲା ପଦ୍ମ ସଙ୍ଗେ ମଧୁପ ଖ୍ୟାତ,
ଛୁ ଛୁ ଭାଷିବା ସମୟେ ପରବେଶ ହେଲ ଭୟେ
ପତିଙ୍କୁଁ କି ଦୋଷ ହେଲା ମଉନାବତୀ ।
ବୋଇଲା ନ କରବ ପର,
ପଦ୍ମିନୀ ବୋଲଏ ବୃଥା ସୁମନାବର । ୧୦ ।
ଦିନେ ଋତୁ ଛଳ ଗୋରି ପଲାଶ କୁସୁମ ଧରି
ଦେଖାଇଲା ଚମ୍ପାହାସୀ ମଣ୍ଡନେ ବସି,
ଭ୍ରମରେ ଦେଇ ଦେଖାଇ ସରସେ କୁନ୍ଦନଦେହୀ
ଦେଖାଇଲା ରଙ୍ଗେ ମଣ୍ଡି ମରକ୍ତକେଶୀ ।
ବେଣୀ ପିନ୍ଧି ଦେଲା କେତକୀ,
ବୋଲେ କର ଯାହା ଇଚ୍ଛା ହସି ବରାକୀ । ୧୧ ।

---

୭ ପଦ । ସର—ପୋଖରୀ; ପୁଳନ—କୂଳ ।
୯ ପଦ । ଗଣେଶ ଜନ୍ମଦିନ—ଗଣେଶ ଚତୁର୍ଥୀ ( ଏ ଦିନ ଚନ୍ଦ୍ରଦର୍ଶନ ନିଷେଧ )।
ରାଗ—କ୍ରୋଧ, ସ୍ନେହ ।
୧୧ ପଦ । ମରକ୍ତ=ମରକତ ।

ଯେବେ ତା ବେଶଭବନେ     ଥିଲି ପ୍ରଭୁରୁ ଗୋପନେ
ଚତୁରୀ ପିନ୍ଧଇ ଭୂଷା ଗାଇ ସଙ୍ଗୀତ,
ପୃଷ୍ଠ ଭାଗୁଁ ଧାଇଁଯାଇ     ମୃଦୁ ନେଇ ବେଣୀ କରେ
ବୋଲେ ନାଥ ଦେଖ ତେଜ କରୁ ସଙ୍ଗାତ ।
ଡାକିଲି ମୁଁ ପ୍ରାଣ ସଙ୍ଗିନୀ,
ନ ଚାହିଁଲି ଲାଜେ କୁବଳୟନୟନୀ । ୧୨ ।
ଫଗୁଖେଳେ ଯେବେ ଗୋରୀ     ମାରୁ ଧରି ପିଚକାରୀ
ବୋଇଲି ଭୀରୁ ଅବଳା କାହିଁକି ମାର,
ଶତସାହସ୍ୟକୁଶଳା     ହସି ପିଚକା ମାଇଲା
କରି ରଙ୍ଗେ ଜରଜର କଲା ଅଧୀର ।
ଜରରେ ଜରଜ ଭିଜିଲା,
କରି ମୁଖ ରଦକ୍ଷତ କାମେ ପୀଡ଼ିଲା । ୧୩ ।
ବାନ୍ଧବୀଙ୍କ ଯେଉଁ ଯେବେ     ଭ୍ରମନ୍ତେ ଚିତ୍ରକାନନେ
ଦେଖୁଥିଲା କେକୀନୃତ୍ୟ ଶିକ୍ଷାପଦେଷ୍ଟା,
ଶୁଣି ତା ଲପନଇନ୍ଦୁ     ବରଷିଲା ସ୍ୱେଦବିନ୍ଦୁ
ଅଣି ଝରଣୀର ଦେଲି ତା ମୁଖ ଧୋଇ ।
ଛଳି ଡାକେ ଶିଖୀଙ୍କି କେ କି !
କିଏ ଶିଖାଇଲା କହ ଘନ ପ୍ରୀତକି । ୧୪ ।
ବସି ଯେବେ ମାନବତୀ—     ନଖେ ଚରୁଥିଲା କ୍ଷିତି
ଶୁଣି ଘନ ଗରଜନ ହେଲା ଚକିତ,
କହି ଅଲିଙ୍ଗିଲା ଖରେ     ଦମ୍ଭୋଳିବାଣୀଙ୍କ ଡରେ
ଘନ ପୀରତିକି ସଦା ବଳଇ ଚିତ୍ତ ।
ବୋଲି ବୋଲି ନୋହେ କି ଦାସ,
ବଳେ କରେ ମୃଦୁ ଦେଲା ମୋ ରଦବାସ । ୧୫ ।
ଵାଳମ୍ବେ ସୁରଙ୍ଗାଧରୀ     ହୋଇ ଦରଶନାତୁରୀ
ଫେଇ ଗବାକ୍ଷକୁ ଥାଏ ସଲଜ୍ଜେ ଚାହିଁ,
ଲଭି ଦରଶନ ମୋର     ଇଙ୍ଗିତରେ ସ୍ମାବର
ହୁଏ ପ୍ରେମେ ଗରଗର ପୁଲକ ବହି ।
କ୍ଷଣେ ନାଥ ନିଷ୍ଠୁରପଣ,
ଜାଣେ ଯେବେ ହେଲେ ନେବ ମୋର ଜୀବନ । ୧୬ ।

---

୧୨ ପଦ । ସଙ୍ଗାତ—ସଖୀ । କୁବଳୟ—ଉତ୍ପଳ । ରଦ—ଦନ୍ତ ।

୧୪ ପଦ । କେକୀ—ମୟୂର । ଶିଖୀ—ମୟୂର; ଶିକ୍ଷା କର । ଘନପ୍ରୀତ—ମେଘ ପ୍ରତି ସ୍ନେହ, ଗାଢ଼ ସ୍ନେହ ।

୧୫ ପଦ । କ୍ଷିତି—ପୃଥିବୀ । ଦମ୍ଭୋଳିବାଣୀ—ବଜ୍ରଭଳି କଥା, ଘଡ଼ଘଡ଼ି ଶବ୍ଦ । ଘନପୀରତିକି—ମେଘକୁ ଭଲ ପାଇବାକୁ, ଗାଢ଼ ପ୍ରୀତିକୁ । ରଦବାସ—ଓଠ ।

ନୁଆ ନୁଆ ପ୍ରୀତିରୀତି ପ୍ରକାଶଇ ଗୁଣବତୀ
ଦାଅଇ ସୁରସମ୍ପତ୍ତି ସକଳ ଭାବେ,
ବେଦନା ମୋ ଜାଣୁ ଥିଲେ ଝୁଣ୍ଟିପଡ଼େ ଥରକାଳେ
ଧୀରେ ଅରଡ଼ ଆବେଗେ ଡାକଇ ଦେବେ ।
ମାତା ଦାସୀ ସଖୀ ଭାବରେ,
ରମଣୀମଣି ହରଇ ବେଦନା ଖରେ । ୧୭ ।
ଭୁଲିଲେ ନ ଭୁଲେ ମନ ତାର ଯେତେ ସନମାନ
ଶେଷ କଲେ ବସୁମତୀ ସ୍ୱିତକ ବନ୍ଧେ,
ପାଶରୁ ଚଳେ ଗମନ ହୋଇଯାଏ ଥନଥନ
କନକଦେହା ବନଜନୟନ ଲକ୍ଷେ ।
ବୀଣାବାଣୀ କରୁଣାଗ୍ରଣୀ,
କରୁଣ ରସକୁ ଦାଏ ବଳେ ବରଷି । ୧୮ ।
କରପଲ୍ଲବେ ପ୍ରବୀଣା ହରଇ ପଦବେଦନା
ହରେ ଯଥା ଜାର ସଦ୍‌ଗତିକ ବଃପୀ,
ରାଜକେମା ରାଜରାଣୀ ହୋଇ ନୋହେ ବିଳାସିନୀ
ବିଳାସ ମୋ ପ୍ରୀତିଲୋଭେ ଥାଇ କଳପି ।
ଶୋଭା ଯେତେ ତେତେ ଗୁଣଭୂଷା,
ମୋ ବିରହେ ଥିବ କିକ ଜୀବନ ଧରି । ୧୯ ।
ଗୁହିଁଲେ ତଳେ ବାମନ ମନସିଜରେ ଉଚ୍ଛନ୍ନ
ଛନ୍ନ ହୋଇ ଧରେ ବାଳା ନବ ଶୋଭାକୁ,
ଶୋଭାକୁ ନୋହେ ଚଞ୍ଚଳା ଚଳାପାଙ୍ଗେ କରେ ଲୀଳା
ଲୀଳାରସେ ନାଶେ ବରପର ସ୍ମରକୁ ।
ରଙ୍କୁନେତ୍ରୀ ହୋଇ ଆରୂଢ଼,
ଆରୂଢ଼ଯୌବନା କରେ ମୋ ଦମ୍ଭ ଦୃଢ଼ । ୨୦ ।
ଦୃଢ଼ କରେ ଦୃଢ଼ତର ତରଳ ବଚନ ତାର
ତାରପତିରୁ ସୁଧା ସେ ହରଇ ପରି,
ପରାଣେଶ୍ୱରୀ ସମ୍ମାନ ମାନକୁ କରଇ ଆନ
ଆନ ନ ଦେଇ ସେ ଜାଣି ଶୋଭାପସରି ।
ସରାଇଲି ତାପେ ନବୀନା,
ବିନା ଦୋଷେ ବିଧି କଲା କି ବିଡ଼ମ୍ବନା । ୨୧ ।

---

୧୮ ପଦ । ବସୁମତୀ—ପୃଥିବୀ । ବସୁମତୀ ସ୍ୱିତ—ସବ ସହଣୀପଣ ।
୧୯ ପଦ । ଜାର—ବଃପୁରୁଷ; ବଃପୀ—ଭ୍ରଷ୍ଟା ସ୍ତ୍ରୀ ।
୨୦ ପଦ । ଚଞ୍ଚଳା—ବିଜୁଳି । ପର—ଶତ୍ରୁ । ସ୍ମର—କନ୍ଦର୍ପ । ରଙ୍କୁନେତ୍ରୀ—ମୃଗନୟନା । ଆରୂଢ଼ଯୌବନା—ଯୁବତୀ । (ଯାହାକୁ ପତିସଙ୍ଗମ ସୁଖକର ହୁଏ ।)
୨୧ ପଦ । ତାରପତି—ଚନ୍ଦ୍ର । ଆନ—ଆଣ, ଶପଥ ।

ବନାଇ କହଇ କେତେ      କେତେ ଚତୁର୍ଯ୍ୟ ଉଷତେ
ସତେ ପୋଡୁଥିବ ତାକୁ କି ଜାତ ସ୍ମର,
ସ୍ମରଣେ ନ କରି ହେଳା      ହେଳା କରିଥିବ ହେଳା
ହେଲୁ ମୋ ଚିତ୍ତ କି ତା ପ୍ରୀତିକି ସୁନ୍ଦର ।
ଦରକଣ୍ଠୀ ରୁହିଁ ଦକ୍ଷିଣ,
କ୍ଷୀଣଭାଷୀ ବହୁଥିବ ନାନା ଲକ୍ଷଣ । ୨୨ ।
କ୍ଷଣକ ବିରହ ସହି      ସହୁ ତ ପାରଇ ନାହିଁ
ନାହିଁ କରଇ ହେବାକୁ ପାଶୁ ଅନ୍ତର,
ତରଳାକ୍ଷୀ ସରବନ      ବନିତା ସେ ଯଉବନୀ
କଦାକୁଣି ବନ୍ଧୁ କହି ଥିବ କାତର ।
ତର ଥିବ କି ତା ଦୁଃଖର,
ଖରଶ୍ୱାସ ଛାଡୁଥିବ ରମଣୀବର । ୨୩ ।
ବରବରଣୀ ଶୋଭାଙ୍ଗୀ      ଭାଙ୍ଗି ଦେଉଥିବ ଭଙ୍ଗୀ
ଭଙ୍ଗୀରଚିତ ଉଚାରି ହାହା ଶବଦ,
ବଦ ଭାବି ଜବାଧରୀ      ଧରିଜନ ହେଲୁ ପରି
ପରିଣେ ହା ସାରିଥିବ ଶୋଭାସମ୍ପଦ ।
ପଦ ନୋହେ ଏ ସୁଧାରସ
ରସ ରସିକେ ଗୋଲୋକ କଲୁ ପ୍ରକାଶ । ୨୪ ।

## ୪[illegible]ଶ ଛାନ୍ଦ

ରାଗ—ଚିନ୍ତାଭୈରବ

ଉଠି ସ୍ୱପନରୁ ରସାଳସୀ, ଜରେ ମାରି କର ପିକଭାଷୀ,
ଉନ୍ମାଦନୀ କଲ୍ ଭଣେ ହଷ୍ଟପଣେ, ଓଣା ସ୍ନେହ କି ସହିବ ଦାସୀ ହେ,
ସୁନ୍ଦର । ୧ ।
ଠଣ ସୁନ୍ଦର ମୁଖ ଦେଖାଇ, ଠକି ଲୁଚିଗଲ୍ କାହିଁପାଇଁ,
ଠଣା ଖୋଲି ପ୍ରେମପଥେ କଲ୍ ବଣା ଠକୁରିଲ୍ ଯା ପାରିଲ୍ ନାହିଁ ହେ,
ସୁନ୍ଦର । ୨ ।

---

୨୨ ପଦ । ହେଳା—ତ୍ରୁଟି, ନାୟିକାର କାମଜ ଭଙ୍ଗୀବିଶେଷ । ଦରକଣ୍ଠୀ—ଶଙ୍ଖକଣ୍ଠୀ ।
ଦକ୍ଷିଣ—ଦକ୍ଷିଣଦିଗ, ଯମପୁର ।
୨୪ ପଦ । ବଦ—ମନ୍ଦ ।

୧ ପଦ । ପିକଭାଷୀ—କୋକିଲବଚନା । ଉନ୍ମାଦନୀ—ପାଗଳିନୀ ।
୨ ପଦ । ଠଣ—ମନୋହର । ଠଣା—ଗଣ୍ଠି, ଗାଣ୍ଠ ।

ମରମରେ ଦେଲ କି ବେଦନା, ମଲି ଉଠି ସ୍ୱପନରୁ ସିନା,
ମରିବି ଗରଳ ଖାଇବି ନିକର ମରୁ ମଦନ-ଯମ ଯାତନା ହେ,
ସୁନ୍ଦର । ୩ ।
ଦୟାନିଧି ନ ରଖିଲ ଦୟା, ଦସ୍ତୁ ହରନେଲ କର ମାୟା,
ଦରପଣେ ଛମ୍ୱ ପରି ହେଲ କପି ଦଂଶି ଘାରେ ତାପ-ଅହି କାୟା ହେ,
ସୁନ୍ଦର । ୪ ।
ନବ ନବ ପୀରତି ଚଖାଇ, ନବ ଅଙ୍କୁଶୀ ହେଲ କପାଇଁ,
ନ ଧଶଇ ପଥ ସଂସାର କାନ୍ତାରେ ନ ଚଳିବ ପଦେ ପୀନା ଛାଡ଼ି ହେ,
ସୁନ୍ଦର । ୫ ।
ତେଜି ସକଳ କଳରୁ ସାର, ତେଜି ମାଇ କଲ କି ଅଙ୍ଗୀର,
ତେରଛ ଗୁହାଣୀ ମନେ ମୋ ପକାଇ ତେଜି ପରଶୁଗି ହେଲ ପର ହେ,
ସୁନ୍ଦର । ୬ ।
ଜପି ଜପି ହେଲ ତନୁ ଷୀଣ, ଜଣାଇବ ତାହାକୁ କେଷଣ,
ଜଣାଯାଇ ନାହିଁ ସ୍ନେହ ଥିଲ ପରି ଜଗତକୁ କି ହେଲ ଭୂଷଣ ହେ,
ସୁନ୍ଦର । ୭ ।
ହରବର କର ରସନିଧି, ହରପରେ ମଲି ଏ କି ବାଧି,
ହଜାଇ ମୋ ଅଙ୍ଗ ପ୍ରେମିକ ସଂସାର ହସାଇବ ସିନା ନିରବଧି ହେ,
ସୁନ୍ଦର । ୮ ।
ସ୍ମିତ ହେଲ ଏ କେଉଁ କାଳର, ଝପୁକରେ କଲ ନାରଖାର,
ଭୁଞ୍ଜାଇଲେ ମନମଥ କି ଜାଣିଲ ଝସ୍ଟ ଦେଲ ହେଲ କି ସୁନ୍ଦର ହେ,
ସୁନ୍ଦର । ୯ ।
ନାହିଁ ନ କଲ ଅନ୍ତର କାଳେ, ନାରକାପ୍ରୁ ପ୍ରୀତି ଦହେ ବଳେ,
ନାମ ଭଜି ଭଜି ତୃଷା ନ ମେଣ୍ଟିଲ ନାସ୍ତି କି ମୋ ପାଇଁ ସୁଖ ଛାଳେ ହେ,
ସୁନ୍ଦର । ୧୦ ।
ମନ୍ଦ ମଦନ କୁସୁମଶର, ମରମକୁ କରଇ ଅସ୍ଥିର,
ମଠ ମଠ ଗୁହିଁ ବିରହରେ କାଳ ମରେ ତାପେ କର ଜରଜର ହେ,
ସୁନ୍ଦର । ୧୧ ।
ରଙ୍ଗିଣୀର ନିଧି ପରି ମୋର, ରଖିଥିଲ ଅଞ୍ଚଳେ ନାଗର,
ରତି ଆବେଶୀର ଭାବ ପାସୋରିଲ ରସି ନ ମିଳେ ଗଳାକୁ ମୋର ହେ,
ସୁନ୍ଦର । ୧୨ ।

---

୪ ପଦ । ଅହି—ସର୍ପ ।

୬ ପଦ । ତେଜି—ଉତ୍ତେଜିତ କରି, ତ୍ୟାଗ କରି ।

୮ ପଦ । ହରପର—କାମଦେବ ।

ସଉରଗଲଣି ସୁଖ ସମ୍ପଦ, ସପ୍ନେ ନ ଦେଖିଲି ପଦ୍ମପାଦ,
ସରସେ ନ ଶୁଣି ବାଣୀ ହେଲି ବଣା ସଦା ଡରୁଏ ଚନ୍ଦ୍ରାଶ୍ୱାପଦ ହେ,
ସୁନ୍ଦର । ୧୩ ।

ରେଣୁଭାବେ ଫିଙ୍ଗିଲ କି ଭାଳି, ରେଖାକୁ ମୋ ସୁଖ ଦେଲ ଝାଳି,
ରେବତୀନାଯ଼କମୌଳି ତପେ ଲଭି ରେଖରୂପେ ଯାଇଥିଲି ଠେଲି ହେ,
ସୁନ୍ଦର । ୧୪ ।

ମଣେ ହେ କାନ୍ତ ରସାଳ ସମ, ମତ୍ତ ମୋହିବାକୁ ଅନୁପମ,
ମଧ୍ୟରେ କାଟିନ୍ୟ ପୁରାଇ କାହିଁକି ମନ ମଣାଇ ଦିଅ ବିଭ୍ରମ ହେ,
ସୁନ୍ଦର । ୧୫ ।

ନ ରଖିଲ ସୋହାଗିନୀପଣ, ନ ମାର ଯା ଦିଅ ଏ କ୍ଷପଣ,
ନବୀନ ପ୍ରୀତିକି ହେଉ ଏ ଦୂଷଣ ନ ଥାଉ ତ ଅଉ ଦାସୀପ୍ରାଣ ହେ,
ସୁନ୍ଦର । ୧୬ ।

ମୋହ ଭଜିବ କେତେ ଜୀବନେ, ମୋ ପରି ତ ଦାସୀ ହେବେ ପଣେ,
ମୋତିହାର ପରି ହୃଦେ ଯେନିଥିଲ ମୋର କରମେ ମରିବା ଏଣେ ହେ,
ସୁନ୍ଦର । ୧୭ ।

ହରସୁତ ହେଲଣି ଉଗାର, ହରଷକୁ ମୋ ନେଲଣି ହରି,
ହରଣାକ୍ଷୀ ଯାକୁ ଡାକ କି ବଞ୍ଚିବ ହରିନେଲ ଅଗୁ ରୂପ ଶିରୀ ହେ,
ସୁନ୍ଦର । ୧୮ ।

ନ ରଖିବ ଜୀବ ସତ୍ୟ ମୋର, ନବ ନାଗର ହେଲ ପଥର,
ନ ଦେଲ କି ଦଣ୍ଡ ଏ ପୋଡ଼ା ପୀରତି ନ ହେଉ ତ ଶତ୍ରୁକୁ ମୋହର ହେ,
ସୁନ୍ଦର । ୧୯ ।

ଭଙ୍ଗା ମଦନ ନାଉକା ପରେ, ଭଣ୍ଡି ବସାଇ ଗଲ ମଧୁରେ,
ଭରସା ନୋହିଲ ବିପଦକାଳରେ ଉଗାରିଏ ହସିବେ ସୁଖରେ ହେ,
ସୁନ୍ଦର । ୨୦ ।

ଜିତକାମ ଯେ ପ୍ରିୟ ତା ବୋଲେ, ଜୀଇବି କି ତେଜିଗଲ ବଳେ,
ଜୀମୂତବାହନ ସମ୍ପତ୍ତି ହରାଇ ଜୀଇ ବଞ୍ଚିବା ବୃଥା ଏ କାଳେ ହେ;
ସୁନ୍ଦର । ୨୧ ।

ଲେଖ ନାହିଁ ଯେବେ ପତ୍ନୀପଣେ, ଲେଖା ନ ହେବି କି ଦାସୀଗୁଣେ,
ଲେଖାଇଛୁ ନାମ ପ୍ରୀତିଅ ପଣରେ ଲେଖା ମାଉବ ତାକେ କ୍ଷଣେ ହେ,
ସୁନ୍ଦର । ୨୨ ।

---

୧୩ ପଦ । ସଦ୍ମ—ଘର । ଶ୍ୱାପଦ—ହିଂସ୍ରଜନ୍ତୁ ।
୧୪ ପଦ । ରେବତୀନାୟକମୌଳି—ଶିବ ।
୧୮ ପଦ । ହରସୁତ—କାମଦେବ ।
୨୧ ପଦ । ଜିତକାମ—ଶିବ । ଜୀମୂତବାହନ—ଇନ୍ଦ୍ର ।

ତରଙ୍ଗାଇ ମନ ନେଲ୍ କେଣେ, ତମେ ପଡ଼ ମୁଁ ଭ୍ରମଇ ଏଣେ,
ତପତ ତଇଲେ ବଞ୍ଚା ମୀନପରି ତନୁ ଯୋଡ଼ ମରଇ କ୍ଷଣେ ହେ,
ସୁନ୍ଦର । ୨୩ ।

ଗୀତ ନାଗରର କି ଏପରି, ରଙ୍ଗ ଦିଅନ୍ତି ତ ନ ବାଗୁରି,
ରସୁଙ୍ଗବ ପରଗୃଷିରେ ବହନ୍ତି ରସୁ କେବେ କି ନିଜ ନାଗରୀ ହେ,
ସୁନ୍ଦର । ୨୪ ।

ବସି ସ୍ନେହ କରୁଥିଲ କେତେ, ବଡ଼ ରସିକା ଭାବିଲି ଚିତ୍ତେ,
ବଡ଼ ଅଣ୍ଟ କାହୁଁ ଦଇବ ସହନ୍ତା ବଢ଼ାଇ ମୋ ଭାଙ୍ଗିଦେଲା ଏଥେ ହେ,
ସୁନ୍ଦର । ୨୫ ।

ରସାପତି ଭାବେ କଲ ଖେଳ, ରଖିଗଲ ମୋ ପାଇଁ ଗରଳ,
ରସାରେ ଭଟାର ଦେବେ କରତାଳି ରମଣୀଙ୍କ କଲ ଏ ଚଳଳ ହେ,
ସୁନ୍ଦର । ୨୬ ।

ସାରସାକ୍ଷୀ ତାଙ୍କ କି ପାସୋରି, ସାନନ୍ଦରେ କଲ ଆନ ନାରୀ,
ସାର ଯା ପୀରତି ଦେଲେ ସେ ବିପତ୍ତି ସାଙ୍ଗା ହେବ କେ ଭାବ ବାଉରି ହେ,
ସୁନ୍ଦର । ୨୭ ।

ରେଖ ରୂପ ଗଲା ବୃଥା ସରି, ରେଣୁ ଗଣୁ ଦିବା ଶରବରୀ,
ରେବତୀପତିର ଅନୁଜ ତନୁଜ ରେ କାର ତ କଲା ଅସି ଭାରି ହେ,
ସୁନ୍ଦର । ୨୮ ।

ସଖୀ କରନ୍ତି ଧୀରିକୁ ବୋଧ, ଶ୍ରୀ ଗୋଲୋକ ଭଣେ ଦିବ୍ୟ ଛାନ୍ଦ,
ଅନୁପ୍ରାସ ସଙ୍ଗ ଯମକରେ ଶତେ ଘେନ ସୁବିଜ୍ଞରେ ଗୁରୁପାଦ ହେ,
ବୁଧାନେ । ୨୯ ।

---

୨୮ ପଦ । ଶରବରୀ—ଶର୍ବରୀ, ରାତ୍ରି ।

୨୯ ପଦ । ବୁଧାନ—ପଣ୍ଡିତ ।

ଅନୁପ୍ରାସରେ ସଙ୍ଗ ଯମକ

ଭଜ ମଦନ ତେଜ ହରିନାମ ରସରେ
ମନ ମୋହନ ଭଜିଲେ ତରିବ ସଂସାରେ ।
ଭଜ ମଦ ନ ତେଜ ହରିନାମ ରସରେ
ମନ ମୋହନ ଭଜିଲେ ତରିବ ସଂସାରେ ।

## ଷଷ୍ଟିତମ ଛାନ୍ଦ

### ରାଗ—ଭୂପାଳ

ଗୃହନା ନିଶୀଥରେ ବାନ୍ଧବୀ ଧନେ
ସ୍ବଚ୍ଛନ୍ଦ ମଣ୍ଡି ଶୋଇଥିଲେ ସୁମନେ । ୧ ।
ଚନ୍ଦ୍ରକିରଣେ ତାର ମୁଖସାରସ
ଝଟକୁଥିଲ ଖସି ଚହଟ ହାସ । ୨ ।
କୁଟଜ ହାର କରେ ଧରି ହେମାଙ୍ଗୀ
ଗାଇ ସଙ୍ଗୀତ କରୁଥିଲ ସୁଭଙ୍ଗୀ । ୩ ।
ଲୋଡ଼ି ମୋ ଆଗମନ କୁଞ୍ଚିତକେଶୀ
ଅଳପେ ଗୁହୁଁଥିଲ ଗଗନେ ଶଶୀ । ୪ ।
ଝଲି ଚହଟୁଥିଲ ଗଣ୍ଡମଣ୍ଡଳ
ମଣିଲ ବଧୂହେମ୍ନହ୍ରା ହେଲା କମଳ । ୫ ।
ଡୋଳା ଚଞ୍ଚରୀକକୁ ଚଞ୍ଚଳେକ୍ଷଣୀ
ଖେଳାଉଥିଲ ରଙ୍ଗେ ତରଙ୍ଗିଣୀ । ୬ ।
ଏ କାଳେ ପରବେଶ ତା ପାଖେ ମୁଁ ଯେ
ବରେଣ୍ଟୁ ଲଜେ ଲଜେ ବସିଲ ଗେଯେ । ୭ ।
ଝଟକହାସୀ ହସି ହୋଇଲ ସଜ
ଅଦ୍ୟ ଦର୍ଶନେ ରବି ଯଥା ସରୋଜ । ୮ ।
କୁସୁମବତୀ ଭାବ ପ୍ରକାଶି ରଙ୍ଗେ
ବସିଲ ଖସି ଶେଯୁଁ ରସବିଭଙ୍ଗେ । ୯ ।
ଯୋଗଭଙ୍ଗିମା ଭଙ୍ଗୀ ବିଲୋକ୍କି ତହୁଁ
ବିଧୁରେ ପଶୁରିଲି ଅଧୀର ହୋଇ । ୧୦ ।

ବ ହେ କ ହ ଧ ର ଣୀ ଣି ରେ କେ ଦେ ବ (ଶେଷ)
ସା ଦ ର ଷ୍ଣ ବେ ବି ଟ ପୀ କେ ବ ହ ବ ॥ (ବାତୁଳ)
ର ତ ନ ଲ ଭ ପ ତ କ ଶୋ କ କ ରେ (ଋଣ)
ସେ ବା ବ ଶ ଯେ ନ ଜେ କ୍ଷ ସ ଶ୍ୱ ଗୃ ରେ ॥ (ଗ୍ଲୁର)
ପା ମ ର ସ ରୋ ଜେ କେ ର ସି ନା ଶ ଇ (ନାଗ)
ଶେ ଷେ ସ ଚ୍ୟୈ ଦ୍ବି ଜେ ଶ ସା ର କେ କ ହ୍ନ ॥ (ଶଙ୍ଖ)
ଚୂ ଷ୍ଣ ସ ମ୍ୟୋ ଧି ରେ ରେ ତା ର୍ଯ୍ୟ କା ର ଣେ (ନାଗ)
ବି ଧୂ ର ତ ନୁ ଖେ ଦେ ଧ ର କା ମ ଣେ ॥ (ଚୁଲ୍ଲି)

---

୯ ପଦ । କୁସୁମବତୀ—ଋତୁମତୀ ।
୧୦ ପଦ । ବିଧୁରେ—କାତର ହୋଇ, ଦୁଃଖରେ ।

ଧୂ ଳି ବ ଭ ବେ ଦା ସ୍ ଧ ନ ଗ ଣ ଇ (ଋଷି)
ମୂ ହଁ ନ ଠେ କ ଦୋ ଷୀ କ ସ ମା ଗ ଇ ॥ (କ୍ଷମା)
ସ୍ ଦା ର ସେ କ ଭ୍ର ବ ଯୋ ଗୀ ମା ନ ସ (ମୋକ୍ଷ)
ସ ଦା କ ର ଇ କ ଏ କଂ ସ ଲୁ ତୋ ଷ ॥ (ହେତୁ)

ଅନ୍ତର୍ଲିପିରେ ଶୁଣି ନାଗରବର
ବୋଇଲା ବିପରୀତ ଧର ନାଗର । ୧୭ ।
କର୍ଣ୍ଣମାର୍ଗରେ ଯେନ କହନ୍ତେ ମୁହିଁ
ତୃତୀୟ ଧରି ରଙ୍ଗ କରନା କହି । ୧୮ ।

---

୧୧—୧୮ ପଦ । ୧୧ ପଦଠାରୁ ୧୬ ପଦ ଦୁଇ ପ୍ରକାର ଅନ୍ତର୍ଲିପି ହୋଇଅଛି । ୧ମ ପ୍ରକାର ଅନ୍ତର୍ଲିପି—ପାଦମାନଙ୍କର ପ୍ରଥମ ଅକ୍ଷରମାନ—ବସା ରଣେ ପାଶେ ଲୁ ବଧୂ ମୁଁ ଶଣ । ୨ୟ ପ୍ରକାର ଅନ୍ତର୍ଲିପି—ଏଥିରେ ଏକ ଏକ ପାଦରେ ଏକ ଏକ ପ୍ରଶ୍ନ ହୋଇଅଛି, ସେ ପ୍ରଶ୍ନର ଉତ୍ତରମାନ ପାଦମାନଙ୍କର ଶେଷରେ ବନ୍ଧନୀରେ ଯଥାକ୍ରମେ ଦିଆ ଯାଇଅଛି । ସେ ଉତ୍ତର ବାହାରିଥିବା ଶବ୍ଦମାନଙ୍କର ମୂଳ ଅକ୍ଷରମାନ—ସେବା ଇଚ୍ଛା ନାଶ ନା ଲୁ ଋଷ ମୋକ୍ଷେ ଅର୍ଥାତ୍ ତୁ ଅତଏବ ମୋକ୍ଷରେ ମୋର ସେବା କରିବା ଇଚ୍ଛାକୁ ନାଶ କର ନାହିଁ ।

ପୁରୁଷ ଏହି ଦୁଇପ୍ରକାର ଅନ୍ତର୍ଲିପି କରି ପଠାଇବାରୁ ଚତୁରୀ ତାହାର ଉତ୍ତରରେ ତୁମ୍ଭର ଅନ୍ତର୍ଲିପିକୁ ବିପରୀତ କର କହିଲା—ଅର୍ଥାତ୍ ପ୍ରଥମ ଅନ୍ତର୍ଲିପିର ବିପରୀତ ତୁମ୍ଭେ ବଧୂ ଓ ମୁଁ ଶଣ ।

୨ୟ ପ୍ରକାର ଅନ୍ତର୍ଲିପିର ବିପରୀତ ( ଅର୍ଥାତ୍ ଅନ୍ତଲପିର ବିଲୋମ ) ହେ । ମୋକ୍ଷ ଋତୁ ନାଶନା ଛାଇ ବାସେ—ଅର୍ଥାତ୍ ଋତୁ ମୋକ୍ଷ ହେବାରୁ ମୋର ବସନରେ ବଦ ଦାଗ ଅଛି । ଚତୁର ନାଗର ଏହି କଥା ଶୁଣି "କର୍ଣ୍ଣମାର୍ଗରେ ଯେନ" କହିଲା । ଏଥିରେ କର୍ଣ୍ଣମାର୍ଗ ଛାନ୍ଦ ହୋଇଅଛି । ଅର୍ଥାତ୍ ୬ ପଦ ବା ୧୨ ପାଦ ଗୀତରୁ ଏକପଦ ଗୀତ ବାହାରିବ । ଏଥିରେ ପ୍ରଥମ ପାଦର ପ୍ରଥମ ଅକ୍ଷର, ୨ୟ ପାଦର ୨ୟ ଅକ୍ଷର, ୩ୟ ପାଦର ୩ୟ ଅକ୍ଷର, ଏହି କ୍ରମେ ୧୨ଶ ପାଦର ୧୨ଶ ଅକ୍ଷର ନେବାକୁ ହେବ—ନେଲେ ୧ମରେ 'ବଦନ ସରୋଜରେ ଧନ-ମାନସ' ଏହା ବାହାରିବ । ପୁଣି ଏ ଛାନ୍ଦରେ ପ୍ରଥମ ପାଦର ୧୨ଶ ଅକ୍ଷର, ୨ୟ ପାଦର ୧୧ଶ ଅକ୍ଷର, ୩ୟ ପାଦର ୧୦ମ, ୪ର୍ଥ ପାଦର ୯ମ, ଏହିପ୍ରକାର ୧୨ଶ ପାଦର, ପ୍ରଥମ ଅକ୍ଷର ନେଲେ—୨ୟରେ "କରି କସ ରସରେ ନୂତନ ଦାସ" ବାହାରିବ; ପୁଣି ଏ ଦୁଇ ପାଦକୁ ବିପରୀତ କଲେ ୧ମରେ 'ସଜମାନ ଧରେ ଯେ ରୋଷ ନ ଦେବ ।' ୨ୟରେ "ସଦା ନତନ୍ତୁରେ ସରସ କରିବ" ବାହାରିବ । ଅର୍ଥାତ୍ ୧୨ଶ ପାଦର ୧୨ଶ ଅକ୍ଷର, ୧୧ଶ ପାଦର ୧୧ଶ ଅକ୍ଷର, ୧୦ମ ପାଦର ୧୦ମ ଅକ୍ଷର, ଏହି କ୍ରମରେ ୧ମ ପାଦର ପ୍ରଥମ ଅକ୍ଷର ନେଲେ "ସଜମାନ ଧରେ ଯେ ରୋଷ ନ ଦେବ" ହେବ । ପୁଣି ୧୨ଶ ପାଦର ୧ମ ଅକ୍ଷର, ୧୧ଶ ପାଦର ୨ୟ ଅକ୍ଷର, ଏହି କ୍ରମରେ ପ୍ରଥମ ପାଦର ୧୨ଶ ଅକ୍ଷର ନେଲେ 'ସଦା ନତନ୍ତୁ (କନ୍ଦର୍ପ)ରେ ସରସ କରିବ' ବାହାରିବ । ଏହା ଶୁଣି ଚତୁରୀ ନାୟିକା ଏ ପାଦମାନଙ୍କରେ ତୃତୀୟ ରଙ୍ଗ ଉକ୍ତି କହିଲା ଅର୍ଥାତ୍ ତୃତୀୟ ଦିନ ପରେ ରଙ୍ଗ ଉକ୍ତି ହେବ ଏହା କହିଲା । ପୁଣି ଏହି ପାଦମାନଙ୍କର ୩ୟ ଅକ୍ଷର-ମାନଙ୍କଦ୍ୱାରା ମେଷପୁଚ୍ଛରେ ଅବନାରେ ରଙ୍ଗ ଉକ୍ତିରେ କହିଲା 'କର ଜବ ରସ ସରବ ନରକ' ଅର୍ଥାତ୍ ମୁଁ ଋତୁମତୀ, ତୁମ୍ଭେ ବିଳାସ କରିବ କପଟ ଏହା ଘୃଣା ଓ ଅବୈଧ କଥା । ୧୮ଶ ପଦ—କରନା—କର, କର ନାହିଁ ।

ତା ବାଣୀ ସଜ ମଣି ହେଲ୍ ଚକିତ
ବୋଇଲା ଏ ଦଣ୍ଡେ ତ ଦଇବକ୍ଲଜ । ୧୯ ।
ଭାଷିଲ୍ କି ଜପାସୁ ଅଛୁ ଦାସର
ମାରବ୍ୟାଧି ଔଷଧି ରମଣୀବର । ୨୦ ।
ହରବର ନ କର ରଙ୍କରତନ
ପଞ୍ଚଶର କରଇ ବକ୍ଷ କର୍ତ୍ତନ । ୨୧ ।
ଗୁରୁବର୍ଣ୍ଣରେ ଯେଉଁ ଫୁଲ୍ ସଙ୍ଗିନୀ
ଦ୍ୱିତୀୟବର୍ଣ୍ଣ ଲୋପେ ନ କହ ଧନୀ । ୨୨ ।
ପ୍ରାନ୍ତ ବେନକ ଦାସେ ସୁଦୟା କର
ନୋହିଲେ ଅଦ୍ୟ ବେଳ ମୋ ଗଲେ ମାର । ୨୩ ।
ମୋର ଅସ୍ଥିର ଭାବେ ରମଣୀମଣି
କଟାକ୍ଷ ହାଣି ରଙ୍ଗେ ହସିଲା ପୁଣି । ୨୪ ।
କାମଚଣ୍ଡାଳ ଗୁଣ୍ଡେ ଦନ୍ତ ମୋ ମନ୍ତ
କଙ୍କର ଭାବେ ଖେଦେ ସ୍ତ୍ରବାଲି ଅନ୍ତ । ୨୫ ।
(କ) ହରିବାରେ ହେ ଦୟାକର ମଧୁହା (ସୀ)
(ଖ) ପାକୁ ଭବେ ତୁ ତାପ ହେବ କି ସୁହା । ୨୬ । (ସୀ)
(ଗ) କାନ୍ତଭାବକୁ ଦଅ ସୁଶାନ୍ତ ରସ (ଦା)
(ଘ) ଯୋଗୀ ଭାବେ ଦଇତ ପର ହରଷ । ୨୭ । (ଦା)
ଅଦ୍ୟ ପୁଣି ପ୍ରାନ୍ତରେ ଦସ୍ତାକ୍ଷରକୁ
ଦେଇ ନାଗରୀ ନେଲା ଗୁରୁ ଅର୍ଥକୁ । ୨୮ ।
ଭାଷିଲା ହରି ସ୍ତବ ଧେନୁଛୁ ଶବ୍ଦେ
ଅବଧି କରିବି ମୁଁ ଅଜି କେମନ୍ତେ । ୨୯ ।

---

୨୨ ପଦ ଓ ୨୩ ପଦ । ବୁଝିଅନା ।

୨୬ ପଦ ଓ ୨୭ ପଦ— (୧) ବିଷ୍ଣୁଙ୍କ ସ୍ତବ । (୨) ପାଦମାନଙ୍କର ଆଦ୍ୟରେ ଯଥାକ୍ରମେ ବନ୍ଧନୀରେ ଥିବା ଅକ୍ଷରମାନଙ୍କୁ ଦତ୍ତ କଲେ ୧୩ ଅକ୍ଷରୀ ୪ ପାଦ ଗୀତ ହେବ । ଏହା ବିଷ୍ଣୁଙ୍କ ସ୍ତବ । (୩) ଏହି ଅକ୍ଷରମାନଙ୍କୁ ଦତ୍ତ ନ କରି ପ୍ରାନ୍ତରେ ଯଥାକ୍ରମେ ବନ୍ଧନୀରେ ଥିବା ଅକ୍ଷରମାନଙ୍କୁ ଦତ୍ତ କଲେ ନୂଆ ୧୩ ଅକ୍ଷରୀ ୪ ପାଦ ଗୀତ ହେବ । ଏଥିରେ ନାୟିକାକୁ ପ୍ରାର୍ଥନା । (୪) ଆଦ୍ୟରେ ଓ ପ୍ରାନ୍ତରେ ବନ୍ଧନୀରେ ଥିବା ଅକ୍ଷରମାନଙ୍କୁ ଏକ ସଙ୍ଗରେ ଯଥାକ୍ରମେ ପାଦମାନଙ୍କରେ ଆଦ୍ୟରେ ଓ ପ୍ରାନ୍ତରେ ଦତ୍ତ କଲେ ୧୪ ଅକ୍ଷରୀ ୪ ପାଦ ଗୀତ ହେବ । ଏଥିରେ ନାୟିକାକୁ ପ୍ରାର୍ଥନା ।

୨୬, ୨୭ ପଦ (୧) ହରି—ବିଷ୍ଣୁ । ମଧୁହା—ମଧୁସୂଦନ । ସୁହା ହେବ କି—ସହ ହେବ କି । କାନ୍ତ—ମନୋହର । ହେ ଦଇତ-ପର—ଦଇତାରି ।

(୨) ଏକାନ୍ତ ଭାବ—ଏକାଗ୍ରଭାବ । ପର—ଶ୍ରେଷ୍ଠ ।

(୩) କାନ୍ତ—ପତି । ପର—ଶତ୍ରୁ (ଏଠାରେ କାମ) ।

(୪) ରସଦା—ରସଦାୟିକା । ଦଇତ—ପତି ।

ନିର୍ଗଣ ଭାଷା ଶୁଣି ହେଲି କାତର
ଥନ୍ତା ବାଣୀ ମୋ କଣ୍ଠୁ ହେଲା ବାହାର । ୩୦ ।
ଗୃଁ ଗୃଁ ଗୃବୁ ବୁବୁର ନେନେ ଏଣିକି
ନା ନା ନାହିଁ ପ୍ରକାଶ କ କଣ ଡାଙ୍କ । ୩୧ ।
ଦେ ଦେ ଦେବକୀସୁତତନୁଜେ ବାସ
ଚୁଚୁ ଚୁଚୁକ ଦାନ କର ପ୍ରକାଶ । ୩୨ ।
ଲୀଳା ବିଳାସ ମୋଚ୍ଛାପ୍ତିତ ଅଧରେ
ନୀଳ କାଜଳକେଶୀ ଗର୍ଜିଲା ଖରେ । ୩୩ ।
ଜାଣି ପାରନ୍ତେ ମୁଁ ତା ଛଳ ବଚନ
ଲଜ ଲଜ ହୋଇଲା ରାମାରତନ । ୩୪ ।
ସୁଭଙ୍ଗୀ ଭଙ୍ଗୀ କରି କୁନ୍ଦନଗୋରୀ
ପାଶେ ବସିଲା ମୋର ଅମର୍ତ୍ତ୍ୟଣିରୀ । ୩୫ ।
ମୁଁ ବୋଇଲି ମାଗିବ ଦେବାକୁ ଯାହା
ସେ ବୋଇଲା ନେବାକୁ ଯାଚିବ ତାହା । ୩୬ ।
ବାତ୍ସ୍ୟାୟନ ଋଷିଙ୍କି ସ୍ମରିଲି ମୁଁ ପେ
ପ୍ରେମଗ୍ରନ୍ଥକୁ ପଢ଼ିବାକୁ ସହଜେ । ୩୭ ।
ସେ ବୋଇଲା ମୁକୁତା କା ଠାରେ ଜାତ — ଶା ମୁ କ
ଇକ୍ଷ୍ୱାକୁ ପ୍ରପିତାର ନାମ କି ଖ୍ୟାତ । ୩୮ । — ମି ହୁ ର
ସଗରରାଜକୀର୍ତ୍ତି ବୋଲି କାହାକୁ — ସା ଗ ର
ଭ୍ରଷ୍ଟା ଯା କରେ ତବେ ବୋଲି କି ତାକୁ । ୩୯ । — ଭୁ ସ୍ମ ଭ
ନୃପତି କରେ କାହିଁ ନିତି ବସତି — ନ ବ ଭ
ଦକ୍ଷଶିର କାଟିଲେ କେ ମହାମତି । ୪୦ । — ମ ହେ ଶ
ଶୁଣି ତାହାର ମଧ୍ୟ-ବହିର୍ଲିପିକି
ମଣିଲି ସେ ତ ଉଣା ନୋହେ ଭୂତକି । ୪୧ ।
ହସି ଭାଷିଲା ପୁଣି ରତିପଣ୍ଡିତା
କରିବ ନାହିଁ ଅଧୀନାକୁ ଖଣ୍ଡିତା । ୪୨ ।
ପ୍ରଶଂସି ଚୁମ୍ବି ତାର ମୁଖମଣ୍ଡଳ
ଲାବଣ୍ୟବତୀ କଲା ସେ କାଳେ କୋଳ । ୪୩ ।

---

୩୧ ପଦ । ଗୃଁ ଗୃଁ—ଗୃହାଁ ଗୃହାଁ । ଗୃବୁ—ସୁନ୍ଦର । ବୁବୁ—ମୃଗ । ନ—ନତ । ଜଣ—ଭଡ଼ (ବାଳ୍ମରେ) ।

୩୨ ପଦ । ଦେ ଦେ—ଦଅ ଦଅ । ଦେବକୀସୁତତନୁଜ—କାମ । ଚୁଚୁ—ଲଜ୍ଜାଶୀଳା ସ୍ତ୍ରୀମାନଙ୍କର ଡାକିବା ଶବ୍ଦ । ଚୁଚୁକ—ସ୍ତନାଗ୍ର ।

୩୮—୪୦ ପଦ । ମଧ୍ୟଲିପି—ମୁହିଁ ଜବାବ ହେ । ବହିର୍ଲିପି—କର ଉତ୍ତରସ ।

ପଡ଼େ ତା ଭାବ ଅଜ ବାରହେ ଯେବେ
ବର୍ଣ୍ଣିବ ଅବା ତାହା ମୁହିଁ କେମନ୍ତେ । ୪୪ ।
ହା ହା ଦଇବ କୃପା କରିବ ସତେ
ପୀରତବସ୍ତ୍ରଲା ମୋ ଦେଖିବ ନେତେ । ୪୫ ।
ରାମଦୁର୍ଗାଙ୍କୁ ଶକ୍ତି ଗୋଲୋକ ଭୂପ
ବସତ କର ଲଙ୍କା ନାଶ ମହିଷ । ୪୬ ।

---

## ୬୦ଷ୍ଟିତମ ଛାନ୍ଦ

ରାଗ—କଲ୍ପଶିଳ (ମୁକ୍ତାବରବାଣୀ)

ବାଳଇନ୍ଦୁ କାନ୍ତି ଧରି ବିରହେ ଅମର୍ତ୍ତ୍ୟଶିରା
ଅବିରତେ ଝରଝର ନୟନେ ନୀର ଯେ । ୧ ।
ଅହାର ନିଦ୍ରା ନ ମଣେ କାନ୍ତ ଲୋଡ଼େ ଅନୁକ୍ଷଣେ
ବେଶ ବାସ ଅସମ୍ଭାଳ ମନ ବିକଳ । ୨ ।
ବିଶୀର୍ଣ୍ଣ ବଦନ-ଶଶୀ ଚିନ୍ତା ବିଧୁନ୍ତୁଦ ଗ୍ରାସି
ଦେଇଛୁ କାଳିମା ବୋଲି ବିଧୁରା ବାଳୀ । ୩ ।
କରେ ଶିଥିଳ କଙ୍କଣ ଅଙ୍ଗଦ ଆଦି ଭୂଷଣ
ମେଖଳା ପଡ଼ଇ ଖସି ଅଙ୍ଗୁରୀୟଣି । ୪ ।
ଗନ୍ଧର ଗଣେ ନିଳୟ ଅନଳ ମଣେ ମଳୟ
ହାହାକାର ଅବିରତେ କାତର ଚିତ୍ତେ । ୫ ।
ବିଧୁରେ ବିଧୁକିରଣେ ଗରଳ ଭକ୍ଷିଲା ମଣେ
ରଜନୀକର ନିକର ଶର ପ୍ରକାର । ୬ ।
ବନପ୍ରିୟର ପଞ୍ଚମ ମଣଇ ଦମ୍ଭୋଳିସମ
ଘନ ଦେଖି କେକୀ ରଙ୍ଗ ଦଂଶେ ଭୁଜଙ୍ଗ । ୭ ।
କୁସୁମଲିହ ଗୁଞ୍ଜନ ତାଙ୍କୁଲ୍ୟ କଟୁ ବଚନ
ସାତକୁମ୍ଭ କୁମ୍ଭସ୍ତନୀ ବିଷାଦେ ମଣି । ୮ ।
ଚକ୍ରବାକୀର ରୋଦନ ଅସହ୍ୟ କରୁଣ ଗାନ
ବିଯୋଗିନୀ ଦଏ ଯାର ହୃଦ କତୁରା । ୯ ।

---

୪୬ ପଦ । ଲଙ୍କା—ରାବଣର ରାଜଧାନୀ, ସିଂହଳ, ତାହାନା । ମହୀଶ—ନୃପ (ଏଠାରେ ରାବଣ) । ମହିଷ—ମହିଷାସୁର ।

---

୩ । ବିଧୁ ନ୍ତୁଦ—ରାହୁ । ୭ ବନପ୍ରିୟ—କୋଇଲି ।
୮ । କୁସୁମଲିହ—ଭ୍ରମର । ସାତକୁମ୍ଭ—ସୁନା ।

କୁସୁମ ସୌରଭ ଭକ୍ତ— କଣ୍ଠସ୍ୱର କରେ ବ୍ୟକ୍ତ
ସଦା ଶୋଷ୍ଠ ଅନାଦର ଦ୍ୱେଷ ପ୍ରକାର । ୧୦ ।

ବଧିର ପିକ୍‌କା ବଚନ ମଣିଲ ଗିର ସମାନ
ଧ୍ୟାନଭଗ୍ନ ଯତିପତି ଉଠିଲ ଅଛି । ୧୧ ।

ଖେଦେ କଳଙ୍କିତଗତି ଅବେବଶେ ବାତୁଳମତି
ଶୁଣେ ଧନେ ଗାଏ ଗୀତ ବସନ୍ତଦୂତ । ୧୨ ।

ତପ୍ତ ଥଇଲ କି ସତେ ଢାଳିଦେଲା ଶ୍ରୁତିପଥେ
ବିରହିଣୀଚିତ୍ତ ଦାହ ବିରହ ଗାଇ । ୧୩ ।

ଫୁରିଲା ଈକ୍ଷଣୁ ବାରି ବଧିର ସହି ନ ପାରି
ଭବେ ବିନୟ ଅରତେ ନ ଜଲା ମୋତେ । ୧୪ ।

କୃଷ୍ଣ ଚିକ୍କଣ କାନ୍ତିକି ବହି ମୋହୁରୁ ମତିକି
ଗୁଣିଲି କି ପଞ୍ଚାନ୍ତର ବସନ୍ତଗୁରୁ । ୧୫ ।

ଚୂତ ମୁକୁଳବିଳାସୀ ଦେବସ୍ୱଭାବାପନ୍ନ ଋଷି
ମଧୁରେ ବିରଚୁ ଗାନ ସଦା ମଜ୍ଜନ । ୧୬ ।

ବାୟସପାଳନ ଦୋଷ ନ ଘେନନ୍ତି ଜ୍ଞାନୀ ଲେଶ
ସୁଗୁଣେ କରେ ଆଦର ଯେଣୁ ସଂସାର । ୧୭ ।

ଦୂତକାର୍ଯ୍ୟ ଭଲ ଜାଣି ବହିଛ ମହତ ଗୁଣ
ବରିଲି ବିନୟେ ଦୂତ ବନସ୍ତମିତ । ୧୮ ।

ପିକବର ନଭେ ଭ୍ରମି ଗିରିକାନନେ ବିଶ୍ରାମି
ପିଇ ନିର୍ଝର ଜଳ ଯିବୁ ଚଞ୍ଚଳ । ୧୯ ।

ବ୍ୟଥା ହେବ ଯେବେ ଲବେ କୁଞ୍ଜେ ବିଶ୍ରାମିବୁ ତେବେ
ତହୁଁ ଉଠିବୁ ନଭରେ ବନ ଭିତରେ । ୨୦ ।

ନଦ ନଦୀ ଗିରି ଛାଡ଼ି ବିହଙ୍ଗମ ଯିବୁ ଉଡ଼ି
ମିଳିବୁ ତୁ ଚେଦପ୍ରାନ୍ତ ଶରବସନ୍ତ । ୨୧।

ସେଠାରେ ଯେ ପିକବର ମିଳନ୍ତ ହେବୁ ତାହାର
ଦେଖାଇ ଦେବ ସେ ପଥ ଯହିଁ ମୋ କାନ୍ତ । ୨୨ ।

କାନ୍ତ ଅଟ୍ଟାଳି ପାଶରେ ବସିବୁ କୁଞ୍ଜ ଭିତରେ
କରିବୁ ପଞ୍ଚମେ ରୁତ ବିରହଗୀତ । ୨୩ ।

---

୧୨ । ବସନ୍ତଦୂତ—କୋଇଲି । ୧୩ । ବିରହ—ବିରହସଙ୍ଗୀତ ।
୧୪ । ଈକ୍ଷଣ—ନୟନରୁ । ୧୫ । ବସନ୍ତଗୁରୁ—କୋଇଲି ।
୧୭ । ବାୟସ—କାକ । ୧୮ । ବନସ୍ତମିତ—କୋଇଲି ।
୨୦ । ନଭ—ଆକାଶ । ୨୧ । ଚେଦପ୍ରାନ୍ତ—ଚେଦଦେଶର ସୀମା ।
୨୩ । ରୁତ—ଶବ୍ଦ, ଗାନ

ସ୍ୱନସ୍ୱେ କହୁଛି ଦୂତ                    କାତର ନ କର କାନ୍ତ
ଦେବୁ ମୋ ଖେଦ ଜଣାଇ ମଧୁରେ ଗାଇ । ୨୪ ।
କହିବୁ ବିରହାତୁରୀ                    ଭାବ ନିତ ଅନୁସରି
ଲୋଡ଼ୁଛି ପ୍ରମୋଦବନେ ଅତି ବିମନେ । ୨୫ ।
ତବ ସ୍ନାନଘାଟେ ଯାଇଁ                    କପୋଳ କରରେ ଥୋଇ
ଉଦ୍ଦେଶ୍ୟ କରଇ ରଙ୍ଗେ ଭାବତରଙ୍ଗେ । ୨୬ ।
ତବ ପଲ୍ୟଙ୍କ ଅଙ୍କକୁ                    ନ ଗମେ ବହି ଶଙ୍କାକୁ
ତହିଁରେ ବିରହଭୂତ ଦେଖି ଚକିତ । ୨୭ ।
ତରୁ ଲତା ଦେଲେ ଗୃହିଁ                    ସନ୍ଦେଶ ପୁଚ୍ଛି କାନ୍ଦଇ
କାହିଁରେ ନ ଲଭେ ଶାନ୍ତି ବହୁଛି ଭ୍ରାନ୍ତି । ୨୮ ।
ଘୋଡ଼ାଇ ତବ ବସନ                    ବିଧୁରା କରେ ଶୟନ
କହିବୁ ସବୁ ବୁଝାଇ କୋକିଳ ତୁହି । ୨୯ ।
କାହିଁରେ ନ ଲାଗେ ମନ                    କରେ ଚିତ୍ତ ଛନଛନ
ତ୍ରିତାପ ହୃଦୟ ଜାଳେ କି କଜଶଳେ । ୩୦ ।
କଳହାନ୍ତରିତା ପରି                    ବିପ୍ରଲମ୍ଭସାଗରେ ଝୁରି
ମରୁଛି କହିବୁ ଏତେ ପରାଣକାନ୍ତେ । ୩୧ ।
ହୋଇଥିବ ଯେବେ ଦୋଷୀ                    କହିବୁ ମାଗିଛି ଦାସୀ
ନ ଜାଣଇ ପ୍ରୀତିଲୀଳା ହୀନା ଅବଳା । ୩୨ ।
ସ୍ନେହ ଝୁରି ଝୁରି ନିତ                    କହିବୁ ବିରସବତୀ
ପରାଣ ତେଜିବ ଭାବେ ପ୍ରୀତି ଅଭାବେ । ୩୩ ।
ଅଧୁର କହିବୁ ତାଳେ                    କାମ ହୁତାଶନେ ଜଳେ
କାନ୍ତ ପ୍ରୀତି ଘନରସ ନ ଲଭି ହାସ । ୩୪ ।
ଅଧିକ କହିବୁ ମନ୍ତୁ                    ପାସୋରିଛି ଗଲ ଦିନୁ
ହାସ କେମନ୍ତ ପଦାର୍ଥ ଶାନ୍ତି କେମନ୍ତ । ୩୫ ।
ସ୍ମୃତିରେ ନିତ ପୀରତି                    ଦିଏ ତା ହୃଦ କ[illegible]
ଗତ ଲୀଳାକୁ ପାସୋରି ଅଛି ଅତୁରୀ । ୩୬ ।
ଲୋଡ଼ୁଅଛି ଅନୁକ୍ଷଣେ                    ସୁଖକୁ ଦୁଃଖରେ ଗଣେ
କାନ୍ତ ପ୍ରୀତିରେ ତା ଜୀବ ଥିଲ କହିବ । ୩୭ ।
ଗଲ ଦିନୁ ସନ୍ତାପରେ                    ନ ମଣୁଛି ଘରଦ୍ୱାରେ
ତବ ସ୍ନେହାଧୀନା ଦୀନା ନବ ନବୀନା । ୩୮ ।
କହିବୁ ପୁଣି ଚେତାଇ                    ପିକ ରେ ମଧୁରେ ଗାଇ
ନୁଆଁ ଅଛି ପରା ଏକା ଶୋକେ ସେବିକା । ୩୯ ।

---

୩୦ । ତ୍ରିତାପ—ଅଧିଭୌତିକ, ଅଧିଦୈବିକ ଓ ଆଧ୍ୟାତ୍ମିକ ।
୩୧ । ବିପ୍ରଲମ୍ଭସାର—ଅନୁତାପ ।   ୩୪ । ହୁତାଶନ—ଅଗ୍ନି ।

ହେଲାଣି ଅବଶ ଅଙ୍ଗ ଲୋଟଇ ଖାଟରେ ସଙ୍ଗ
ବିରହ ନାଦେ ଦୁଃଖିନୀ ସେ ବିଯୋଗିନୀ । ୪୦ ।

ଅଙ୍କପଲ୍ୟଙ୍କଲାଳସୀ ଶୋଭାକୁ ଝାଉଛୁ ବସି
କାହିଁ ନ ଦେଖେ ସୁଷମା ଡାଳ୍ପ-ମଧ୍ୟମା । ୪୧ ।

ଭୂମିରେ ଟକାଇ ଗାତ୍ର ଦିନ ଗଣେ ବାରବାର
ଦେଲେ ସଜନୀଙ୍କି ଗୃହିଁ ଦିଏ ଲିଭାଇ । ୪୨ ।

ମୁକୁଟରେ ବିମ୍ବ ଅନାଇ ହାତରେ ହାନ୍ଦ ଉଠଇ
ପର ପ୍ରତିବିମ୍ବ ମଣି ଦୁଃଖ ଭୋଗିନୀ । ୪୩ ।

ଅଗମନେ ସଦା ଦୃଷ୍ଟି ଦେଉଛୁ ଦୁଃଖେ ବିମ୍ବୋଷ୍ଠୀ
ଚମକଇ ପ୍ରୀତଲୋଭୀ କି ଭାବ ଭାବି । ୪୪ ।

ବାଧିକ ନାଦଇ କେତେ ଲେଖି ଗୃହୁଁ ଭବ ଚଳେ
ଆସି ସେବେଧ ହଟ କର ନୟନେ ବାରି । ୪୫ ।

ବେଳେ ବେଳେ ସଖୀ ଡାକ ପାଶକୁ ସେ ଅହେତୁକୀ
ଲୋତକ ଦିଏ ବୁହାଇ କିଛି ନ କହି । ୪୬ ।

ଯେ ସ୍ଥାନେ ଉଦ୍ର ବିହାର ଭ୍ରମଇ ହୋଇ କାତର
ସ୍ମୃତିରେ ଅନାଇ ରୂପ କରେ ସନ୍ତାପ । ୪୭ ।

ଛାଡ଼ଇ ଦୀର୍ଘ ନିଶ୍ୱାସ ଡାକଇ ଖେଦେ ଜିଶ୍ୱଶ
ହାହା ସ୍ୱନେ ନବ ବାଳୀ ରହ-ବାଉଳୀ । ୪୮ ।

ଶୁଣି କୋକିଳ କଳ ଅକାରକୁ କରେ ମେଳ
ଯାମକୁ ଅକାର ହୀନେ ଗଣୁଛି ଦୀନେ । ୪୯ ।

ଏହୁପରି କାନ୍ତେ କହି ବାହୁଡ଼ିବୁ ପିକ ତୁହି
ଭାବନ୍ତି କି ମୋତେ କାନ୍ତ ଦେବୁ ଉଦନ୍ତ । ୫୦ ।

ପଡ଼େ କି ମନେ ବଟୁରୀ ଭାବନ୍ତି କି ସେ ଅଧୀରୀ
ହୁଅନ୍ତି କି ଖେଦେ ଦହି ମୋ ଭାବ ବହି । ୫୧ ।

ଏକାଳେ ପକ୍ଷକୁ ଛାଡ଼ି ବିହଙ୍ଗମ ଗଲା ଉଡ଼ି
ବିରହେ ଗୋଲୋକ ଗୀତ ବାଳା ଚକିତ ଯେ । ୫୨ ।

---

୪୧ । ଡାଳ୍ପମଧ୍ୟମା—ଡମ୍ବରୁମଧ୍ୟା ସ୍ତ୍ରୀ ।
୪୩ । ପର ପ୍ରତିବିମ୍ବ ମଣି—ନିଜଛାଇକୁ ଅନ୍ୟର ମନେକରି ।
୪୯ । କଳରେ ଅକାର ମେଳ କଲେ = କାଳ; ଯାମକୁ ଅକାରହୀନ କଲେ = ଯମ ।

## ୬୧ଷ୍ଟିତମ ଛାନ୍ଦ

### ରାଗ—ଅଷାଢ଼ଶୁକ୍ଳ

ସାରସେ ରସିକ ସଦେଶେ ରହି  ପୀରତବସ୍ଥଳା ସୁରତ ଯାଚି
କହଇ ମଧୁପେ ସନମ୍ଭେ ଡାକି  ସୁମରାଜ କେତେ ଜୀବେଶ୍ୱରୀକି
ନ କର ଗୁଞ୍ଜନ,
ବହଇ ବାନ୍ଧବୀଭାବ ପରାଣ । ୧ ।

ଭୃଙ୍ଗରେ ପଦ୍ମିନୀ କରୁ ଆଦର  ସାଧୁରେ ମୁଁ ପରା ପଦ୍ମିନୀବର
ସୁମନା ସୁରଙ୍ଗେ ହେଉ ପ୍ରମୋଦୀ  ସୁମନା ସୁରଙ୍ଗେ ହୁଏ ବିନୋଦୀ
ଯେଣେ ବନ୍ଧୁଭାବ,
ବେନିଏ ଭ୍ରମର ସମ ସ୍ୱଭାବ । ୨ ।

ଅନାଇଁ ପୁଷ୍କର କାମ ଅତୁରେ  ଅନାଏ ପୁଷ୍କର କାମ କାତରେ
ପଦ୍ମବନ ଲୋଡ଼େ ତୋ ଅଗମନେ  ଲୋଡ଼ଇ ପଦ୍ମିନୀ ବନନସ୍ଥନେ
କାନ୍ତ ସ୍ୱାନ୍ତୁକରେ,
ଲୋଡ଼ନ୍ତି ବେନି ସେ ସମଦଶାରେ । ୩ ।

କେତକୀ ଭାବେ ତୁ ହେଉ କାତର  କେତକୀବରଣୀ ଭାବେ ଅଧୀର
ହେମ ପୁଷ୍ପକେ ନ କରୁ ଆଦର  ଚମ୍ପାରେ କିପାଁ ମୋ ହେବ ଆଦର
ଶିବ ଶିରେ ନେଇ,
ଚଢ଼ାଏ ଦେଖିବୁ ବାନ୍ଧବୀ ଯାଚି । ୪ ।

କାନ୍ତ ମଣି କଳି ନ ଲୋଡ଼ୁ ଭୃଙ୍ଗ  କାନ୍ତ ମଣି କଳି ନ କରେ ସଙ୍ଗ
ବନ୍ଦ ଶକପଦ ଲଭୁ ତା ପ୍ରୀତ  ଦାଏ ଶକପଦ ଲଭୁ ତା ରତ
ସୁମନା ସରସେ,
ଦାଅନ୍ତି ବିଭୂତ ବୋଲି ପରଶେ । ୫ ।

---

୧ମ ପଦ । ମଧୁପ—ଭ୍ରମର ।

୨ୟ ପଦ । ପଦ୍ମିନୀ—ପଦ୍ମ ପୁଷ୍କରଣୀ ଓ ପଦ୍ମିନୀ ଜାତୀୟା ଅତି ଶ୍ରେଷ୍ଠା ସ୍ତ୍ରୀ । ସୁମନା—ନାୟିକା । ଭ୍ରମର— ଭଅଁର ଓ କାମୁକ ।

୩ ପଦ । ପୁଷ୍କର—ପଦ୍ମ ଓ ଅକାଶ । ବନ—ଜଳ । କାନ୍ତ—ମନୋହର ଓ ସ୍ୱାମୀ । ସ୍ୱାନ୍ତ—ମନୋହର ଓ ସୂର୍ଯ୍ୟ ।

୪ ପଦ । କେତକୀ—ପୁଷ୍ପବିଶେଷ । ହେମପୁଷ୍ପକ—ଚମ୍ପା ।

୫ ପଦ । ମଣି—ମନେ କରି । କଳି—ପୁଷ୍ପକଢ଼ି ଓ କଳହ । ଶକ—ଇନ୍ଦ୍ର ଓ ମଲ୍ଲିଫୁଲ । ପଦ—ପାଦ ଓ ଉପାଧି ବା ମର୍ଯ୍ୟାଦା । ବିଭୂତ—ରେଣୁ ଓ ଐଶ୍ୱର୍ଯ୍ୟ ।

ଚନ୍ଦ୍ରକରେ ଭୃଙ୍ଗ ମୋ ପରି ଥରୁ ସମେ ମିତ୍ର ବନ୍ଧୁ ପ୍ରିୟା ଭାବରୁ
ଭ୍ରମରମାରକ ପରାଣେ ଡରୁ ଭ୍ରମର ମାରକ ପରାଣ ଘାରୁ
ମଧୁପ ତୁ ଭାବେ,
କାନ୍ତା ଓଷ୍ଠମଧୁ ଲୋଡ଼େ ମୁଁ ଏବେ । ୬ ।
ଅଳି ବୋଲି ତୋତେ କରୁଛୁ ଅଳି ନ କର ବଧୂରି ବାଳୀ ବାତୁଳୀ
ତୁ ଦାରୁ ଭେଦୁ ମୋ ହୃଦୟ ଦାରୁ ନିର୍ଦ୍ଦୟେ କାହିଁକି ଝଙ୍କାର କରୁ
ଅବଳା ସେ ହେଲି,
ବନ୍ଧୁତା ଥିବୁ ରେ ଭୃଙ୍ଗ ସରଳି । ୭ ।
ବସନ୍ତ ପକ୍ଷୀଙ୍କ ଭାଷେ ବଧୂର ଚପଳାଙ୍ଗୀ ପରି ଦଶୁ ମଧୁର
ବସନ୍ତବାସରେ ସେ ଯଥା ଦଶେ ତଥା ଦଶି କପାଁ ନ ଅଯୁ ପାଶେ
ନ ଦେଉଛୁ ଧରି,
ମଣୁଛୁ ହେବୁ କି ସେହି ବଧୂରି । ୮ ।
ବନପ୍ରିୟ ବାଣୀ ଶ୍ରବଣେ ଶୁଣି ହା ପ୍ରିୟେ ଭଣାରେ ବିରହ୍ରୀମଣି
ଭାଷେ କାହିଁ ଲଭି ଅନ୍ତର ଦହି ବର୍କମନୟନା ମୁଖ ନ ଚାହିଁ
ପରଭଜନ ପର,
କଲ୍ଲି ସଂସାରେ କି ଦଶେ ସୁନ୍ଦର । ୯ ।
ତେଡ ଭାଷେ ଅରେ ଶମନ ତୁହି ବଚନେ ବାନ୍ଧବୀ ସମ ନ ହୋଇ
ଅଯୁ କି ମୋ ପାଶେ ବହି ଗରବ କରନ୍ତା ବାନ୍ଧବୀ ଥିଲେ ଖରବ
ସଂଯୋଗରେ ମୋତ୍ତୁ,
ବିଯୋଗରେ ରିବି ଅନ୍ତର ଦହୁ । ୧୦ ।
ବକୁଳମୁକୁଳ କରୁ ଆହାର ବସନ୍ତ ମଇନ୍ତ ଜାଣେ ଅବର
ଯେ ଦେଶେ ମଳୟ ସେ ଦେଶେ ଯାଉ ସରଳ ନ ହୋଇ ଶରଳ ହେଉ
କାକ ସଙ୍ଗେ ବଢ଼ି,
ସଂସର୍ଗ ଦୋଷ କି ପାରିବୁ ଛାଡ଼ି । ୧୧ ।
ପତିବ୍ରତା ଗୁଣ ବିଟପୀ ବହି ନ ଦଏ କି କାନ୍ତ ଶାନ୍ତିକି ଦହି
ଜଳାଜ ତଥା ତୁ ହୃଦୟ ମୋର ସେ ମାଗୁ ପରି ତୋ ଚରଣେ ଝୁର
ପାରୁ ଗଲା କାଟି,
ମୋତ୍ତୁ ବାହାରେ ସୁମଧୁର ବଟି । ୧୨ ।

---

୬ ପଦ । ମିତ୍ର—ସୂର୍ଯ୍ୟ ଓ ବନ୍ଧୁ । ଭ୍ରମରମାରି—ବୃକ୍ଷବିଶେଷ; ଯାହାର ପୁଷ୍ପମାନେ ଭ୍ରମରମାନେ ମୃତ ହୁଅନ୍ତି ଓ ହେ ଭ୍ରମର ମୋତେ ମାରି କରି । ମଧୁପ—ମଧୁପାନକାରୀ ଭ୍ରମର ଓ କାନ୍ତାଓଷ୍ଠପାୟୀ ନାୟକ ।

୭ ପଦ । ଅଳି—ଭ୍ରମର; ଅନୁନୟ । ଦାରୁ—କାଠ ।

୯ ପଦ । ବନପ୍ରିୟ—କୋଇଲି । ପରଭଜନ—ଦାସ ।

୧୧ ପଦ । ସରଳ—ସଜ୍ଜନ । ଶରଳ—କ୍ରୁର ।

ସାଧୁ ଅସତୀଙ୍କ ନ ଲେଉଡ଼େ ଯଥା  ତଥା ନ ପଶୁରେ ମୁଁ ତୋତେ କଥା
ମୁଖରି ପରି ତୁ କାହିଁକି କହୁ  ବଧୂରି ସତୀର ବଇରି ହେଉ
ବେଗେ ଯାଅ ଉଡ଼ି,
ଆସି ଦେବ ବେକ ଶବର ମୋଡ଼ି । ୧୩ ।

ନାହିଁ ରେ କୋକିଳ ନନ୍ଦଲେ କେତେ  ଧୀରସ୍ୱାର ପରି କହୁ ଯୁବତେ
କୁହୁସର୍ଗ ଏଡ଼ି ମଉନେ ଥାଉ  ପଢ଼ିଲେ ସମସ୍ତ ଜଗତ କହୁ
ଗାଉ ତୁ ପଞ୍ଚମେ,
ବିରହୀ ସ୍ୱଭାବେ ପଡ଼ନ୍ତି ଭ୍ରମେ । ୧୪ ।

କଳିଙ୍ଗଭୃଙ୍ଗଙ୍କୁ ପୁଚ୍ଛେ ଆତୁର  ମାରୁ ଖଣ୍ଡିଉଡ଼ା ବିହଙ୍ଗବର
ପତିବଧୂରି କି ହାଡ଼ଇ କେଶ  ସୁମରଇ କପାଁ ଦହୁ ମାନସ
ଘନକୁନ୍ତଳାର,
ଦରଶନ ସତେ ହେବ କି ମୋର । ୧୫ ।

କୃଷ୍ଣସାରେ ଗୃହିଁ ଅଧୀରେ ଭଣି  କହ କାହିଁ ସେହୁ ଏଣୀନୟନୀ
ବସନ୍ତ ମଳୟେ ହୋଇ ଅକୁଳ  କରୁ ପଞ୍ଚପ୍ରାଣ ମୋର ବିକଳ
ଚପଳନୟନା,
କରୁଥିବ ଚିନ୍ତା ବିରହେ ସିନା । ୧୬ ।

ଖସାଉଥିବ ତା କବରୀଭାର  ସଚକିତେ ଗୃହିଁ ରମଣୀବର
ତୋ ଗମନେ ମୋତେ ଯାଉଛୁ ଦଣି  ସୁଗନ୍ଧିକଶୋଭି କୁଞ୍ଚିତକେଶୀ
ଅହା ଚଳାପାଙ୍ଗି !
ବିରହେ କି କରୁଥିବ ଏ ଭଙ୍ଗୀ । ୧୭ ।

କରିଗତି ଭାବେ ରଗେ କରୀକ  ଭାଷଇ କି ଗୃହିଁ ପ୍ରିୟା ଗତିକ
ଗ୍ରୀବା ଅଲୋଡ଼ନ ନ ପାରୁ କରି  କାହୁଁ ହେବୁ ଗୃହିଁ ଶିଖିଲେ ସରି
ଆସବକୁ ଭକ୍ଷି,
ଲଭିଲ ଚିନ୍ତା କି ହେବ ଉପେକ୍ଷି । ୧୮ ।

ବସନ୍ତ ବସନ୍ତ ଡାକ ବଧୂର  ଭାଷେ ସୁନ୍ଦର ତୋ ରୂପ ବେଭାର
ମଳୟଗିରିର ଶିରିକ ହରି  ପର ଦ୍ରବ୍ୟେ ହେଉ ବଦାନ୍ୟ ଭାରି
ନୀଚମତି ବନ୍ଧୁ,
ପ୍ରଶଂସିବେ ସାଧୁ ବିରହୀ କାହୁଁ । ୧୯ ।

---

୧୩ ପଦ । ମୁଖରି—କଳହଂସୀ । ବଇରି—ଶତ୍ରୁ । ୧୪ ପଦ । ପଞ୍ଚମେ—ପଞ୍ଚମ ତାନରେ ।
୧୫ ପଦ । କଳିଙ୍ଗଭୃଙ୍ଗ—କଜ୍ଜଳପାତି । ବିହଙ୍ଗବର—ପକ୍ଷୀଶ୍ରେଷ୍ଠ ।
୧୬ ପଦ । କୃଷ୍ଣସାର—ମୃଗବିଶେଷ । ଏଣୀ—ହରିଣୀ । ପଞ୍ଚପ୍ରାଣ—ପ୍ରାଣ ଅପାନ, ବ୍ୟାନ, ଉଦାନ ଓ ସମାନ ।
୧୮ ପଦ । କରି—ହାତୀ । ଗ୍ରୀବା—ବେକ । ଆସବ—ଫୁଲମେଣ୍ଡା ।
୧୯ ପଦ । ମଳୟଗିରି—ଦକ୍ଷିଣରେ ଥିବା ମଳୟ ପର୍ବତ । ବଦାନ୍ୟ—ଦାତା ।

ଋତୁରାଜ ନାମ ହେଲା ଏକ ଚୋରେ    ସାଧୁ ବିରହୀ ସେ ନୋହେ ଯୁକତେ
ନ ଭଣ୍ଡି ପାଳଇ ନୃପ ଶାନ୍ତରେ    ଦଣ୍ଡିବା ବିଧି ନ କରେ ଅତୁରେ
ତୁ ତ ବିପକ୍ଷତେ,
ଅଶାନ୍ତରେ ଦଣ୍ଡ୍ୟ ବିରହୀ ଜନ୍ୟେ । ୨୦ ।
ମଧୁ ନାମ କହ ବନ୍ଧୁ କାହିଁକି    ବାହାର ମଧୁରେ ମଧୁ ଥାଇ କି
ଭିତରେ ବାହାରେ ଯାହାର ମଧୁ    ମଧୁ ବୋଲି ତାକୁ ବୋଲନ୍ତି ସାଧୁ
ମହାକାଳ ତୁହି,
ଚୋରେ ଭକ୍ଷିବାକୁ ଖୋଜେ ବିରହୀ । ୨୧ ।
କାକ କାହିଁ ହେବ କେକୀ ସମାନ    ଡାକ ଚୁଣ୍ଡ ହେଲେ ଚନ୍ଦ୍ର ଭୂଷଣ
ଭେକ କି ଗାଇବ ପିକର ଗୀତ    ଲୋକଙ୍କୁ ମୋହିବ ବେଙ୍ଗୁଲି ନୃତ୍ୟ
ବକ ହେବ ହଂସ,
ମୂକ କି ମୋହିବ ଧୀର ମାନସ । ୨୨ ।
କୁଂକୁଆ ହେବ ଶୁଆ ସମାନ    କାଆ କାଆ କାଏ କରିବ ଗାନ
ଦାଆପାଠ ଜାଣି ଗାଆଁ ସାଆନ୍ତ    ପିଅଜଖିଆ କି ହେବ ମହନ୍ତ
ଭୁଆ ହେବ ବାଘ,
ବାଆପିଅକୁ କି ପଣ୍ଡିତ ଯୋଗ । ୨୩ ।
ଖଣ୍ଡ ହେବ କାହୁଁ ଜାଡିଆ ନାଗ    ଚଣ୍ଡପଣେ ହେବ ବିଲୁଆ ବାଘ
ଦଣ୍ଡଖିଆ ହେବ ବଡ଼ ରୋହିତ    ଭଣ୍ଡ ହେବ ଜ୍ଞାନୀ ମୁନିରେ ଖ୍ୟାତ
ମଣ୍ଡନେ ପଇତା,
ଚଣ୍ଡ ଚଣ୍ଡାଳର ହେବ କି ଚେତା । ୨୪ ।
ଧୂକ ଧୂକ ଚୋର ସୁନ୍ଦରପଣେ    ଫକ ଫକ ହୋଇ ଦେଖାଇ ଠାଣି
ମକ ମକ କେତେ ଗରବ ବହି    ଶକ ଶକ ହେବୁ ଚିଳିଲେ ଅହି
ଚକ ଚକ ଯିବ,
ବକ ବକ ହେବୁ ଗ୍ରୀଷ୍ମ ନାଶିବ । ୨୫ ।
କାର୍ତ୍ତିବୀର୍ଯ୍ୟ ଯେଉଁ ରେବା ତଟିନୀ    ବାନ୍ଧିଥିଲା ଲଙ୍ଘି ଆସିଲା ଜାଣି
ଗରବେ କି ମହାବୀର ବୋଲାଇ    ଅସମୟୁ ଦେଖି ବିରହୀ ଦହୁ
ସଯୋଗୀ କୁଠାର,
ଧର ବାଞ୍ଛା ସିଦ୍ଧି କରିବ ତାର । ୨୬ ।

---

୨୧ । ମହାକାଳ—ମନୋହର ଲାଲ ରଙ୍ଗର ବିଷଫଳବିଶେଷ; ଏହାର ଭିତର ଅଂଶ ଅତି କଦାକାର ।

୨୨ ପଦ । କେକୀ—ମୟୂର । ଚନ୍ଦ୍ର—ମୟୂରଚନ୍ଦ୍ରିକା । ଭେକ—ବେଙ୍ଗ । ପିକ—କୋଇଲି ।

୨୬ ପଦ । କାର୍ତ୍ତିବୀର୍ଯ୍ୟ—ସହସ୍ରାର୍ଜ୍ଜୁନ । ସଯୋଗୀ—ସ୍ତ୍ରୀସହ ଥିବା ପୁରୁଷ, ପର୍ଶୁରାମ ।

ବିଟପୀ ସୁମନା ଦେଇ ଫୁଲଇ ସତୀ ବିଯୋଗୀବଂଶ ଜଳାଇ
ବିଟପ ନାଗର ପରି ତୁ ସାଧୁ କଣ୍ଠେ ହଳାହଳ ମୁଖରେ ମଧୁ
ନିର୍ଲଜ୍ଜ ବସନ୍ତ,
ତୋ ଗୀତରେ ସତୀ ଲୋଡ଼େ ତା କାନ୍ତ । ୨୭ ।

ଲୋଡୁଥିବ ସତେ ଜୀବେଶ୍ୱରୀ କି ତୋ ଗୀତରେ ବିରହରେ ସରି କି ?
ଝୁରି ପଡୁଥିବ ନୟନୁ ବନ ଭିଜୁଥିବ ବାମା-ଉରବସନ
ଧିକ ମୋ ଜୀବନ,
ବିରହେ ପ୍ରେୟସୀ ହେଲା ଦହନ । ୨୮ ।

ଶିରିସାଙ୍ଗୀ ଧଣି କି ହତଶିରି ପୂରି ଖେଦେ କରି ହା ହା ତା ପୁରି
କାନ୍ତ କାନ୍ତ ଡାକୁଥିବ ଏକାନ୍ତ ରତିଆବେଶୀ ସେ ହୋଇ ଆରତ
ଚିତ୍ତରେ ଜଡ଼ିତ,
ଶତଭଙ୍ଗେ କିବା ଥିବ ନିସତ । ୨୯ ।

ପଦ୍ମିନୀଙ୍କ ଭାଷେ ତୁ ସତୀ ନୋହୁ ସୁରନାରୀ ହୋଇ ଭୃଙ୍ଗଙ୍କୁ ଚାହୁଁ
ହେଲେ ରମା ହରି ବିଧି ତୋ ସ୍ନେହୀ ଶିଶିରେ ମରୁ ନ ଚାହାନ୍ତି କେହି
ଦୋଷ ଲଙ୍ଘୁ ସୀମା,
କାର ମନେ କେବେ ଆସେ କି କ୍ଷମା । ୩୦ ।

ଜାଣିବାରେ ନାହିଁ ବାଳକୀ ଦୋଷ ପାଷାଣ କାହିଁକି କଲ ନିରାଶ
କି ଭାବୁଥିବ ସେ ମଦନାତୁରେ କି କାର୍ଯ୍ୟ ମୋ ଜୀବ ଧନ ଗୃହରେ
ତା ବିନା ଅସାର,
ନିଧି ସିଦ୍ଧି ଥାଇ କି ହେବ ମୋର । ୩୧ ।

ଯାଉଛି ବିଧୂରେ ମୋ ଜୀବ ଛାଡ଼ି ବିଧୁରି କି ତାପେ ନ ଥିବ ପଡ଼ି
ହଜିଯାଉଛି ମୋ ଧଇର୍ଯ୍ୟ ଚିତ୍ତ ବୁଡ଼ିଲଣି କି ସେ ଚିନ୍ତା-ସରିତ
ହା ହାରେ ଦଇବ,
ବିଚ୍ଛେଦ ଅବଳା କେହ୍ନେ ସହିବ । ୩୨ ।

ଥିଲା ଏମନ୍ତ ମୋ ମନେ ଭରସା ନ ଛାଡ଼ିବ ତଳେ ସାରସଦୃଶା
କାମଦେବେ ଥିଲା କାହିଁକି ଡର କାମକୁ ସେ କାମମୋହନ ଶର
ତା ନୂପୁର ନାଦ,
ମଦନ ବିଜୟ ମଙ୍ଗଳ ବାଦ୍ୟ । ୩୩ ।

---

୨୭ ପଦ । ବିଟପୀ ସୁମନା—ବୃକ୍ଷ ଓ ଫୁଲ; ଅସତୀ ସ୍ତ୍ରୀ । ବଂଶ—ଗଣ; ବାଉଁଶ । ହଳାହଳ—ବିଷ ।

୨୮ ପଦ । ଉର—ଛାତି । ୨୯ । ନିସତ—ହାଲିଆ ।

୩୦ ପଦ । ସୁର—ସୂର୍ଯ୍ୟ । ରମା—ଲକ୍ଷ୍ମୀ । ହରି—ବିଷ୍ଣୁ, ସୂର୍ଯ୍ୟ । ବିଧି—ବ୍ରହ୍ମା ।

୩୧ ପଦ । ମଦନାତୁରେ—କାମପୀଡ଼ାରେ । ୩୨ ପଦ । ସରିତ—ନଦୀ ।

୩୩ । ସାରସଦୃଶା—ପଦ୍ମନୟନା । ମୋହନଶର—କାମଦେବର ପଞ୍ଚ ଶର ମଧ୍ୟରୁ ଗୋଟିଏ—ସମ୍ମୋହନ ।

ଅପରନ୍ତୁ ଗୃହ୍ନି ଖଳ ବର୍ବର ତାପେ ଦହି ଚିତ୍ତ କରେ ଜର୍ଜର
କାନ୍ତା ବିନା ଅନ୍ୟ ଆଉ କି ଗତି ପ୍ରେୟସୀକି ଭେଟା ହେ ପ୍ରଜାପତି
ବାନ୍ଧବୀ ଅଗ୍ରତେ,
ଏ ଖଳଙ୍କ କଥା କହିବି କେତେ । ୩୪ ।
ଖେଦ ସଙ୍କଟରେ ଶ୍ୟାମା ମୋ ଗତି ନାଶିବେ ବାହାର ପ୍ରଚଣ୍ଡ ଭୀତି
ଶୀଳେ ବିଯୋଗିନୀ ଦେଖିବି ସତେ କୁମାର କୁମାର କହିବି କେତେ
ହରି ବିଲୋକିବି,
ଦିଗମ୍ବରୀ ଭାବେ ତମ ନାଶିବି । ୩୫ ।
ଭାବ କାନ୍ତାଭାବ ପୁଂସ ବିଧୁର ମିଳନେ ପ୍ରତିଜ୍ଞା କରେ ସତ୍ୱର
କରନ୍ତୁ ବ୍ରହ୍ମାଣ୍ଡେ ଅଛୁ କି ଦଣ୍ଡ ଜାଆନ୍ତାରେ ଜାଳି ଦିଅଇ ପିଣ୍ଡ
ଶ୍ରୀ ଗୋଲୋକ ଛନ୍ଦ,
ଖେଦେ ଅନୁକୂଳ ନାୟକ ବନ୍ଦ । ୩୬ ।

## ତ୍ରିଷଷ୍ଟିତମ ଛାନ୍ଦ

### ରାଗ—ଶୋକକାମୋଦୀ

ଅଖିଳ ବ୍ରହ୍ମାଣ୍ଡପତି ଯଦୁପତି କାତରେ ଡାକଇ ରସଲେଖା
ଅଭିନବ ଜଳଧର ମନୋହର ସୁଶୋଭିତ ଶିଖା ଶିଖିପଙ୍ଖା
ବ୍ରଜନାଗର ହେ !
ଶ୍ରୀମତୀ ମୁଖ-ଶଶୀ-ଚକୋର । ୧ ।
ହେ ନଟନାଗର ଘଟଣି ସୁନ୍ଦର କାଳିନ୍ଦୀତଟ ବଟବିହାରୀ
ମୁରଲୀବଦନ ମଦନମୋହନ କେଶୀ କଂସମଥନ ମୁରାରି
ଭବଭଞ୍ଜନ ହେ !
କାଳିନାଗ ଗରବଗଞ୍ଜନ । ୨ ।
ହେ ସୁପର୍ଣ୍ଣାସନ କମଳନୟନ ହୃଦରେ ମନ୍ଦର ସୁଧାକଣ
ଯଶୋଦା ହୃଦୟ ତାପବିନାଶନ ଶ୍ରୀଚନ୍ଦନ ହେ ନନ୍ଦନନ୍ଦନ
ଦୋଳାକୁଣ୍ଡଳ ହେ !
ବିଭୂଷିତ ରୁଞ୍ଜ ଗୁଞ୍ଜମାଳ । ୩ ।

---

୩୫ ପଦ । ଏଠାରେ ପତ୍ନୀକୁ ଦୁର୍ଗାଙ୍କ ସହିତ ତୁଳନା କରାଯାଇଅଛି । ଶ୍ୟାମା—ହେମାଙ୍ଗୀ, ଦୁର୍ଗା । ବାହାର—ବାହାର ହୋଇ, ମହିଷାସୁର ଅରି । ବିଯୋଗିନୀ—ହରବଣୀ, ଚଣ୍ଡୀ । ପ୍ରଚଣ୍ଡ—ଭୟଙ୍କର, (ଏଠାରେ) କାମ, ପ୍ରଚଣ୍ଡ ଦାନବ । କୁମାରକୁମାର—ମନ୍ଦକୁମାର, ମନ୍ଦ କୁମାର; ମନ୍ଦ କନ୍ଦର୍ପ, ମନ୍ଦ କନ୍ଦର୍ପ । ହରିବି ଲୋକିବି—ହରଣକରିବି ଦେଖିବି, ହିହଳ ବିଶେଷରୂପେ ଦେଖିବି । ଦିଗମ୍ବରୀ—ଉଲଗ୍ନା, ଦୁର୍ଗା । ତମ—ପାପ, କାମତାପ ।

ଯାମଳାଭଞ୍ଜନ ଜଗତରଞ୍ଜନ ଅଦ୍ଵ ଅନନ୍ତ କେଳଇନ୍ଦାନ
ରାଇ ସୀମନ୍ତିନୀ ବ୍ରହ୍ମାଣ୍ଡ ମୋହିନୀ ହରପରତାପବିଭଞ୍ଜନ
ଗୋପ ଗୋବିନ୍ଦ ହେ !
ପଦରୁ ଗଳଇ ମକରନ୍ଦ । ୪ ।
ଅଳକାବୃତ କପୋଳ ସୁଶୋଭିତ ତନୁ ବିନିନ୍ଦିତ କୋଟିକାମ
ମୃଦୁ ମଞ୍ଜୁହାସ ଅଧର ସରସ ଲାବଣ୍ୟସଂଯୁତ ମନୋରମ
ଜିତଅତନୁ ହେ !
ମଣିକୌସ୍ତୁଭ ନିନ୍ଦିତଭାନୁ । ୫ ।
ହରିଚନ୍ଦନଚର୍ଚ୍ଚିତ ଅପଘନ ବଦନ ଶୋଭା ନିନ୍ଦିତ ବିଧୁ
ଧ୍ଵଜ ବଜ୍ରାଙ୍କୁଶ ଚିହ୍ନ ପଦଯୁଗ ଶୋଭିତ ମଞ୍ଜୀର ମଞ୍ଜୁ ମଧୁ
ରମାବିଳାସ ହେ !
ପରିହିତ ରୁଚି ପୀତବାସ । ୬ ।
ଗୋପବଧୂ କଚ କୁଚ ଅସ୍ଫାଳିତ କରକଞ୍ଜ ବେନି ସୁଧାକୋଷ
ମୁନି ମନମଣ୍ଡନ ଭବଖଣ୍ଡନ ଯୁଗଳ ପଦ୍ମର ତାମରସ
ଭିବନ୍ଦନୋଦ ହେ !
ଦୀନଜନବନ୍ଧୁ ଅଦାନନ୍ଦ । ୭ ।
ଭ୍ରୂଲତା ଯୁଗଳ ନିନ୍ଦ କାମଧନୁ ବିରାଜିତ ସୁକପୋଳ ତଳେ
ସୁବଙ୍କିମ ନେତ୍ରଯୁଗ ଅନୁରାଗ ଅଭୀରୀ ସ୍ମିତ ମୁଖକମଳେ
ରାଧାମୋହନ ହେ !
ଚନ୍ଦ୍ରାବଳୀ ବାଳୀ ପ୍ରାଣଧନ । ୮ ।
ଯାଜ୍ଞସେନୀ ମାନବର୍ଦ୍ଧନ ଗୋବିନ୍ଦ ମାନଗୋବିନ୍ଦ ମାନଭଞ୍ଜନ
ବ୍ରଜବାଳୀବାସହରଣୀତଚିତ୍ତଙ୍କ କୃତ୍ତିବାସ ତାପବିଖଣ୍ଡନ
ସଖା ସାରଥି ହେ !
ରାଘବିତା ସୁରପଟଳ ସ୍ତୁତ । ୯ ।
ଶତପତ୍ରନେତ୍ର ଅନାଦ ଅଚ୍ୟୁତ ଅଭିରାମ ରାମ ସୀତାନାଥ
ମରକତ ବରଣ ଧୃତବାଣାସନ ସଂଗ୍ରାମବିଜିତ ଦଶମାଥ
ମୁନିମୋହନ ହେ !
ଅଜାମିଳ କଳୁଷ ଦହନ । ୧୦ ।

---

୫ ପଦ । ଅତନୁ—କନ୍ଦର୍ପ ।
୬ ପଦ । ଅପଘନ—ଶରୀର । ପୀତବାସ—ହଳଦିଆ ଲୁଗା ।
୭ ପଦ । ତାମରସ—ପଦ୍ମ ।
୮ ପଦ । ଅଭୀରୀ—ଗୋପକାମିନୀ, ଗୋପାଙ୍ଗନୀ ।
୯ ପଦ । ଯାଜ୍ଞସେନୀ—ଦ୍ରୌପଦୀ ( ଏ ଯଜ୍ଞରୁ ବାହାରିଥିଲେ ବୋଲି ଏହି ନାମ )
କୃତ୍ତିବାସ—ଶିବ ।

କେବଳ ନେବାକୁ ନ ମାଗେ ହେ ହରି ଦେବାକୁ ବସିଛ କୃତଜ୍ଞତା
ନ ଦେଲ୍ ଯଦି ଏ ହୃଦେ ଅନୁଭୂତ ଶଶୀ ହସି କହେ କାହା କଥା
ମାୟାଧାରଣି ହେ ।
ସଦୟେ କହଇ ଧୀନ ଜନ । ୧୧ ।
ପରଶମଣିର ପରଶ ବିନା କି ଧ୍ୟାନାଦି ହୁଅଇ ସ୍ୱଚ୍ଛ ଭବେ
ହେ ସଖା ! ହେ ପ୍ରିୟ ! ଦେଲ୍ ମନ ଜାଣି ଗୋପୀ ହରି ନେଇଥିଲେ ପୂର୍ବେ
ରସଶେଖର ହେ !
ଅବ୍ୟକ୍ତ ଲୀଳାକୁ ବ୍ୟକ୍ତକର । ୧୨ ।
ଅପ୍ରାକୃତ ପ୍ରେମ ମୂର୍ତ୍ତି ଜଗନ୍ନାଥ ଇଚ୍ଛାମୟ ଖେଳ ହେ ସଳୀଳେ
ନିଃଶ୍ୱାସେ ପ୍ରଶ୍ୱାସେ ଅନନ୍ତ ବ୍ରହ୍ମାଣ୍ଡ ସରଜି ବିଲୟ କର ହେଳେ
ପଞ୍ଚମାୟାର ହେ !
ଊର୍ଣ୍ଣନାଭି ପରି ସୃଷ୍ଟି କର । ୧୩ ।
ତ୍ରିଗୁଣ ଅତୀତ ନିର୍ଗୁଣ ଜ୍ୟୋତି ହେ ନିରାକାର ପରଂବ୍ରହ୍ମ ହରି
ପରି ଅପରି ତୋ ସଚ୍ଚିଦାନନ୍ଦ ହେ ! ରମା ଶମ୍ଭୁ ବ୍ରହ୍ମା ଅଛ କରି
ଭକ୍ତରଞ୍ଜନ ହେ !
ସକଳର ସେବ୍ୟ ଜନାର୍ଦ୍ଦନ । ୧୪ ।
ଜନକ ଜନନୀ ସୁତ କାନ୍ତା କାନ୍ତ ଆଦି ସମ୍ବନ୍ଧ ଏ ଯେତେ ଭବେ
ଦୟା ନିଦର୍ଶନ ତବ ହେ ମୋହନ ବିଧାନରେ ମନ୍ଦ ନାହିଁ ଲବେ
ଭକ୍ତବିନୋଦ ହେ !
ବୁଝିବାକୁ ମାୟା କାର ସାଧ୍ୟ । ୧୫ ।
ଦୂତ ବିଧାନରେ କରିଛ ତାହିଁକି ବିରହ ସୃଷ୍ଟି ହେ ରାଧାକାନ୍ତ ।
ତହିଁ ପୁଣି ଅହା ହୃଦୟ ଦୁର୍ବଳ ଆକୁଳ-ଜଳଣା କି ଅନନ୍ତ
ଅହେ ଭବଗ୍ରାହ !
ସାମାନ୍ୟ ବୁଦ୍ଧିକି ଦଶୁ ନାହିଁ । ୧୬ ।
ଜାଣେ ହୋ ଏ ପ୍ରେମ ବିରହରେ ସୃଷ୍ଟି ସହିବାକୁ କାହିଁ ମନେ ବଳ
ଜଳାଇ ଗୋପୀଙ୍କି ବିରହେ ଦ୍ୱାପରେ ସେ ଫଳେ ଚୈତନ୍ୟ ଅବତାର
ଜାଣି ଅପଣ ହେ !
ଡାକ ନ ଶୁଣି ହୁଅ କୃପଣ । ୧୭ ।
ମୋ ବିପତ୍ତି-ବାତ ମହିମା-ପତାକା ଲଟିପିବ ଭାବ ଲଗେ ଡର
ତାଡ଼କା-ପୂତନା ନାରୀ ବଧି ହରି ଶିଖଲ୍ ହେବାକୁ କି ନିଷ୍ଠୁର
ବାଳଗୋପାଳ ହେ !
କପାଳର ସଦା ତୁ କପାଳ । ୧୮ ।

---

୧୩ ପଦ । ଊର୍ଣ୍ଣନାଭି—ବୁଢ଼ିଆଣୀ, ମାକଡ଼ସା ।

ଗାଈ ଦୁହୁଁ ଦୁହୁଁ କେଶ ଫିଟିଗଲା ଚତୁର୍ଭୁଜ ହେଲ ହେ ଅନନ୍ତ ।
ବିଶ୍ୱରୂପ ଅହା ଅର୍ଜୁନ ଯଶୋଦା ଦେଖି ନ ପାଇଲେ ତୋର ଅନ୍ତ
ଅହେ ଭବଗ୍ରାହ୍ୟ !
ଧ୍ୟାନେ ବିଧି ଅନ୍ତ ପାଏ ନାହିଁ । ୧୯ ।
ବଳିଦ୍ୱାରେ ଦ୍ୱାରୀ ହେଲ ଚକ୍ର ଧରି ତ୍ରିବିକ୍ରମ ଭାବେ ହୋଇ ବଶ
ଗଜଚରଣରୁ ପ୍ରହ୍ଲାଦେ ରଖିଲ ବିଷ ଭକ୍ଷି ସେ ନ ହେଲା ନାଶ
ଜଗମୋହନ ହେ !
ଧ୍ରୁବେ ଦେଲ ଧ୍ରୁବଲୋକେ ସ୍ଥାନ । ୨୦ ।
ଗର୍ଭୀଣୀ ଏଣୀ ସଙ୍କଟୁ ରଖିଲ ମାତଙ୍ଗ ଉଦ୍ଧାର କଲ ଜଳେ
ସୁଦାମା ବ୍ରାହ୍ମଣେ ଦେଲ କୋଟୀ ଅର୍ଥ ବଭୀଷଣେ ରାଜା କଲ ବଳେ
ଅହେ ସୀତାପତି !
ତାରିଲ ଅହଲ୍ୟା ଶୁଭମତି । ୨୧ ।
ଭକତବତ୍ସଳ ଜାଣିଛୁ ହେ ହରି ଶ୍ରୀବତ୍ସପଦ୍ମୂର ଘାତ ପାଅ
ସାମନ୍ତ ବୋଲି ତ ଏମନ୍ତ ମହିମା କୁକୁଟକୁ ବର ଯାଚି ଦିଅ
ଦାବ-ଭକ୍ଷଣ ହେ !
ଗିରିଧର ଶ୍ୟାମ ନବଘନ । ୨୨ ।
ରମାକାନ୍ତ ରମାକାନ୍ତ ଡାକେ ନିତି ଯାହା ଇଚ୍ଛା କର ଭବଗ୍ରାହୀ
ଏକା ପଦଧ୍ୟାନ ବିନୁ ନାହିଁ ଆନ କି ଦେବ କି ନେବ ଜାଣେ ନାହିଁ
ରାଧାମୋହନ ହେ !
ତୋ କରୁଣାଲବଧି ମୋର ମନ । ୨୩ ।
ଜମ୍ବୁ ଚକ୍ର ଅଷ୍ଟକୋଣ ଊର୍ଦ୍ଧରେଖା ଅମ୍ବର ସ୍ୱସ୍ତିକ ଅର୍ଦ୍ଧ ଇନ୍ଦୁ
କୁଳିଶ କଳସ ଗୋଷ୍ପଦ ଅଙ୍କୁଶ ଧନୁ ଧ୍ୱଜ ପଦ୍ମ ଯବ ଇନ୍ଦୁ
ମୀନ ତ୍ରିକୋଣ ହେ ।
ପଦ୍ମରେ ଗୋଲୋକ କରେ ଧ୍ୟାନ । ୨୪ ।

---

୨୦ । ତ୍ରିବିକ୍ରମ—ବିଷ୍ଣୁ ( ଏ ବାମନ ଅବତାରରେ ବଳି ରାଜାଙ୍କଠାରୁ ତିନି ପାଦ ଭୂମି ଦାନ ମାଗିଥିଲେ ଓ ତାହାରୁ ଗୋଟିଏ ପାଦ ବାହାର କରି ବଳିକୁ ପାତାଳକୁ ଚାପିଥିଲେ । ବଳି ସତ୍ୟବାଦୀ ଓ ଦାତା ଥିବାରୁ ଭଗବାନ ବଳିଦ୍ୱାରରେ ଦ୍ୱାରୀ ହୋଇଅଛନ୍ତି ।

୨୪ ପଦ । ଏଥିରେ ଭଗବାନଙ୍କର ପଦରେ ଥିବା ଅଷ୍ଟାଦଶ ଚିହ୍ନ ଦିଆଯାଇଅଛି ।

## ଚଉଷଷ୍ଠିତମ ଛାନ୍ଦ

### ରାଗ—ଶୋକକାମୋଦୀ

ଘେନ ରମ୍ୟ ରସ ଶରଦ ପ୍ରବେଶ ଶଶୀ ଢାଳେ ହସି କରସୁଧା
ଅନୁରାଗବତୀ ପତିପ୍ରୀତିଭୂତ ଶୋଭାରେ ବସୁଧା ଦିଶେ ଶୁଦ୍ଧା
  କାଶ ହାସରେ ହେ । ବରଷା ନିଃସ୍ୱନେ ସୁରସରେ । ୧ ।

ଉଚାଟ ନିଶିକି ଗୃହିଁ ପ୍ରେୟସୀକି ବିରହୀ ବଧୂରେ ଭାବେ ବସି
ସ୍ୱଦେଶୁ ଏ କାଳେ ହଂସପାଶେ ମିଳେ ଆସି ବାଳାମଣି ପ୍ରିୟଦାସୀ
  ପୃଚ୍ଛେ ବିଧୁର ହେ । କି କରୁଥିଲ ସେ ରାମାବର । ୨ ।

ପରିଶ୍ରୁଷି କହି ବଦନ ଶୁଖାଇ କି କହିବ ବୁଦ୍ଧି ଦିଶେ ନାହିଁ
କା ଠାରେ ନିଷ୍ଠୁର ହେଲ ହେ ନାଗର ସତେ କି ବଞ୍ଚିବ ଚନ୍ଦ୍ରମୁହାଁ
  ରସଶେଖର ହେ । କେଡ଼େ ନିତ ଶୁଭ ସମାଚାର । ୩ ।

ଛନକାରେ ସତୀ ବସି ଦିବା ରାତି ଝଦାନ୍ତ ଲୋଡ଼ଇ କ୍ଷଣେ କ୍ଷଣେ
ସଙ୍ଗ ସୁଲକ୍ଷଣୀ ସଖୀ ଗଲ କ୍ଷଣି ବଦନେ ଅନାଇ ରହେ କ୍ଷଣେ
  ରସସାଗର ହେ । ପୃଚ୍ଛେ କି ନାଗର କଲେ ପର । ୪ ।

କେବେ ହତାଦରୀ କେଣେ ବେଶେ ଗୋରୀ ଦରସ୍ଫୁଟେ ଭାଷେ ଗଦ୍‌ଗଦେ
ମୋହ ପର ପଣେ ହେଲେ ଦାସୀପଣେ ନ ଦଣ୍ଡିବେ ଆହା ତାଙ୍କ ପଦେ
  ରସଶେଖର ହେ । ରାଧାତାକୁ ନିନ୍ଦେ ବାର ବାର । ୫ ।

ସ୍ନେହକୁ ସୁନ୍ଦର ଦିଶେ କି ନାଗର ପୀରତିବତ୍ସଳା ହୃଦ ଦହି
ମୁଖେ ଭାଷ ଯେତେ ନ୍ୟୂନ କାର୍ଯ୍ୟେ ସେତେ ବାଢ଼ ସହିଲଣି ଖେଦ ବହି
  ଧୀରଶେଖର ହେ । କି ଦୋଷେ ରାମାକୁ କଲ ପର । ୬ ।

ବସନ୍ତବିରହୀ ପିକ ପରି ହୋଇ ନୀରସ ତା ବୀଣାଜିଣା ବାଣୀ
ଗ୍ରାସିଛି କାଳିମା, ଚିହ୍ନି ନୋହେ ବାମା ବିଭ୍ରମବିହ୍ୱଳା ବିଯୋଗିନୀ
  ରସଶେଖର ହେ । କିଙ୍କିଣୀକି କରେ ଗଳାହାର । ୭ ।

ବାରଦେ ଅନାଇ କହେ ଚନ୍ଦ୍ରମୁହାଁ ବନ୍ଧୁଙ୍କୁ କହ ମୋ କଥା ଯାଇ
ଶୃତକାକି ଦେଖି ଧୃତକି ନ ରଖି ଅଶନିରଡ଼ିକି ଡରୁଥାଇ
  ରସଶେଖର ହେ । ଘନେ ଥିବ କି ତା ନେତ୍ରନୀର । ୮ ।

ସୁଷମା କୋଟିଏ ରତିର ଗୋଟିଏ ହେଲେ ଯା ଛବିକି ନୋହେ ତୁଳା
ବାଞ୍ଛି ଇନ୍ଦୁଫଳ ଚନ୍ଦନରେ ଫୁଲ୍ ପଥଭିକାରଣୀକି ବଳାଇ
  ଭାବବିନୋଦ ହେ । ଫାଟିଛି ଫସର ମୁଖେ ଖେଦ । ୯ ।

ଆଜନମ ସୁଖୀ ହେଲ ନିରମାଖୀ ଧର ସିନା ତୋଷେ ତବ ହାତ
ଝଞ୍ଜା ଖରଶ୍ୱାସ କରଇ ବିକାଶ ବଚନରେ ମଲି ଅବିରତ ।
  ଆହେ ରସରାଜ । ମଣୁଛି କଣ୍ଟକ ପରି ଶେଯ । ୧୦ ।

ଦେଖି ତା ବିଷାଦ କେ କରିବ ବାଦ ପାଷାଣ ହେଲେ ତ ଯିବ ଦ୍ରବି
ଚିତ୍ତ ଚିନ୍ତାଙ୍କ ବଂଶିଧାରୁ ରଙ୍କ ପଦ ଦରଶନ ଗଦ ଛବି
ରସଶେଖର ହେ ! ଅମାପ ସନ୍ତାପେ ଯୋଷାବର । ୧୧ ।
ଶୁଖାଇଲୁ ମୁଖ ବଲ ପଡ଼େ ଦୁଃଖ ଭାବନାରେ ରହି ନିରବଧି
ନିଦ୍ରାବୃକ୍ଷ ଦେଖି ପ୍ରେତ ମଣି ଅକ୍ଷି ପିଞ୍ଜାଇ ନ ପାରେ ବାଲାନିଧି
ରସଶେଖର ହେ । ଜ୍ୟୋତ୍ସ୍ନା ସ୍ମର କରେ ନାରଖାର । ୧୨ ।
ଯା ଇଚ୍ଛା ତା କର ହେଲା କି ବିଗୁଣ ପଞ୍ଚଗତପ୍ରାଣୀ ପ୍ରାଣେ ମାରି
ବଞ୍ଚିଥିଲେ ପିନା ଦେଖି ନବୀନା ଦାଉ ସାଧୁ ସାଧୁ ଗଲ ସରି
ଶ୍ୟାମମୋହନ ହେ । ଶିହ୍ନାଗଲ ତବ ଗୁଣମାନ । ୧୩ ।
ସଦା ତା ହେମନ୍ତ କମ୍ପ କରେ ଜାତ ଗ୍ରୀଷମେ କ୍ଷଣକେ ବଢ଼େ ଝାଳ
ବରଷାରେ ନୀର ନେତ୍ରୁ ଧାର ଧାର ମଧୁରେ କେତକୀ ବର୍ଣ୍ଣ ତାର
ରସଶେଖର ହେ । ଚନ୍ଦ୍ରମୁଖୀ ଶୀତେ ତ ପାଣ୍ଡୁର । ୧୪ ।
ଶରତରେ ଧନୀ ଦଶେ କୁମୁଦନୀ ବହୁଛି କାମେ ନୀଳାକାର
ଗ୍ରୀଷମ ବସନ୍ତ ଅଦ୍ୟ ବର୍ଣ୍ଣିକୁ ତ ବିରହ ଭାଙ୍ଗୁଛି ବାରବାର
ଭାବବିନୋଦ ହେ । ହେମନ୍ତ ଲୁଚିଛି ବହୁ ଖେଦ । ୧୫ ।
ପ୍ରିୟଦାସୀବାଣୀ ଧୀରମଣି ଶୁଣି ଅଧୀରେ ଜଡ଼ାରେ ତାପ ଧରି
ବହିଲି ଅମାପ ଖେଦେ ପଶ୍ଚାତ୍ତାପ କଲହାନ୍ତରିତା ନାମ୍ନୀ ପରି
ଅରେ ସ୍ନେହଲତା । ଏ ଘୋର କଥାକୁ ଏବେ ଚିନ୍ତା । ୧୬ ।
ପ୍ରେମବଲ୍ଲଭଙ୍କ ମୁଁ କେଡ଼େ ପାତକୀ ଦେଲି ଉପୁଡ଼ାଇ ଫୁଲବାଣେ
ସଂସାରମୋହନୀ ମାନସହାରଣୀ ତାପେ ଜଳାଇଲି ଅନୁକ୍ଷଣେ
ଅରେ ରଙ୍ଗଲତା । ପାସୋରି ନୋହେ ତୋ ସ୍ନେହକଥା । ୧୭ ।
ସର୍ବାଙ୍ଗସୁନ୍ଦରୀ ଧୀରୀ ମନ୍ଦୋଦରୀ କରିଥାଇ ଅଞ୍ଚଳର ନିଧି
ସାଧୁ ପାଶେ ଯଥା ଦାସୀ ଥିଲି ତଥା ଧନ ଦୋଷେ ସବୁ ନିରବଧି
ଅରେ ସ୍ୱାମୀବର । ଯାଉଛି ଫାଟି ଏ ହୃଦ ମୋର । ୧୮ ।
ହା କୁନ୍ଦସୁନ୍ଦର ! ସୁଖବନ୍ଧ୍ୟଚିରି ବଢ଼ୁଥିଲା ତୋର ଦନ୍ତ ଦନ୍ତ
ମୋ ବିରହ ସତ ହେଲା କୁମ୍ଭସୁତ ଶୋଷିନେଲା ଶାନ୍ତିସିନ୍ଧୁ ମନ୍ତ୍ର
ରସସାଗର ରେ ! ଆଉଁ ଆଉଁ ଦାସ ଗଲି ସରି । ୧୯ ।
ମୋ ମେଲଣି ବେଳେ କି ଭାବି ଅକୁଳେ ତର୍ଜନୀକି ଥିଲି ଗଣ୍ଡେ ଦେଇ,
ହେଲି ଅଧୋମୁଖୀ ଦେଖିଲି ନ ଦେଖି ସରିଗେ ପରିଗ ମୁଖେ ଥୋଇ
ଅରେ ଜୀବେଶ୍ୱର ! ଖଣ୍ଡପଣେ ନେଲି ସୁଖ ଶିରୀ । ୨୦ ।

---

୧୨ ପଦ । ନିଦ୍ରାବୃକ୍ଷ—ଅନ୍ଧକାର ।

୧୪ ଓ ୧୫ ପଦ । ସବୁ ସମୟରେ ସାତ୍ତ୍ୱିକ ଲକ୍ଷଣମାନ ପ୍ରକାଶ ଛଳରେ ଉଦ୍ଭୂତନ ହୋଇଅଛି । ଗ୍ରୀଷ୍ମ ଓ ବସନ୍ତର ଅଦ୍ୟ ବର୍ଣ୍ଣ ଗ୍ରୀବ (ବେକ)—ଅର୍ଥାତ୍ ବିରହ ତାହାର ବେକ ମୋଡ଼ ଦେଉଅଛି । ହେମନ୍ତ ଲୁଚିଛି ବହୁ ଖେଦ—ଅର୍ଥାତ୍ ତାହାର କୌଣସି କଥାରେ ସାହସ ପାଉ ନାହିଁ ।

ସୁରସୁଖ ଲାଗି ଦଧୀଚି ବିରାଗୀ ତେଜିଥିଲେ ପରାଣ ଯେଉଁପର
ତୋର ସୁଖ ଲାଗି ନ ହେଲି ତ୍ୟାଗୀ ଏ ମହାସନ୍ତାପେ ଗଲି ସର
କାମମଞ୍ଜିର ରେ ! ମନେ ନାହିଁ କାମେ ହେଲି ଅରି । ୨୧ ।
ଯଥା ବୃତ୍ରାସୁର ଲଭି ଶିବବର ଶିବବିନାଶନେ ଭଲା ତମ
ଲଭି ତୋର ସ୍ନେହ ଅଚଳିଲି ଦ୍ରୋହ ବିନାଶଇ ବଳେ ମୋତେ କାମ
ଅରେ ମଲ୍ଲିହାସି ! ଶିବ ପରି କାମେ ଥିଲି ନାଶି । ୨୨ ।
ସୁଷମାମଣ୍ଡିତ କାହାଣୀ ବିଚିତ୍ର ହୋଇଛନ୍ତି ତୋ ନବ ନବ ଭଙ୍ଗୀ
ସୁକ୍ତ ପୁସ୍ତକରେ ପଢ଼ନ୍ତେ କାତରେ କରୁଣ ରସର ହେଲି ସଙ୍ଗୀ
ରସଦାୟିନି ରେ ! ନିର୍ବେଦ ହେଲିଣି ଚନ୍ଦ୍ରାନନି ! ୨୩ ।
ଅନାଥିନୀ ହୋଇ ନାଥ ନାଥ କହି ମାରୁଥିବୁ ବକ୍ଷେ ଜାଣେ କର
ବିରହ ପାମର କଲା ନାରଖାର ଚକ୍ଷୀ କଙ୍କ କରି ବାରବାର
ଅଟେ ଜୀବେଶ୍ୱର ! ଖେଦ ଭଙ୍ଗୀ ଭାବି ଗଲି ସର । ୨୪ ।
ତୁମ୍ବୁରୁ ଗନ୍ଧର୍ବ ବୀଣା କି ତେଜିବ ତାଣ୍ଡବ ଆରମ୍ଭ ହୁଏ ଯେବେ
ବିରହ ତା ବେଳେ ଗୁଣ ଦେଖା ଦଲେ ଅନୁଭବୀ ଏକା ଜାଣୁଥିବେ
ଭଣେ ଗୋଲୋକ ହେ ! ଭକ୍ତ ବିରହରେ ଅଛୁ ଠେକ । ୨୫ ।

## ପଞ୍ଚଷଷ୍ଟିତମ ଛାନ୍ଦ

### ରାଗ—ଜୟନ୍ତ

ରାଜପୁରେ ତାପସୀଙ୍କ ଘେନି ରସଲେଖା
ମିଳନ୍ତେ "ତାପସୀ କିଏ" ପୁଚ୍ଛେ ଇନ୍ଦୁରେଖା
ଭକ୍ତବତ୍ସଳା ରେ । ୧ ।
ରସଲେଖାର ଇଙ୍ଗିତ ଲଭି ତପସ୍ୱିନୀ
କହେ କରୁଣ କାହାଣୀ ଶୁଣ ରାଜରାଣି !
ମୋହତପସ୍ୱି ରେ । ୨ ।
ତରଳିଯିବ ପାଷାଣ ଅସ୍ଥିର ପବନ
ଶୁଣିଲେ ଲତା ପତର ହେବେ କମ୍ପମାନ
ମୋହତପସ୍ୱି ରେ । ୩ ।
କହିବାକୁ ନ ଫିଟୁଛି ପାଟି ରାଜରାଣି !
ବେଦନା ଶୁଣି ବହିବେ ତଟିନୀ ଉଜାଣି
ମୋହତପସ୍ୱି ରେ । ୪ ।

---

୨୧ ପଦ । ଦଧୀଚି—ଏ ସ୍ୱଇଚ୍ଛାରେ ଦେବତାମାନଙ୍କର ମଙ୍ଗଳପାଇଁ ନିଜେ ପ୍ରାଣ-ତ୍ୟାଗ କରି ନିଜର ହାଡ଼କୁ ଇନ୍ଦ୍ରଙ୍କୁ ଦେଇଥିଲେ । ତାଙ୍କ ହାଡ଼ରେ ଇନ୍ଦ୍ରଙ୍କର ବଜ୍ର ହେଲା ଓ ଇନ୍ଦ୍ର ବଜ୍ରହାରା ବୃତ୍ରାସୁରକୁ ବଧ କଲେ ।

ଜନ୍ମ ଲଭି ଧନୀଘରର ସମ୍ପଦଦୋଳାରେ
ବଢ଼ି ନ ଜାଣିଲି ଅଭ୍ କି ଅଛି ସଂସାରେ
ମୋଢପସର୍ ରେ । ୫ ।

ଶିଶୁକାଳେ ମାତା ପିତା ଅଢର ମୋ ଜାଣି
ଭୁଲାଇ ଦଅନ୍ତି କହି ମଧୁର କାହାଣୀ
ମୋଢପସର୍ ରେ । ୬ ।

ଜାଣି ମୋ ବେଦନା ଶତ ଗୁଣ ତାଙ୍କ ମନେ
ପୂଜୁଥାନ୍ତି ଦେବ ଦେବୀ ମୋ ଲାଗି ସୁମନେ
ମୋଢପସର୍ ରେ । ୭ ।

ମୋ ବେଶ ବାସ ଭୂଷଣେ ବଢ଼ୁଥାନ୍ତି ତୋଷ
ଭୁଞ୍ଜାଇ ଦଅନ୍ତି ସ୍ନେହେ ରଞ୍ଜାଇ ମାନସ
ମୋଢପସର୍ ରେ । ୮ ।

ଯେଉଁ ଦ୍ରବ୍ୟ ଲୋଡ଼ା ମୋର ଦେଉଥାନ୍ତି ଅଣି
ଅଳ ପାଇଁ ଅବସର ନ ଥା ରାଜରାଣି !
ମୋଢପସର୍ ରେ । ୯ ।

ଅଳ କରି ଦିନେ ଅହା ଲୋଟିଲି ଧରଣୀ
ଜନକ ଜନନୀ ନେତ୍ରୁ ବୁହାଇଲି ପାଣି
ମୋଢପସର୍ ରେ । ୧୦ ।

ପୀଡ଼ା ଦେଖି ଶେଯ ପାଶେ ବସନ୍ତି ଦୁଃଖରେ
ତାଙ୍କ ଖେଦେ ମୋ ବେଦନା ଲଘୁ ହୁଏ ଖରେ
ମୋଢପସର୍ ରେ । ୧୧ ।

ଲାଳନ ପାଳନେ ଶିକ୍ଷା ଦେଇ ଯତନରେ
ସମୟ ଜାଣି ଲୋଡ଼ିଲେ ଉପଯୁକ୍ତ ବରେ
ମୋଢପସର୍ ରେ । ୧୨ ।

ସୁନ୍ଦର ଶିକ୍ଷିତ କୁଳ ଶୀଳ ଯୁବା ଜଣେ
ବରିଲେ ମୋ ଲାଗି ପିତାମାତା ଶୁଭ କ୍ଷଣେ
ମୋଢପସର୍ ରେ । ୧୩ ।

ପିତା ପୁର ତେଜି ଗଲି ପତିଙ୍କ ଭବନ
ସଂସାର ଦିଶିଲା ମୋତେ ତହୁଁ ଆନ ଆନ
ମୋଢପସର୍ ରେ । ୧୪ ।

ମଧୁର ପ୍ରୀତିରେ କାନ୍ତ କଲେ କୁତୂହଳୀ
ଭୁଲାଇଲା ବାତ୍ସଲ୍ୟକୁ ପତିପ୍ରେମ ବଳି
ମୋଢପସର୍ ରେ । ୧୫ ।

ମଣିଲି ପତିପ୍ରେମରୁ ନାହିଁ ବଳି ସୁଖ
ପତିଙ୍କି ଦେଖି ସୁମନ ହଜିଯାଏ ଦୁଃଖ
ମୋଢପସର୍ ରେ । ୧୬ ।

ଭାବଲି ଅହା ସେ ମାଗୁ ପତିପ୍ରେମ ଛାଡ଼ି
ମଜ୍ଜନ୍ତି ପରପ୍ରୀତିରେ କେଉଁ ସୁଖ ଲୋଡ଼ି
ମୋତିପସରା ରେ । ୧୭ ।

ପତିପ୍ରେମ ପ୍ରେମିକାର ଅହା କି ମଧୁର
ପ୍ରେମିକା ନୟନେ ପତି ତା ନିତ୍ୟ ସୁନ୍ଦର
ମୋତିପସରା ରେ । ୧୮ ।

କାନ୍ତ ମୋ ମାନସ ଜାଣି ତୋଷୁଥାନ୍ତି ନିତି
ଲୋଡ଼ା ଯା ନ କରୁ ଅଳ ଇଚ୍ଛାରେ ଦିଅନ୍ତି
ମୋତିପସରା ରେ । ୧୯ ।

ଶାଶୁ ଶ୍ୱଶୁର ମୋ ମାତା ପିତା ଜାଣି ସେବେଁ
କରଥାନ୍ତି ସ୍ନେହପର ନିଜ କନ୍ୟାଭାବେ
ମୋତିପସରା ରେ । ୨୦ ।

ଭାବଥିଲି ସେହିଭାବେ ଦିନ ଯିବ ସରି
କାହିଁକି ମୋ ସୁଖେ ହେଲା ଦଇବ ଭଗାରି
ମୋତିପସରା ରେ । ୨୧ ।

ମଧ୍ୟବିତ୍ତ ଭଳି ଥିଲେ ଶ୍ୱଶୁର ମୋହର
ସେ ଗ୍ରାମେ ଯେ ଧନୀ ନେଲା କୁଟେଁ ଘର ଦ୍ୱାର
ମୋତିପସରା ରେ । ୨୨ ।

ଶାଶୁ ଶ୍ୱଶୁର ମୋ ଅହା ମଲେ କି ହତାଶେ
ମୋତେ ପୋଷିବାକୁ ନାଥ ଚଳିଲେ ବିଦେଶେ
ମୋତିପସରା ରେ । ୨୩ ।

ଗଲାବେଳେ ଅର୍ଦ୍ଧସୁପ୍ତ ମୋ ମୁଖେ ଅନାଇ
ଯାଉଥିଲେ ଖେଦେ ଅଭାଗିନୀ ମଲି ନାହିଁ
ମୋତିପସରା ରେ । ୨୪ ।

ଏଥୁଅନ୍ତେ ଯାହା ହେଲା ଶୁଣ ବିଧୁମୁଖି ।
ହତଭାଗ୍ୟ ଦେଲା ଦେଖା ହତଭାଗିନୀକି
ମୋତିପସରା ରେ । ୨୫ ।

ସ୍ୱାମି ବିରହରେ ଗଲା ସୁଖ ମୋର ସରି
ପତିପ୍ରେମେ ଥିଲେ ମରି ଯାଇଥାନ୍ତି ତରି
ମୋତିପସରା ରେ । ୨୬ ।

ରହିଲା ନ ଜାଣେ କିମ୍ପା ନିର୍ଲଜ୍ଜ ଜୀବନ
ସହିବାକୁ କଲା କେତେ ବିହି ଗ୍ଳାନିମାନ
ମୋତିପସରା ରେ । ୨୭ ।

ଧିକ ଏ ସଂସାର ଅହା ଦୁଃଖୀପାଇଁ ଦୁଃଖ
ପ୍ରବଳ ସବୁ କଥାରେ ଭୋଗୁଥିବ ସୁଖ
ମୋହପସନ୍ଦ ରେ । ୨୮ ।

ଗ୍ରାମପ୍ରାନ୍ତେ ନଦୀତଟେ ପର୍ଣ୍ଣଶାଳା କରି
ରଖିଗଲେ ନାଥ ମୋତେ ବଦେଶ ବାହାରି
ମୋହପସନ୍ଦ ରେ । ୨୯ ।

ଭାବ ଅଭାବ ମୋ କେତେ ଲିଭାଇଲି ଅଙ୍ଗେ
କଙ୍କାଳ କରିବାକୁ ମୋ କିଏ ଥିଲା ସଙ୍ଗେ
ମୋହପସନ୍ଦ ରେ । ୩୦ ।

କର୍ମକୁ ଆଦରି କେତେ ଦୁଃଖେ ଥିଲି ରହି
ପଡ଼ୋଶୀ ମୋହର ତହିଁ ଥିଲେ ନାହିଁ କେହି
ମୋହପସନ୍ଦ ରେ । ୩୧ ।

ସଚ୍ଚରିତା ବୃଧବାଏ ଥିଲା ପ୍ରାଣସଖୀ
ବେଳେ ବେଳେ ଆସେ ପାଶେ ମୋର ଖେଦ ଦେଖି
ମୋହପସନ୍ଦ ରେ । ୩୨ ।

ମଣି କନିଷ୍ଠା ଭଗିନୀ କରେ ମୋତେ ଶ୍ରଦ୍ଧା
ସହାନୁଭୂତ ଲୋକଙ୍କେ ଦନ୍ତାଏ ବସୁଧା
ମୋହପସନ୍ଦ ରେ । ୩୩ ।

ଭବେ ଛନ୍ତି ଅହା କେତେ ପର ଉପକାରୀ
ମଲେ ସଖୀ କଥା ଯିବ ମନୁ କି ପାସୋରି
ମୋହପସନ୍ଦ ରେ । ୩୪ ।

ଦିନେ ନଦୀନୀରେ ପଶି ସ୍ନାନ କଲାବେଳେ
କୁକ୍ଷଣେ ଧର୍ମନନ୍ଦନ ଦେଖିଲା ନୀରେଳେ
ମୋହପସନ୍ଦ ରେ । ୩୫ ।

ଶୁଣିଥିଲି ପରଦାରାହରଣେ ସେ ରତ
ଶୋଭି ଯଉବନ ବହେ ହାତେ ବହୁବିତ୍ତ
ମୋହପସନ୍ଦ ରେ । ୩୬ ।

ଯେଉଁ ପୋଡ଼ାମୁହାଁ ଭୁଲି ପଡ଼େ ତାର କାମେ
ଧିକ ନ ମରି ବଞ୍ଚି ଥା ଅନୁତାପ ଭ୍ରମେ
ମୋହପସନ୍ଦ ରେ । ୩୭ ।

ଭାବଭଙ୍ଗୀ ଦେଖି ତାର ଅସତ୍ଭ ଜାଣିଲି
ପ୍ରମାଦ ପଡ଼ିଲା ବୋଲି ସେ କାଳୁ ଗଣିଲି
ମୋହପସନ୍ଦ ରେ । ୩୮ ।

ସତୀକୁ ସହାୟ ସଦା ହୁଅଇ ଧରମ
ଏ ଭାବ ଭାବନା ମୋର ହରନେଲା ଭ୍ରମ
ମୋହପସରା ରେ । ୩୯ ।

ମନ୍ଦ ମନ୍ଦ ନେତ୍ରଭଙ୍ଗୀ ଦେଖି ତା ଜାଣିଲି
ଅସତୀ ରହସ୍ୟ ମନ୍ଦ ଖୋଜୁଅଛୁ ବୋଲି
ମୋହପସରା ରେ । ୪୦ ।

କୂଟରେ ଥାଇ ସ୍ୱର୍ଣ୍ଣମୁଦ୍ରା ଦେଖାଇଲା ଦୁଷ୍ଟ
ଭରତରେ ଗଲି ଗୃହେ ମନେ ହୋଇ ରୁଷ୍ଟ
ମୋହପସରା ରେ । ୪୧ ।

ଜାତରେ ନାନ୍ଦଲି ମୋର ସୁଷମା ବହୁତ
ତା ନାଗ୍ରିଚନ୍ତା ମୋ ମନେ ଅଇଲା କୁତ୍ସିତ
ମୋହପସରା ରେ । ୪୨ ।

ସଖୀଙ୍କୁ କହିଲି ଯାଇ ଘରେ ସବୁ ବାଣୀ
ଶକତ ଥିଲେ ସଖୀର ଦେଇଥାନ୍ତା ହାଣି
ମୋହପସରା ରେ । ୪୩ ।

ଶଙ୍ଖି ଅନ୍ଧକୂଟୀ କଲା ବହୁତ ଭର୍ତ୍ସନା
ବୋଧିଲା କ ଉର ସତୀ ସାହା ବ୍ରଜସେନ୍ନା
ମୋହପସରା ରେ । ୪୪ ।

ଅବସର ସନ୍ଦୋଷ ପ୍ରେମପ୍ରାର୍ଥୀ ପାଙ୍କ
ସୁସ୍ଥାନ ମିଳିଲେ କେତେ ଭେଙ୍କନ୍ତି ସତୀଙ୍କୁ
ମୋହପସରା ରେ । ୪୫ ।

ସତୀ ସତୀତ୍ୱକୁ କରେ ଜୀବନରୁ ସାର
ସତୀହୃଦ ବଜ୍ରଠାଣ ଅଚଳ ଗମ୍ଭୀର
ମୋହପସରା ରେ । ୪୬ ।

ହେଲେ ଏ ପାପାଗ୍ରଗ୍ରୀକ ରହିବା ଜାଗ୍ରତ
ସାଧୁ ଶାସ୍ତ୍ର କହେ ଯାହା ତାହା ତ ବହୁତ
ମୋହପସରା ରେ । ୪୭ ।

ସେଦିନୁ ମୋ ଅସକ୍ତରେ ଥିଲା ସେ ଲମ୍ପଟ
କାର୍ଯ୍ୟ ବାହାନାରେ ଦିଏ ଦେଖା କରି କୂଟ
ମୋହପସରା ରେ । ୪୮ ।

ନିର୍ଜନରେ ମୋର ଭେଟ ଖୋଜୁଥାଏ ରହି
ସାବଧାନେ ଥିଲି କେଣେ ଏକା ଯାଏ ନାହିଁ
ମୋହପସରା ରେ । ୪୯ ।

ଜାଣିଲ ମୋ ପତିପ୍ରେମ ନୋହେ ବିଚଳିତ
କି କୁହି ନ ଜଲ ? ଶୁଣ ତହିଁରୁ କହିତ
ମୋଢପସରି ରେ । ୫୦ ।

ଦିନେ ମଧ୍ୟାହ୍ନେ ଏକା ମୁଁ ରହିଥିଲି ବସି
କି କର ଗୋ କହି ପରବେଶ ଏକ ଦାସୀ
ମୋଢପସରି ରେ । ୫୧ ।

କହିଲ ତୋ ମୁଖେ ବୋହୁ । ନ ହୁଏ ଅନାଇ
ଦେଖିଥିଲି ହେଲଣି ତ ବିଶାକାଠି ମଇ
ମୋଢପସରି ରେ । ୫୨ ।

ପ୍ରଶଂସିଲ ରୂପଗୁଣ କେତେ ମୋ ବଖାଣି
ଛଳ ଛଳ ନେତ୍ରୁ ପୁଣି ବୁହାଇଲ ପାଣି
ମୋଢପସରି ରେ । ୫୩ ।

କଥା ପ୍ରସଙ୍ଗରେ ତହିଁ କହିଲ ଯେ କଥା
ନାରୀ ହୋଇ କହିବାକୁ ଲଗେ ବଡ଼ ବ୍ୟଥା
ମୋଢପସରି ରେ । ୫୪ ।

ନାରୀ ହୋଇ ତାର ପାଟି ଫିଟିଲ କେମନ୍ତେ
ତା ସେକାଳ ଭଙ୍ଗୀ ଅଙ୍ଗ ନାଚଯାଏ ନେତ୍ରେ
ମୋଢପସରି ରେ । ୫୫ ।

ଖୋଲି ନ କହିଲେ ଖେଦ କେ ଜାଣିବ ଲବେ
ବୃକ୍ଷ ଲତା ପଶୁ ପକ୍ଷୀ ମୋ ଦୁଃଖେ କାନ୍ଦବେ
ମୋଢପସରି ରେ । ୫୬ ।

ଭାଷିଲ ଯୁବତୀ ପୁଣି ଅପୂର୍ବ ସୁନ୍ଦରୀ
ଭାଗ୍ୟବତୀ ହୋଇ ହେଉ ନିଜ ଦୋଷେ ଘାରି
ମୋଢପସରି ରେ । ୫୭ ।

ଫୁଲର ବିଛଣା ଇଚ୍ଛା କଲେ କି ତେଜନ୍ତୁ
କିଏ ତୋ ପରି ହୁଅନ୍ତା ଗୃହେ ଶୁଣୁଥାନ୍ତୁ
ମୋଢପସରି ରେ । ୫୮ ।

ପୁଣି ବୋଇଲ କି ତାପେ ଯାଉ ବୃଥା ଜଳି
କର ମୋ କଥା ବିଷାଦେ ଦେବୁ ଜଳାଞ୍ଜଳି
ମୋଢପସରି ରେ । ୫୯ ।

ତଗ ମେଲାଇଲ ବସି ଯେମନ୍ତେ ପଣ୍ଡିତା
କହୁ ଅପେ ଜାଇଥିଲେ ତୋ ପୁଅ ଘଇତା
ମୋଢପସରି ରେ । ୬୦ ।

ଅକାଳେ କୁସୁମ ନାସ୍ତି କହୁଛନ୍ତି ମୁନି
ଚତୁରୀ ହେଲେ ମିଳଇ ସୁଖ କୁହ ତୁନି
ମୋହପସରୀ ରେ । ୬୧ ।

ଅମଳି ଅଣିବୁ ସୁଖ ନ ଜାଣିବେ କେହୁ
ଦୁଲଣୀ ହୋଇବୁ କହୁ ଥାଏ ମୁଖ ଚୁହିଁ
ମୋହପସରୀ ରେ । ୬୨ ।

ନୀରବେ ଶୁଣିଲି ଦୁଷ୍ଟବଣାର ଚାତୁରୀ
ପଠାଇଛୁ ଧନୀପୁଞ୍ଜ ପାଇଲି ବିଗୁର
ମୋହପସରୀ ରେ । ୬୩ ।

ସ୍ୱନସ୍ୱେ ବୋଇଲି ତାଙ୍କୁ ଅନ୍ତର ହେବାକୁ
କହୁଗଲା ନ ପାଇଲୁ ସୁଖ ମୋ କଥାକୁ
ମୋହପସରୀ ରେ । ୬୪ ।

ମୁଁ ବୋଇଲି ଥାଉ ସୁଖ ଯାଅ ବେଗେ ଚଳି
ବୋଇଲା ଏ ଯୁଗେ ଭଲ ଲାଗେ ମନ୍ଦ ଭଳି
ମୋହପସରୀ ରେ । ୬୫ ।

ଅରସିକା ରସକଥା ଜାଣେ କେବେ କାହିଁ
କହୁଗଲା ସେ ପିଶାଚୀ ତରତର ହୋଇ
ମୋହପସରୀ ରେ । ୬୬ ।

ସେଦିନୁ ମୋ ମନେ ହେଲା ଚିନ୍ତା ସଙ୍ଗେ ଡର
ଧନୀପୁଞ୍ଜ ନାମେ ଗାତ୍ର ହୁଏ ଥରଥର
ମୋହପସରୀ ରେ । ୬୭ ।

ପରଶତା ଜଣେ ଦିନେ ଆସିଲା ମୋ ପୁର
ଶାଶୁଙ୍କ ଭାବକୁ ତାଙ୍କୁ ମାନ୍ୟ ଥିଲା ମୋର
ମୋହପସରୀ ରେ । ୬୮ ।

କହୁଥିଲେ ଲୋକେ ତାଙ୍କୁ ଭଲ ଥିଲି ଶୁଣି
ଦୁଃଖ ଦିନୁ ନ ଦେଖିଲି କାହିଁକି କେଜାଣି
ମୋହପସରୀ ରେ । ୬୯ ।

ମାନ୍ୟ କରି ବସାଇଲି କଲେ ସେ କଲ୍ୟାଣ
ନଥ ଦେଖାଇ ବୋଇଲେ କିଣିବୁ ତ କିଣ
ମୋହପସରୀ ରେ । ୭୦ ।

ସତେ ଅବଳାର କେଡ଼େ ଭୂଷଣେ ଆଦର
ନାକେ ପିନ୍ଧ ଦରପଣେ ଦେଖିଲି ସୁନ୍ଦର
ମୋହପସରୀ ରେ । ୭୧ ।

ଯେତେବେଳେ ହେଲି ମନେ ପାଶେ ନାହିଁ ଧନ
ଓହ୍ଲାଇଲି କର ମଠ ନାସାରୁ ଭୂଷଣ
ମୋହତପସରି ରେ । ୭୨ ।

ଦେଲି କହି ନିଅ ଥିଲି ମନ ନାହିଁ ଧନ
ସେ ବୋଇଲେ ରଖିବୁ ତ ରଖିଥା ଭୂଷଣ
ମୋହତପସରି ରେ । ୭ ।

ଧର୍ମପୁତ୍ରଠାରେ ଯାଞ୍ଚା ତୁମ୍ଭର ପାଉଣା
ଭୂଷଣ ମୂଲ୍ୟକୁ ଦେବେ ନ କର ଶୋଚନା
ମୋହତପସରି ରେ । ୭୪ ।

ଦେଇ ମୋତେ ଯାଉଥିଲେ ଅତି ତରତରେ
ଦେଲି କହି ନ ରଖିବ ମୋତେ କି ସଂସାରେ ?
ମୋହତପସରି ରେ । ୭୫ ।

ଲୋଡ଼ିଲି ମୁଁ ପତି ଆଗମନ କ୍ଷଣେ କ୍ଷଣେ
ଜଳିଲି ସତତ କ୍ରୋଧ-ଶଙ୍କା ହୁତାଶନେ
ମୋହତପସରି ରେ । ୭୬ ।

ଆଜ ଦିନେ ଶୁଣ ରାଜରାଣୀ ଯାହା ହେଲି
ଧର୍ମପୁତ୍ର ତାପସୀଏ ମୋ ପୁରେ ପେଶିଲି
ମୋହତପସରି ରେ । ୭୭ ।

ଜାଣି ନ ପାରି ତାହାଙ୍କୁ ବହୁତ ଆଦର
ବସାଇଲି ସ୍ନେହେ କଲି ସେ ବଡ଼ ଶୁଶ୍ରୁଷ
ମୋହତପସରି ରେ । ୭୮ ।

ଧର୍ମ ଭାଣ କରି ଯେହୁ ପ୍ରମାଦେ ପକାନ୍ତି
ତାଙ୍କୁ ଚିହ୍ନିବାକୁ ଭବେ କେତେ ବା ଅଛନ୍ତି
ମୋହତପସରି ରେ । ୭୯ ।

ଫଳିତ ଜ୍ୟୋତିଷ ବିଦ୍ୟା ଜଣାଇ ତାପସୀ
କର ଦେଖେ ମୋର ଶାନ୍ତ ମୃଦୁ ମଧୁହାସୀ
ମୋହତପସରି ରେ । ୮୦ ।

ମଞ୍ଜନତା ଭଙ୍ଗି ଛନ୍ଦେ ବାହ୍ୟ ଦୁଃଖେ ଧୀରେ
ଦେଖି ନ ପାରିବ ଆଉ ଅନ୍ତର ଦଶାରେ
ମୋହତପସରି ରେ । ୮୧ ।

ପତିର ଚଣିକା ସଙ୍ଗେ ଜଡ଼ିଲାଣି ମନ
ଶୁଣି ମୋ ନୟନେ ବନ ହେଲା ଥନଥନ
ମୋହତପସରି ରେ । ୮୨ ।

ପରକ୍ଷଣେ ଉର୍ବଶୀ ପୁଣି ବୋଲେ ଊର୍ଦ୍ଧ୍ୱରେଖା
ଅତି ବଳାସିନୀ ମଧ୍ୟେ ତୁ ତ ଜଣେ ଲେଖା
ମୋହପସରୀ ରେ । ୮୩ ।

ହେବ କେତେ କେତେ ଧନେ ତୋର ଅଧିକାର
ସୁଖାମୋଦେ ନ ଜାଣିବୁ ଯାମିନୀ ବାସର
ମୋହପସରୀ ରେ । ୮୪ ।

ପଗ୍ଭରିଲ ବାରାଙ୍ଗନା ସେ କି ନ ଭେଜିବେ
ବୋଲେ ବରାଙ୍ଗନା ଅଭ ତୋତେ ନ ଗ୍ରହିବେ
ମୋହପସରୀ ରେ । ୮୫ ।

ସତେ ଅବଳା ହୃଦୟ ଏତେକ ଦୁର୍ବଳ
ତାପସୀ ବଚନେ ହେଲା ପରାଣ ବିକଳ
ମୋହପସରୀ ରେ । ୮୬ ।

ଜାଣି ବେଦନା ଆଶ୍ୱାସି କହେ କର ଭଙ୍ଗୀ
ମାର୍କ ଥିଲା ଏବେ କହିଗଲଣି ଶୋଭାଙ୍ଗି
ମୋହପସରୀ ରେ । ୮୭ ।

କାହିଁ ଗ୍ରହଚକ୍ର ପୁଣି ବୁଝିଲା ପ୍ରଶନ
ବୋଇଲା ପ୍ରସନ୍ନ ହୁଅ ଗ୍ରହ ପରସନ୍ନ
ମୋହପସରୀ ରେ । ୮୮ ।

କେହୁ ଧନୀପୁଙ୍କ ବଳେ ପ୍ରଣୟେ ମଜ୍ଜିଛୁ
ତୋ କୋଷ୍ଠୀରେ ତାଙ୍କ ପ୍ରେମଭାବେ ସୁଖ ଅଛୁ
ମୋହପସରୀ ରେ । ୮୯ ।

ଏ ସୁଯୋଗ ଦେଲେ ସ୍କନ୍ଧ ବହୁତ କଷଣ
ବେଣି କୁଳ ଯିବ ହେବୁ ସନ୍ତାପେ ଦହନ
ମୋହପସରୀ ରେ । ୯୦ ।

ଏ ବାଣୀ ଶ୍ରବଣେ ମୋର ଚେତା ଗଲା ହଜି
ଭାବିଲ ଏ କୁହଯାକ କରୁଛୁ ସେ ପାଜି
ମୋହପସରୀ ରେ । ୯୧ ।

ଅଭ କସ କହୁଥାନ୍ତା ସଖୀ ପ୍ରବେଶିଲା
ଧନୀବାସୁ ଅସିଛୁ କି ବୋଲି ପଗ୍ଭରିଲା
ମୋହପସରୀ ରେ । ୯୨ ।

ଧନୀପୁଙ୍କ ଷଡ଼ଯନ୍ତ୍ରେ ପ୍ରଥମା ବୋଲଇ
କେତେ ଘର ଦେଲଣି ତୁ ପାପିଷ୍ଠା ବୁଡ଼ାଇ
ମୋହପସରୀ ରେ । ୯୩ ।

ଶେଷମୁଖେ ଗଳ୍ପ ଶୁଣି ସେ ହୋଇ ଉଚ୍ଛନ୍ନ
ସଖୀ ବୋଲେ ଛି ପାପିଷ୍ଠା ଏଡ଼େ ଦୁର୍ଜ୍ଜନ
ମୋଢପସର୍ ରେ । ୯୪ ।

ସେହିକାଳୁ ଜଗତରୁ ମୋ ବିଶ୍ୱାସ ତୁଟିଲା
ଏଥିଅନ୍ତେ କେତେ ଦିନେ ଶୁଣ ଯାହା ହେଲା
ମୋଢପସର୍ ରେ । ୯୫ ।

ପବନ ଅଭିଶାପରେ କୁବ୍ଜୀ ହେଲି ପର
କୁଶକେତୁ ଶତକନ୍ୟା, ମୁଁ ହୋଇଲି ଘାର
ମୋଢପସର୍ ରେ । ୯୬ ।

ଅକସ୍ମାତେ ପର୍ଣ୍ଣକୁଟୀ କେ ଦେଲା ଜଳାଇ
ସଖୀ ରଖିଲା ତା ଗୃହେ ମୋତେ ଡାକି ନେଇ
ମୋଢପସର୍ ରେ । ୯୭ ।

ଧର୍ମପୁତ୍ର ରୁଷ୍ଟ ହେଲା ସଖୀରେ ବିସ୍ତର
ତାଙ୍କୁ କେତେ ଲୋଭ ଦେଲା ମୋ ପ୍ରେମେ ପାମର
ମୋଢପସର୍ ରେ । ୯୮ ।

କାହିଁ ନ ଦେଖି ବେଜାଙ୍କ ମତ ବିଚଳିତ
କୁଚିଠି ପଠାଇଲା ସ୍ୱାମୀମରଣ ଉଦନ୍ତ
ମୋଢପସର୍ ରେ । ୯୯ ।

ଭାବିଥିଲା ନିରୁପାୟେ ତା ପ୍ରେମେ ମଜ୍ଜିବ
ଶୁଣିଲା ମୋ ଦୃଢ଼ପଣ ପରାଣ ତେଜିବ
ମୋଢପସର୍ ରେ । ୧୦୦ ।

ଦିନ ଗୋଟିଏ ନ ଯାଉଁ ସ୍ୱାମୀ ପରବେଶ
କୁଚିଠି ଦେଇଥିଲା ସନ୍ଦେହ ବିଶ୍ୱାସ
ମୋଢପସର୍ ରେ । ୧୦୧ ।

ନିମିଷକେ ସବୁ ଦୁଃଖ ହେଲା ମୋ ପାଶୋର
ତାପସୀ ଜୀବନେ କାହିଁ ଅନୁଭୂତ ତାର
ମୋଢପସର୍ ରେ । ୧୦୨ ।

ଧର୍ମପୁତ୍ର ମୋର ନାମେ କେତେ କୁତ୍ସା ଦେଇ
କଳଙ୍କଲେ ଦେଲା ସ୍ୱାମୀ ପ୍ରଣୟ ଛଡ଼ାଇ
ମୋଢପସର୍ ରେ । ୧୦୩ ।

ପତ୍ନୀ ହୋଇ ପ୍ରେମେ ପତି ନ ପାରିଲି ଧର
ନିଜ ଦୋଷ ଭାବି ଗଲି କି ବିଷାଦେ ସର
ମୋଢପସର୍ ରେ । ୧୦୪ ।

ମୋ ମରଣ ପାଇଁ ଚିନ୍ତା ନ ଥିଲା ତ ଭ୍ରମେ
ଖାଲି ତାଙ୍କ ଖେଦେ ଘାର ହେଲି ମୁଁ ମରମେ
ମୋତପସ୍ୱୀ ରେ । ୧୦୫ ।

ସୁଖ ନ ପାଇ ସେ ଘର ଗଲେ ଦେଶାନ୍ତର
ଶୁଣିଲି ତପସ୍ୱୀ ବେଶେ ଭ୍ରମିଲେ ସଂସାର
ମୋତପସ୍ୱୀ ରେ । ୧୦୬ ।

ଦେଖି ସଂସାରର ରୀତ ହେଲା ଚିନ୍ତା ଘୋର
ସେକାଳୁ ତାପସୀ ବେଶେ ଭ୍ରମେ ମୁଁ ସଂସାର
ମୋତପସ୍ୱୀ ରେ । ୧୦୭ ।

ବୁଲି ବୁଲି ପତି କାହିଁ ନ ପାଇଲି ଦେଖା
ବୈବେ ବୃନ୍ଦା ତାପସୀ ଏ ମୋତେ ଦେଲେ ଦୀକ୍ଷା
ମୋତପସ୍ୱୀ ରେ । ୧୦୮ ।

ବହୁ କୃପା ବାତ୍ସଲ୍ୟରି କଲେ ସେ ଶିଖାଇ
କାଶୀପୁରେ ତହ [illegible] ରହିଲୁ ମୁହିଁ
ମୋତପସ୍ୱୀ ରେ । ୧୦୯ ।

ପତିତ୍ୟକ୍ତା ହେତୁ ପତି ନ ଅଣା ମୋ ପାଶେ
ଜଗତ ପବନ କରେ ବୁଲି ହରଘୋଷେ
ମୋତପସ୍ୱୀ ରେ । ୧୧୦ ।

ବାଦ୍ଧ୍ୟସିଦ୍ଧି ଧର୍ମପୁଣ୍ୟ କରଥାନ୍ତା ନାଶ
କରେ ନାହିଁ ପତି ଦରଶନେ ଅଭିଳାଷ
ମୋତପସ୍ୱୀ ରେ । ୧୧୧ ।

ଅନାଇ ରହିଲେ ତାପସୀକି ରାଜେଶ୍ୱରୀ
ଶ୍ରୀ ଗୋଲୋକ ଭଣେ ନେତ୍ରୁ ଝରୁଥିଲା ବାରି
ପର-ବ୍ରସାଦ 'ରେ । ୧୧୨ ।

## ଷଟ୍‌ଷଷ୍ଟିତମ ଛାନ୍ଦ

ରାଗ—ପୋଇ

ଶିଶିର ଉଦୟ ଅଣି ମହାଭୟ
ପଡ଼େ ଝରଝର ଝର କାକର,
ରୁହିଁ ଏ ସମୟ ବଧୂରି ଅଥୟ
ପଡ଼େ ଥପଥପ ନୟନ ନୀର । ୧ ।

ହେଲା କରକଣ ଶରୀର ବିଶେଷ
ଶୀତେ ଥରଥର ଥରଇ ଅଙ୍ଗ,
ଘନେ ମନ୍ଦୋଦରୀ ତାପନେ ବିହ୍ବଳ
ଜରେ ଜର ଜର ସ୍ମର ସାରଙ୍ଗ । ୨ ।

ବାଧିରେ ପାଣ୍ଡୁର ବଦନ ବିଧୁର
ରମଣ ଅଧର ଧର ରସରେ,
ସାରସ ନୟନ ଶୋକ ଥନଥନ
ଭ୍ରମରେ ଭ୍ରମନ ମନମଥରେ । ୩ ।

ସୋଡଶ ଫୂଲଣା ସ୍ୱର୍ଣ୍ଣକାନ୍ତିକଣା
କଥା ବର୍ଣ୍ଣୁ ବର୍ଣ୍ଣୁ ଶେଷ ହେବ କି ?
ଶତବର୍ଷ ଶୋଭା ପ୍ରଣୟ ପ୍ରଗଲ୍ଭା
ଗୃହେଁ ଥିବ ଥିବ ପ୍ରଜାପତିକି । ୪ ।

ବେଶ ଅସମ୍ଭାଳେ ସୋମ ଛବି ଖେଳେ
ଅଁଧା ହସି ହସି କି ନବ ରଙ୍ଗେ,
ନୀରସ ଅଗ୍ରମେ କୁମୁଦିନୀ ଭ୍ରମେ
ହୁଏ ଛନଛନ ପ୍ରେମତରଙ୍ଗେ । ୫ ।

ଅତି ଦିନ କ୍ଷଣେ ଯାମିନୀ ବିଶେଷେ
ଯେତେ ଭାବି ଭାବି ଯାଏ କି ପାହି ?
ଅବନୀରେ ଧୀରେ ଲଗାଇ ଅଙ୍ଗାରେ
ଖେଦେ ଥରି ଥରି ରହେ ସୁମୁହୀଁ । ୬ ।

ଏକାଳେ ତାପସୀ ଦିନେ ପରବେଶି
ଦେଖେ ରାଜରାଣୀ ଦୂତୀ ସହିତେ,
କରନ୍ତି ବିଚାର ରଣ ସମାଚାର
ରାଜଉପବନେ ଭ୍ରମି ଥିବତେ । ୭ ।

ଚନ୍ଦ୍ରାରେଖା ଭାଲେ କଳଙ୍କ କୀଟ କି
ଏକ ମୁଖ ଦିଶେ ପୂର୍ଣ୍ଣିମା ବିଧୁ,
ସଙ୍ଗ ସହଚରୀଙ୍କ ଅନ ରମଣୀର
ବୋଲି ଦେଉଥାଇ ପ୍ରଣୟମଧୁ । ୮ ।

ସୁଗତିରେ ଏକ ଜିଣଇ ମରାଳୀ
ଅନ ନାରୀ କରିକୁଳଗମନା
ଜଣକର ସ୍ୱନ କୋକିଳ ପଞ୍ଚମ
ଅନ ସ୍ୱନେ ବୀଣା ନୋହେ ତୁଳନା । ୯ ।

---

୨ ପଦ । ଘନେ—ଦୁଃଖୀ ଲୋକମାନେ, ଦୁଃଖରେ । ମନ୍ଦୋଦରୀ—ହେଁଶ, କୃଶୋଦରୀ । ତାପନ—ସୂର୍ଯ୍ୟ, କନ୍ଦର୍ପର ବାଣ ବିଶେଷ ।

୩ ପଦ । ରମଣ—ମୈଥୁନ; ପତି । ରସ—ନୀର; ଶାରୀରିକ ଉପଯୋଗ ।

ଜଣଙ୍କର ବିମ୍ବ— ବିଡ଼ମ୍ବ ଅଧର
ଆନ ଓଷ୍ଠୁଧାରେ ପୀୟୂଷଠାଣି,
ଏକ ଗୃଧ୍ରନେତ୍ରା ଗଞ୍ଜେ ଖଞ୍ଜରୀଟ
ଆନ ଭୁରୁଶୋଭା ବହଇ ଏଣୀ । ୧୦ ।
ଜଣକ ଭଙ୍ଗୀରେ ଯେଉଁ ମଧୁ ଆଭା
ମୋହିତ କରଇ ଜନ ନୟନ,
ସେ ଲାବଣ୍ୟ ଆଭା ଆନଠାରେ ଖେଳି
ଅଯାଚିତେ ଦିଏ ବଶ ସ୍ତମ୍ଭନ । ୧୧ ।
ନାସାରେ ଜଣଇ ଏକ ଶୁକ ନାସା
ଆନ ଢଳେ ତିଳସୁମନ ଠାଣି,
କର୍ଣ୍ଣବଲ ରୁଚି ବେନିଙ୍କର ଅବା
ଫିଟିଛି ବଚନ ଶୋଭା-ସରଣୀ । ୧୨ ।
ଏକ କରଭୋରୁ ଜଣେ ରମ୍ଭାତରୁ
ଆନ ଊରୁ ଶୋଭା କାହିଁ ତୁଳନା,
ବେନି ଘନକେଶୀ ପ୍ରଲମ୍ବକୁନ୍ତଳା,
କର ନୋହେ କେଶଛବି କଳନା । ୧୩ ।
କନକ ବିଦ୍ୟୁତ— ଲତାସମ ବେନି
ଗମନେ ଏକକୁ ଆର ତୁଳନା,
ଗୁରୁ ନିତମ୍ବିନୀ କେଶରୀ କଟୀରେ
କେଉଁ ଶୋଭା ଗୁଣେ ନୁହନ୍ତି ଊଣା । ୧୪ ।
ଏକ ବିରହରେ ପର୍ଯ୍ୟୁଷିତ ପୁଷ୍ପ
ଆନ ଦିଶେ ଯେହ୍ନେ ଊଷା ଚନ୍ଦ୍ରମା,
ଏକ ମଧୁ ଆନ ସରଳ ଗୁଣରେ
ନିନ୍ଦନ୍ତି ହଂସାରେ ଯେତେ ସୁଷମା । ୧୫ ।
ଏକ ବେଶଭୂଷା— ବିହୀନା ସହଜେ
ରହିତ ଅନର ତହିଁ ଆଦର,
ସବୁ ରୂପେ ଗୁଣେ ଏକକୁ ଅନେକ
ଜଣା ବିସ୍ତୃରରେ ସୁପଷ୍ଟାନ୍ତର । ୧୬ ।
ବୟସରେ ରାଣୀ ପ୍ରତୀତା କନିଷ୍ଠା
ବାଳଭାବେ କରେ ବଧୂରେ ଚିନ୍ତା,
ନାନା ଅଭିଜ୍ଞତା ଫଳେ ରସଲେଖା
କରଇ ବ୍ୟକତ ସହିବା କଥା । ୧୭ ।

---

୧୩ ପଦ । ରମ୍ଭାତରୁ—କଦଳୀବୃକ୍ଷ । ପ୍ରଲମ୍ବକୁନ୍ତଳା—ଦୀର୍ଘକେଶା ।
୧୫ ପଦ । ପର୍ଯ୍ୟୁଷିତ ପୁଷ୍ପ—ବାସି ଫୁଲ, ଛଡ଼ା ପୁଷ୍ପ ।

ବସ୍ତ୍ରେ ତାପସୀ ଏ ବେଳ ସୁଣୀଳା
ସମ ବରବ୍ରଣୀ ମୁହିଁ ସହଜେ,
ପ୍ରଭେଦରେ ଏହା ପଞ୍ଚପରବ୍ରହ୍ମ୍ୟା
ଅଗ୍ନିଗିମା ବୃଥା କଲଙ୍କେ ମଜ୍ଜେ । ୧୮ ।

କଣକର ନାଥ ସମରେ ପ୍ରବୃତ୍ତ
ଆନ ରମଣୀର ଚେଦରେ ବନ୍ଦୀ,
ହତଭାଗିନୀ ମୁଁ କି ଅପରାଧେ ହା !
ପଞ୍ଚବରହରେ ମରଇ କାନ୍ଦି । ୧୯ ।

ପତଲାଭ ଆଶା ଯାଉଥିଲା ମର
ଆଜ ଜାଗିଉଠେ ସେ ଆଶା କପାଁ ?
କେ ଜାଣିଛି ଅହା ବଧୂଗ୍ ବାଳାଙ୍କୁ
ଅନାଥନାଥଙ୍କ ହେଲାଣି କୃପା । ୨୦ ।

ଉପଯୁକ୍ତ କାଳେ ବାକ୍ୟସିଦ୍ଧି ପୁଣି
ପ୍ରକାଶିତ ହେଉ ଅନେକ ବାର,
'ହେଉ ଏକଦନେ ଭଲ ବଧୂରଙ୍କ
ପଞ୍ଚଦରଶନ ଶୁଭେ ସତ୍ତ୍ୱର' । ୨୧ ।

ପୁଣି ବସ୍ତ୍ରବଲ ହେଲ୍ କି ତାପସୀ ?
କାମନାରେ ମୋର ଜଳୁଛୁ ମନ,
ସୁଖ ଦୁଃଖ ଅଧ ଦ୍ୱନ୍ଦ୍ୱ ନ ସହିଲେ
ତାପସୀପଦେ କି ହେବ ଭାଜନ । ୨୨ ।

ପାଞ୍ଚୋଟି ନେଲେ ଏ ତାପସୀଙ୍କ ବେଳ
ପ୍ରକାଶି ଉଚିତ ସ୍ନେହ ଆଦର,
ଶୋଭ ପାଉଥିଲ ମନ୍ଦ ମନ୍ଦ ହାସ
ଉଦୟ କି ବେଳ ବାଳ ବଧୂର । ୨୩ ।

ଅଶିଷି ମଧୁରେ ବଧୂରା ବେଳାଙ୍କି
ତାପସୀ ପ୍ରକାଶ କରଇ ଜବ,
'ଧିଅ ଗୋ ବଦାୟ୍ ଅଙ୍ଗସୁଶୋଭନ !'
ସବ ଶୁଭ ଲାଗି ଯିବ ଅଚିର । ୨୪ ।

ଅନ ଅନ ନେନେ ସ୍ଥୂଳ ବମ୍ବାଧରା
ଇନ୍ଦୁରେଖା ଶୁଣି କହେ ସରାଗେ,
କର ସୁଦୟାରେ ରସଲେଖା ପଞ୍ଚ
ମୁକତ ବନସ୍ତେ ମାଗୁଛୁ ବେଗେ । ୨୫ ।

---

୨୦ ପଦ । ଅନାଥନାଥ—ଧନବନ୍ଧୁ ହର ।

ବଧୂର ଦୁର୍ଦ୍ଦଶା ହଟିଯାଉ ଗୃହେ
ଉଟିଯାଉ ଶୁଭ ମଧୁ ସମୟ,
ହେଉ ଅପ୍ରସନ୍ନ ଦୁଃଖ-ବଂଶ ଧୀରେ
ଭଜସୁ ପଦ୍ମିନୀ ହୋଇ ନିର୍ଭୟ । ୨୬ ।
ପ୍ରମୋଦେ ସୁମନା ବିଳାସିନୀ ହେଉ
ହରୁ କାଳ ପିକ ମଧୁ ବଚନେ,
ବିମୋହୁ କୁଞ୍ଜର ଧୀର ମନ୍ଦଗତି
ଗୃହୁଁ ବର ଗୃହୁ ଏଣୀ ନୟନେ । ୨୭ ।
ମହର୍ଷୀ ବଚନ ମୃଗନାଭି ସମ
ଖେଦ ସନ୍ନିପାତ ରସଲେଖାର
ହଟାଇଲା ବେଗେ, ରସଲେଖା ତହୁଁ
କହଇ ଉଦ୍‌ବେଗେ ମଧୁର ଗିର । ୨୮ ।
ବେଗେ ତାପସି ଗୋ ! ଯିବାକୁ ସମରେ
ତବ ସଙ୍ଗେ ମୋତେ ନୃପ ଆଦେଶ,
ଅହା ବିରହିଣୀ ଏହୁ ରାଜବାଣୀ
ବିଷାଦ ହୃଦୟେ ଦଏ ପରଷ । ୨୯ ।
କର ଗୋ ସୁଦୟା କୁହୁ ଖେଦଛାୟା
ହେଉ ମହର୍ଷୀର ମଧୁମିଳନ
ପତିଗତପ୍ରାଣା ସହେ କି ବିରହ
କାହୁଁ ପତିସଙ୍ଗେ ହରଷେ ଦିନ । ୩୦ ।
ତାପସୀ ଭଣଇ ଇନ୍ଦ୍ରିୟ ବିଷୟ
ସଂଯୋଗରେ ଦୁଃଖ ସୁଖ ଜନମ
ଅସ୍ଥାୟୀ ଏମାନେ ସହିଯିବା ତେଣୁ
ଅଟଇ ସଂସାରେ ସାର ଧରମ । ୩୧ ।
ଦେଶ କାଳ ପାତ୍ର ଭେଦରେ ଏମାନେ
ସମ୍ଭବ ହୁଅନ୍ତି ଯିନା ଏ ଭବେ,
କୋମଳପରାଣା ଅକୃତ ଗତରେ
ସହିବା ସମ୍ଭବ ନ ମଣେ ଲବେ । ୩୨ ।
ଅଦ୍ଭୁତ ମିଳନ କରିବା ପାଇଁକି
ଧାଇଁଲଣି ବଳେ ଚିତ୍ତ ସତତ,
ଯାଉ ଗ୍ଲୁଲ ବେଗେ ବଧୂର ବିରହ
ବାଞ୍ଛାସିଦ୍ଧି ଫଳ ହେଉ ବ୍ୟକତ । ୩୩ ।

---

୨୬ ପଦ । ମଧୁ ସମୟ—ଶୁଭ ସମୟ; ବସନ୍ତକାଳ । ବଂଶ—ସମୂହ; ବାଉଁଶ ଗଛ । ପଦ୍ମିନୀ—ନାୟିକାବିଶେଷ; ପଦ୍ମବନ । ସୁମନା—ନାୟିକା; ଫୁଲ ।
୨୭ ପଦ । ବର—ଶ୍ରେଷ୍ଠ, ପତି । ୨୮ ପଦ । ମହର୍ଷୀ ପାଠବାଣୀ ।

ଏମନ ଉଚ୍ଚାରି ମାୟା ପ୍ରକାଶିଲ
ଆଦ୍ୟସିଦ୍ଧି ଯୋଗେ ତାପସୀ ତହିଁ,
ଅଣିମା ଲଘିମା ସିଦ୍ଧି ଯାର ତାକୁ
ଅସାଧ୍ୟ ଜଗତେ ଅଛି କି ଥାଇ । ୩୪ ।

ଇନ୍ଦୁରେଖା ଅହା ରହିଲା ଭବନେ
ରସଲେଖା ଘେନି ଚଳେ ତାପସୀ,
ଭାବେ ରସଲେଖା ଉଡ଼ି ଯାଆନ୍ତି କି
ଲଙ୍ଘି କେତେ ଗିରି ବନ ସରସୀ । ୩୫ ।

ତାପସୀ ଆଶ୍ରମ ଯେ ଗିରି କାନନେ
ପଞ୍ଚଧାରା ନାମ ବହେ ସେ ଗିରି,
ସତ୍ୱର ଏ ବେନି ପ୍ରବେଶିଲେ ତହିଁ
ନାହିଁ ଭବେ କାହିଁ ଯା ଶୋଭା ସରି ॥

ତାପସୀ କହଇ ଦେଖ ରସଲେଖା
ଭ୍ରମି ଆସିଲୁ ମୋ ଆଶ୍ରମ ବାଟେ,
ପଞ୍ଚ ସ୍ଥାନେ ଗିରି ନଭସ୍ପର୍ଶୀ କେତେ
କମେ ସ୍ପର୍ଶେ ଜଳ ଗିରିସଙ୍କଟେ । ୩୭ ।

ଗିରି ମଧ୍ୟେ ଦେଖ ପ୍ରଶସ୍ତ ଗହ୍ୱର
ଅନ୍ଧାର ପାତାଳେ ଯାଏ କି ପଶି,
ଗିରି ଝରଣାର ବିଷମ ବନ୍ଧୁର
କେତେ ତଳେ ଅହା ଯାଉଛି ଦଶି । ୩୮ ।

ରସଲେଖା ପୁଚ୍ଛେ ବନ୍ୟ ତରୁଗୁଳ୍ମେ
ଏ ଗିରିମାଧୁରୀ ରୁଦ୍ର ସୁନ୍ଦର,
ଗଜ ବ୍ୟାଘ୍ର ସର୍ପ ଅଧ୍ୟୁଷିତ ବନେ
ବସ କେମନ୍ତେ ଚିତ୍ତେ ନ କରି ଡର । ୩୯ ।

ତାପସୀ କହଇ ରାଜର୍ଷି ପ୍ରଭାବେ
ଏଠାରେ କା'ଠାରେ ନ ଥାଇ ହିଂସା,
ଅଚରେ ଯେ ହିଂସା ବଂଶପରମ୍ପରା
ସାଧୁ ନୃପ ବିନାଶନ୍ତି ସହସା । ୪୦ ।

ବିପଦ ଆଶଙ୍କା ନାହିଁ ଏ ରାଜ୍ୟରେ
ସାଧୁ ଗୁଣିଙ୍କର ସଦା ଆଦର,
ଈଶ୍ୱର କୃପାରୁ ବିଜ୍ଞ ରାଜବଂଶେ
ସତତ ଉଦିତ ଯଶ-ଭାସ୍କର । ୪୧ ।

---

୩୭ ପଦ । ପଞ୍ଚଧାରା—ଅଠମଲ୍ଲିକ ରାଜ୍ୟସ୍ଥିତ ପର୍ବତ ବିଶେଷ ।

ପୁଣି ପୂର୍ବପର ଯୋଗଦ୍ଵଟେ ନେଲ
ତାପସୀ ସତ୍ତ୍ଵର ବହୁ ପୁଲକ,
ରସଲେଖା ଦେଖେ ଜଡ଼ ହୋଇଅଛୁ
ଯହିଁ ମିଞ୍ଜି ମିଞ୍ଜି ଜଳେ ଆଲୋକ । ୪୨ ।
କାଳର ଛଳରେ ଟୋପି ଟୋପି ଲୁହ—
ଗଡ଼ା କ ବନାଶ ଭାବ ତାପସୀ,
ନାସ୍ତବ୍ୟଧତା ଭାଙ୍ଗି କୃଜାନ୍ତ ବାହାରେ
ମାଝ ଦୂରଦନ୍ତ ରହୁଛୁ ନାଶି । ୪୩ ।
ଖଣ୍ଡଦେଲି ପ୍ରାୟେ ଶୋଭେ ଶୁଭ୍ର ତମ୍ବୁ
ଯାଉଛନ୍ତି ଲଂଚ ଗଗନେ ତାର୍,
ଦୁର୍ଗରକ୍ଷୀ କରେ ଧରି ତରବାରି
ସୁଦ୍ଦଙ୍ଗେ ସତର୍କେ ଦିଏ ପହରି । ୪୪ ।
କେ ଥାଇ ଶଯ୍ୟାରେ ଦୁଷ୍ଟ ସ୍ଵପନକୁ
ସଖୀକୁ କହଇ ନାନାକାରେ,
କେ କଳ୍ପନା କରେ ସମରବୃତ୍ତାନ୍ତ
ଭୁଷ୍ଟାହ ଶୂରତ୍ଵ ଦେଖାଇ ଖରେ । ୪୫ ।
ରସଲେଖା ଚିତ୍ତେ ଚିନ୍ତଇ ବିସ୍ମୟେ
ସୈନ୍ୟଦୁର୍ଗ କାହ ହୁଏ ଏ ଜଣା,
ଅଚିନ୍ତ୍ୟ ଶକ୍ତିରେ କେତେ ଦୂର ଅହା
ଅଣିଲା ତାପସୀ ନୋହେ କଳନା । ୪୬ ।
ରସଲେଖା ବଚନ— ବିକାରରୁ ଚିତ୍ତ
ଜାଣି ତାର ଭଣେ ତାପସୀ ତହିଁ,
ଚିହ୍ନି ନ ପାର କି ଏ ପରା ଅଟଇ
ଅଙ୍ଗ ନରପତି ଦୁର୍ଗ ସୁମୁହିଁ । ୪୭ ।
ଚିନ୍ତା ନିଦ୍ରା ଯେଣୁ ସ୍ଵପତଣୀ ଭାବେ
ନୃପତି ସେ କାଳେ ଥିଲେ ଜାଗ୍ରତ,
ଭାଙ୍ଗି ଦେଲା ଦୁଃଖ— ବଂଶ ନୃପତିର
ତାପସୀ ବଚନ ହୋଇ ମର୍ଦ୍ଦିତ । ୪୮ ।
ତାପସୀ ବଚନ୍କୁ ଚିହ୍ନି ନ ଚିହ୍ନିଲେ
ଥିବାରୁ ହୃଦୟେ ସଂଶୟ ଘୋର,
ଶିବିରୁ ବାହାର ଗଣିଲେ ନୃପତି
କୁଷିତକୁ ହେଲା ପ୍ରାପତ ନୀର । ୪୯ ।

---

୪୮ ପଦ । ମର୍ଦ୍ଦିତମଣି ବାଜିଲେ ବାହିଁଣ ଫାଟିଯାଏ ।
୪୯ ପଦ । ଶିବିର—ଯୁଦ୍ଧରେ ବ୍ୟବହୃତ ଘରଟି ।

କଲ୍ୟାଣୀ କଲ୍ୟାଣ  କର ନୃପେ ଧୀରେ
  କହ୍ଲାର ସୁମନେ ଦେଲ୍ଲ ଆଦରେ,
କହୁ କୈଣ ପୁଷ୍ପ  ରଖ ସୁଯତନେ
  ତୋଷିବ ମାନସ ଭଙ୍ଗେ ଅଚିରେ । ୫୦ ।

ଭଣ ଶେଷେ ପୁଣି  କଣୀଥେ ଏକାକୀ
  ପୂଜିବ ହୃଦୟଦେବତା ଯାଇଁ,
ବଚନ ତମ୍ଭୁଏ  ଯାଉଥିବ ଯାକୁ
  ଲଗାଇ ଶୟନକକ୍ଷକୁ ତହିଁ । ୫୧ ।

ବିଶେଷ ପୁରୁଷ  ଅଗମ୍ୟ ଥିବ ସେ
  ରହିଥିବ ତହିଁ ମୋ ଅଧିକାର,
ପକ୍ଷ ପ୍ରତ୍ୟୁପକ୍ଷ  ଚଳପଟ ଘେର
  ଜଗି ରହିଥାନ୍ତୁ କଞ୍ଚୁକୀବାର । ୫୨ ।

ପୁଷ୍ପ ନେଇ ନୃପ  ସନ୍ତୋଷେ ଦେବୀଙ୍କ
  କଲେ ଯଥାବିଧି ମାନ୍ୟ ଆଦର,
ଅତି ଯତନରେ  ରଖାଇଲେ ଘରେ
  ଦେଲ୍ଲ କୁଳଦେବୀ ସଂଶୟ ଘୋର । ୫୩ ।

କଣ୍ଟ ଲକ୍ଷ୍ମୀପୂଜା  ତାପସୀ ଇଙ୍ଗିତ
  ଶେଷେ ତାଙ୍କ ମନେ ହେଲ୍ଲ ବିଶ୍ୱାସ,
ତାପସୀ ବଚନ  କଲେ ଶିରୋପାର୍ଶ୍ୱି
  ଶିଷ୍ଟ୍ର ଗାଢ଼ିଲେ କି ତଥ୍ୟ ରହସ୍ୟ । ୫୪ ।

ଏକାଳେ ମଣ୍ଡିଲେ  ରଙ୍କା ଜିତେଟିର
  ବସିଲେ ଢ଼ଟ୍ଟାଳୀ ଆନନ୍ଦ ମନେ,
ନୂତନ ସ୍ଥଳୀ  ମଧୁମିଳନକୁ
  ଶ୍ରୀଗୋଲୋକ ଭ୍ରମେ ନବ ଅଖ୍ୟାନେ । ୫୫ ।

---

୫୩ ପଦ । କୁଳଦେବୀ—ଏକ ଅର୍ଥରେ ମନରେ ମନାସ କରିଥିବା ଠାକୁରାଣୀ ଓ ଅନ୍ୟ ଅର୍ଥରେ ଜଙ୍ଗଲ ପରୀ ।

# ୬୬ଷ୍ଟିତମ ଛାନ୍ଦ

## ରାଗ—ଚକ୍ରକେଳି

ଶୁଣ ଇନ୍ଦୁମତୀ କଥା । ଚଣ୍ଡୀ ମହିଷମର୍ଦ୍ଦିନୀ ସେ ଅଟା । ୧ ।
ନବ କୁମାରୀ ଶ୍ୟାମା ରମଣୀ । ଦଣ୍ଡେ ଦେଖିଲେ ଅସୁରସ୍ପୃହଣୀ । ୨ ।
ରସେ ବଶୀଭୂତ କଲା ମହୀଶ । ରୋଷେ ବିନାଶେ ମୃଗେନ୍ଦ୍ର ବାହୀଶ । ୩ ।
କାଶୀଧାମରେ କରଇ ବସତି । ଶିବେ ବରଦାରେ ବରପ୍ରକୃତି । ୪ ।
କାଳେ କୁମାର ମରାଇଲା ପର । କାଳେ କୁମାର ବିନାଶେ ଲଜ୍ଜା । ୫ ।
ଭେଦେ କୁମାରେ ଚଣ୍ଡୀ କଲା ଜାତ । ଏ ଯେ କୁମାରେ ଚଣ୍ଡୀ କଲା ହତ । ୬ ।
ନାତ ମଣ୍ଡିତା ଅଟ୍ଟାଳି ଜଗତୀ । ସର୍ଖୀଗନ୍ଧଣେ ବନ୍ଦରେ ସୁଦତୀ । ୭ ।
ଦେଖି ତରୁଣ ସୁନ୍ଦର ଆକାର । କରେ ନୃପଜେ ଯାହାକୁ ବର୍ଣ୍ଣନ । ୮ ।
ଛଳି ଚରଣ କରଇ ପରୀକ୍ଷା । ଅଣୁ ଦୋଷରେ ଦିଏ ମୃତ୍ୟୁଦୀକ୍ଷା । ୯ ।
ଦିନେ ବଡ଼ଭୀରେ ଥାଇ ସୁଗତି । ଦେଖେ ବାଜସ୍ନାନ୍ୟ ନୃପତି ସନ୍ତତି । ୧୦ ।
ଦେଲା ସଜନୀ ହସ୍ତରେ ଚିଠାଉ । ଲେଖି ଦର୍ଶନେ ହେଲି ଅଠାଉଠାଉ । ୧୧ ।
କଲ କାହିଁକି କେ ମୋତେ ଅବଶ । ବନ୍ଧୁ ସହାୟ ହୁଅ ଆସି ପାଶ । ୧୨ ।
ଯେଣୁ ବାଧୂରେ ମୁଁ ନୃପନନ୍ଦନୀ । ବେଢ଼ି ତୁଅସ ଜଗନ୍ତ ସଲନୀ । ୧୩ ।
କରେ ଆଶଙ୍କା ତବ ଆଗମନେ । କର ଚତୁର ଗୃତୁରୀ ଯତନେ । ୧୪ ।
ପଞ୍ଚବାହିକା ବୟସୀ ବେଶରେ । ଆସ ନିରୁପଦ୍ରବରେ ମୋ ପୁରେ । ୧୫ ।
ଦେଖି ନ ଦେଖି ଜୀବ କି ରହିବ । ବାଳା ଅନଙ୍ଗଦାଉ କେ ସହିବ । ୧୬ ।
ଭାବ ମହତ ଜନ କଲ୍ ଆଶ । ବନ୍ଧୁ ଦୁଃଖିନୀ ନ ହେଉ ନିରାଶ । ୧୭ ।
ସତେ ପଥିକଜନ ବନ୍ଧୁ ସମ । ଦଶ କାହିଁକି ସତେ କୋଠୀ କାମ । ୧୮ ।
କମ୍ପ ପୁଲକେ ହେଲଣି ଅବଶ । ଛଦ୍ମେ ଆସିବ ରଖିବ ପୌରୁଷ । ୧୯ ।
ବସି କପୋତ ସମାନ ଝୁରଇ । ଅଛୁ ଗୃହକ ପରିଏ ଅନାଇ । ୨୦ ।
ଭାଙ୍ଗି ଭୁଞ୍ଜାଇ ଦେବ ନାଗବଲ୍ଲୀ । ହାର ରଖିଛୁ ଗୁନ୍ଥି ଯୁଇ ମଲ୍ଲୀ । ୨୧ ।
ଯେବେ ରସିକଶୂର ହୋଇଥିବ । ଆସି ଅବଳା ତାପସ ନାଶିବ । ୨୨ ।
ଜାଣେ ପରପ୍ରୀତି ବଡ଼ ସୁଆଦ । ଉଷା ମେଢ଼କୁ ହୁଅ ଅନିରୁଦ୍ଧ । ୨୩ ।
ବଳ ପଡ଼ୁଛୁ ମୋ ନବମ ଦଶା । ଦୋଷ ଲାଗିବ କଲେ ତ ନିରାଶା । ୨୪ ।

---

୧ ପଦ । ଚଣ୍ଡୀ—ଦୁର୍ଗା; କୋପନା ସ୍ତ୍ରୀ । ମହିଷ—ମହିଷାସୁର; ମହୀଶ—ନୃପତି ।
୨ ପଦ । ଶ୍ୟାମା—କାଳୀ, ସୁବର୍ଣ୍ଣବର୍ଣ୍ଣା ସ୍ତ୍ରୀ । ପ୍ରକୃତି—ଦୁର୍ଗା, ସ୍ୱଭାବ ।
୪ ପଦ । ବର—ଶ୍ରେଷ୍ଠ; ପତି ।
୫ ପଦ । କୁମାର—ମନ୍ଦ କାମଦେବ, ରାଜକୁମାର ।
୬ ପଦ । କୁମାର—କାର୍ତ୍ତିକ, ରାଜକୁମାର ।
୧୦ ପଦ । ବଡ଼ଭୀ—କୋଠା । ୧୫ ପଦ । ବୟସୀ—ସଖୀ ।
୨୩ ପଦ । ଉଷା—ବାଣାସୁରର କନ୍ୟା । ଅନିରୁଦ୍ଧ—କୃଷ୍ଣଙ୍କ ପୁତ୍ର ।

ପଢ଼ି ତରୁଣ ତରୁଣୀ ପଦ୍ଧତିକା ; କଲ କାମିନୀହତ୍ୟା ଦୋଷ ଶଙ୍କା । ୨୫ ।
ପାର୍ଥ ଉର୍ବଶୀ ନ ତୋଷି ପ୍ରଣୟେ । ଶାପେ ଭବଇ ସେ କ୍ଳୀବ ସମୟେ । ୨୬ ।
ବଳେ କାମିନୀ ଯାଚିଲେ ପୀରତ । ଋଷି କରନ୍ତି ସହଜେ ସୁରତ । ୨୭ ।
ବିଷ୍ଣୁଶବାରେ ହୋଇଛି ପ୍ରମାଣ । ପର ଖେଦ ଜାଣି ସିନା ସୁଜନ । ୨୮ ।
ପୁଣି ବିଗ୍ରହରେ ତରୁଣ ଏମନ୍ତ । ରତି ପୀରତି ନ ଜାଣେ କେମନ୍ତ । ୨୯ ।
ମଣେ କୁମାରୀ ପୀରତିପଣ୍ଡିତା । ଯେବେ ଅଣଗୁରୁବିଦ୍ୟା କି ଚିନ୍ତା ? । ୩୦ ।
ତାର ବିଷାଦ ହରିବି ଯତନେ । ଏତେ ବିଗ୍ରହ କରି ମନେ ମନେ । ୩୧ ।
ସଖୀ ବେଶରେ ହେଲା ନାରୀବେଶ । କଲା ଶ୍ରୀଫଳେ ଉରଜ କଳସ । ୩୨ ।
ପାଦେ ଖଞ୍ଜିଲା ଧ୍ୱନିତ ନୂପୁର । କାମବିଜୟ ମର୍ଦ୍ଦଳ ସୁସ୍ୱର । ୩୩ ।
ଘେନେ କଟିରେ ମେଖଳା ସରସ । ରତି ମାନସବନ୍ଧା ନାଗପାଶ । ୩୪ ।
କର୍ଣ୍ଣେ ଘେନିଲା ମକର କୁଣ୍ଡଳ । ଠାରେ କାମୀଙ୍କି ଦୋହଲି ଚଞ୍ଚଳ । ୩୫ ।
ସାଜ ସୀମନ୍ତ ସଜାଇଲା ବେଣୀ । ଖେଳେ ସତେ କି ଦଉ କୃଷ୍ଣଫଣୀ । ୩୬ ।
କରେ ପିନ୍ଧିଲା ଚୁଡ଼ିକି ସଜାଡ଼ି । ଦେହେ କାଞ୍ଚିଲା ଯାଇଅଛି ଜଡ଼ି । ୩୭ ।
ପିନ୍ଧି ଟାଣିଲା ଓଢ଼ଣୀ ସୁବାସ । ଚଳେ ଗଜଗତିରେ ଜେମା ବାସ । ୩୮ ।
ଦେଖି ଅପୂର୍ବ ଚରିତ ରସିତେ । ବଳେ ପଞ୍ଚମ ଅନଙ୍ଗବିପାକେ । ୩୯ ।
ଗୂଢ଼ ଗମନ ପଛେ ପଛେ ନେଇ । ଗଲେ ଗୋଡ଼ାଇ ଦିଶିବାଯାଏ ତ । ୪୦ ।
ଯହୁଁ ଅଦର୍ଶନ ହେଲା ବିଧିରେ । ହେଲା ସଂସାର ନୀରସ ବଧୂରେ । ୪୧ ।
ବେଗେ ନନ୍ଦନୀ ସନ୍ନିଧେ ପ୍ରବେଶ । ମୁଖେ ବିରାଜେ ମୃଦୁ ମଞ୍ଜୁହାସ । ୪୨ ।
ଦେଖି ତାଙ୍କ ପାଶେ ନୃପନନ୍ଦନୀ । ବୋଲେ ତୁମ୍ଭେ କି ଅଣବେଳା ଧାଇଁ । ୪୩ ।
ଜ୍ଞାନହୀନ ନାର୍ଯ୍ୟଙ୍କ କୁମତ । ଧର୍ମେ ଅଧର୍ମେ ନାହିଁ ଡରେ ଭୀତ । ୪୪ ।
ପୁଣି ଜୀବନକୁ ନାହିଁ ସଂଶୟ । ପରକାମିନୀ ହରଣେ ନିର୍ଭୟ । ୪୫ ।
ବାନ୍ଧି ଅଣିବ କହ କେଉଁ ଯଶ । କ୍ଷମା ଅସିଲା ନ କରେଁ ବିନାଶ । ୪୬ ।
ପାପ ପ୍ରାୟଶ୍ଚିତ୍ତ ହେବା ଉଚିତ । ସ୍ମର ଅଗକୁ ରହିବ ଜାଗ୍ରତ । ୪୭ ।
ଦେଲା ଅସି କରେ ଭଷି ବଚନ । କାଟ ସ୍ୱହସ୍ତେ ନିଜ ନାସାକର୍ଣ୍ଣ । ୪୮ ।
ଭାବେ କୁମାର ମୋର ବୁଦ୍ଧି ମନ୍ଦ । ଅନୁଭୂତ ନ ଥିବାରୁ ଏ ଦ୍ୱନ୍ଦ । ୪୯ ।
ଭାବେ ଅଛନ୍ତି କେତେ ମତେ ପ୍ରାଣୀ । ଦେଲା ଅସ୍ଥିରବୁଦ୍ଧି ଏ ଭାଳେଣି । ୫୦ ।
ପୁଣି ଭାବେ ଏ ନାରୀ ସ୍ୱଭାବେ । ରଙ୍ଗ କରୁଥିବ କାମେ ସମ୍ଭବେ । ୫୧ ।
ମଣି ସୁରଙ୍ଗ ହେଉ ଅସମ୍ଭବ । ତାଙ୍କେ ଇନ୍ଦିରା ସଖୀକି ଦ୍ୱିରଦ । ୫୨ ।
ରସକୌତୁକ କରେ ଦେଇ ବିଷ । ବୋଲେ ନିର୍ଜନେ ମାର ଏ ପୁରୁଷ । ୫୩ ।
ସଖୀ ନିର୍ଜନେ ମଣି ପୁଂସ ମାର । କଲା ଗାନ୍ଧର୍ବ ମତରେ ବିହାର । ୫୪ ।
ତେଣୁ ତତ୍ପରପଣ ଉମ୍ଭେ ଧରି । ସଖୀବେଶେ ଗଲେ ପ୍ରଭୁ ବାହାର । ୫୫ ।

---

୨୬ ପଦ । ପାର୍ଥ—ଅର୍ଜ୍ଜୁନ । ଉର୍ବଶୀ—ସ୍ୱର୍ଗବେଶ୍ୟା ।
୩୨ ପଦ । ଶ୍ରୀଫଳ—ନଡ଼ିଆ । ୩୪ ପଦ । ମେଖଳା—ଚନ୍ଦ୍ରହାର ।
୪୮ ପଦ । ଅସି—ଖଣ୍ଡା । ୫୨ ପଦ । ସୁରଙ୍ଗ—କୌତୁକ ।

କର ଈର୍ଷା ସେତାକୁ ନବ ବାଳୀ । ଥିଲା ହୃଦରେ କ୍ରୋଧବହ୍ନି ଜାଳି । ୫୬ ।
ଜାଣି ଚେଦୀରେ ବନ୍ଦୀ ସଖୀପତି । ହବ୍ୟ ମଣିଲା ହୋଇଲା ଆପତି । ୫୭ ।
ଚେଦି ବନ୍ଧୁଘରୁ ବନ୍ଦୀ ଅଣାଇ । ବନ୍ଦୀ କରି ରଖିଥିଲା ସୁମୁହାଁ । ୫୮ ।
ଜାଣି ଚେଦିରେ ଲାଗିଲା ସମର । ଭଲା ନନ୍ଦନୀ ଶତ୍ରୁରେ ବଗ୍ନର । ୫୯ ।
କାଳୀ ପାଶେ ବେଦକ ବଳି ଦେଇ । ଯିବ ଚେଦୀକ କରନ୍ତି ଲଢ଼ାଇ । ୬୦ ।
ମାୟା ସମରେ କେ ଯିବ ତରତ । ଚଣ୍ଡୀ ସାଧନ୍ତୁ ଲଭିଛୁ ବହୁତ । ୬୧ ।
ସଖୀ ସଙ୍ଗତେ ଗୋଯାନ ଅରୋହୀ । ଚଣ୍ଡୀ ପୂଜିବାକୁ ଚଳେ ସୁମୁହାଁ । ୬୨ ।
ଯେଜନ କଞ୍ଚୁକୀଏ ବନ୍ଦୀ ଅକଟେ । ପଛେ ଗୁଳନ୍ତି ଶକଟ ନିକଟେ । ୬୩ ।
ଏଥି ଅନ୍ତରେ ପ୍ରାଜ୍ଞ ସାବଧାନେ । ଯେଜନ ବଚାଏ ନୂତନ ଆଖ୍ୟାନେ । ୬୪ ।
ପଥେ ଦେଖିଲା ନୃପତନନ୍ଦନୀ । କାନ୍ଦେ ଏକଳେ ବସି କେ ରମଣୀ । ୬୫ ।
ଯାକୁଁ ଓହ୍ଲାଇ ପଡ଼ିଲା ଭାମିନୀ । ଜାନୁ ଛଣିଗଲା ପଥା ଦାମିନୀ । ୬୬ ।
ଯାଇଁ ସୁମୁଗୀ ଦେଖଇ ସମୀପେ । ନାରୀସ୍ୱଭାବ ସୁନ୍ଦରୀ ସ୍ୱରୂପେ । ୬୭ ।
ଜୀର୍ଣ୍ଣ ବସନ ଖଣ୍ଡିଏ ଦେହରେ । ପୁଚ୍ଛ ସ୍କନ୍ଧରେ ପଡ଼ୁଛି ମୋହରେ । ୬୮ ।
ଯେଣୁ ଯୌବନ ଶରୀରୁ ବଗତ । ହୁଏ ଅସିବାକୁ ସଜ ବୃଦ୍ଧତ୍ୱ । ୬୯ ।
କେଣ ଏକ ଏକ ଶୁକ୍ଳେ ମଣ୍ଡାଇ । କୁଚ ମାଧୁରୀ ଦେଲାଣି ଖଣ୍ଡାଇ । ୭୦ ।
ଦେହେଁ ଅସଇ ଗଣ୍ଠି ଶିରା ଦିଶି । ଗଣ୍ଡୁ ଯାଉଛି ଶୋଭା ପୃଷ୍ଠି ଖସି । ୭୧ ।
ଗୃହୁ ନିତମ୍ବ ଅସୁଅଛି ଶୁଖି । ଯାଏ ଭଙ୍ଗିମା ଛାଡ଼ି ଛାଡ଼ି ଅଖି । ୭୨ ।
ବାଣୀ ତରଳ ତେଜୁଛି ମାଧୁରୀ । ଲାଜ ଯାଉଛି କ୍ରମେ ଅପସରି । ୭୩ ।
ହେବ ବୟସ ଗୁଳଶ ଭିତରେ । ନିଜ କର୍ମେ କାନ୍ଦ କେତେ ଧିକ୍‌କାରେ । ୭୪ ।
ଦଶେ ଏକାଳେ ତା ଯେତେ ମାଧୁରୀ । ସୁଦ୍ରାଚାଳେ କେତେ ନୋହେ ବଗୁର ।
କର ଲକ୍ଷ୍ୟ କର୍ଣ୍ଣେ ପୃଚ୍ଛେ ଇନ୍ଦିରୀ । କାହିଁ ହରାଇଛ କର୍ଣ୍ଣ ଅଧୀରୀ । ୭୬ ।
ବୃଦ୍ଧ କାତରୀ ସଙ୍କୋଚ ପଙ୍କରେ । ଭୟେ ଜଣାଏ ଦୁଃଖ ଶ୍ରୀଗ୍ରାମୁରେ । ୭୭ ।
ଶୁଣ ପାପ ଇତିବୃତ୍ତ ନନ୍ଦନା । ଦୁଃଖଭୋଗିନୀ ମୁଁ ହତଭାଗିନୀ । ୭୮ ।
ଥିଲି ମୋ ପତି ସଙ୍ଗେ କି ଆନନ୍ଦେ । ଦେଲା ପକାଇ ଜଣେ ପ୍ରେମଫାନ୍ଦେ । ୭୯ ।
ସେ କି ପକାଇଥାନ୍ତା ମୁଁ ପଡ଼ିଲି । ଜାଣି ଶୁଣି ଧର୍ମପଥ ଛାଡ଼ିଲି । ୮୦ ।
କ୍ରମେ ଚୋବିଲି ତା କାମ ଗରଳ । ଦନ୍ତୁ ଦନ୍ତୁ ହେଲା ମତି ଚଞ୍ଚଳ । ୮୧ ।
ସବୁ ଅସାର ଭଲା କାମ ଅନ୍ତ । ଜାରପ୍ରେମକୁ ମଣିଲି ବହୁତ । ୮୨ ।
ପତି ସମୀପେ ତା ପ୍ରେମ ଲୁଗ୍ନାଇ । ସୁଖେ ନେଉଥିଲି କାଳ କଟାଇ । ୮୩ ।
ଯେବେ ଦେଖେ ସ୍ୱାମୀ ପ୍ରେମ ଅଧିକ । ମନେ ହେଉଥିଲା ଜାତ କି ଦୁଃଖ ॥
ପୁଣି ପରକ୍ଷଣେ ଜାରେ ଅନାଇ । ଭୁଲି ଯାଉଥିଲି ତାଙ୍କୁ ନ ଗୁହିଁ । ୮୫ ।

---

୫୯ ପଦ । ସମର—ଯୁଦ୍ଧ ।
୬୩ ପଦ । କଞ୍ଚୁକୀ—ଅନ୍ତଃପୁର ରକ୍ଷକ ବୃଦ୍ଧବ୍ରାହ୍ମଣ ବା ନପୁଂସକ ।
୬୬ ପଦ । ଭାମିନୀ—କାମିନୀ । ଦାମିନୀ—ବିଜୁଳି ।
୭୫ ପଦ । ମାଧୁରୀ—ଶୋଭା । ୭୮ ପଦ । ଇତିବୃତ୍ତ—ଇତିହାସ ।

ଏତେ କପଟ କୁଟ ମୋ ଗୃହସ୍ତ । ବେଳେ ହେଲେ ସେ ନ ପାରିଲେ ଜାଣି ॥
କରୁଥିଲେ ସ୍ନେହ କେତେ ମତରେ । ଦେଉଥିଲି ମୁଁ ପକାଇ ଗତରେ । ୮୭ ।
ଦିନୁ ଦିନୁ ପରପ୍ରୀତି ପ୍ରବଳ । ଏକା ମଣିଲି ଜାରକୁ ସମ୍ବଳ । ୮୮ ।
ସତେ କାମର ଏଡ଼କ ପ୍ରଭାବ । କ୍ରମେ ସ୍ୱାମୀରେ ହେଲା ମୋ ଅଭାବ । ୮୯ ।
ଜାର ବୋଲରେ ତାଙ୍କୁ ଦେଲି ମାରି । ତାର ସଙ୍ଗତେ ବଞ୍ଚିଲି ଶର୍ବରୀ । ୯୦ ।
ଥିଲି ସେକାଳେ ସୁନ୍ଦରୀ ଯୁବତୀ । କିଏଁ ନ ହୁଅନ୍ତା ଜାର ଭୂପତି । ୯୧ ।
ଜାର ସ୍ନେହ ସହିତ ମୋ ଯୌବନ । କାଳକ୍ରମେ ଖସିଗଲେ ବହନ । ୯୨ ।
ଚନ୍ଦ୍ରାରୋଗ ପଶିଲା ମୋ ଶରୀରେ । ଗଲେ ହଜିଲେ ସୁଷମା ବ୍ୟାଧିରେ । ୯୩ ।
ଆଉ ଦେଖି ନ ପାରିଲା ସେ ମୋତେ । କହି ଦୋଷୁଣୀ ଭର୍ତ୍ସିଲା ପୁରତେ । ୯୪ ।
ଯହୁଁ ଜାର ଅଶ୍ରଦ୍ଧା ପ୍ରକାଶିଲା । ଈର୍ଷାବହ୍ନି ମୋ ହୃଦୟେ ଜଳିଲା । ୯୫ ।
ଯେହ୍ନେ କଜର ପତଙ୍ଗ ମାରଇ । ସେ କି ଆନ ପୁରୁଷକୁ ଡରଇ । ୯୬ ।
ବିଷ ପ୍ରୟୋଗ କଲି ମୁଁ ଜାରକୁ । କଇତବରେ ତା ଜୀବ ନେବାକୁ । ୯୭ ।
ଜାଣି ଲମ୍ପଟ ମୋହର କପଟ । ତାକୁ ଦିଶିଲା ନାହିଁ ବୁଦ୍ଧି ବାଟ । ୯୮ ।
ଯେହ୍ନେ ମନ ଦିଏ ପର ନାରୀକି । ସେତ କେଉଁ ଧର୍ମ ଥାଏ ଧରି କି । ୯୯ ।
ବଳେ କାଟିଲା କର୍ଣ୍ଣେ ଧରି ଛୁରୀ । ସ୍ତନ କାଟିବାକୁ ଥିଲା ବାହାରି । ୧୦୦ ।
ତାର ଭୟରେ ଆସିଛି ପଳାଇ । ମୋତେ ଦଣ୍ଡିବାକୁ ଆସେ ଗୋଡ଼ାଇ । ୧୦୧ ।
ପିତା ପତିଘର ଯଶ ଖାଇଲି । ତେଣୁ ସକଳ ବୃତ୍ତାନ୍ତ କହିଲି । ୧୦୨ ।
କଲିକରମ ମୋ ଦେଲା ଏ ଫଳ । ହେଲା ବଞ୍ଚିବା ଏଣିକି ବିଫଳ । ୧୦୩ ।
ହସି ଇନ୍ଦିରା କରଇ ପ୍ରକାଶ । ପ୍ରତିକୂଳ ଶିକ୍ଷାରେ ତୁ ଆଦର୍ଶ । ୧୦୪ ।
ଟାଣେ ଅଦେଶ କଞ୍ଚୁକୀଙ୍କ ଦେଇ । ଦେଲା ତା ମୁଣ୍ଡ ମୁଣ୍ଡିତ କରାଇ ॥
ଚିତା କୁଟାଇଲା ତାର ଗାଲରେ । ଲେଖି 'ବିଟପୀ ପଡ଼ନ୍ତୁ ପାଲରେ' ॥
ଦେଇ ନୃପଜା ଅନାଇ ଦୂରକୁ । ଦେଖେ ଦର୍ବାଳୟେ ଏକ ଚନ୍ଦ୍ରକୁ ॥
କରି ଅପେକ୍ଷା ରହିଲା ନନ୍ଦନୀ । ନାନା ଗଳପ କରନ୍ତି ସଙ୍ଗିନୀ । ୧୦୮ ।
ଦେଖୁ ଦେଖୁ ସେ ଚନ୍ଦ୍ର ପୁଂସ ରୂପ । ଜଣା ହେଲା ଆସି ଭ୍ରଷ୍ଟା ସମୀପ ॥
ନବ ନାଗର ପରି ଏ ଦିଶଇ । ପାନବଟା ନାଭି ତଳେ ଦୋଳଇ । ୧୧୦ ।
ମଲ୍ଲୀମାଳା କେତେ ଲମ୍ବେ ଗଳାରେ । ଓଷ୍ଠ ରଙ୍ଗିମା ତାମ୍ବୁଳ ବୋଳରେ ॥
ବେଣୀ ଚମ୍ପକ କର୍ଣ୍ଣେ ତା ଶୋଭଇ । କୁଞ୍ଚ ଉତ୍ତରୀୟ ରଙ୍ଗେ ଲମ୍ବଇ ॥
ଶୋଭେ ଗୋରଚନା ଚିତା କପୋଳେ । ମୁଦ୍ର ବିବିଧ ଅଙ୍ଗୁଷ୍ଠିକ ଫଳେ ॥
ବନ୍ଧ ଧମ୍ମିଲ୍ଲବନ୍ତ ସେ ଦିଶଇ । କରେ ଛୁରିକା ଧରିଛି ମୁଠାଇ । ୧୧୪ ।
ଫାଳ ଗଣ୍ଡ ପଡ଼ୁଅଛି ଦେହରେ । ରଙ୍ଗ ଲୋଚନ ବାରୁଣୀ ସ୍ନେହରେ ॥
ଦେଖି ଭ୍ରଷ୍ଟାକୁ ଧିକ୍କାର କହଇ । ସ୍ତନ କାଟିବ ଦୁଷ୍ଟା ଯିବୁ କାହିଁ ? । ୧୧୬ ।

---

୯୭ ପଦ । କଇତବ—କୈତବ, କପଟ ।
୧୦୭ ପଦ । ନୃପଜା—ରଜାଝିଅ ।
୧୧୪ ପଦ । ଧମ୍ମିଲ୍ଲବନ୍ତ—କେଶବିନ୍ୟାସପଟୁ ।

ପତି ମାର ହେଲା ଯେଣୁ ସାହସ । ଉପପତିଙ୍କ ମାରଣେ ତୋ ଅଶ । ୧୨୨ ।
କ୍ରୋଧେ ଅନ୍ଧ ହୋଇଥିଲା ସହଜେ । ତେଣୁ କହୁଗଲା ନାରୀସମାଜେ ॥
କ୍ଷେମା ଇଙ୍ଗିତେ ଦୂତେ ନେଲେ ଧରି । ଦେଲେ କାଟି ନାସା କର୍ଣ୍ଣ ଧିକାର
ଚେଡି ବିଷାଦେ ବସୁରେ ପ୍ରତ୍ୟୁଷ । କଲା କର୍ମକୁ ଭୋଗନ୍ତି ଅବଶ୍ୟ ॥
ଏହିକାଳେ ସନ୍ନ୍ୟାସୀଏ ପ୍ରବେଶ । ଦେଖେ ନୃପଜା ସଙ୍ଗେ ସଖୀବଂଶ ॥
ଦେଖି ଦଣ୍ଡିତ ପୁଂସଙ୍କୁ ନୟନେ । ତପୀ ତା ପାଶେ ଗଲା ଦୟାଗୁଣେ ॥
ଧର୍ମତନୟ ଚହ୍ନି ତାପସଙ୍କୁ । ମୁଖ ସଲଜ୍ଜେ ପୋତଇ ତଳକୁ । ୧୨୩ ।
ତପୀ ମାନସେ ଦ୍ୱିଧା ସ୍ମୃତି ବହି । 'ଧର୍ମପୁତ୍ର କି ତୁମ୍ଭେ' ପଚାରଇ । ୧୨୪ ।
ଅନୁତାପେ ଧର୍ମପୁତ୍ର କହଇ । କ୍ଷମା କର ତାପସ ଦୟା ବହି । ୧୨୫ ।
ତବ ଠାରେ କରିଛି ଅପରାଧ । ମୁହିଁ ହୀନାଚାରୀ ପାପୀ ନିର୍ବୋଧ । ୧୨୬ ।
ପ୍ରଭୋ ! ତବ ନାରୀ କୁତ୍ସା ରଟାଇ । ତାପେ ତାଙ୍କୁ ଦେଲି ବୃଥା ସନ୍ତାଇ । ୧୨୭ ।
ସତେ ସତୀର ଏମନ୍ତ ଗୌରବ । ହରି ଭୋଗାଇଲେ ଦଣ୍ଡ ଏ ଭାବ । ୧୨୮ ।
ତପୀ ପକାଇ ମନେ ନାରୀକଥା । ଚିତ୍ତେ କାତରେ ଲଭେ ଗରୁ ବ୍ୟଥା ॥
ତପୀ ବିଷାଦେ ସନ୍ଦେ ଭାବି ଭାବି । ସତେ ବଞ୍ଚିଥିବ କି ମୋ ମାନବୀ । ୧୩୦ ।
ପୃଚ୍ଛେ ପ୍ରିୟା ଅଛି କାହିଁ କହିବ । ଧର୍ମସୁତ ! ମୋ ମନ୍ତ୍ର ତାପ ଯିବ । ୧୩୧ ।
ତହୁଁ ଧର୍ମପୁତ୍ର ହୋଇ ବିନୟୀ । ଖେଦବିଗଳିତ ବାଣୀ କହଇ । ୧୩୨ ।
ଦେବ ! ଯେଉଁ ଦିନ ହେଲ ଅନ୍ତର । ତାର ପ୍ରେମଲାଭେ କଲି ଯନ୍ତର ॥
ତବ ବିରହେ ମୋର ଅତ୍ୟାଚାରେ । ଗୃହ ତେଜିଲା ସେ ସତୀ କାତରେ ॥
ଯହୁଁ ଧରିଲେ ତପସ୍ୱିନୀ ବେଶ । ମାତା କରାଇଲେ ଯୋଗ ଅଭ୍ୟାସ ॥
ବାକ୍ୟସିଦ୍ଧି ସିଦ୍ଧି କଲେ ସାଧନେ । କାଶୀଯୁଦ୍ଧେ ପରଖିଲେ ସୁଯଣେ ॥
ଏବେ ଚେଦିକି ହୋଇଛି ଗମନ । କେହ୍ନୁ ବନ୍ଦୀ ହେବ ତହିଁ ମୋଚନ ॥
ଲଭି ଅଶେ ଗୁପ୍ତଚରେ ବୃତ୍ତାନ୍ତ । ନିତି ଅଣୁଥିଲି ଯେବେ ଉଦନ୍ତ । ୧୩୮ ।
ଅହୁଁ ମାତା ଡାକିବାକୁ ଶିଖିଲି । ତେଣୁ ପାପକାହାଣୀ ମୋ କହିଲି ॥
ନୃପନନ୍ଦନୀ ଶୁଣି ଏ ବଚନ । ଚିତ୍ତେ ଚିନ୍ତା କରଇ ଅନୁକ୍ଷଣ । ୧୪୦ ।
କାଶୀ ସମରେ ମାୟା ରଚି ଧନୀ । କଲା ପରାସ୍ତ ମୋତେ ସନ୍ନ୍ୟାସିନୀ ।୧୪୧।
ଚେଦି ରଣେ ମୋ ହେବ ପରାଭବ । ରଖ କାଳି ତୋ ବିନା କେ ରଖିବ ॥
କ୍ଷେମା ତାପସେ ପ୍ରଣମି ବିଭ୍ରଷେ । ଜାଣେ ତାପସୀ କୁହୁକ ବିଶେଷେ ॥
ଶୁଣେ, ଯାଇଛନ୍ତି ଚେଦି ସମରେ । ବନ୍ଧୁ ନୃପଙ୍କ ପର ଉପକାରେ । ୧୪୪ ।
ମୋର ମାୟାଯୁଦ୍ଧେ ଅଙ୍ଗରାଜନ । ଭାବି ପରାସ୍ତ କରନ୍ତି ଶୋଚନ । ୧୪୫ ।
ନେଇଅଛନ୍ତି ତେଣୁ ତାଙ୍କୁ ରଙ୍ଗେ । ମାୟାଯୁଦ୍ଧ ରଚିବାକୁ ମୋ ସଙ୍ଗେ ॥
ଯେଉଁ ବନ୍ଦୀଲାଗି ଏତେ କନ୍ଦଳ । ଅଜ କାଳୀଙ୍କି ଦେବା ବଳି ମୂଳ । ୧୪୭ ।
ପୁଣି ଇନ୍ଦିରା ବିନୟେ ପଚାରେ । ସେ ତାପସୀ କି ତବ ମନୋହାରୀ ? ।୧୪୮।

---

୧୨୫ ପଦ । ତାପସ—ସନ୍ନ୍ୟାସୀ । ୧୨୭ । ପଦ । କୁତ୍ସା—ନିନ୍ଦା ।
୧୩୮ ପଦ । ଉଦନ୍ତ—ଖବର । ୧୪୭ ପଦ । କନ୍ଦଳ—ଗୋଳମାଳ ।

ଶୁଣି ଅଦ୍ୟପ୍ରାନ୍ତ ସର୍ବ ବୃତ୍ତାନ୍ତ । ତପୀ ସନ୍ଦ୍ରସ୍ତେ କହନ୍ତି ତ୍ୱରିତ । ୧୪୯ ।
ଦେବୀ ଭକ୍ତ କରନ୍ତି ଗ୍ରହଣ । ହିଂସା ଜଳରେ ପାପ ସଦା ଘେନ । ୧୫୦ ।
ସେମନେ ଅହିଂସା ଧରମ ବୁଝାଇ । ଚଳେଲେ ଇନ୍ଦର ମାନସ ମନାଇ ॥
ପୁଣି ବୋଇଲେ ଦକ୍ଷେ ବାଣୀ ଘେନ । ରଣେ କରାଇବା ମନ୍ତ୍ର ସ୍ଥାପନ ॥
ଚଣ୍ଡୀମନ୍ଦରେ ପ୍ରବେଶ ସକଳ । ରଣେ ସିଦ୍ଧାକୁ କଲେ ଅନୁକୂଳ । ୧୫୩ ।
ସନ୍ତୁ ମାନସ ତୋଷିବ ବଗୃହ । ନାନା ତରଙ୍ଗ ଗୋଲେକ ଜଡାର । ୧୫୪ ।

## ୭୭ଷ୍ଟିତମ ଛାନ୍ଦ

ରାଗ ଦଣ୍ଡି—(ଅଷାଢ଼ଶୁକ୍ଳବାଣୀ)

ମାର୍ତ୍ତଣ୍ଡ କଦାଘେ ମଧ୍ୟ ଗଗନେ ତପତ ଧରଣୀ ଖର କରଣେ,
ଶିରୀଷ ମଞ୍ଜୁଳ ଯାଧ ଝାଞ୍ଜିଲ ପଦ୍ମବନ୍ତୁ ଯାନ୍ତି ପଳାଇ ଅଳି ।
ମହୁକ ପଲ୍ଲବେ, ପତଙ୍ଗୀ କୂଜନ୍ତି ପାଦପ ଡାଳେ । ୧ ।
ନାଚେ ମୃଗ ସଙ୍ଗେ ପାନ୍ଥେ ପ୍ରାନ୍ତରେ ମାରେ ଶ୍ରମ ପାନ୍ଥ ବଟଛାୟାରେ,
ଗ୍ରୀବେ ଝାଇଁ ଝାଇଁ ବନେ ଝିଙ୍କାରୀ ଅସେ ଅଭିମନ୍ୟୁ ଦାବ ସଞ୍ଚର ।
ଚଣ୍ଡୀ ସୌଧଚୂଳ, ମୁଖରଇ ପାରାବତଙ୍କ ମେଳ । ୨ ।
ପ୍ରଶାନ୍ତେ ବିରାଜେ ଚଣ୍ଡୀ ଅଛାଳି ଗ୍ରାରକ ଗିହର ଶୋଭାରେ ଝଳି,
ବିବାଧ ଶିଳାରେ ଯେଣୁ ଖଚିତ ସରେ କି କହ୍ଲାର ପୁଷ୍କର ଦୀପ୍ତ ।
ପ୍ରଣୀତ ହିବେଣୀ, ଶାକ୍ତ ଭକ୍ତଙ୍କର ଯୋଗବାରେଣୀ । ୩ ।
ଚଣ୍ଡ କାରୁପୂର୍ତ୍ତି ନାଟଭବନ ଶୋହେ ଧନପୂର ଜଗମୋହନ,
ସିଂହଦ୍ୱାରେ ବେନି ସିଂହ ମୂରତ ଫୁଲାଇ କର୍କଶ ଶଟା ରାଜନ୍ତି ।
ନର ନାରୀ କେତେ, ଗଲେ ଦେବୀ ଦରଶନେ ତ୍ୱରିତେ । ୪ ।
ବିରୂପାକ୍ଷ ବକ୍ଷବିଳାସିନୀଙ୍କି ଲକ୍ଷ୍ୟ କରି କହା ମାଗେ କେ ଡାକି
ଦାକ୍ଷାୟଣୀ ବୋଲି କରେ କେ ସ୍ତୁତି ରୁକ୍ଷ ରକ୍ଷ ନାଶୁ ତୁ ଜଗଦ୍ଧାତ୍ରୀ ।
ମୋକ୍ଷଦା ମା ତୁହି, ଅରକ୍ଷକୁ ରଖ ଆନ କେ କହି । ୫ ।
ତପିଗହଣରେ ନାଟମନ୍ଦରେ ଅହିଂସା ମୀମାଂସା ଇନ୍ଦର କରେ,
ଝାଳ ବିନ୍ଦୁ ବିନ୍ଦୁ ମୁଖେ ବିରାଜେ ଜଷା ତୁଷାର କି ସାର ସରୋଜେ ।
ଅବା ଇନ୍ଦ୍ରନୀଳ, ବିଷଦ ଦରପଣେ ଟଳ ଟଳ । ୬ ।
ସନ୍ନ୍ୟାସୀଙ୍କି ପୃଚ୍ଛେ ଇନ୍ଦର ଧୀରେ ହିଂସା ବୋଲି କିଛି ନାହିଁ ସଂସାରେ,
ଅତ୍ମା ଅବିନାଶୀ ନିତ୍ୟ ଅବ୍ୟୟ ଏକ ବ୍ରହ୍ମ ଯେଣୁ ନାହିଁ ଦ୍ୱିତୀୟ ।
କେ ମାରେ କେ ମରେ, ଅତ୍ମା ଯେ ଅନଶ୍ୱର ସାଂଖ୍ୟଯୋଗରେ । ୭ ।
ଅତ୍ମା ସତରୂପୀ ସତ୍ତ୍ୱ ଅଟଇ ଅଜ ଜନ୍ମାନ୍ତର ତାହାର ନାହିଁ,
ମାୟାଯନ୍ତ୍ରେ ଗୃହେ ସକଳ ହର ଜୀବ ଫଳଭାଗୀ ହେବ କି କର ।
ବୃକ୍ଷେ ଅଛୁ ଜୀବ, ଜୀବହିଂସା ବିନା କିଏ ବଞ୍ଚିବ । ୮ ।

ଉଦ୍ଧବ ବଚନ ସ୍ଵାମୀ ଶୁଣି ଭାଷନ୍ତେ ଶୁଣ ଧୀରେ ରାଜନନ୍ଦନ !
ଜ୍ଞାନ ନୋହେ କଷ୍ଟ ସାଧନା ବିନା ସହଜେ କି ଜୀବ ବ୍ରହ୍ମ ଚେତନା
ବାହ୍ୟଜ୍ଞାନ କେତେ ? ଧରିଲେ କି ହୋଏ ଜ୍ଞାନ ଯୁକତେ । ୯ ।

ବ୍ରହ୍ମ ସଂଜ୍ଞା ଯାହା ଉହାଲ ସତ ଜ୍ଞାନସ୍ଵରୂପଟି ଘେନ ଯେମନ୍ତ,
ସର୍ବ ଚରାଚରେ ଆତ୍ମା ବିଳସେ ସର୍ବବିଧ ଜୀବ ଭାବ ପ୍ରକାଶେ ।
ଏ ବିଶ୍ଵ ଅଖିଳ, ପ୍ରତିଷ୍ଠିତ ପରଂବ୍ରହ୍ମେ କେବଳ । ୧୦ ।

ଷେତ୍ରରୂପେ ସର୍ବବିଧ ଶରୀର କ୍ଷେତ୍ରଜ୍ଞ ରୂପରେ ଆତ୍ମା ଈଶ୍ଵର,
ସର୍ବଭୂତେ ସେହି ଆତ୍ମା ଅଭେଦ୍ୟ ଈଶ୍ଵର ହିଁ ସବୁ ସଂସାର ମଧ୍ୟ ।
ଆତ୍ମା ପର ଭେଦ—ନାହିଁ, ଦେଖେ ଜ୍ଞାନୀ ସର୍ବ ଗୋବିନ୍ଦ । ୧୧ ।

ବିଶେଷି କହୁଛୁ ଶୁଣ ଟିକେ ଧୀରେ ଜୀବାତ୍ମା ତ୍ରିବିଧ ଦେହେ ବିହରେ
ପ୍ରଥମ ସ୍ଥୂଳ ଦେହ ଜାମିଣ ସୁଖ ଦୁଃଖାଦିକ ଭୋଗକେନ୍ଦ୍ରନ ।
ବିନାଶ ଯେ କ୍ଷିତି, ଅନ୍ନପାନାଦିରେ ପୁଷ୍ଟି ଏହାର । ୧୨ ।

ସୂକ୍ଷ୍ମ ଦେହ ଧୀର । ଉର ଯୁ ଲୟୁ ପଞ୍ଚ କର୍ମ ପଞ୍ଚ ଜ୍ଞାନେନ୍ଦ୍ରିୟ
ପଞ୍ଚ ପ୍ରାଣ ମନ ବୁଦ୍ଧିକି ବହି ସୁଖ ଦୁଃଖମାନ ଭୋଗ କରଇ ।
କର୍ମରୁ ଉଦ୍ଭୂତ, ଅପଞ୍ଚୀକୃତ ପଞ୍ଚ ମହାଭୂତ । ୧୩ ।

ଅନାଦି ଅବିଦ୍ୟା ସ୍ଵରୂପ ଯେହି ତାହାକୁ କାରଣ ଶରୀର କହି,
ସ୍ଥୂଳ ସୂକ୍ଷ୍ମର ଏ କାରଣ ଘେନ ଆତ୍ମା ଏ ସବୁଠୁଁ ଅଟଇ ଭିନ୍ନ
ଘେରେ ମାୟାବିଷ, ଆତ୍ମାନାରକୁ ନ ଧାରଇ ଲେଶ । ୧୪ ।

ପାପ ପୁଣ୍ୟ ଘେନି ଜୀବ ସଂସାରେ ସପ୍ତଲୋକେ ମାୟାବଶେ ବିହରେ,
ପ୍ରକୃତି ପୁରୁଷ ଯୋଗେ ସଂସାର ବିଯୋଗରେ ମୋକ୍ଷଲାଭ ବିଗ୍ରହ ।
କାମନାର ତ୍ୟାଗୀ,—ଜ୍ଞାନୀ ଏ ହୁଅନ୍ତି କୈବଲ୍ୟଭୋଗୀ । ୧୫ ।

ଇଚ୍ଛାରୁ କାମ ଯେ କାମୁଁ ବାସନା ପୁନର୍ଜନ୍ମକୁ ସେ କରଇ ସିନା,
ଚିତ୍ତବୃତ୍ତି ଯେବେ ହୁଏ ନିରୋଧ ତେବେ ହୁଏ ଆତ୍ମଜ୍ଞାନର ବୋଧ ।
ସଂସାରେ ନିର୍ଲିପ୍ତ, ହେଲେ ହୁଏ ଈଶପ୍ରଣୟ ପ୍ରାପ୍ତ । ୧୬ ।

ସ୍ଥୂଳ କଳେବର ଦୁଇ ପ୍ରକାରେ ଯୋନିଜ କେ ଅଯୋନିଜ ସଂସାରେ,
ଯୋନିଜ ବିଧିରେ ପ୍ରଭେଦେ ଦୁଇ ଜରାୟୁଜ କେହି ଅଣ୍ଡଜ କେହି ।
ଉଦ୍ଭିଜ କଳଜ, ସ୍ଵେଦଜ ତେଜସ ଯେ ଅଯୋନିଜ । ୧୭ ।

---

୧୨ ପଦ । ପଞ୍ଚଭୂତ—କ୍ଷିତି, ଅପ , ତେଜ, ମରୁତ୍ ଓ ବ୍ୟୋମ ।

୧୩ ପଦ । ପଞ୍ଚ କର୍ମେନ୍ଦ୍ରିୟ—ବାକ୍, ହସ୍ତ, ପଦ, ଗୁହ ଓ ଲିଙ୍ଗ । ପଞ୍ଚ ଜ୍ଞାନେନ୍ଦ୍ରିୟ—ଚକ୍ଷୁ , କର୍ଣ୍ଣ, ନାସା, ଜିହ୍ଵା ଓ ତ୍ଵକ୍ । ପଞ୍ଚପ୍ରାଣ—ପ୍ରାଣ, ଅପାନ, ବ୍ୟାନ, ଉଦାନ ଓ ସମାନ । ୧୫ ପଦ । ସପ୍ତଲୋକ—ଭୂ, ଭୁବ, ସ୍ଵ, ମହ, ଜନ, ତପ ଓ ସତ୍ୟ । ୧୬ ପଦ । ଚିତ୍ତବୃତ୍ତି—ପ୍ରମାଣ, ବିପର୍ଯ୍ୟୟ, ବିକଳ୍ପ, ନିଦ୍ରା, ସ୍ମୃତି । ମନର ଅବସ୍ଥା—କ୍ଷିପ୍ତ, ମୂଢ଼, ବିକ୍ଷିପ୍ତ, ଏକାଗ୍ର ଓ ନିରୁଦ୍ଧ ।

ଏବେ ଶୁଣ ଦେଖ ଜୀବାତ୍ମା ଯାହା — ଲିଙ୍ଗ ଶରୀରଭିମାନୀଟି ଏହା
ଜଡ଼ ରହିଥାଏ ଅଷ୍ଟ ପାଶରେ — ଏ ସ୍ଥୂଳ ଶରୀର ଭୋକ୍ତାବଧିରେ ।
ପଞ୍ଚକୋଷାତୀତ, ଆତ୍ମା ଯେ ଅଟଇ ଘେନ ଏ ତତ୍ତ୍ୱ । ୧୮ ।

ହିଂସା ପ୍ରାଣିବଧ ପ୍ରାଣିପୀଡ଼ନ — ଏ ଦୁଇ ପ୍ରକାରେ ନନ୍ଦନ ! ଘେନ,
ଏ କର୍ମ ହୁଅଇ ଷଡ଼୍ରିପୁ ଧାନେ — ଚିତ୍ତାଭିଗୃହର ବଶୀକରଣେ
ମୋହନେ ସ୍ତମ୍ଭନେ, ଉଚାଟନେ ବିଦ୍ୱେଷଣେ ମାରଣେ । ୧୯ ।

ଫଳ ମୂଳ ଶାକ ଭକ୍ଷିଲେ ଜୀବ — ହିଂସା ନ କରି ସେ ବଞ୍ଚି ରହିବ,
ବୈଧ ହିଂସା ହୁଏ ହିଂସାରେ ଲେଖା — ଅହିଂସ୍ରେ ହିଂସା ତ ନ ହୁଏ ଦେଖା
ପ୍ରମାଣ ପ୍ରମାଣ, ବ୍ୟାଘ୍ର ସଙ୍ଗେ ଋଷି ସେବନ୍ତି ବନ । ୨୦ ।

ଆତ୍ମା ପର ବୋଧଜ୍ଞାନ ପରେ — ଅଛି ଗୋ ନନ୍ଦନ ! ଶରୀରେ ବିସ୍ତର,
ପୀଡ଼କ ସନ୍ତାପ ଭୋଗାଏ ପ୍ରାଣୀ — ଜ୍ଞାନକୃତ ପାପେ କି ଗତି ପୁଣି ?
ନ୍ୟାୟ, ଦୟା ଗୁଡ଼, ଘଳେ କାମକ୍ରୋଧ ଅସନ୍ତ ମାଡ଼ । ୨୧ ।

ଅବିଦ୍ୟାରେ କାମକ୍ରୋଧାଦି ଜାଣ — ଭବବନ୍ଧନକୁ କରନ୍ତି ଠାଣ,
ବିଦ୍ୟା ରହେ ତେଣୁ ବଳେ ନିଚ୍ଚୁର୍ଣ୍ଣି — ନୀଚ ହରମକୁ ବଳଇ ମତି ।
ଦୁଃଖଶୋକଦାମୀ, ହିଂସାକୁ ଡରନ୍ତି ସଦା ସୁଜ୍ଞାନୀ । ୨୨ ।

ସାତ୍ତ୍ୱିକ ଭାବରେ ସମସ୍ତ କର୍ମ — କରିବା ଅଟଇ ଶାସ୍ତ୍ର ନିୟମ,
ଜଳବାତାଦିରେ ଅଛନ୍ତି ଜୀବ — ଜୀବ ଭକ୍ଷି ଜୀବ ପ୍ରାଣ ଧରିବ
ଏ ଅଜ୍ଞାତ ପାପ, ହର ଭକ୍ତ କରେ ଶ୍ରୀହରି ଜପ । ୨୩ ।

ନିଜ ଦୁଃଖ ସୁଖ ସମାନ ଗଣି — ପର ସୁଖ ଶାନ୍ତି କରଇ ଜ୍ଞାନୀ,
କାୟ ମନୋବାକ୍ୟେ କାର ଉଦ୍‌ବେଗ — ନ ଅଣିବା ପିନା ପରମ ଯୋଗ ।
ନୁହଇ ଉଚିତ, ଯା ନୁହଇ କାର କହିବା ହିତ । ୨୪ ।

ଈଶ୍ୱରଲୀଳାରେ ବିହିଲେ ବାଧା — କୃତଘ୍ନର କାହିଁ ଗତି ସୁବିଧା
ଜନ୍ମାନ୍ତର ସ୍ମୃତି ଆତ୍ମାର ନାହିଁ — ଜୀବାତ୍ମା କର୍ମକୁ ଘେନି ଜନ୍ମଇ
ବିଭିନ୍ନ ଯୋନିରେ, ଗତି ନ ପାଇବାଯାଏ ସଂସାରେ । ୨୫ ।

ଈଶ୍ୱରସେବା ଯେ ଜୀବଙ୍କ ସେବା — ଆତ୍ମତ୍ୟାଗକୁ ତ ଯଜ୍ଞ କହିବା
ହିଂସା ଦୂରେ ଥାଏ ଯା ତତ୍ତ୍ୱଜ୍ଞାନ ! — ଜଗଜ୍ଜନନୀ କି ଖାଏ ସନ୍ତାନ
ଭଲ କର୍ମଫଳ, ପର ପର ଜନ୍ମେ ଭୋଗିବା ମୂଳ । ୨୬ ।

ଅଟଇ ସଂଶୟ ଜ୍ଞାନ ଅଭାବ — ସଂକ୍ଷେପେ କହଇ ନନ୍ଦନ ! ଧର
ଜନ୍ମ ଦୁଃଖ ମୃତ୍ୟୁ ଦୁଃଖାନୁଧ୍ୟାନ — ସହିଷ୍ଣୁତା ଅହିଂସା ଆଦି ଘେନ
ବ୍ୟାଧି ଜରା ଆଦି, ଦୋଷ ବିଗ୍ରହକୁ ଜ୍ଞାନେ ସମାଧି । ୨୭ ।

---

୧୮ ପଦ । ଅଷ୍ଟ ପାଶ—ଘୃଣା, ଅପମାନ, ଲଜ୍ଜା, ମାନ, ମୋହ, ଦମ୍ଭ, ଦ୍ୱେଷ ଓ ବୈଗୁଣ୍ୟ । ପଞ୍ଚକୋଷ—ଅନ୍ନମୟ କୋଷ, ପ୍ରାଣମୟ କୋଷ, ମନୋମୟ କୋଷ, ବିଜ୍ଞାନମୟ କୋଷ ଓ ଆନନ୍ଦମୟ କୋଷ ।

୨୦ ପଦ । ବୈଧ—ଶାସ୍ତ୍ରାନୁମୋଦିତ ।

ରୂପରସାଦିକ ଅଜ୍ଞାନୀ ଯହିଁ ଦେଖେ, ଜ୍ଞାନୀ ନ ଦେଖଇ ସେ ତହିଁ
ଅପ୍ରାକୃତ ଲୀଳା ଈଶ୍ୱରଙ୍କର ଅସ୍ୱକ୍ଷ୍ଟ ଜ୍ଞାନ ନାମ ଏହାର
ଅଜ୍ଞାନୀର ଯାହା, ବୈଷୟିକ ଭାବନାଶ୍ଥ ତାହା । ୨୮ ।
ବୈଷୟିକ ଭାବନାଷ୍ଟାରେ ଯେଉଁ ତମଗୁଣ ଜୀବେ ଦେଖା ପ୍ରାଧାନ୍ୟ
ରଜଅଂଶ ରହେ ତମ ସଙ୍ଗତ ସତ୍ତ୍ୱକୁ ନେଇ ସେ ଦୂରେ ଥିଆନ୍ତି
ସତ୍ତ୍ୱ ହେଲେ ଦୂର, ପ୍ରଶସ୍ତ କରନ୍ତି ନରକଦ୍ୱାର । ୨୯ ।
ଶୁଣି ତପିଷ୍ଠପ ଇନ୍ଦର ଭଣି ସକଳେ ଇନ୍ଦ୍ରିୟ ସମାନ ଗଣି
ଜ୍ଞାନୀ ଅଜ୍ଞାନର ପ୍ରଭେଦ କସ ଲିପି ସଂଶୟ ମୋ ଫେଡ଼ ତାପସ ।
ଭଣଇ ସନ୍ନ୍ୟାସୀ, ସଂକ୍ଷେପରେ ସାଂଖ୍ୟ ମଧୁରର ଲିପି । ୩୦ ।
ଈଶ୍ୱର ତ୍ରିଗୁଣାତ୍ମିକା ପ୍ରକୃତ ତହିଁରୁ ମହତ୍ତତ୍ତ୍ୱର ଉତ୍ପତ୍ତି
ମହତ୍ତତ୍ତ୍ୱରୁଁ ଜାତ ଯେ ଅହଙ୍କାର ତହୁଁ ପଞ୍ଚମହାଭୂତ ବାହାର
ହେରେ ପଞ୍ଚ ଏହି, ଏକାଦଶ ଇନ୍ଦ୍ରିୟ ଯୁକ୍ତ ଦେହୀ । ୩୧ ।
ପଞ୍ଚ ମହାଭୂତେ ଯେ ଗୁଣ ପାଞ୍ଚ ପଞ୍ଚ ଜ୍ଞାନେନ୍ଦ୍ରିୟ ବିଷୟ ପଞ୍ଚ
ଇନ୍ଦ୍ରିୟଙ୍କ ନାଥ ଅବ୍ୟକ୍ତ ମନ ସଂଖ୍ୟା ହେଲ ଚତୁର୍ବିଂଶ ଏ ଯେଉଁ
ଏହାର ତତ୍ତ୍ୱକୁ, ଜାଣଇ ଯେ ଜାଣେ ତତ୍ତ୍ୱଜ୍ଞାନକୁ । ୩୨ ।
ଜ୍ଞାନୀ ସତ୍ତ୍ୱଗୁଣେ କରଇ କର୍ମ ରଜ ତମ ଦାସ ଯେଉଁ ଅଜ୍ଞାନ
ଅଜ୍ଞାନଙ୍କ ଷଡ଼ରିପୁ ପେଷନ୍ତି ସତ୍ତ୍ୱଗୁଣୀ ପାଶେ ଡର ନ ଯାନ୍ତି
ସତ୍ତ୍ୱଗୁଣୀ ଗୁଣ, କହିବା କେତେକ ନନ୍ଦନ ! ଶୁଣ । ୩୩ ।
ବୋଲି କ୍ଷମା, ଶକ୍ତି ସତ୍ତ୍ୱେ ମାର୍ଜନ ଜୀବ-ଅପୀଡ଼ନ ଅହିଂସା ଯେଉଁ
ସମତା ଅପ୍ରିୟ ପ୍ରିୟ ସମାନ ଭୋଗ ସଂଯମନ ତପେ ଆଖ୍ୟାନ
ଦମ ସଂଜ୍ଞା ଯେଉଁ, ଇନ୍ଦ୍ରିୟ ଅଯଥା କର୍ମେ ଦମନ । ୩୪ ।
ଯେ କର୍ମ ଶେଷରେ ନୋହେ ଅନର୍ଥ ହୁଏ ସିଦ୍ଧ ଯହିଁ ପ୍ରାଣୀଙ୍କ ହିତ
ବୋଲିଏ ସେହି ଯେ ସତ୍ୟ ଜଗତେ ଦାନ ପ୍ରବସ୍ତୁକୁ ଦେଲେ ନିଃସ୍ୱାର୍ଥେ
ଏ ବୋଲିଏ ଶମ, କାମ୍ୟ ବସ୍ତୁଠାରୁ ଚିତ୍ତସଂଯମ । ୩୫ ।
ଯଥାଲଭେ ନିତ୍ୟ ତୁଷ୍ଟି ଯା, ତୁଷ୍ଟି ସତ୍କର୍ମ ପୋଷଣେ ଯଶର ସୃଷ୍ଟି
ଦେହ ମନ ମଳିନତା ଦୂରରେ ଯାହା ବୋଲିଏ ସେ ଶୌଚ ବିଧିରେ
ଅସ୍ତେୟ ଏ ଯେଉଁ—ନ କରିବା ପରଦ୍ରବ୍ୟ ହରଣ । ୩୬ ।
ଦୁଃଖ ସମର୍ଥରେ ଉତଳା ହୋଇ ଜିହ୍ୱୋପସ୍ଥ ଜୟ ଧୃତି ବୋଲଇ
ଶ୍ରୁତି ସ୍ମୃତି ପୁଣି ଯା ସଦାଗ୍ରହ ସକଳ ଆତ୍ମାକୁ ପ୍ରିୟ ବିଗ୍ରହ
ଏ ଗୁଣଙ୍କି ଯେଉଁ, ସାକ୍ଷାତ ଅଟନ୍ତି ଧର୍ମଲକ୍ଷଣ । ୩୭ ।

---

୩୧ ପଦ ତ୍ରିଗୁଣ—ସତ୍ତ୍ୱ, ରଜ ଓ ତମ । ମହତ୍ତତ୍ତ୍ୱ—ବୁଦ୍ଧି । ଏକାଦଶ ଇନ୍ଦ୍ରିୟ—ପଞ୍ଚ କର୍ମେନ୍ଦ୍ରିୟ, ପଞ୍ଚ ଜ୍ଞାନେନ୍ଦ୍ରିୟ ଓ ମନ ।

୩୩ ପଦ । ଷଡ଼ରିପୁ—କାମ, କ୍ରୋଧ, ଲୋଭ, ମୋହ, ମଦ ଓ ମାତ୍ସର୍ଯ୍ୟ ।

ଜ୍ଞାନର ଆନ୍ତ ଏ ମହତ ଗୁଣେ　　ନ ଥା ପାପ ତାପ୍ୟ ମନ ବଚନେ
ଅନୁକୂଳ ଭାବେ ଶତ ପ୍ରସାଦ　　ପ୍ରତିକୂଳ ଭାବେ ତ ଅପ୍ରସାଦ
ହେଲେ ସୁଖ ଦୁଃଖ-ସଂଜାତ, ନୁହନ୍ତି ଜ୍ଞାନୀ ବିମୁଖ । ୩୮ ।
ଦେଶ କାଳ ପାତ୍ର ଭେଦରେ ଏହି　　ସୁଖ ଦୁଃଖ ବେଦନ ଉଦୟ ହୋଇ
ଚକ୍ଷୁ କର୍ଣ୍ଣ ନାସା ଆଦି ଇନ୍ଦ୍ରିୟ　　ରୂପ ରସ ଗନ୍ଧ ଆଦି ବିଷୟ
ତାଙ୍କ ସଂଯୋଗରେ, ହୁଅଇ ପଦାର୍ଥଜ୍ଞାନ ଅନ୍ତରେ । ୩୯ ।
ଏ ପରି ସଂଯୋଗେ ଉଷ୍ଣତା ଶୈତ୍ୟ　　ସୁଖ ଦୁଃଖ ଆଦି ହୁଅନ୍ତି ଜାତ
ଯେଣୁ ଏ ସଂଯୋଗ ନିତ୍ୟ ନୁହଇ　　ଅସେ ଯାଏ ତାର ଇୟତ୍ତା କାହିଁ ?
ଜ୍ଞାନୀଏ ସହନ୍ତି, ଏହାର ମର୍ମକୁ ସେହି ଜାଣନ୍ତି । ୪୦ ।
କେ ମାରେ କେ ମରେ ନାହିଁ ଏମନ୍ତ　　ପ୍ରବୃତ୍ତିରେ ହିଂସା ଅହିଂସା ମାତ୍ର
ଅହଂଭାବେ କରେ ସକଳ ଅଜ୍ଞ　　ହର ଶତ୍ରେ ଚନ୍ଦ୍ରେ ସତତ ପ୍ରାଜ୍ଞ
ଦୋଷ ପାପମାନ, ନ ପରଶେ କେବେ ଜ୍ଞାନୀର ମନ । ୪୧ ।
ଅଜ୍ଞର ଚିତ୍ତଟି ସଦା ଚଞ୍ଚଳ　　ବୋଧୁ ଚିତ୍ତବୃତ୍ତି ପ୍ରାଜ୍ଞର ସ୍ଥିର
ଫଳ କାମନାରେ ଅଜ୍ଞର କର୍ମ　　ତେଣୁ ମାୟା ତାକୁ କରେ ବିଭ୍ରମ
ଜ୍ଞାନୀ ନିଷ୍କାମରେ, ନିତ୍ୟ ଶାନ୍ତି ସୁଖ ଧରି ବିହରେ । ୪୨ ।
କାମେ ବା ନିଷ୍କାମେ କର୍ମର ଫଳ　　ଅବଶ୍ୟ ଫଳଇ ଶତ୍ରେ ବିଗ୍ଭର
ନିଷ୍କାମ ଫଳଇ ନିତ୍ୟ ଶାନ୍ତିକି　　କାମନାର ଫଳ ଅନିତ୍ୟ ଦେଖି
ହୋଇ ଶୁଦ୍ଧଜ୍ଞାନୀ, ଅହିଂସା ଆଚର ନୃପନନ୍ଦିନୀ ! ୪୩ ।
କାମନା ବ୍ୟାସାର୍ଦ୍ଧ ଦୁଃଖ ପରିଧି　　ବ୍ୟାସାର୍ଦ୍ଧ ବୃଦ୍ଧିରେ ପରିଧି ବୃଦ୍ଧି
ଲଭେ ଧରି କାମ, ସୁଖ ହରଇ　　ହର ବୃଦ୍ଧି ଲଭ ନିତ୍ୟନ କରେ
ଶାନ୍ତି ସେହିପରି, ହରେ ଲଭେ ବୁଝ ନୃପକୁମାରୀ ! ୪୪ ।
ଇନ୍ଦିରା ଭଣଇ ହୋଇ ବିନୀତା　　କୃତାର୍ଥ ହେଲି ମୁଁ ନାଶ ମୋ ଚିନ୍ତା
ଗତକ ସହଜ ଉପାୟ କହ　　ସଂସାରୁ ଯେମନ୍ତେ ତୁଟିବ ମୋହ
ତ୍ରିତାପ ପୀଡ଼ନ, ସତତ ଅଥୟ କରଇ ମନ । ୪୫ ।
ତାପସ ଭଣଇ ବହି ପୁଲକ　　ଜୀବନ ଈଶ୍ୱରଲାଭେ ସାର୍ଥକ
ଅଶେଷ ପ୍ରକାରେ ଗତିକ ପଥ　　କେ ଜାଣିବ ଅବା ଶ୍ରୀହରିର ଅନ୍ତ
ଘେନ ସାଧୁ କଥା, ତତ୍ତ୍ୱଜ୍ଞାନ ହେଲେ ତୁଟଇ ଚିନ୍ତା । ୪୬ ।
ତତ୍ତ୍ୱଜ୍ଞାନ ମିଳେ ତିନି ପ୍ରକାରେ　　ସାଧନ ଭକତି ଯୋଗବଳରେ
ଗୁରୁରୂପେ କୃଷ୍ଣକୃପା ଯାହାକୁ　　ଲଭଇ ବିଧିରେ ତତ୍ତ୍ୱଜ୍ଞାନକୁ
ଭବପାରାବାର, ଗୁରୁ-କର୍ଣ୍ଣଧାର କରନ୍ତି ପାର । ୪୭ ।
ସାଧନ ଚତୁର୍ବିଧ ତହିଁରୁ ଏକ　　ଅଟେ ନିତ୍ୟାନିତ୍ୟ ବସ୍ତୁବିବେକ
ଇହାମୁତ୍ରାର୍ଥର ଫଳଭୋଗର　　ବିରାଗ ଦ୍ୱିତୀୟେ, ଅନ୍ତର ଧର
ମୁମୁକ୍ଷୁତ୍ୱ ଧନ ! ଶମାଦିସାଧନସମ୍ପତ୍ତି ପୁଣି ! ୪୮ ।

---

୪୮ ପଦ । (୧) ନିତ୍ୟାନିତ୍ୟବସ୍ତୁବିବେକ—ଏକମାତ୍ର ବ୍ରହ୍ମ ନିତ୍ୟ ଓ ଆଉ ସବୁ ଅନିତ୍ୟ ଏହିରୂପ ଜ୍ଞାନ । (୨) ଇହାମୁତ୍ରାର୍ଥ ଫଳଭୋଗ ବିରାଗ—ଇହ ଲୋକରେ ନାନା କାମ୍ୟ-

ଯୋଗକଥା ଏବେ ଶୁଣ ଉଦ୍ଧବ  ଜ୍ଞାନ-କର୍ମ ମନୋଯୋଗ ଏ ସର୍ବ ।
ପରମାତ୍ମା ସଙ୍ଗେ ଜୀବାତ୍ମା ଯୋଗ  କରିଦେଲେ ଏହି ବୋଲାଏ ଯୋଗ
ଗୋଟି ଗୋଟି ଘେନ, ଜ୍ଞାନ-କର୍ମ-ମନୋଯୋଗ ଲକ୍ଷଣ । ୪୯ ।

ଜ୍ଞାନରେ ସ୍ୱରୂପ ଯାଏଛି ଜଣା  ଜୀବରୁ ଅଭେଦ ବ୍ରହ୍ମକଳ୍ପନା
କର୍ମେ ସର୍ବ କର୍ମଫଳ ଅର୍ପଣ  ମନୋଯୋଗେ ପୂଜା ଜପ ତର୍ପଣ
ମନର ହରଣ, ଯୋଗାଙ୍ଗ ଅଷ୍ଟଙ୍କୁ କହୁବା ଶୁଣ । ୫୦ ।

ଏ ଯମ ନିୟମ ଆସନ ସିନା  ପ୍ରାଣାୟାମ ପ୍ରତ୍ୟାହାର ଧାରଣା
ଧ୍ୟାନ ସମାଧିର ପରେ ଯେ ସିଦ୍ଧି  ସେ ସିଦ୍ଧି କି ନୋହେ ଅମୂଲ୍ୟ ନିଧି ।
ଚିତ୍ତବୃତ୍ତି ସ୍ଥିର, ନ କଲେ ସିଦ୍ଧି ନ ହୁଏ କାହାର । ୫୧ ।

କୃଷ୍ଣଜ୍ଞାନଲାଭ ଉପାୟ ନାମ  କହନ୍ତି ଭକତ ଧୀର ଉତ୍ତମ
ଏ ମାର୍ଗ ସାଧନା ଜାଣ ସୁଲଭ  ହରିପ୍ରେମ ହୁଏ ଏଥିରେ ଲଭ
ଭକ୍ତର ବିନାଶ, ନାହିଁ କେଉଁକାଳେ ଚେତ ଏ ଭାଷ । ୫୨ ।

ଉଚ୍ଚାଧିକାରୀ ଯେ ମନ୍ଦାଧିକାରୀ  ଭେଦେ ଦ୍ୱିଧା ଭକ୍ତି ଘେନ ବିଚାରି
ଉଚ୍ଚାଧିକାରୀଙ୍କି ବିଧାରେ ଲେଖା  ଅହୈତୁକୀ ରାଗାତ୍ମିକା ଯେ ମୁଖ୍ୟା
ବୈଧୀ ହୈତୁକୀ, ଗୌଣ ଏ ମନ୍ଦାଧିକାରୀଙ୍କେ ଲେଖି । ୫୩ ।

ଆଗେ ନିଷ୍ଠା ତଦନ୍ତର ଭକତ  ଭକତରୁ ଭାବ ଆସେ ଫୁଟିତ
ଭାବୁଁ ମହାଭାବ ହୁଏ ଜନମ  ମହାଭାବୁଁ ଆସେ ବାଧିରେ ପ୍ରେମ
ଏ ଭକ୍ତର ନିଧି, ରାମ କାମ ପରି ବାଟେ ଏ ସିଦ୍ଧି । ୫୪ ।

ମଜ୍ଜାଗତ ପ୍ରାଣ ସତ୍ୟରେ ଯେଣୁ  ଧ୍ୟାନ କରି ଥୋକେ ତରିଲେ ତେଣୁ
ଅସ୍ଥିଗତ ପ୍ରାଣେ ଯଜ୍ଞକୁ କରି  ତ୍ରେତୟାରେ ଗଲେ ତରି ଅଧୁରି
ମାଂସଗତ ପ୍ରାଣ. ଦ୍ୱାପରେ ସେବିଲେ ହରିଙ୍କ ଜନ । ୫୫ ।

କଳିରେ ଚର୍ମଗତ ପରାଣ  ଶ୍ରୀହରିଙ୍କି ତେଣୁ କର ଭଜନ
ଆନ ଉପାୟକୁ ନାହିଁ ଶକତ  ନିଷ୍କାମ କର୍ମରେ ବଳାଅ ମତ
କର୍ମର ଫଳକୁ, ଅର୍ପଣ କର ଯେ ରାଧାଶ୍ୟାମଙ୍କୁ । ୫୬ ।

ଉଦ୍ଧବ କହଇ ଭକ୍ତି ମହତ୍ତ୍ୱ  ବୁଝାଇ କହିଲ ହେ ମୁକୁନ୍ଦାନ୍ତ
କେତେ ପ୍ରକାରରେ ଭକ୍ତି ହୁଅଇ  କହ ସଂଶୟ ମୋ ଯାଉ ପଳାଇ
ଶିଷ୍ୟା ମୋତେ ଜାଣି, କି କର୍ତ୍ତବ୍ୟ ମୋର ଭଣ ଏକ୍ଷଣି । ୫୭ ।

---

ବସ୍ତୁର ଭୋଗ ଓ ପରଲୋକରେ ସ୍ୱର୍ଗାଦି ସୁଖଭୋଗରେ ଅଭିଳାଷଶୂନ୍ୟ । (୩) ଶମାଦି ସାଧନ ସମ୍ପତ୍ତି—ଶମ, ଦମ, ଉପରତି, ତିତିକ୍ଷା, ଶ୍ରଦ୍ଧା ଓ ସାଧନର ଏହି ପ୍ରକାର ବିଷୟ ।

୫୩ ପଦ । ଅହୈତୁକୀ ଭକ୍ତି—କାମନାଶୂନ୍ୟା ଭକ୍ତି । ରାଗାତ୍ମିକା ଭକ୍ତି—ଗାଢ଼ ଆବେଗଯୁକ୍ତ ଭକ୍ତି । ମୁଖ୍ୟା ଭକ୍ତି—ସ୍ୱତଃ ଜାତ ସ୍ନେହଯୁକ୍ତ ଭକ୍ତି । ବୈଧୀ ଭକ୍ତି—(ସ୍ୱତଃ ଭକ୍ତି ନ ହୋଇଥିବାରୁ) ଶାସ୍ତ୍ରପ୍ରଦର୍ଶିତ ଭକ୍ତିର ବିଧି । ହୈତୁକୀ ଭକ୍ତି—କାମନାଯୁକ୍ତ ଭକ୍ତି । ଗୌଣ ଭକ୍ତି—ଏହା ଗୁଣ ଭେଦରେ ୩ ପ୍ରକାର—ସାତ୍ତ୍ୱିକୀ ଭକ୍ତି, ରାଜସୀ ଭକ୍ତି ଓ ତାମସୀ ଭକ୍ତି । ତାମସୀ ଭକ୍ତିରୁ ରାଜସୀ ଭକ୍ତି, ରାଜସୀ ଭକ୍ତିରୁ ସାତ୍ତ୍ୱିକୀ ଭକ୍ତି ଓ ସାତ୍ତ୍ୱିକୀ ଭକ୍ତିରୁ ମୁଖ୍ୟାଭକ୍ତି ହୁଏ ।

ତାପସ ଭଣଇ ହୋଇ ହରଷିତ ଭଜନକୁ ହେଲା ଭକତ ଖ୍ୟାତ
ସାତ୍ତ୍ୱିକ ଭାବରେ କଲେ ଭଜନ ପ୍ରେମରସେ ଶତ୍ରୁ ହୁଏ ମଗନ
ପନ୍ଥା ଭିନ୍ନ ଭିନ୍ନ, ହରି ଲଭେ ଭକ୍ତି ଅମୂଲ୍ୟ ଧନ । ୫୮ ।

ଶ୍ରବଣ କୀର୍ତ୍ତନ ପୁଣି ସ୍ମରଣ ଭଜନ ପୂଜନ ଅଭିବନ୍ଦନ
ଦାସ୍ୟ ସଖ୍ୟ ଆତ୍ମସମର୍ପଣରେ ନବଧା ଭକତି ଖ୍ୟାତ ବିଶ୍ୱରେ
ନବ ଭକ୍ତି ସାର, ତା-ଭକ୍ତି କେମନ୍ତ ହୃଦୟେ ଧର । ୫୯ ।

ଶୁକ ସୁଜନ ଯେ ଜାହ୍ନବୀତୀରେ ପରୀକ୍ଷିତ ପରୀକ୍ଷିତ ଆଗରେ
ଭାଗବତ ଭାଗବତଙ୍କୁ କହେ ଶ୍ରବଣ ଶ୍ରବଣ କରନ୍ତେ ସ୍ନେହେ
ବାଧୁ ବାଧୁବଂଶୀ, ଧର ଧର ଡାକେ ତମବାଧ୍ୱଂସି । ୬୦ ।

ସ୍ୱପତପତିଙ୍କ କର କୀର୍ତ୍ତନ ସ୍ୱପତି ମାୟାରେ କଲେ ଖଣ୍ଡନ
ବଶିଷ୍ଠ ବାଲ୍ମୀକି ଶୁକାଦି କବି ବଶୀଭୂତ କଲେ ଶ୍ରୀରାଧାହରି
ବିଭୂତି ନ ଲୋଡ଼ି, ବିଭୂଭକତରେ ରହିଲେ ଜଡ଼ି । ୬୧ ।

ପ୍ରହ୍ଲାଦ କରୁଁ ହରି ସ୍ମରଣ ପ୍ରହରୀ ପରି ସେ ଦେଲେ ଦର୍ଶନ
ସ୍ତମ୍ଭରୁ ଉଦୟ ହୋଇ ନୃସିଂହ ସ୍ତମ୍ଭ ରୋମାଞ୍ଚିତ ରାକ୍ଷସସିଂହ
ହିରଣ୍ୟ ନିପାତ, ହିରଣ୍ୟ ଭକତେ ପ୍ରହ୍ଲାଦ ଖ୍ୟାତ । ୬୨ ।

ଅଘା ବକା ମୁର ମଧୁସୂଦନ ଅଘାରି ଅଂଘ୍ରିକି କରେ ଭଜନ
ହରିପଦଚନ୍ଦ୍ର ଚକୋରୀ ରମା ହରିଣାକ୍ଷୀ ସର୍ବଲାବଣ୍ୟଧାମା
ପରାପରା ସେହି, ପରାସରେ ସରେ କାନ୍ତ ନ ରହିଁ । ୬୩ ।

ଶରଳ ବେଣୁଙ୍କ ପୃଥୁ ନୃପତି ସରଳ ପୂଜିଲ ଜଗତପତି
ପୃଥ୍ୱୀ କାମଧେନୁ କଲା ଦୋହନ ପୃଥ୍ୱୀ ଅଶାନ୍ତିକୁ କଲା ଦହନ
ପୂଜା କଲା ସାର, ପୂଜା କରେ ତାଙ୍କୁ ତେଣୁ ସଂସାର । ୬୪ ।

ଅକ୍ରୂର ଭକତ ଅଭିବନ୍ଦନ ତୁଷ୍ଟ ତା ସ୍ତୁତିରେ ନନ୍ଦନନ୍ଦନ
ବ୍ରହ୍ମରୂପ ଦେଖେ କଂସସାରଥୀ ପାରି କଲାକାଳେ ସେ ଭାଗୀରଥୀ
ଲୋଟିଲା ଧଣ୍ଡାରେ, ମାୟାକୁ ଛେଦିଲା ଭକ୍ତି-ଖଣ୍ଡାରେ । ୬୫ ।

ଦାସଭାବେ ରତ ବାତତନୟ ପ୍ରଭୁ କାର୍ଯ୍ୟସାଧନାରେ ତା ନୟ
ରାମନାମ ମୁକ୍ତା କଲା ଭଞ୍ଜନ ଅନ୍ତଶିରେ କରେ ରାମ ଭଜନ
ସେବାରେ ଜୀବନ, ରାମକାର୍ଯ୍ୟେ ଲଙ୍ଘେ ସାଗର ବନ । ୬୬ ।

ସଖାଭାବେ ପାର୍ଥ ନିରତ ରତ କୃଷ୍ଣସଙ୍ଗ ଗଣେ ବହୁତ ହିତ
ସୁଖେ ଦୁଃଖେ ହରି ଅଗତି ଗତି ସଖାବନ୍ଧୁ ନାହିଁ ବିଭୂତି ଭୂତି
ଅଦସ୍ଥଳ ମୂଳ, ସାରଥୀ ରଥୀଙ୍କି ସେ କାଳକାଳ । ୬୭ ।

ବଳି କରି ଆତ୍ମପ୍ରଦାନ ଦାନ ମୋହିଲା ଭକ୍ତିରେ ବାମନ ମନ
ଦେଖେ ପ୍ରହରୀ ସେ ତା ଦ୍ୱାରେ ଦ୍ୱାରେ ଯେନ ନବ ଭକ୍ତ ବଧିରେ ଧୀରେ
ଭଜ ଧରାଧର, ଧର ଗୋପୀଭାବ ସଂସାର ସାର । ୬୮ ।

ପାଦପ ମୂଳରେ ଦେଲେ ସଲିଳ      ଦିଏ ଶାଖା ପଲ୍ଲବାଦିରେ ବଳ
ହରିଙ୍କି ସେପରି କର ଭଜନ      ଆନ ଦେବଦେବୀ ଗୌଣରେ ଘେନ
ଜ୍ଞାନ ନିଷ୍କାମର, ଫଳ, ଚିତ୍ତଶୁଦ୍ଧି କହେ ମାଠର । ୬୯ ।
ଏ ପଞ୍ଚ ସାଧନା ଧୀରେ । ଆଚର      ଈଶ୍ବର ପ୍ରୀତିରେ କରମ କର
ହରିଙ୍କି ଆଶ୍ରୟ କର କେବଳ      ଅନାସକ୍ତ ଭାବେ ସଂସାରେ ଚଳ
ଭଜ ହରେରାମ, କାହିଁ ଶତ୍ରୁଭାବ ନ କର କାମ । ୭୦ ।
ଏରୂପରି ଜ୍ଞାନ ସନ୍ନ୍ୟାସୀ ହୋଇ      ଉଦ୍ଧବର ନେଲେ ମନ ମନାଇ
ଭକ୍ତିରେ ସୁହାସୀ ହେଲା ମସ୍ତକ      ଭଜିଲା ମଧୁରେ ଗୋପଶଶୀଙ୍କି
ଶ୍ରୀ ଗୋଲୋକ ଭୂପ, ବ୍ୟାସ ମୋ ଅଜ୍ଞାନ ତମିର ନାଶ ।

## ୬୮ଷ୍ଟିତମ ଛାନ୍ଦ

ରାଗ—ବଙ୍ଗଳାଶ୍ରୀ

ଫାଟିଲା ସିନ୍ଦୂର      ବାଜେ ଅଭ୍ରମୁରେ[1]
ସୁରୁଚ ପରାଚୀ ଦେବୀ,
ନବ ଜାଗରଣ      ଅଣିବାପାଇଁ କି
ଲୋହିତ ବରଣ ଛବି । ୧ ।
ବାଝୁ ବାଝୁ କଣ୍ଠେ      କରଣୀ ବହିଲା
ମନ୍ଦ ମନ୍ଦ ଗନ୍ଧବହ,
ଊଷା ରାଣୀ ଏଣେ      ସୁନା ଭୂଷା ପିନ୍ଧି
ସଜାଇଲା ନିଜ ଦେହ । ୨ ।
ଜଳ ଆସିଲା ସେ      ରୋଷାନଳେ ଦେଖି
ପରାଚୀ ଅମରୀ ଚେଷ୍ଟ,
ନାଶିବାକୁ ଫିଙ୍ଗି      ପଳାଇଲା ତପ୍ତ
ଲୋହିତ-ଲୌହ କନ୍ଦୁକ । ୩ ।
ଏକାଳେ ଉଦ୍ଧବ      ଅବଗାହନକୁ
ତଟିନୀ ସନ୍ନିଧେ ଯାଇ,
ସଖୀ ପ୍ରତୀକ୍ଷାରେ      ତଟ ବଟମୂଳେ
ବସିଥିଲା ନଦୀ କୂହିଁ । ୪ ।
ମୁଗ୍ଧ ହୋଇଥିଲା      ମୁଗ୍ଧାନନା ଗୁହିଁ
ଚକ୍ରବାକୀ ଚକ୍ରବାକ,
କେଳି ତୀରୁ ଆସି      ମିଳନ ଚୁମ୍ବନେ
ଝାଡ଼ି ନାଚୁଥିଲେ ପକ୍ଷ । ୫ ।

୧ । ଅଭ୍ରମୂ—ପୂର୍ବଦିଗ୍ହସ୍ତିନୀ ।

ଫୁଟି ବସୁଥିଲା ବିମଳ ଆନନ୍ଦ
ବେନିଙ୍କ ମଧ୍ଯ କ୍ଷଣଯେ୍,
ଏକଙ୍କୁ ଅନେକ ଭୋଗୁଥିଲେ ଯେତେକ
ହୃଦପ୍ରାଣ ବଳପ୍ରଯେ୍ । ୬ ।
ଭାବିଲା ଅହା ଏ ନୈସର୍ଗିକ ସୁଖ
ଭାଗ୍ୟ ବିନା ନୋହେ ଲଭ,
ନର ନାରୀ ଭାଗ୍ୟ କେତେ ସୁଖମଯ୍
ହୁଏ, ଏ ହେଲେ ସୁଲଭ । ୭ ।
ପ୍ରେମିକ ପ୍ରେମିକା ମିଳନ ସୁଖରୁ
ଜଗତେ ଅଛି କି ସାର,
ସଦାଶିବ ଶିବ ଯେ ବିଶ୍ୱ ସଂସାରେ
ଅର୍ଦ୍ଧାଙ୍ଗ ନାରୀଈଶ୍ୱର । ୮ ।
ଆଜ କପାଁ ନବ ବ୍ୟାକୁଳତା ଧରି
ହୁଏ ମନ ଛନଛନ,
ପୁରୁଷ ଚରଣ ପରଶି ବସିଲି
ମୁଁ କି ସେ ପଦେ ଭାଜନ ? । ୯ ।
ମୋ ଚରଣ ଦେଖେଁ ମୁହୂର୍ତ୍ତିକ ପାଇଁ
ଯାଉଛି ଯେବେ ପାଲଟି,
ଆନ ହୃଦ-ସୁନା ପରଶିବା ପାଇଁ
କେତେକ ମୁଁ ଯୋଗ୍ୟ ଅଛଟି । ୧୦ ।
ଅଗାଧ୍ରବ୍ୟ ଯେହୁ ପରଶି ପାରେ ସେ
ଅଭ୍ୟାସରେ ଆନ ମତ,
ଆନ ପରଶିଲେ ବଗୁର ପ୍ରତୀକ୍ଷା
କରଥା ନିଜ ପ୍ରକୃତ । ୧୧ ।
ଶ୍ରୁତ କଥା ଯାହା ହୋଇଥା ବହୁତ
ରେଣୁରୁ ପର୍ବତାକାର,
ଦୁଇ ଚକ୍ଷୁ ଚକ୍ଷୁ କହେଁ ଯା ବୋଲନ୍ତି
ଅନେକଙ୍କ ସିଦ୍ଧ ସାର । ୧୨ ।
ଏକ କରମରୁ ଜଣେକର ମନ
ସତ୍ୟରୂପେ ନୋହେ ଧରି,
ପୁଣି ଭିନ୍ନ ଭିନ୍ନ କର୍ମରେ ଉଦ୍ଦେଶ୍ୟ
ସହଜେ ବୁଝହଇ ବାରି । ୧୩ ।

---

୧୧ ପଦ । ଅଭ୍ୟାସରେ—କଷ୍ଟରେ ।

ମଣିଲି ଯା ସତ      ସତ କି ତା ମିଛ
ଅଜ ନ ପାରେ ବିଚାର,
ଏକା ସେ ଅନନ୍ତ      ବ୍ରହ୍ମାଣ୍ଡ ଈଶ୍ୱର
ପାରନ୍ତି ସକଳ ଧରି । ୧୪ ।
ମୋ ବିଚାରେ କେତେ      ଅବିବେକପଣେ
କରିଇଲି ପୁଂସେ ହତ,
ହେଲି ତେଣୁ ସିନା      ଜୀବନେ ଦାମ୍ପତ୍ୟ
ସୁଖ ଶାନ୍ତି ପ୍ରାୟଶ୍ଚିତ୍ତ । ୧୫ ।
ଭାବିଲେ କି ହେବ      ଗଲା କଥା ଗଲେ
ବାହୁଡ଼ି ଅସେ କି ଅଉ,
ଅନୁତାପାନଳେ      ସତତ ଜଳିଲେ
ତ୍ୟକ୍ତ ସୁଖ ମିଳେ କାହିଁ ? । ୧୬ ।
କଲି ଅଛିଁ ପଣ      ଏ ଜୀବନେ କେବେ
ନ ଧରି ନିଷ୍ଠୁର ନୀତ,
ସାଧୁ ଶାସ୍ତ୍ର ପୁଣି      ବିବେକ ବଚନ
କରିଥିବି ନିଜ ସାଥୀ । ୧୭ ।
ଭାବି ନ ସାରୁଣୁ      ଚକିତା ସହସା
ସତୀ ସୀମନ୍ତିନୀଟୀକା,
ଅଶ୍ୱ ଟପଟାଇ      ଅସି କେ ସୈନିକ
ଚଟିମୂଳେ ଦେଲା ଦେଖା । ୧୮ ।
ଦେଖି ଯୁବକକୁ      ସେ ଧୀରା ପ୍ରଗଲ୍‌ଭା
କରେ ବିଚାର ଏସନ,
ଦିଗ୍‌ଜୟୀ ପାର୍ଥିକି      ମୂର୍ତ୍ତିମନ୍ତ କାମ
ବିଜେ ଘେନି ପଞ୍ଚବାଣ । ୧୯ ।
ଦୋଳେ ଜଙ୍କ ଜକ      ସୁଢ଼ଳ ଫଳକ
ଦେହ ପିନ୍ଧି କଞ୍ଚୁକ,
କଟିବନ୍ଧେ ଲମ୍ବେ      କୋଷଶାୟୀ ଅସି
ଉଷ୍ଣୀଷଶୋଭୀ ମସ୍ତକ । ୨୦ ।
ସବ୍ୟେତର ସ୍କନ୍ଧେ      ବିରାଜେ ଉର୍ଫକେ
ମୁଷ୍ଟିପୀଡ଼ିତ ବନ୍ଧୁକ,
ଶୋଷଣ ତାପନ      ଘେନି କି ତୂଣୀର
ଦୋଳୁଥାଇ ଚକ ଚକ । ୨୧ ।

---

୨୦ ପଦ । କଞ୍ଚୁକ—ସାଞ୍ଜୁ । ଉଷ୍ଣୀଷ—ମସ୍ତକରେ ପିନ୍ଧିବା ପଗଡ଼ି ।

ଏକାଳେ ତରୁଣ  ସୈନିକ ସହସା
ତୁରଙ୍ଗମୁ ଅବତର
ଅଶ୍ୱ ବାନ୍ଧି ବୃକ୍ଷେ  ତୀରେ ଜଡ଼ ହୋଇ
ନିବାରିଲେ ଶ୍ରମଭାର । ୨୨ ।
ସୁନ୍ଦରୀଙ୍କ ଗୃହିଁ  ଭାବେ ସ୍ୱପ୍ନ ଏ କି
ଶୋଭା ନୈସର୍ଗିକ ବ୍ୟୂହ,
ପଡ଼ିଗଲେ ଅହା  ନ ଯାଇବା ସହା
ସହଜେ ଭଜିବ ମୋହ । ୨୩ ।
ବଳେ ବୈତାଳିକ—  ରୂପେ ଏ ନୟନେ
ଅଶାନ୍ତ ବନ୍ଧୁ ସୁଷମା,
ଯେତକ ଅସର  ତେତକ ଠାଣିର
ମୋହନେ ଶୋଭାପ୍ରତିମା । ୨୪ ।
ଅମରବାଞ୍ଛିତ  ଏ ସୁଷମା ପିନା
ନରଭାଗ୍ୟେ ଅସମ୍ଭବ,
ଅନଙ୍ଗ ସ୍ୱପ୍ନେ  ରତି କି ବାହରେ
ଧର ଏ ଶୋଭାସୌଷ୍ଠବ । ୨୫ ।
ପରସ୍ପର ଲୋଭେ  ଏକକୁ ଅନେକ
ମନ କରୁଥିଲେ କେତେ ?
ପୁଚ୍ଛିବା ପାଇଁ କି  ସାହସ କାହାଁକ
ହେଉ ତ ନ ଥିଲା ଚିତ୍ତେ । ୨୬ ।
ଧରଣୀ ବେଣିଙ୍କ  ଲୋଚନରେ ଅଜ
ଦିଶୁଥିଲା ଆନ ଆନ,
ବୁଝିବାକୁ ଅଉ  ନ ଥିଲା ତ ବାକି
ବିଚ୍ଛେଦ ଭୀମ ଲକ୍ଷଣ । ୨୭ ।
ଛକି ଛକି ଅହା  ଏକର ଅନେକ
ପିଉଥିଲେ ଶୋଭାସୁଧା,
ଗୁରି ଚକ୍ଷୁ ହେଲେ  ଛଟକେ ସମ୍ବରୁ-
ଥିଲେ ଚିତ୍ତେ ଲଭି ଦ୍ୱିଧା । ୨୮ ।
ଏକକୁ ଅନେକ  ଶୋଭା ରୂପେ ତୃଷ୍ଣ
ହୋଇଥିଲେ ପଥାନ୍ତର,
ନିର୍ନିମେଷ ନେତ୍ର  ହେବାକୁ ବାଳକେ
ଘାରୁଥିଲେ ନିରନ୍ତର । ୨୯ ।

---

୨୪ ପଦ । ବୈତାଳିକ—ସ୍ତୁତିପାଠକ ।
୨୯ ପଦ । ନିର୍ନିମେଷ ନେତ୍ର—ଅପଲକ ନେତ୍ର ।

ହୃଦୟେ ହୃଦୟ ଦେବାକୁ ମିଳାଇ
ମନ ଥାଏ ଅହରହ,
ମହାର୍ଘ ମର୍ଯ୍ୟାଦା ସେ ମିଳନେ ବାଧା
ଦେଇ ହସେ ଠହ ଠହ । ୩୦ ।

ଖର ଭାନୁକରେ ବଧୁଲି କୁସୁମେ
ଖେଳେ ଯେ ଅଳି ଚଞ୍ଚଳ,
ହର ଦେଉଥିଲା ସେ ଅଳି ସୁନ୍ଦରୀ
ଗଣ୍ଡ ମହାର୍ଘ ପାଟଳ । ୩୧ ।

ସଖୀ ଅଗମନ ବେଳ ଜାଣି ବାଳା
ନୀର ସନ୍ନିଧେ ଗମଇ,
ଝୁଣ୍ଟି ପଲ୍ଲବର ଛଳେ ଥରେ ଥରେ
ଚାଏ ପଛକୁ ଅନାଇ । ୩୨ ।

କଣ୍ଠା ବାହାନାରେ ସଖୀ ପ୍ରତୀକ୍ଷାରେ
ହର କେତେ ନବ ଭଙ୍ଗୀ,
ରଙ୍ଗି ସତେ ଯେତେକ୍ଷେ ହୃଦ ପୁଂସ ପାଶେ
ଚଳେ ଖେଦେ ଚଳାପାଙ୍ଗୀ । ୩୩ ।

ପୁଂସ ଏଣେ ଧୀର- ଗମନେ ଲଳିତ
ନୟନେ ବାଳାକୁ ଚାହିଁ,
ଧୃଷ୍ଟତା ମାର୍ଜନେ ବେଢେ ଛଳନାରେ
ଉଦ୍ଦେଶ୍ୟ ପୂତ କରଇ । ୩୪ ।

କୁହୁକ ସ୍ୱପନେ ମୁଗ୍ଧ ହେଲେ ମନ
କରେ କାହିଁ ବିଚରଣ,
ଏକକୁ ଅନେକ ଘେନୁଥିଲେ ମନେ
ପ୍ରଣୟ ସ୍ୱଚ୍ଛ ସୋପାନ । ୩୫ ।

ପୁରୁଷର ମନ ଚୁମ୍ବି ଯାଉଥିଲା
ସଘନେ ଅବଳା ଛବି,
ଲଜ୍ଜାମୟେ ବାଳା ହୋଇଥିଲା ଜବା
ଅବନତମୁଖେ ଧ୍ରୁବ । ୩୬ ।

ଏକାଳେ ସଜନୀ ହରଷେରୁ ପାଶେ
ହେଲେ ଅସି ପରବେଶ,
ଜଣାଇଲା ଧୀରେ ରଣକୁ ଯିବାକୁ
ସନ୍ନ୍ୟାସୀ କଲେ ଆଦେଶ । ୩୭ ।

---

୩୦ ପଦ । ମହାର୍ଘ—ଲଜ୍ଜା ।

୩୧ ପଦ । ବଧୁଲି—ଦୃପହରିଆ ଫୁଲ ।

ଶୁଣି ନ ଶୁଣିଲ ହୋଇ କର ଭଙ୍ଗୀ
କହିଲ ବାଣୀ ଏସନ,
କନ୍ଦୁ କେତେ ରଣ— ରଣ ପୀଡ଼ନକୁ
ଝୁରୁଅଛୁ ମନ ମନ । ୩୮ ।
ରଙ୍ଗେ ପ୍ରବର୍ତ୍ତିବା ପାଇଁ ତୁମ୍ଭ ମନ
ହେଉଛୁ କେତେ ଉତ୍ସୁକ,
ସ୍ୱଭାବସ୍ଥ ଥାନ୍ତେ ନ ଥାନ୍ତେ କି ଅବା
ହେଲ ଏଥି ଆଗମନ । ୩୯ ।
ସଖୀ ବିଚାରିଲ ଅଜ୍ଞ ଏ କି ଭଙ୍ଗୀ
କହିଲ ଯା ନବବାଳୀ,
ଫେର ଅନାଇଲ ହୋଇଛନ୍ତି ଉଭା
ଅପୂର୍ବ ଯୁବାମଣ୍ଡଳ । ୪୦ ।
କି ରହସ୍ୟ ଏଥି ବୁଝି ନ ପାରିଲ
ସଂଶୟେ ଘୂରିଲ ମନ,
ପଚାରିଲ ତାଙ୍କୁ ସଖୀ ବାହାନାରେ
ଭାଷେ କି ଛଳ ବଚନ । ୪୧ ।
ତରୁଣ ଭାବିଲ ସତେ କି ତରୁଣୀ
ଜୀବନ ଦେଇଛୁ ବାଜି,
ସଖୀ ବିଚାରିଲ ପୁରୁଷ ପ୍ରକୃତି
କିବା ପରଖେ ରସିକା । ୪୨ ।
ବାଳା ଇଙ୍ଗିତରେ ସଜନୀ ପଚାରେ
ଯୁବାମଣି ମୁଖ ଚାହିଁ,
ବୀରମଣି କେଉଁ ବଂଶ ଅବତଂସ
ଯାଉଅଛ କହ ତାହିଁ । ୪୩ ।
ପାଣିଗ୍ରହଣ କି କର ନାହିଁ କେବେ
ବିବାହେ କେତେ ଆଦର,
ରାଗ ବହୁ ରଙ୍ଗେ ମିଳିବ ବିଦେଶେ
ବିଚାରେ ସଖୀ ଅନ୍ତର । ୪୪ ।

---

୩୮ ପଦ । ରଣରଣ—ଯୁଦ୍ଧ ଯୁଦ୍ଧ; କାମ, କାମାଗ୍ନି ।

୩୯ ପଦ । ରଙ୍ଗେ—ଯୁଦ୍ଧରେ; କେଳିରେ । ସ୍ୱଭାବସ୍ଥଥାନ୍ତେ—ସୁସ୍ଥ ଥାଆନ୍ତେ; ବାଦ୍ଧା ହୋଇଥାନ୍ତେ ।

୪୪ । ପାଣିଗ୍ରହଣ—ବିବାହ, ଜଳପାନ । ବିବାହ—ପକ୍ଷୀଙ୍କ ଅଣ୍ଡା; ସ୍ତ୍ରୀଗ୍ରହଣ । ରାଗ—ସ୍ନେହ; କ୍ରୋଧ ।

କେମା ଭଙ୍ଗୀ ପୁଣି ସଜନୀ ବଚନେ
ପୁଲକେ ଶନ୍ତେ ନାଗର,
ଭାବୁଥିଲ ଯାହା ଦୁର୍ଲ୍ଲଭ ବୋଲି ସେ
ସୁଲଭ ଭାଗ୍ୟେ ମୋହର । ୪୫ ।
ପୁଣି ପଚାରଇ ଇନ୍ଦ୍ରସ୍ୱ ହେବେ କି
ଯୁଦ୍ଧେ କରନ୍ତି ଗମନ ?
ପୁରୁଷ ପ୍ରକୃତି ପରଖିବାରେ ଏ
ସକଳ ଛଳ ବଚନ । ୪୬ ।
ହୃଦୟ ଲୁଚାଇ ସଦମ୍ଭେ ପ୍ରକାଶେ
ସଖୀକି ଯା କହ ମୋତେ,
ଅଜ୍ଞାତ ଜନକୁ ପୁଚ୍ଛିବା ଉଚିତ
ବୋଲି ନ ବାଚୁରେ ଚିତ୍ତେ । ୪୭ ।
ଧବାସ୍ମି କିବା ମୁଁ ଅବିବାସ୍ମି ଏଥି
ତବ କିସ ପ୍ରୟୋଜନ ?
ଅଙ୍ଗ ନରପତି ସ୍ନେହବନ୍ଧୁ ମୁହିଁ
କରୁଛି ଯୁଦ୍ଧେ ଗମନ । ୪୮ ।
ନାସ୍ତିମଣ୍ଡଳ ଏ ଦମ୍ଭୋଳି ବଚନେ
କାତରେ ଗଳ୍ପ ମଣ୍ଡଳି,
ମଣ୍ଡଳଇ ଯଥା କର ପରଶରେ
ସୁକୁମାରୀ ଲଜକୁଳି । ୪୯ ।
କାତରେ ଭାବଇ ଗୁଣିର ଏ ଯୁବା
ମୋ ଯୋଗ୍ୟ ଚିତ୍ତେ ବାଚୁରେ,
ତାଙ୍କ ଯୋଗ୍ୟ ମୁହିଁ ହେବି କି ନ ହେବି
ନ ବୁଝି ସଂଶୟେ ମରେ । ୫୦ ।
ଲଳିତ ବଚନେ ଭାଷେ ଲଜ୍ଜାବତୀ
ସଖୀଙ୍କି ନାଦଲ କେତେ ?
ଉତ୍ତର ବହୁବା ଅଗରୁ ସଜନୀ
ମର୍ମ ନ ବୁଝିଲ ଚିତ୍ତେ । ୫୧ ।
ପାଣି ବାହୁ ଗଡ ଅର୍ଥ ଜଳ ଅଶ୍ରୁ
ରୋଷ, ଥାନ୍ତି ଯେବେ ଗଣି,
ବୃଥା ନାଦବାକୁ କଦାପି ଅମ୍ଭଙ୍କ
କହୁ ନ ଥାନ୍ତି ଏ ବାଣୀ । ୫୨ ।

---

୪୭ ପଦ । ଅଜ୍ଞାତ—ଅଜଣା ଲୋକ ।
୫୧ ପଦ । ଗୁଣିର—ଗୁଣବାନ୍ । ୫୩ ପଦ । ବୀର-ମଘବା—ବୀର ଶ୍ରେଷ୍ଠ ।

ଦାଶି ଲଜ ମୁଖେ ଫୁଟି ନ ଫୁଟିଲି
ପର ସେ ବୀର-ମଘବା,
ବଗୁରର ଚତ୍ରେ ଏ ମଧୁ ଜନ୍ତର
ଶୁଣିଥିବ କି କେ ଯୁବା । ୫୩ ।
ହରିଣୀନୟନା କଟାକ୍ଷ-ବରଷି
ଭୁଷି ଦେଇଥିଲା ଚତ୍ରେ,
ରଞ୍ଜି ଗଞ୍ଜିଲଣି କଞ୍ଜନ ଉକାଇ
ଚତ୍ତୁସ୍ ବାଣୀ ଜପତେ । ୫୪ ।
ସଖୀଙ୍କି ପଗୁରେ ନୃପତିତନୁଜା
ପର ସେ କୁହନ୍ତି ଜଣ,
ସଜନୀ କହଇ କାଶୀ ରାଜଜେମା
ଏ ଯେ ଖଞ୍ଜନନୟନା । ୫୫ ।
ଯୁବା ପଗୁରଇ କି ନାମ କହନ୍ତି
ଏ ଯେ ଅମର୍ତ୍ତ୍ୟ ସୁନ୍ଦରୀ,
ସଜନୀ କହଇ ଇନ୍ଦର ବୋଲନ୍ତି
ଯାଉଛନ୍ତି ରଣ କରି । ୫୬ ।
ସଚକିତେ ଯୁବା କ୍ଷଣକ ପାଇଁ ସେ
ନିରୁତ୍ତର ରହି ଧୀରେ,
ହୃଦ ଅଲୋଡ଼ନେ ବଗୁରଲା କେତେ
ଶୁଣିଛୁ ଯାହା କର୍ଣ୍ଣରେ । ୫୭ ।
ପୁରୁଷ ପ୍ରକୃତ ପରଖିବା ପଣୁ
ଯାଇଛୁ ଭାଗ୍ୟେ ଉତ୍ତର,
ପୁଭ ଭାବ ଅବା ମୋ ଚରଣେ ସତୀ
ମମତାରେ ପାରେ ବର । ୫୮ ।
ଅବା ଭାବ ମୋତେ ଅରପକ୍ଷ ବାଲା
ମାୟାଯୁଦ୍ଧେ ହେବ ରତ,
ତା ଘୋର ଯୁଦ୍ଧରୁ ବରଣିବାକୁ ମୋ
କାହିଁ ବା ଅଛୁ ଅଯୁକ୍ତ । ୫୯ ।
ପ୍ରଣୟ ମରଣ ବେଳକୁ ଗୋଟିଏ
ତା'ଠାରୁ ମୋ ଶ୍ରେୟସ୍କର,
ଯେବେ ବାଳାଜର ନାହିଁ ଏ ଜୀବନେ
ବଞ୍ଚିବା ପିନା ଅସାର । ୬୦ ।

---

୫୮ ପଦ । ପୁଭ—ପଦକ ।

ଥାଅ ସବଂଶୁରେ ବୋଲି ଯୁବା ଧୀରେ
ଯାଉଁ ଭୁବଙ୍ଗ ପାଶକୁ ।
ପଙ୍କେରୁହମୁଖୀ ସଙ୍କେତରେ ସଖୀ
ସମ୍ବୋଧି କହେ ଯୁବାକୁ । ୬୧ ।

ଘେନ ମୋ ପ୍ରଣାମ ଗୁରୁ ମୁଗ୍ଧାଭାବେ
ତାଙ୍କୁ ରଖିଥିବ ଗତ୍ନେ,
ତବ ଚରଣକୁ ପୂତ ଜାଣି ବାଳା
ଇଙ୍ଗିତ ଦେଲାଣି ଯେତେ । ୬୨ ।

ସୁଯୋଗରେ ଯେବେ ତବ ପଦ ସେବା
ପାଇଁ ନ ହେବ ଭାଜନ,
ମୁହୂର୍ତ୍ତିକ ପାଇଁ ଭାବେ ଏ ସଂସାରେ
ନ ରଖିବ ତା ଜୀବନ । ୬୩ ।

ସଖୀକି କହଇ ଯୁବା ତାଙ୍କ ରଙ୍ଗେ
ଭାବୁଛି ମୋ ହେବ ରଣ,
ସଖୀ ପୁଛେ ଯେବେ କାମଭଣି ତେବେ
ଦାଅ କିଛି ନିଦର୍ଶନ । ୬୪ ।

ଜେମା ଚିହ୍ନ ଜାଣି ସାହ୍ଲାଦେ ନାଗର
ତଟିନୀ ସନ୍ନିଧେ ଯାଇ,
ଚିକୁରଶୋଭିକ ସ୍ୱକର ମୁଦ୍ରିକା
ସାନନ୍ଦେ ଦେଲା ଫିଙ୍ଗାଇ । ୬୫ ।

ଗାନ୍ଧର୍ବ ମତରେ ବନ୍ଧା ହେଲେ ତହିଁ
ନୀରେ ପଶି ସ୍ନାନ ସାରି,
ବିଦାୟକାଳରେ ପୁଂସେ ଭଣେ ବାଳା
ଚିତ୍ତୁ ନ ଦେବ ପାସୋରି । ୬୬ ।

ପ୍ରଣୟ ସଙ୍ଗୀତ ଗାଉଥିଲା ଯେଉଁ
କଲ୍ଲୋଳିନୀ କୁଳସ୍ଥାନେ ।
ମୁହୂର୍ତ୍ତିକେ ପୁଣି ମାତ ଉଠିଲା ସେ
ବିରହଗୀତିକା ଗାନେ । ୬୭ ।

ଯାଉଁ ଗଲା ଯୁବା ନବବରବର୍ଣ୍ଣୀ
ପ୍ରାସାଦକୁ ଗଲା ଧୀରେ,
ସନ୍ନ୍ୟାସୀଙ୍କୁ ଘେନି ଭେଦ ରାଜପୁରେ
ବାହାରିଲା ଉରତରେ । ୬୮ ।

---

୬୨ ପଦ । ଇଙ୍ଗିତ—ସଙ୍କେତ ।
୬୫ ପଦ । ତଟିନୀ—ନଦୀ ।
୬୭ ପଦ । କଲ୍ଲୋଳିନୀ—ନଦୀ । ଗୀତିକା—ଗୀତ ।

ରସଲେଖା ପଢ଼ ବନ୍ଧନ୍ତୁ ମୂଳୁଁ
ଯୁକ୍ତେ ଗଲା ହୋଇ ସାଥି,
ଶ୍ରୀ ଗୋଲୋକ ଭୂପେ ନବାନୁରାଗକୁ
ପ୍ରସଙ୍ଗକ୍ରମରେ ଏଥି । ୬୯ ।

## ୭୯ତ୍ତମ ଛାନ୍ଦ

ରାଗ—ଗୁଜ୍ଜରୀ

କରଭର ଦେଇ ଗଣ୍ଡପାଳକ ବସିଥିଲା ଧନେ ନବ ବରାଙ୍ଗୀ
ସଖୀ କେ ପଗ୍ଭୁରେ ଏକାଳେ ଆସି ଶୁଭରେ ଅଛ ନା କୁଞ୍ଚିତକେଶୀ !
ସଖୀ ହେ ! ଅସି ଦେଖିବା ପାଇଁ,
କେତେ କାଲୁ ଅଶା ଥିଲା ମୋ ବହି । ୧ ।
ଶୁଣି ରସକଳା ଛଳ ବୋଲଇ କୃଶାଙ୍ଗୀ କଥା କି ନ ଜାଣ ସହି
ପଗ୍ଭୁରୁଛ ଅଜ କେଉଁ ସୁଖକୁ ଶୁଖାଇ ଦେଇଛୁ ଚନ୍ଦ୍ରମୁଖକୁ
ସଜନି ! ସେ ତ କି ବୁଦ୍ଧି କଲା,
କାଳସର୍ପ ନୂଆ ସ୍ନେହେ ଖୋଜିଲା । ୨ ।
ବିଷମନ୍ତ୍ରର ନ ଜାଣି ସଜନୀ ଇଚ୍ଛା କଲା ବଳେ ନାଗରମଣି
ସାପଗାତେ ରଙ୍ଗେ ଭରିଲା କର ଦଂଶିଲା ସେ ହୃଦ କଲା ପଥର
ସଜନି ! ହୋଇ ବିଷରେ ଘାରି,
କଲା କର୍ମଫଳ ଭୋଗେ କିଶୋରୀ । ୩ ।
କେଉଁ ସୁଖ ଅଛା ଖିଅଲ କରି ଖେଳୁଥିଲ ବୁଦ୍ଧି କଲା ନାଗରୀ
ବଢ଼ନ୍ତା ନଦୀକି ପଦ ବଢ଼ାଇ ଅଗାଧ ପାଣିରେ ପଶିଲା ସହି
ସଜନି ! ଭ୍ରମ ଭଅଁରେ ପଡ଼ି
ବିଷମ ବିଷାଦେ ଯାଉଛୁ ସଢ଼ି । ୪ ।
ବାଘ ଦେଖି ମହାଅତଙ୍କ ଗଣି ଡ଼ଇ ବୃକ୍ଷେ ଚଢ଼ିଗଲା ମିଢଣୀ
ଜାଣିଥିଲା କି ସେ ତମାଳବେଣୀ ଭେଦିକଲା ଖାଲ୍ ଏ ବହ୍ନିରୁ ବସି
ସଜନି ! ବୁଦ୍ଧି ଗଲଣି ହଜି,
ଅଉ ଉପାୟୁ କି ନ ପାରେ ହେଜି । ୫ ।
ବିଚୁଅଡ ପାଡି ଶୟନ କରି ଜୁଅ ବୁଦ୍ଧି କଲା ନୂଆ ନାଗରୀ
କାଳକୁ ହେଜୁଛୁ ହରଣୀଦୃଶା କରାଇବାକୁ ତା ଭଗାରହସା
ପର କେ—ମନ ଜାଣଇ କାହିଁ ?
ଘରକଲା ବୁଦ୍ଧି ଦେଲା ପକାଇ । ୬ ।

---

୧ ପଦ । ଗଣ୍ଡପାଳ—ଗାଲ । ବରାଙ୍ଗୀ—ଦୁଃଖିନୀ ।
୩ ପଦ । ନାଗରମଣି—ରସିକଶ୍ରେଷ୍ଠ, ସାପର ମଣି ।

ସଖୀ ପଦ୍ମପତ୍ର ଭୂଣୀର ବାଟି    ଲେପିଲେ ବାଳକେ ସୁହେଁ ଉବାଟି
ସଜନୀଙ୍କ କର ଦେଉଛୁ ପୀଡ଼ା    ଶକତ ନାହିଁ ତା ହେବାକୁ ଛୁଡ଼ା
ବୁଝିଲ ହୋଇ ହେଲ ଅବୁଝା,
ଦେହେ ଲଗାଇଲ ପ୍ରବଳ ଝଞ୍ଜା । ୭ ।

ବକ୍ଷକୁ ଚନ୍ଦନ ମଣିଲ ସ୍ନେହେ    ଘଷି ବୋଳି ହେଲ ସଜନୀ ଦେହେ
ଲଗାନ୍ତେ ଦେହରେ ଉଠୁଛୁ ଜଳି    ବିଷାଦ ହେଲଣି ଭଳିକି ଭଳି
ସଜନି ! କରଥିଲ ଯା ଅଣ୍ଟ,
ଯେଣୁ ପଳାଇଲ କେଶୀକି ଖଣ୍ଟ । ୮ ।

ଖୋଳାଇ ଅଣିଲ ସଲିଲଧାର    ହୃଦସାଗରକୁ ରସିକାବର
ଚିନ୍ତାକୁମ୍ଭୀର ଯୋ ପଶିଲ ଜାଣି    ଭାବି ବସିଲଣି ସେ ଗଣ୍ଡପାଣି
ଜୀବନ ! ଯିବା କଲଣି ସାର,
ଦଶାରେ ନସୃନ୍ତୁ ଝରେ ଯେ ଝର । ୯ ।

ଉପବନ ଗଛରେ ଖୋଜିଲ ଫୁଲ    ଖୋଜୁ ଖୋଜୁ ଗଲ ସଜନୀ ଗେଲ
ହୃଦୟକେଦାରେ ଅଣି ପାଦପ    ରୋପି ଭାବିଥିଲ ଲୁଝିବ ତାପ
ନ ଫୁଟି ଦେଲ ବିଷଫଳକୁ,
ଜାଣିଲ ସଜନୀ ଏତେ କାଳକୁ । ୧୦ ।

ଏତେ ଚାହିଁଥିଲ ନାଗରେ ସଖୀ    ମୋତେ ଚାହୁଁ ଚାହିଁଦେଲ ଉପେକ୍ଷି
ନୟନେ ପସୁରିଲେ ଦେଲ ଭୁଲାଇ    କେ ତାକୁ ବୁଝାନ୍ତା ବୁଝିଲ ନାହିଁ
ଭୁଲିଲ ଦେଖି ରସିକପଣ,
ରଖିଥାନ୍ତା ପର ରସିକା ଠାଣି । ୧୧ ।

କିପାଁ ପଢ଼ିବ ଏ ମନେ ତାଙ୍କର    ଅଛୁ କି ପ୍ରଭେଦ ନାଗ ନାଗର
କର୍ଣ୍ଣେ ଥିଲେ ସିନା ଶୁଭନ୍ତା ବାଣୀ    ସଖୀ ନିଃଶ୍ୱାସେ କି ନେଇ ଗଲଣି
ନିରତେ, ଝୁରି ସାରିଲ ବଳ,
ମଣି ଥିଲେ ସାପ ନୋହେ କି ଖଳ । ୧୨ ।

ଜଣାଯାଉ ନାହିଁ ତା ସ୍ନେହୀ ସ୍ନେହ    ଥିଲ ପର ମିଛେ କରେ ଏ କୋହ
କାଳକୁ ଯେବେ ସେ ନ ହେଲେ ସାହା,    ସବୁଛୁ କାହିଁକି ଜାଣି ସୁଦେହା
କାଳକ—ଯାକ ବାଳିକା ବୁଦ୍ଧି,
ନ ତେଜିଲ କଲା ସବୁ ସିଦ୍ଧି । ୧୩ ।

ଆନ ସଖୀ କହେ ସ୍ନେହେ ଆଦର    ସେପରି ନ ଦିଶୁ ବଡ଼ ଚତୁର
ଭିତରେ ଭିତରେ ତୋ କେତେ ଗୁଣ    ଘୋଡ଼ାଇ ଲାଜକୁ ଟାଙ୍କୁ ବସନ
ଅହା ଏ, ବୁଦ୍ଧି ଶିଖିଲୁ କାହୁଁ,
ଅଜଣା ଲୋକକୁ ଲୁଚ ଅନାଉଁ । ୧୪ ।

---

୧୦ ପଦ । ପାଦପ—ବୃକ୍ଷ ।

ନଖ ବାଳ ଘୁଙ୍କ ଯୋଗୀ ହୁଅଇ    ଭାଲୁ କେଉଁ କାଳେ ଶୁଣା କି ଥାଇ ?
ସହି ଖରା ଶୀତ ପାଣି ପବନ    ସ୍ୱାର୍ଥତ୍ୟାଗୀ କାହିଁ ହୁଏ ସଞ୍ଚାଣ
ତେସନ, କଲ୍ପ କାମିନୀ ଚିତ୍ତ,
ଏ ଜାତି କଥାକୁ ବଳାଇ ଛତ । ୧୫ ।

ସ୍ୱପ୍ନରେ ଦିନେ ରସିକ ଦେଖି    ସ୍ୱୟଂ ଦୂତୀ ହେଲୁ ଫେରୁ କେ ସଖୀ
ଭାସିଲୁ ମୋହେ ହେ ନାଗର ମୂର୍ତ୍ତି    ତୁଷ୍ଟ ହେଲ ଦେଖି ଦେବୀମୂରତି
ମୋ ପ୍ରାଣ—ଯିବ ବେଳକୁ ଦେଖି,
ବାସେ ବସିଥିବ ପଥ ନିରେଖି । ୧୬ ।

ସ୍ୱ-ବାସରେ ଦେଖିବାକୁ ମାଗୁଣି    ବଶମ୍ବଦା ଜାଣିବ ବିଦଗ୍ଧମଣି
ଫୁଟିଯିବ ଆଖି ନେନେ ନ ଦେଖି    ମଦନ ମଥନ କରୁଛୁ ସାକ୍ଷୀ
ଭେଟିବ ମୋତେ ଯାଇଁ ମୂକର,
ମନ୍ଦ ନ ତାକୁଣୁ ହେବ ବାହାର । ୧୭ ।

ଅଜଣା ନଦୀକୁ କେ ଦିଏ ପଦ    ସାପ ଧରେ କିଏ ନ ଧରି ଗଦ
ଚଳିବା ନ ଜାଣି କେ ପିଏ ମଦ    ଖେଳିବା ନ ଜାଣି କେ କାଢ଼େ ପଦ
ସଜନି ! କିଏ ଆକାଶଫୁଲ,
ବସି ତୋଷେ କରେ ମନକୁ ମୂଳ । ୧୮ ।

ଲାଜେ ଯା ସଜନୀ ନ ଗଲୁ ଜଣା    ଖୋଜିଲୁ କେମନ୍ତେ ନାଗରମଣ୍ଡଳ
କେ ତୋତେ ଶିଖାଇଦେଲା ସେ ଭେଦ    ମୁହଁ ଖୋଜାଖୋଜି ଭାବବିନୋଦ
କାହିଁକି ? ରଙ୍କ ସଜନୀ ହେଲୁ,
ଅଙ୍କେ ବସ୍ତୁ ବସୁ ଚେଙ୍ଗ ପାଇଲୁ । ୧୯ ।

ସୁରତରୁ ଫୁଲ ଭିଡ଼ିବା ପାଇଁ    ହାତ ବଢ଼ାଇଲୁ ବାମନ ହୋଇ
କାଳ ପରି ଫିକ ଚାଲିଲୁ ହୃଦେ    ପାଖକୁ ଡାକୁଛୁ କିପାଁ ଆହ୍ଲାଦେ
ଥାଇ କି, ସଖି ! ବର ସୁମନ,
ପର କରେ କାହିଁ କା ସନମାନ । ୨୦ ।

ସତ ଲାଗେ ସେ ତ କହୁଛୁ ସତ    ଖାତିର ନ ହୁଏ ଆନ କଥା ତ
ବେଳକୁ ବେଳ ଯେ ବଢ଼େ ମାଦକ    କାଳକୁ କଣ୍ଠେ ନ ଗଲେ କଦକ
ମୀନାକ୍ଷି ! ତୁ ତ ଖରାପ ହେଲୁ,
ଲୋଭ କରି ଥୋପ ରସେ ଡୋକିଲୁ । ୨୧ ।

ଫୁଲଣୀ ହେଲୁ କି ସଜଦୁଲଣୀ    ନ ଜାଣିଲୁ କି ସେ ଚିତ୍ତ ଅଲଣୀ
ଲାଜ ମହତକୁ ଦେଲୁ ଯା ଦୋଲୁ    ସୁଖ ନ କରି ଏ କଷ୍ଟ ଭୁଞ୍ଜିଲୁ
ଯୁବତି ! ଅହା କି ନ ବୋଲିବେ,
ପିମ୍ପୁଡ଼ି ବଳକୁ ଲାଜେ ଲୋଡ଼ିବେ । ୨୨ ।

---

୧୬ ପଦ । ନାଗର ମୂର୍ତ୍ତି—ଶିବଙ୍କ ସାପର ରୂପ, ରସିକର ରୂପ । ଦେବୀମୂରତି—ଦେବୀଙ୍କ ରୂପ, ଦେବ ମୁଁ ରତି ।

୧୭ ପଦ । ସ୍ୱ-ବାସରେ—କାଲି ଦିନରେ, (ସ୍ୱ ବାସରେ) ନିଜ ଘରେ । ବଶମ୍ବଦା—ବଶୀଭୂତା । ବିଦଗ୍ଧ—ରସିକ, ବିଶେଷ ପୀଡ଼ିତ । ମନ୍ଦ—କାକ, ଦୁଷ୍ଟ ।

ପର ବୁଝି ନେଲା ମନ ମନାଇ          ଜାଣିଲା ହେଲକୁ ସେ କାଳ କାହିଁ ?
ଭଣ୍ଡି ଖସିଗଲା କେତେଡ଼େ ଚତୁର          ଧର୍ଷଣଯୂନଙ୍କୁ ହେଲା ଅଦର
ତୁନାଗି ! ତୁଳା ତଳପ ଗଲା,
ତୁଳାଗ୍ର ଛୁଇଁବା କଥା ଏ ହେଲା । ୨୩ ।

ନିସର୍ଗକୃପାଳୁ ଜାଣୁଛୁ ତୋତେ          ପର ଖେଦେ ଝଳି ଗଲୁ କି ସତେ
ନ ଭାଳିଲୁ ଯା ତୁ ଜର ବଗୁର          ଛାତରେ ଲଦିଲୁ ବଳେ ପଥର
ସୁମୁଖି ! ହେଲୁ କି ନିରମାଖୀ,
ଅପାଙ୍ଗେ କୃପାକୁ ଦେଲୁ ଉପେକ୍ଷି । ୨୪ ।

ବୁଝିଲି ନ ଦେଖି ଭକ୍ତକୁ ଚିନ୍ତା          ଯାଚି ହୋଇ ବଳେ କହୁରୁ କଥା
ଅଗ କଥା ବାଧ ଘେନା ଖସିବ          ପଛ କଥାରେ ତୋ ମନ ରସିବ
ଯା ମନ, ସଖି ! ଯନ୍ତ୍ରୀକି ରସେ,
ତା ବିନା ତାହାକୁ ଆନ ନ ବଶେ । ୨୫ ।

ମିଛେ ମିଛେ କପାଁ କର ଝାଉଁଲି          ସବୟାଜନ୍ତୁ ଏ ନାଗ୍ରୀମଣ୍ଡଳି
କଟାକ୍ଷ ବରଛା ଭୂଷାକୁ ପାଇ          ଥିବ କି ନିଷ୍ଠିନ୍ତେ ରସିକ ରହି
ଗୋଲୋକ, ଭୂପେ ଅତର ମୋ ଗାନ
ଏତେ ଝାଉଁଲିକି ବାଳା କି ପାନ । ୨୬ ।

## ୭୦ତିତମ ଛାନ୍ଦ

### ରାଗ—ନଳିନୀଗୌଡ଼ା

ପାହି ପାହି ଆସେ ନିଶି ସାଜେ ଉଷା ଅଙ୍ଗ ।
ବିଚ୍ଛେଦନୀ ପାଶେ ତୋଷେ ଗମଇ ରଥାଙ୍ଗ । ୧ ।
ଲାବି କାନ୍ତ ଆଗମନ ସରୋଜିନୀ ସଜ ।
ଗମେ ତେଜି କୁମୁଦିନୀ ଭ୍ରମର ନିର୍ଲଜ୍ଜ । ୨ ।
ଚକ୍ରବ୍ୟୂହେ ସାଜି ସେନା ରେଢ ଦଣ୍ଡଧାରୀ ।
ସମର ପ୍ରାଙ୍ଗଣେ ବଜାଇଲେ ରଣଭେରୀ । ୩ ।
ତତକ୍ଷଣେ ବାଜି ଉଠିଲା ଶତ ଶତ ତୂରୀ ।
ଜଗଝମ୍ପା ଶିଙ୍ଗା ଢୋଲ ନାଗରା ମହୁରୀ । ୪ ।
ସମକକ୍ଷ ପ୍ରତି ଯୋଦ୍ଧା ଅଙ୍ଗନରଶ୍ରେଣୀ ।
ଶକଟ ବ୍ୟୂହିତ ସେନା ଯାର ଅଙ୍କଳନ । ୫ ।

---

୨୩ ପଦ । ତୂଳଶ—ବକ୍ର ।

---

୧ ପଦ । ରଥାଙ୍ଗ—ଚକ୍ରବାକ ।

ବଜାଇଲେ ପୁଣ୍ଡ୍ରନାମେ ଧରି ମହାଶଙ୍ଖ ।
ବାଜିଲା ପଟହ ଭେରୀ ମର୍ଦ୍ଦଳ ଅନେକ । ୬ ।
ବାଧିଲା ତୁମୁଳ ଘୋଳ ଭୀଷଣୁ ଭୀଷଣ ।
ଉଡ଼ି ଧୂଳିରାଶି ନଭ କଲା ଆଚ୍ଛାଦନ । ୭ ।
ବାରିଦ ପରାୟେ ଗଲା ଧରା ନଭ ଘୋଟି ।
କି ଅବା ମାଡ଼ି ଆସିଲା ଅକାଳ କୁଜ୍‌ଝଟି । ୮ ।
ଶୁଣ୍ଡେ ଗଜ-ଗଣ୍ଡମଦଧାରା-ସ୍ରୋଧଜିତ ।
ହୋଇ ଶୁଭ୍ର ଚନ୍ଦ୍ରାତପ ପରା ପ୍ରକଟିତ । ୯ ।
ବାବଲ କତୁରୀ ରୁଦ୍ର ବ୍ରହ୍ମ ଯମଦାଢ଼ ।
ମନଭେଦୀ ତୀକ୍ଷ୍ଣମୂନା ହାବୁଡ଼ା ଗାରୁଡ଼ । ୧୦ ।
ପର୍ବତ ମୂଷଳ ଛେଲ ବଜ୍ର କଙ୍କପକ୍ଷ ।
ବାରୁଣୀ ଅଗ୍ନି ଭୂଜାଧ ଶର ଉଡ଼େ ଲକ୍ଷ । ୧୧ ।
କି ଦ୍ରୋଣ ପୁଷ୍କର ସମ୍ବର୍ତ୍ତିକ ଆବର୍ତ୍ତିକ ।
ପ୍ରଳୟ ଘନଘଟାରେ ହୋଇଗଲେ ଏକ । ୧୨ ।
ସହସ୍ର ଦୁ୍ୟତରେ ଖେଳେ ଝଟକ ବିଜୁଳି ।
ପଡ଼ୁଛନ୍ତି ଖସି ଶତ ଶତ ଉଲ୍କା ଝଳି । ୧୩ ।
ପ୍ରଳୟ ଭୀମ ଗର୍ଜନ ଗଗନ ମୁଖରେ ।
ବାଦର୍ଶ ବୃଂହିତ ହେଷା କୋଦଣ୍ଡ ଟଙ୍କାରେ । ୧୪ ।
ଜଗାଳିଲେ ମଣେ ଯେଣୁ ଶରେ ରବିବାଟ ।
ଦଶଦିଗ ଭୟେ ଅବା ଗୁଡ଼ିଲେ କୁହାଟ । ୧୫ ।
ଅଦମ୍ୟ ଅଭେଦ୍ୟ ଯେଣୁ ଚେଦି ଅନୀକିନୀ ।
କଲେ ବିଜୟ ସଂଶୟ ଅଙ୍ଗନରମଣୀ । ୧୬ ।
ଭେଦିବାରେ ଚକ୍ରବ୍ୟୂହ ବଳାଇଲେ ମତି ।
ଜାଣି ସିନ୍ଧୁପ୍ରବରାଜ ଭାଷଇ ଝଟତି । ୧୭ ।
ଏକନିଷ୍ଠ ମିତ୍ର ବନ୍ଧୁତ୍ୟାଗ ଅସହନ ।
ସଦାନୁଗତ ସୁହୃଦ ସଖାସମ ପ୍ରାଣ । ୧୮ ।
ସଖା ଯେବେ ସଙ୍ଗେ ଯୁଦ୍ଧେ ସଂଶୟ କି ପାଇଁ ।
ଭେଦ ଚକ୍ରବ୍ୟୂହ ଅରି ବିନାଶିବି ମୁହିଁ । ୧୯ ।
ଯାବତ ଏ ପିଣ୍ଡେ ପ୍ରାଣ ତାବତ ଏ ପଣ ।
ବିନାଶିବି ଚେଦିବଳ କରି ଘୋର ରଣ । ୨୦ ।
କଲେ ଶୁଣି ସାଧୁ ସାଧୁ ସର୍ବ ସେନାପତି ।
ଆଲିଙ୍ଗିଲେ ଅଙ୍ଗପତି କରି ସ୍ନେହ ଅତି । ୨୧ ।

୯ ପଦ । ଚନ୍ଦ୍ରାତପ—ଚାନ୍ଦୁଆ ।
୧୧ ପଦ । ଅରି—ଶତ୍ରୁ ।

ଭେଦିବାକୁ ବ୍ୟୂହ ଖରେ ଚଳେ ଏକେଶ୍ୱର ।
ତାରକା ବ୍ୟୂହଭେଦକୁ ଯେମନ୍ତ କୁମାର । ୨୨ ।

ସପ୍ତ ଦ୍ୱାରେ ମହାରଥୀ ସପ୍ତ ଛନ୍ତି ଜଗି ।
ହୋଇଛନ୍ତି ବାଡ଼ ପରି ସେନା ଲଗାଲଗି । ୨୩ ।

ଚକ୍ରକଡ ବୁଲି ଦେଖେ ପ୍ରଥମ ଦୁଆରୀ ।
ଜଟିଛନ୍ତି ଚେଦିପତି କରେ ଧନୁ ଧରି । ୨୪ ।

ଦ୍ୱିତୀୟରେ ତାଙ୍କ ତାଙ୍କ ଶିବ ଜମାବର ।
ପଣେ ମହାମଦେ ଯୁଝି ଯୁଝି ବ୍ୟୂହେ ବୀର । ୨୫ ।

ଯୁଝି ଯୁଝି ନବ ଅକ୍ଷୌହିଣୀ ସୈନ୍ୟ ଭେଦି ।
ଦ୍ୱିତୀୟରେ ଫେରଆ‌ଇସ ଶତ୍ରୁ କ୍ରମରୋଧି । ୨୬ ।



ରଖ ଏ ଦାସ ଶିବେ ହର । ରସିଛୁ ଶିବ ଶୁରୂପର । ୧ ।
ରସ ସରସ ତୋ ଜମାର । ରସାଏ ରତ ବାହୁବାର । ୨ ।
ରଜନୀକର ମାନେ ଖର । ରତରେ ପରମ ଭୁ ହର । ୩ ।

ଏକାଳେ ତାପସ ସଙ୍ଗେ ଇନ୍ଦିରା ପ୍ରବେଶ ।
ପୂରି ରହିଛି ବଦନେ ଅପୂର୍ବ ହରଷ ! ୨୭ ।
ଇନ୍ଦିରାର ଆଗମନ ଭାବି ଅଙ୍ଗପତି ।
ତାପସୀଙ୍କ ରଖିଥିଲେ ନିଜ ସେନା କତି । ୨୮ ।
ତାପସଙ୍କୁ ଦେଖି ତହିଁ ତପସ୍ୱିନୀ ଭାବେ ।
ହେଲା ଅଦ୍ଭୁତ ମିଳନ ସିଦ୍ଧି ପରଭାବେ । ୨୯ ।
ପୁଣି ଇନ୍ଦିରାଙ୍କୁ ତପୀଗହଣରେ ଚାହିଁ ।
ତପପ୍ରଭାବ ଇନ୍ଦିରା ବଦନେ ଦେଖଇ । ୩୦ ।
ପ୍ରସନ୍ନ ଶାନ୍ତ ବଦନେ ରହିଛି ଶୋଭାଙ୍ଗୀ ।
ପୂର୍ବ ରୁଦ୍ରତାକୁ ହରି ପ୍ରେମ ଅଛି ଭାଙ୍ଗି । ୩୧ ।
ବିସ୍ମରଇ ମନେ ମନେ ମଳୟୂର ଗୁଣ ।
କରଇ କାଷ୍ଠକୁ ଅହା ଅଦ୍ଭୁତ ଚନ୍ଦନ । ୩୨ ।
ବେଗେ ତାପସୀ ତାପସ ପଦେ ପ୍ରଣମିଲା ।
ତପୀ ଖେଦେ ନିଜ ଦୋଷ ସୁମରଣି କଲା । ୩୩ ।
ପ୍ରେୟସୀର କ୍ଷମାଗୁଣେ ମୁଗ୍ଧ ହୋଇ ତପୀ ।
ଭାଷେ ସତି ! ତୋ ଗୁଣ ମୁଁ ନ ପାରେ କଳପି । ୩୪ ।
ତଦନ୍ତେ ତାପସୀ ଇନ୍ଦିରାଙ୍କୁ କୋଳ କରି ।
ପଚ୍ଛରେ ଶୁଭେ ଅଛନ୍ତି ରାଜରାଜେଶ୍ୱରୀ । ୩୫ ।
ପ୍ରଶ୍ନଛଳେ ବରଦାନ ଜାଣିଲା ଇନ୍ଦିରା ।
ପୁଲକ ପରାଣେ କ୍ଷଣେ ସ୍ତମ୍ଭବଶେ ଧୀରା । ୩୬ ।
ଇନ୍ଦିରା କହଇ ଘେନ ପ୍ରଣାମ ମୋହର ।
ଗୁରୁପତ୍ନୀ ପୁଣି ଗୁର୍ବୀ ସନ୍ନ୍ୟାସ ଆଚର । ୩୭ ।
ନାଶାମୁଖ ଚାହିଁ ସ୍ୱତଃ ସମର ସ୍ତବ୍ଧତ ।
ଘନ ପେଷି ବେନି ନୃପେ ତପୀ କଲେ ବ୍ୟକ୍ତ । ୩୮ ।
"ତାପସୀ ଇନ୍ଦିରା ସଖୀଭାବ ହେବା ଜାଣି ।
ନିବର୍ତ୍ତି ନିବର୍ତ୍ତି ରଣ ବେନି ନରମଣି । ୩୯ ।
ଶାନ୍ତସଭା ବସାଇଲେ ରଣେ ତପିବର ।
ତାପସୀ ଇନ୍ଦିରା ସଙ୍ଗେ ଅଛନ୍ତି ଆବର । ୪୦ ।

ଚେଦୀପତି ଅଙ୍ଗନୃପ କରିଛନ୍ତି ବିଜେ ।
ସିନ୍ଧୁଯୁବରାଜ ନବ ଉତ୍କଣ୍ଠା ବିରାଜେ । ୪୧ ।

ଚତୁର୍ଦ୍ଦିଗେ ଘେରି ବସିଛନ୍ତି ସେନାପତି ।
ବେନି ପକ୍ଷ ଖ୍ୟାତ ଅନୀକନୀଙ୍କ ସଙ୍ଗତ । ୪୨ ।

ଫୁଲବାଣ କି ଜାଣନ୍ତି କାଳାକାଳ ନାହିଁ ।
ଚତୁରେ ଇନ୍ଦିରା ଯୁବରାଜ ଚାହାଁଚାହିଁ । ୪୩ ।

ନାରୀମନ ନାରୀ ଜାଣି ପାରଇ ସହଜେ ।
ତାପସୀ ସେକାଳେ ନାନାକଥା ମନେ ହେଜେ । ୪୪ ।
ବାୟୁସେବ ଏହି କାଳେ ବସି ତରୁଡାଳେ ।
ସବୁ ଜାଣିଲା ତାପସୀ ସବୁ ଯୋଗବଳେ । ୪୫ ।
ମାତ୍ର ସେ କାଳରେ କିଛି ନ କରି ବ୍ୟକ୍ତ ।
ଅପେକ୍ଷା କରି ରହିଲା ମଙ୍ଗଳ ମୁହୂର୍ତ୍ତ । ୪୬ ।
ତାପସ କରେ ପ୍ରବୃତ୍ତ ଯୁଦ୍ଧେ ହେଉ ଶାନ୍ତ ।
ରସଲେଖା ଏହି ଶୁଭ କାଳେ ଲଭୁ ପତି । ୪୭ ।
ସମ୍ବାଦ ଲଭି ଯୁବେଶ ରସଲେଖା ସତୀ ।
ଦୂତେ ଗଲେ ଆଣିବାକୁ ରସଲେଖା ପତି । ୪୮ ।
ସୁଚତୁର ଅଙ୍ଗରାଜ ଜାଣି ସଖୀ ମନ ।
ରହିଲେ ଅନାଇ ତାପସୀଙ୍କ ଅନୁକ୍ଷଣ । ୪୯ ।
ତାପସୀ ଏ ସ୍ନେହ ଦୃଷ୍ଟି ଭାବେ ନାନାଭାବ ।
କହିଲା ଗୁପତେ ତପସ୍ୱିନୀ କାନ୍ତେ ସବ । ୫୦ ।
ତପୀ ଚେଦିନୃପ ଅଙ୍ଗପତି ମତ ନେଇ ।
ଇନ୍ଦିରା ଏ ଯୁବକଙ୍କେ ବାହା ହେଉ କହି । ୫୧ ।
ଯୁବରାଜ ଇନ୍ଦିରା ଆନନ୍ଦ ନୋହେ କହି ।
ଗାନ୍ଧର୍ବ ମତରେ ପୁଣି ବାହା ହେଲେ ତହିଁ । ୫୨ ।
ରସଲେଖା ପତି ମିଳେ ମାତଙ୍କୁ ଓହ୍ଲାଇ ।
ପତି ଲଭି ରସଲେଖା ସୁଖ ନୋହେ କହି । ୫୩ ।
ତପୀ ଅହିଂସା ପ୍ରଭାବେ ଏ ଶାନ୍ତି ସ୍ଥାପନ ।
ତାପସୀ ବାକ୍ୟସିଦ୍ଧିରେ ଅଦ୍ଭୁତ ମିଳନ । ୫୪ ।
ପବିତ୍ର କାଶ୍ୟପଗୋତ୍ରେ ମୋହର ଜନମ ।
ବୃଦ୍ଧ ପ୍ରପିତାମହଙ୍କ ରାଧାକୃଷ୍ଣ ନାମ । ୫୫ ।
ଗୁଣଧାମ ସୁଚରିତ୍ର ପରମ ଧାର୍ମିକ ।
ଦେବତା ସାଧୁ ବ୍ରାହ୍ମଣ ବୈଷ୍ଣବ ସେବକ । ୫୬ ।
ପ୍ରପିତାମହ ମୋ ଜଗଦୀଶ ଜନାର୍ଦ୍ଦନ ।
ଜଗଦୀଶ କୁଳଜନାଙ୍କରେ ଶୁଦ୍ଧପ୍ରାଣ । ୫୭ ।
ପ୍ରତାପବାନ ଧାର୍ମିକ ସେ ନୀତିକୁଶଳ ।
ବହୁ ଅର୍ଥ ସଦୁପାୟେ କରିଥିଲେ ଚୁଲ । ୫୮ ।
ଶେଷ ଜୀବନ କାଟିଲେ ବୃନ୍ଦାବନେ ଯାଇ ।
ସଦ୍‌ଗୁରୁ ସମୀପେ ବଇଷ୍ଣବ ଦୀକ୍ଷା ନେଇ । ୫୯ ।
ତାଙ୍କ ତନୟ ଶ୍ରୀରାମ ଗଉରାଙ୍ଗ ସେନ ।
ଗଉରାଙ୍ଗ ନାନା କଳାବିଦ୍ୟାରେ ସମ୍ପନ୍ନ । ୬୦ ।

ବୀରଭଦ୍ର ମୋର ପିତା ଗଜସିଂହସୁତ ।
ପଣ୍ଡିତ ଧାର୍ମିକ ଦାନୀ ପରମାର୍ଥେ ଖ୍ୟାତ । ୬୧ ।
ବିଷ୍ଣୁ ଉପାସକ ବୈଷ୍ଣବ ସେବାମତ୍ତ ।
ସଦା ହରି ପ୍ରସଙ୍ଗରେ କଟେ ଦିନ ରାତ । ୬୨ ।
ରାଧାରମଣଙ୍କୁ ନେଲେ ଭକ୍ତିରେ ଗୃହେ ।
ଶିଶୁକାଳେ ଗୃହୁ ମୋତେ କୋଳ କଲେ ସ୍ନେହେ । ୬୩ ।
ଯେ ନାତାଇ ଗଜସିଂହ ମଧୁର ମିଳନ ।
କି ବର୍ଣ୍ଣିବି ତାଙ୍କ ଗୁଣ ଅବା ଅକିଞ୍ଚନ । ୬୪ ।
ଅର୍ଚ୍ଚିଲେ ଜାଣେ ଆମ୍ଭ ଗୃହର ମାର୍ଜାର ।
ବଞ୍ଚିବାପାଏ ନ କଲା ଅମିଷ ଆହାର । ୬୫ ।
ମାତା ମାତାମହୀ ପୁଣ ମୋ ପ୍ରମାତାମହୀ ।
ଧର୍ମପରାୟଣା ସଦା ଦେବଦେବୀସ୍ନେହୀ । ୬୬ ।
ଗୃହ ପୁତ୍ରବଧୂ ଭାନୁମତୀ ମୋର ମାତା ।
ମଙ୍ଗରାଜ ରାଧାକୃଷ୍ଣ ତାହାଙ୍କର ପିତା । ୬୭ ।
ଜ୍ୟେଷ୍ଠ ସହୋଦର ସୁନାମଣି ଯଦୁମଣି ।
କଣ୍ଠେ ଶ୍ରୀ ବୃନ୍ଦାବନ କୁଞ୍ଜ ବ୍ରଜ ପୁଣି । ୬୮ ।
ସହୋଦରୀ ଗୃହୁ ଛବି ଜଳଜମଞ୍ଜରୀ ।
ଶ୍ରୀମତୀ ମୋ ଜ୍ୟେଷ୍ଠଭ୍ରାତୃପତ୍ନୀ ମାତା ସରି । ୬୯ ।
ଜ୍ୟେଷ୍ଠ ବେହ୍ନା ଭାଇ ରାଧାରମଣ ଭକତ ।
ବହୁ ପ୍ରଧାନ ଉପାଧି ଛନ୍ଦିଗୃହେ ଖ୍ୟାତ । ୭୦ ।
ଅଚ୍ୟୁତପୁରରେ ଥିଲେ ମୋଉଁସି ସିଦ୍ଧ ସାଧୁ ।
ଦେଲେ ଘନଶ୍ୟାମ ମୋତେ ବାଣୀମନ୍ତ୍ରମଧୁ । ୭୧ ।
ପିତୃବ୍ୟ କାଳଚରଣ ଶଙ୍କରଭକତ ।
ଭଦ୍ରେଶ୍ୱର ସେବା ତତ୍ତ୍ୱାବଧାନେ ନିଯୁକ୍ତ । ୭୨ ।
କାଶୀନାଥ ସୁତ ଜଇରାମ ଧନୀ ଧୀର ।
ତାଙ୍କ ତନୟ କବିତ ପ୍ରତାପୀ ଶେଖର । ୭୩ ।
ଆନନ୍ଦପୁର ବାଣ୍ଟରେ ଦିଶେ ମନୋହର ।
ତହିଁରେ ଯେ ପୂର୍ଣ୍ଣଚନ୍ଦ୍ର ଯଶସ୍ୱୀ ଭାସ୍କର । ୭୪ ।
ତାହାଙ୍କ ମଧ୍ୟମା ସୁତା ପ୍ରଣୟବଲ୍ଲରୀ ।
ମୋର ହୃଦକୁଞ୍ଜ ଅଛି ପ୍ରଣୟେ ଅବୋରି । ୭୫ ।
ବେଲ ଫୁଲ ହାର ପରି ହୃଦେ ବିଲମ୍ବିତ ।
ପ୍ରସଙ୍ଗକ୍ରମରେ କଲି ସ୍ୱବୃତ୍ତାନ୍ତ ବ୍ୟକ୍ତ । ୭୬ ।
ଗ୍ରାମଦେବତା ମଙ୍ଗଳା ଦେବୀ ଭଗବତୀ ।
ଯାହାଙ୍କ କୃପାରେ ଖଣ୍ଡେ ଅଶେଷ ଦୁର୍ଗତି । ୭୭ ।

ସ୍ୱର୍ଣ୍ଣପ୍ରସୂ ଏ ଭାରତ ସ୍ୱର୍ଗପ୍ରତିମ ।
ତହିଁରେ ଉତ୍କଳ ଯହିଁ ଜଗନ୍ନାଥ ଧାମ । ୭୮ ।
ଭାଗ୍ୟେ ହୋଇଅଛି ଏଥି ଜନମ ମୋହର ।
ଅସୁରେଶ୍ୱରରେ ରମ୍ୟ ଯେ ଗୋପାଳପୁର । ୭୯ ।
ଚିତ୍ତ ଚିନ୍ତ ଚେତନେ ତୁ ନିତାଇ ଚୈତନ୍ୟ ।
ଚନ୍ଦା ଚନ୍ଦ ଚନ୍ଦନ୍ତି ତ ନୃତ୍ୟେ ନାନା ତାନ । ୮୦ ।
ନତନ୍ତୁ ନୂତନ ତନ୍ତ୍ର ନୂତନ ନର୍ତ୍ତନ ।
ନିତ୍ୟ ଚିନ୍ତ ଚେତ ଯାତା ନିତ୍ୟ ଚଇତନ୍ୟ । ୮୧ ।
ଚନ୍ଦ୍ରକାମ ସୁଧା ଗଣପତ ଚଇତନ ।
ଗୁଣକେ ଗୁଣକେ ସର୍ବେ ବିଲକ୍ଷ୍ୟ ଚୈତନ୍ୟ । ୮୨ ।
ଚତୁର୍ବର୍ଗ ବଳି ପ୍ରେମଦାତା ସେ ଯେ ହର ।
ଅନ୍ତରେ ତ୍ରିଭଙ୍ଗ ରୂପ ବାହାରେ କିଶୋର । ୮୩ ।
କଳିଜୀବ ଉଦ୍ଧାରକୁ ଭବେ ଅବତାର ।
ନଦିଆ-ନଭ ଶୀତାଂଶୁ ଗୌରାଙ୍ଗସୁନ୍ଦର । ୮୪ ।
ସେହୁ ଲକ୍ଷ୍ମୀନାରାୟଣ ଇଷ୍ଟଦେବ ଜାଣି ।
ଶ୍ରୀ ଗୋଲୋକ ସାଧୁକୃପାବଳେ ଛାନ୍ଦ ଭଣି । ୮୫ ।

## ୭୧ତମ ଛାନ୍ଦ

ବୁଧେ ଘେନ ଏକମନେ । ବିରହୀ ବସ୍ତୁରେ ମନେ ।
ବସି ବିଷାଦ କାତରେ । ବାମାକୁ ଚିନ୍ତ ଅନ୍ତରେ । ୧ ।
ବିଧିରେ ସେ ଗତ ଲୀଳା । ବିଧୁରେ ଅନଙ୍ଗଖେଳା ।
ବରବରଣୀ ପାସୋର । ବିଳପୁଥିବ ନାଗରୀ । ୨ ।
ବିଳମ୍ବେ ଘନକୁନ୍ତଳା । ବିସ୍ମର ଭାବେ ଅବଳା ।
ବିରେପାଇଥିବ ମାନ । ବିଧାନେ ଚଣ୍ଡୀ ସମାନ । ୩ ।
ବିଦଗ୍ଧା ହୋଇ ବିଦହି । ବିରସରେ ଥିବ ରହି ।
ବିଳପୁଥିବ ନିରତେ । ବାଙ୍କେ ଅନାଇ ମୋ ରତେ । ୪ ।
ବିକଳେ ସନ୍ଦର୍ଭଭାଷୀ । ବିକସିତ ମଲ୍ଲିହାସୀ ।
ବିଲୋକ ସର୍ବ ତାମସୀ । ବସିଥିବ ମଦାଳସୀ । ୫ ।
ବିଧାନେ ସୁଷମା ଏଡ଼ି । ବିହିଥିବ ନେଣେ ଭେଡ଼ି ।
ବୁଦ୍ଧି କରଥିବ ବଣା । ବିଜ୍ଞାନୀ ଧୀରା ଅଙ୍ଗନା । ୬ ।

---

୮୦ ପଦ । ଚନ୍ଦା—ରାଧାଙ୍କର ସଖୀବିଶେଷ ।

---

୩ ପଦ । ଚଣ୍ଡୀ—କୋପନା ।

ବିପ୍ରଲବ୍ଧା ଭାବେ ସ୍ମର | ବିତାପରେ କୃଶୋଦରୀ |
ବସିଥିବ ତେଜି ଶ୍ୱାସେ | ଦରବଲ୍ଗଣୀ ହୁତାଶେ | ୭ |
ବିଧାନେ ମଣି ଖଣ୍ଡିତା | ବଞ୍ଚିତା ନ କରି ଚିନ୍ତା |
ବିଯୋଗିନୀ ଥିବ ଦରେ | ବିଦ୍ଧ କୁସୁମ ଶରେ | ୮ |
ବଳକାପୁର ଶୋଭିନୀ | ବରବାରଣଗାମିନୀ |
ବସି ଚଉଦ ଭୁବନ | ବିକଳ୍ପ ଥିବ ତ ଶୂନ୍ୟ | ୯ |
ବସିଥିବ ଘନକେଶୀ | ବିମାନେ ମୋହ ଅବେଶୀ |
ବିଭଞ୍ଜନେ ତା ଗୁମାନ | ବିଘ୍ନ ନୋହେ ବିଧାନ | ୧୦ |
ବିଗୃହେ ପ୍ରବେଶ ଗୃହି | ବିଳାପକୁ ଅଙ୍କୁରାଇ |
ବସିବ ମଜ୍ଜନାବେଶୀ | ବସୁମତୀଙ୍କ ସୁବେଶୀ | ୧୧ |
ବିଭାବ ମୋ କୁଳପଣ | ବିଧିରେ ରାମାରତନ |
ବଡ଼ ସବିଗକୁ ଭୁଲି | ବୋଲୁଥିବ ମଲି ମଲି | ୧୨ |
ବୋଧିବାକୁ ଭାଷା କାହିଁ | ବିଧିରେ ନୋହେ ଯୋଗାଇ |
ବୋଧିଲେ ଚବୁଦ୍ଧ ଧର | ବାଧିବ ବିଶେଷ କରି | ୧୩ |
ବିକର୍ତ୍ତିନେ ତା ସନ୍ତାପ | ବୋଧିବା ହେବ ପ୍ରଳାପ |
ବିପକ୍ଷ ନୋହୁ ବିଷାଦ | ବୃଥା ସାନ୍ତ୍ୱନା ପ୍ରମାଦ | ୧୪ |
ବିରସେ ମାଟିଲେ ଦୋଷ | ବିଧାନୀ କରିବ ରୋଷ |
ବଣା କରିବାକୁ ମାନ | ବାଣୀ ନୋହିବେ ସମାନ | ୧୫ |
ବାରିଜଗନ୍ଧା ସେ କ୍ଷଣେ | ବାହିବି ମୋ ସ୍ନେହ ମଣେ |
ବାରି ପୀନ ପୟୋଧରେ | ବୁହାଇବ ନେତ୍ର ନୀରେ | ୧୬ |
ବୁଝାଇଲେ ଯେତେ ମତେ | ବୁଝେ କି ମାନିନୀ ସତେ |
ବିହି କି ଉପାୟମାନ | ବୋଧିବି ରାମାରତନ | ୧୭ |
ବାସରେ ଅଳି ସଙ୍ଗରେ | ବସିଥିବ ଆଳାପରେ |
ବିନୋଦେ ବଚନାଳସୀ | ଜ୍ୟୁସୀଙ୍କି ଥିବ ହସି | ୧୮ |
ବାସରେ ହେଲେ ପ୍ରବେଶ | ବାମାକୁ କରିବେ ବେଶ |
ବାଞ୍ଛାବତୀଙ୍କ ପ୍ରଶଂସି | ବିଷାଦ ତା ନେବେ ନାଶି | ୧୯ |
ବର୍ଣ୍ଣି ମୋର ସ୍ନେହରାଶି | ବାମା ମାନ ଥିବେ ନାଶି |
ବାମେ ପ୍ରଶଂସି ବିଦେହ | ବଞ୍ଚାଉଥିବେ ମୋ ସ୍ନେହ | ୨୦ |
ବାମା ଥିବ ସୁପ୍ରସନ୍ନ | ବିନୋଦେ ଦେବ ଦର୍ଶନ |
ବହିବାକୁ ମାନ ଖର | ବାମା ନ ପାରିବ ଭର | ୨୧ |
ବିଭାବରୀରେ ଉଚିତେ | ବିଧାନ ସରିଗେ ମୋତେ |
ବିଭାବ ରାମାରତନ | ବହିଥିବ ତା ଶୟନ | ୨୨ |

---

୧୪ ପଦ । ବିକର୍ତ୍ତିନ—କାଟିବା ଅର୍ଥାତ୍ ଦୂରକରିବା ।
୧୬ ପଦ । ବାରିଜଗନ୍ଧା—ପଦ୍ମଗନ୍ଧା ସ୍ତ୍ରୀ, ପଦ୍ମିନୀ ।

ବନୋଦେ ତା ଗର୍ଭାଗାରେ । ବଳସିବ ଧାତ୍ରକାରେ ।
ବାଳୀଶ ଦେଖି ନନ୍ଦନ । ବାଳଣ ହେବ ନୟନ । ୨୩ ।
ବନ୍ୟସ୍ତ କରିବ କରେ । ବାମନସୂନା ଶରୀରେ ।
ବଳ୍ଭିବ ମୋତେ କେ ତୁଷ୍ଟ । ବାମା ହେବ ମନେ ହ୍ରଷ୍ଟ । ୨୪ ।
ବସି ଉଠିବ ଚମକ । ବଡ଼ୁ ଉର୍ଦ୍ଧ୍ୱ ବକ୍ରୀ ।
ବୋଲ୍‌ବ ତୋ କିଣାଦାସ । ବାମା ନ ଯିବ ବିଶ୍ୱାସ । ୨୫ ।
ବାନ୍ଧବୀ ପ୍ରଦୀପ ଜାଳି । ବାମେ ଦେଖି ହେବ ଭାଳି ।
ବହୁବାକୁ ମାନ ଖର । ବାମା ନ ପାଇବ ତର । ୨୬ ।
ବାଭବସୁପୂଜା ବାର । ବଶୀଭୂତା ଥିବ ମୋର ।
ବର୍ଗୀ ପୁତ୍ର ମାନସେ । ବାଞ୍ଛୁଥିବ ଶୁଭ ତୋଷେ । ୨୭ ।
ବାଞ୍ଛାକାଳେ ମୋତେ ତାଳେ । ବସିଯିବ ଯାଇଁ ଅଳେ ।
ବହୁବାକୁ ମାନ ଖର । ବାମା ନ ପାଇବ ତର । ୨୮ ।
ବୁଢ଼ୀବା ଛଳରେ ମିଳ । ବାନ୍ଧବୀ ଖେଳ ମୋ ଚନ୍ଦ ।
ବଲ୍ଲେଖୁଥିବ ଯେ କାଳେ । ବସି ତା ଶୟନ ଅଳେ । ୨୯ ।
ବଦନ ଦେବ ଦେଖାଇ । ବାଳା ହେବ ତୁଷ୍ଟ ଗୃହୀ ।
ବହୁବାକୁ ମାନ ଖର । ବାମା ନ ପାଇବ ତର । ୩୦ ।
ବଞ୍ଚନାରେ ଦେବ ତୋଷ । ଛାଡ଼ିବ ତାପସୀ ବେଶ ।
ବଧୂସ୍ୱ ପୁରେ ମିଳିବ । ବାମା ହୃଦୟ କଳିବ । ୩୧ ।
ବଧୂରେ ତା କାନ୍ତପ୍ରୀତ । ବର୍ତ୍ତିବ ଦେଖିଛୁ କେତ ।
ବାମା ହୋଇ ହସ ହସ । ବୋଲୁଥିବ ବସ ବସ । ୩୨ ।
ବୈଷ୍ଣବୀ ବେଶ ତେଜିବ । ବର ରୂପ ଦେଖାଇବ ।
ବହୁବାକୁ ମାନ ଖର । ବାମା ନ ପାଇବ ତର । ୩୩ ।
ବହୁବ ନାପିତୀ ବେଶ । ବାସରେ ହେବ ପ୍ରବେଶ ।
ବାନ୍ଧବୀ ପଦ ଯୋଗାଇ । ବଳେ ଲକ୍ଷା ଦେବ ନେଇ । ୩୪ ।
ବର୍ତ୍ତି ଲେଖିବ ତର୍ଦ୍ଧିରେ । ବହୁବ କରୁଣା ଧୀରେ ।
ବାନ୍ଧବୀ ପଦପଲ୍ଲବ । ବଳେ ବାଞ୍ଛେ ଦାସ ଭବ । ୩୫ ।
ବାମା ଜାଣି ହେବ ରୁଷ୍ଟା । ବୋଲିବ ତୁ ବଡ଼ ଧୃଷ୍ଟା ।
ବଳେ ଚଳିବ ହେମାଙ୍ଗୀ । ବଡ଼ ମାନ ଯିବ ଭାଙ୍ଗି । ୩୬ ।
ବୋଧିବ ହୋଇ କାତର । ବୋଲିବ କିଣା କୋସ୍ୱର ।
ବହୁବାକୁ ମାନ ଖର । ବାମା ନ ପାଇବ ତର । ୩୭ ।
ବନୋଦନୀ କାବ୍ୟ ପଢ଼ି । ବରସରେ ଥିବ ପଢ଼ି ।
ବରହ ବାହାଣୀମାନ । ବାଙ୍କ କରିଥିବେ ମାନ । ୩୮ ।

---

୩୧ ଛନ୍ଦ । ବଞ୍ଚନା—ଠକାମି ।

ବାଳବାପୁରେ ଏକାଳେ । ବଧୂରେ ମିଳିବ ଭାଳେ ।
ବନ୍ଧୁବାକୁ ମାନ ଖର । ବାମା ନ ପାଇବ ଭର । ୩୯ ।
ବାଳା କୁସୁମ କାନନେ । ବସିଥିବ ଖେଦ ମନେ ।
ବାସ ଭ୍ରମରର ଫୁଲ୍ଲେ । ବଲ୍ଲେକୁଥିବ ଅକୁଳେ । ୪୦ ।
ବାନ୍ଧବା କାଳେ ପୁଂସ । ବାମେ କରବ ପୌରୁଷ ।
ବନ୍ଧୁବାକୁ ମାନ ଖର । ବାମା ନ ପାଇବ ଭର । ୪୧ ।
ବଧୂରେ ଝଂଟକହାସୀ । ବଲ୍ଲେକବା କାଳେ ଶଶୀ ।
ବହ୍ନିବ ତା ନେଜେ କର । ବପସ୍ତ୍ରୁ ଯାଇଁ ଖର । ୪୨ ।
ବାହ୍ନବା ମୋ କର ଧର । ବଭୂଷିବ ସହଚରୀ ।
ବଲ୍ଲେକ ମୋର ବଦନ । ବାଳୀଶ ହେବ ସୁମନ । ୪୩ ।
ବରଚ କାସ ସୁମୁହାଁ । ବଦନ ଦେବ ନୁଆଇଁ ।
ବନ୍ଧୁବାକୁ ମାନ ଖର । ବାମା ନ ପାଇବ ଭର । ୪୪ ।
ବର୍ତ୍ତରେ କରହ୍ମା ଯେତେ । ବର୍ଣ୍ଣି ପାରେ କବ କେତେ ।
ବଯୋଗିନୀଙ୍କ ଏ ମୃଦ । ବରଚେ ଗୋଲ୍ଲେକ ଛନ୍ଦ । ୪୫ ।

## ୭୨ତମ ଛାନ୍ଦ

ରାଗ—ପଞ୍ଚମ ବସନ୍ତ

ଯେନ ଏ ରସ ସୁମନ୍ତ ପତିସଙ୍ଗେ ଦିନେ ରତି ଖେଳୁଥିଲା ପଶା ମନ ତୋଷେ । ଗୃହ୍ନୁଁ କନ୍ଦର୍ପେ ବ୍ଦନ କହି ଚିତ୍ର ଛନ ଛନ କଲାମନ ଓ୍ଣା ସ୍ନେହେ କଲେ । ରତିପତି । ଭାଷେ ଏ କି ଗୀତ ଜବାଧର ! କଣା ଜନରେ କରୁଣା ନ ଶୋଭଇ କଲେ ଓ୍ଣା ଛଣାସୁଧାବାଣୀ ମୁଁ ତୋହର । ୧ ।

ଶୋକନେତ୍ରୀ ଥନ ଥନ ରତି ଭଣେ ଜୀବଧନ ! କେଉଁ ଗୁଣେ କହ 'ମୁଁ ତୋହର' । ବଳେ ଯେବେ ଖେଳେ ଖେଳ ମନେ ପାଞ୍ଚ କେଉଁ ଖଳ ତୁଚ୍ଛ ଦିଅ କର ମୋ ଅଦର । ପ୍ରାଣନାଥ ! ଦାସୀରେ କି କପଟ ଯୋଗାଇ । ଜୀବଜୀବ କଲେ ପର କିଏ ବା କରବ ମୋର ଚିରଦୁଃଖ ଧାତା ଥିଲା ଲିହ୍ନି । ୨ ।

କେଳତ କରପଲ୍ଲବ ଧରି ଭାଷେ କାମଦେବ ଗୃହେ ହେଲା ମନ ମୋ ଚଞ୍ଚଳ । ଇନ୍ଦୁରେଖାକୁ ରଥରେ ନେଲା ସଜନୀ ସାଙ୍ଗରେ ତାପସୀ ସେ କାନ୍ତେ ହେବ ମେଳ । କାମକଳା । ପୃଚ୍ଛେ ତହିଁ କବା ପ୍ରୟୋଜନ ? ଗମିଲା ସେ ପତି ପାଶ କାହିଁକି ହୁଅ ହୁତାଶ ନ ତେଜିଲ ଭୁଲଭୁଲି ପଣ । ୩ ।

କାମ ଭାଷେ ଖେଦେ ବସି ଶୁଣ ସୁକୁଞ୍ଚିତକେଶି ! ପତି ବିରହରେ ଥିଲା ଧନୀ । ଜାଣି ତା ଶୁଭ ମିଳନ ହେଲେ ଭୁଲିବ ମୋ ଠାଣ ଜଗି ବିନ୍ଧୁଥିଲି ବାଣଶ୍ରେଣୀ । ଇନ୍ଦୁରେଖା । ଗୃହିଲେ ବେଢ଼ି ଯା ପଦଧୂଳି । ବାସ ଚହଟକୁ ପାଇ ଗୃହେ ଗୋଡ଼ାଇ ଗୋଡ଼ାଇ ତୋଷଭରେ ଚୁମ୍ବୁଥାନ୍ତି ଅଳି । ୪ ।

ଆଜି ପ୍ରମୋଦ ଉଦ୍ୟାନେ ବୁଲୁଥିଲା ଖେଦମନେ ମନସ୍ୱୀ ପୁଲକେ ବିଯୋଗିନୀ । ରହିଥିଲା ପାଞ୍ଚ ଖଳ ଅନାଉଁ ସେ ନୀଳୋତ୍ପଳ ବିନ୍ଧିଲା ସ୍ତମ୍ଭନ ଉଗ୍ରଶରେଣ । ସ୍ତମ୍ଭବଶେ । ଅନାଇଲା ଲୁଟିଲେ ନଳିନ । ତତ୍ତୋରଣରେ ଗୁଣ ଭରି ଆକର୍ଣ୍ଣ ଆଣି ଓଟାରି ଶୃଙ୍ଗେ ଛାଡ଼ିଦେଲା ସମ୍ମୋହନ । ୫ ।

ବସନ୍ତଦୂତର ଗୀତେ ଅନାଇ ଦେଉଁ ସେ ଚୂତ ବିନ୍ଧିଲା ଶୋଷଣ କାମ କ୍ରୂର । ନୀଅଳୀରେ ଦେଉ ଅଣି ତାପନ ବିନ୍ଧିଲା ଯୋଗି ଜ୍ୱାଳାବନଶେ ପଡ଼ିଲା ଉପ୍ପେଲ୍ଲୁ । ଶୁଦ୍ଧମୁହିଁ । ଅଶୋକେ ପଡ଼ାଉ ତା ଇକ୍ଷଣ । ବାମ ଜାନୁ ପାଞ୍ଚ ଖରେ ଟେକି ରଖି ବାମେତରେ ଛାଡ଼ିଲା ଶାୟକ ଉନ୍ମାଦନ । ୬ ।

ପୁଙ୍ଖେ ଧନେ ଏହିପରି ଫୁଲଧନୁ କରେ ଧରି ଈଶାନଙ୍କୁ ବିନ୍ଧିଥିଲା ବାଣ । ଅଙ୍ଗ ନାଶେ ନାହିଁ ତର ତେଣୁ କଲା ଜରଜର ମନୋଜ ମୁଁ ଙ୍ଗାଚରେ ମୋ ଠାଣ । ପ୍ରାଣାଧିପେ । ଧନ୍ୟ ଧନ୍ୟ ସେ ସତୀ ନାଗରୀ । ହା ହା ପ୍ରାଣନାଥ କହି ଉଚ୍ଚଧ୍ୱନି ଦେଲା ଶୁଦ୍ଧି ଅନ ନ ଭାବିଲା ରସାତୁରୀ । ୭ ।

ନ ପାରିଲା ଅଉ ସହି ଧରି ଲେଖି ଶୁଦ୍ଧମୁହୀଁ ବିଭ୍ରମରେ କଲା ବସି ଭଙ୍ଗୀ । କରେ ଭୂଷିଲା ମଞ୍ଜୀର ଖଞ୍ଜିଲା ବିଦ ପୟୂର କର୍ଣ୍ଣେ ଯେନେ ଗୃପସର ଭାଙ୍ଗି । ପ୍ରାଣେଶ୍ୱର ! ସଖୀଗଣ ଏହିକାଳେ ଆସି । କରୁଥିଲେ ଉପଶ୍ମର କରି ଖେଦେ ହାହାକାର ପ୍ରବେଶିଲା ଉଦ୍‌ବେଗେ ତାପସୀ । ୮ ।

ମାୟାରେ ସକଳେ ମୋହି ଶିବିରକୁ ଗଲା ନେଇ ସଖୀ ସଙ୍ଗେ ବିଯୋଗିନୀ ସତୀ । ଶିବିରେ ଗୃପ୍ତେ ପୂରାଇ ପଲ୍ୟଙ୍କେ ଦେଲା ଶୁଆଇ ଥିଲା ଜ୍ଞାନହୀନା ରସବତୀ । ପ୍ରାଣେଶ୍ୱର ! ଏବେ ପାଶୁ ସରବେ ଅନ୍ତର । କିଣି ଦଣ୍ଡଦଣ୍ଡ ଭୋଗ ହେଲେ ତା ହୋଇବ ଯୋଗ କେତେ ଧନ ଅନ୍ତେ ପ୍ରାଣେଶ୍ୱର । ୯ ।

ନ ଜାଣିଲା ରସବତୀ ମୋର କେମନ୍ତ ଶକତି ବୋଧହୀନା ହେଲା ଯେଣୁ ଲବେ । ସମରି ଶେଷେ ତା ବର ସୁମରଇ ସ୍ୱାମୀବର ଜଣାଇବ ଗୃପ୍ତେ ମୋ ପ୍ରଭାବେ । ପ୍ରାଣେଶ୍ୱର ! ବିଶ୍ୱେ ନ ଜାଣେ କେ ମୋର ଠାଣ । ଦେଖିଥିଲା ରଣେ ମତ ଭୁଲିଥିଲା ମୋ ଶକତି ବିନ୍ଧିବ ଅଜି ମୋ ପଞ୍ଚବାଣ । ୧୦ ।

ନୁହଇ ମୁଁ ନିକେ ନଟ ଲଗାଇ ଦିଅଇ ନାଟ ବଣ ଭୂଇଁ ଅବାଟ ମୋ ବାଟ । ନାହିଁ ବଣିଜ ଅଗ୍ରର ଲଗା କେତେ ଭାରବାର ଲଗଇ ମୋ ଲଗି ଭବେ ହାଟ । ପ୍ରାଣେଶ୍ୱର ! ନ ଜାଣଇ ମୁଁ ଅଜାତ ଜାତ । ଶରେ ଜଡ଼ାଇଲେ ମତ ରଖି କେ ପାରିବ ଧୃତ ନ ଡରଇ କେ କେଲଡପତ । ୧୧ ।

---

୫ ଓ ୬ ପଦ । କାମର ପଞ୍ଚବାଣ :—

(୧) ନୀଳୋତ୍ପଳ—ସ୍ତମ୍ଭନ, (୨) ନଳିନ—ସମ୍ମୋହନ, (୩) ଚୂତ—ଶୋଷଣ, (୪) ନଅଳୀ—ତାପନ, (୫) ଅଶୋକ—ଉନ୍ମାଦନ ।

୧୦ ପଦ । ବର—ପତି ।

ମାନସରାଜ୍ୟ ଭିତରେ ଆଶା ତନ୍ତିମା ଛନ୍ଦରେ ପ୍ରଲୋଭନ କୁଣ୍ଠୀରେ ମୋ ଢ ୀ । ସଖା ବସନ୍ତ କୋକିଳ ରଜନୀକର ମଞ୍ଜୁଳ ଧନ ଯଉବନ ପରିକର । ପ୍ରାଣେଶ୍ୱର ! ବିଜନତା ମୋ କ୍ରୀଡାବସ୍ଥଳୀ । ମୁଁ ଯାକୁ କରେ ଅବଶ ଧର୍ମ ଯଶ ତା ନୀରସ ମିଥ୍ୟା ଶଠତାବାଦ ପରିଗ୍ରହୀ । ୧୨ ।

ଧନୁର ଗୃପ ମୃଣାଳ ଗୁଣ ମତ୍ତ ଭୃଙ୍ଗମାଳ ପଞ୍ଚ କୁସୁମ ସୁମନଶର । ଧ୍ୱଜରେ ବିରାଜ ମୀନ ତୂଣୀରେ ବଶୀକରଣ ବିଷସ୍ତମ୍ଭନରାଗ ମୋ ଉଗର । ଉଚ୍ଚାଟନେ—ଯୋଗ ଭାଙ୍ଗିବାକୁ କେ ସମାନ । ବେଧାକୁ କଲି ଅବଶ ସୁତାରେ ହେଲି ଅବେଶ ମୋହିନୀ ବିବଶ ପଞ୍ଚାନନ । ୧୩ ।

ଅଷ୍ଟବଂଶ ଭଙ୍ଗୀ ସୃଷ୍ଟି ମୁଁ ତାହାର ପରମେଷ୍ଠୀ କରେ ଦୋହଦ ବିଧାନ ଶତ । ଭ୍ରୂ ଗ୍ଳନ ମୁଖମୋଡ଼ା ନାଶାଫୁଲ୍ଲ ସଙ୍ଗେ ବ୍ରୀଡ଼ା ମଧୁର ହାସ କଟାକ୍ଷପାତ । ପ୍ରାଣେଶ୍ୱର ! ମିଷ୍ଟ ଭାଷା ରସିକତାମାନ । ମନ ଅକର୍ଷିକା ସେହି ନୃତ୍ୟ ଥାନ୍ତି ସଙ୍ଗେ ରହି ମୋହନକୁ କରି ସନମାନ । ୧୪ ।

ନାସ୍ତି ଭିନ୍ନ ଭିନ୍ନ ଅଙ୍ଗେ ଦେଶକେ ଦେଶକେ ରଙ୍ଗେ ବସେ ଯେନ ତହିଁରୁ କହୁଁଛେ । ମଥୁରାନାରୀ ବଚନେ ଉତ୍କଳ ଯୋଷା ଜଘନେ ଗଉଡ଼ର ମନୋହାରୀ ଦନ୍ତେ । ମିଥିଳର । ବାମନେତ୍ରା କଟାକ୍ଷେ ବିଳସେ । କର୍ଣ୍ଣାଟ ଯୋଷା କଟିରେ ଗୁର୍ଜ୍ଜରୀର ଉରଜରେ କେରଳ ନାୟିକା କେଶପାଶେ । ୧୫ ।

ଜାଣିଥିବୁ ରମାବର ଅଛୁ ଯେତେ ନାମ ମୋର ଏକେକେ ବିଜୟୀ ଜଗତର । କନ୍ଦର୍ପ ଦର୍ପକ ସ୍ମର ପୁଷ୍ପଧନ୍ୱା କାମଚର ମକରଧ୍ୱଜ ଆତ୍ମଭୂ ମାର । ମଧୁଦୀପ । କାମଦ କାମୀ କାମବର୍ଦ୍ଧନ । କନ୍ଦର୍ପୋନ୍ମାଦକ କାନ୍ତ ଅନନ୍ୟଜ ରତିନାଥ ମୀନକେତନ ନନ୍ଦୀ ନନ୍ଦନ । ୧୬ ।

ଭ୍ରାନ୍ତ ଭ୍ରାମକ ଭ୍ରମଣ ଭ୍ରାନ୍ତଚର ଭ୍ରମମାଣ ଭ୍ରମ ଭ୍ରମଣ ମନୋମୋହନ । ବ୍ରହ୍ମସୁ ଭୃଙ୍ଗନାୟକ ମୋହନ ମୋହମୋହକ ଭୃଙ୍ଗ ମହାଧନୁ ରମମାଣ । କୃଷ୍ଣକେତୁ । ବସନ୍ତସଖ ଲୋଭବର୍ଦ୍ଧନ । ବନ ରମଣ ଅନଙ୍ଗ ବିଳାସ ରମ ମାତଙ୍ଗ ପ୍ରଦ୍ୟୁମ୍ନ କାମ ମୋହବର୍ଦ୍ଧନ । ୧୭ ।

ପଞ୍ଚଶିଖ ଖେଳକ ଭ୍ରମାବହ କ ନର୍ତ୍ତକ ମଦନ ମନୋଜ ନରତନ । ଶମ୍ବରାରି ଫୁଲବାଣ ନନ୍ଦୟିତା କାନ୍ତମାନ ରୁକ୍ମଣୀଜ ଗୀତଜ ଗାୟନ । ନିଶାଚର । କଞ୍ଜଜ ନନ୍ଦକ ହରପର । ହରସୁତାଦ ତୋ ପଢ କରତ ଦଏ ମୁଁ ଛାଡ ସତୀ ଯତ ଧୃତ ହୁଏ ଦୂର ।୧୮।

ପୁରୁଷ ଦକ୍ଷିଣ ଅଙ୍ଗେ କାମିନୀର ବାମଭାଗେ ଛଥି ଜାଣି କରେ ମୁଁ ବସତି । ଶୁକ୍ଳ ପ୍ରତିପଦରେ ପାଦାଙ୍ଗୁଷ୍ଠେ ବସେ ଧୀରେ ଦ୍ୱିତୀୟାରେ ଗୁଳ୍‌ଫେ ମୋର ସ୍ଥିତି । ତୃତୀୟାରେ । ଜଙ୍ଘ, ଚତୁର୍ଥୀରେ ଭଗେ ବାସ । ପଞ୍ଚମୀରେ ନାଭିଦେଶେ ଷଷ୍ଠୀରେ କୁଚେ ବିଳସେ ସପ୍ତମୀରେ ହୃଦୟେ ପ୍ରକାଶ । ୧୯ ।

---

୧୨ ପଦ । ରଜନୀକର—ଚନ୍ଦ୍ର ।

୧୩ ପଦ । ଧନୁର ଗୃପ ମୃଣାଳ (ପଦ୍ମନାଡ଼) ମତାନ୍ତରେ ଇକ୍ଷୁଦଣ୍ଡ । ବେଧା—ବିଧାତା । ସୁତା—ଏଠାରେ ସରସ୍ୱତୀ । ମୋହିନୀ—ଶିବଙ୍କୁ ମୁଗ୍ଧ କରିବାପାଇଁ ଭଗବାନଙ୍କର ମୋହିନୀ କନ୍ୟାରୂପ; (ଏ ସୁଧା ପରିବେଷଣକାରିଣୀ ନୁହନ୍ତି) ।

ଅଷ୍ଟମୀରେ ଇଚ୍ଛେ ସ୍ଥିତ ନବମୀରେ ଜଣ୍ଡେ ଗତ ଦଶମୀରେ ଓଠ ନିକେତନ । ଏକାଦଶୀରେ ତ ଗଣ୍ଡେ ଦ୍ୱାଦଶୀରେ ନେତ୍ରେ ଗଣ୍ଡେ ତ୍ରୟୋଦଶୀରେ ଅଗାର କର୍ଣ୍ଣ । କପୋଳରେ । ଚତୁର୍ଦ୍ଦଶୀରେ ମୋ ହୋଏ ଥସୁ । ପୂର୍ଣ୍ଣିମା ଅମାବାସ୍ୟାରେ ବାସ କରଇ ଶିଖାରେ କୃଷ୍ଣପକ୍ଷେ ଗତ ବିପର୍ଯ୍ୟସ୍ତୁ । ୨୦ ।

ପ୍ରଣବେ କାମବୀଜକୁ ଦେଇ ନାମ ଚତୁର୍ଥୀକୁ ଏକବଚନେ ଯୋଗି ନମଃ । ହିବାର ଉଚାର କର୍ଣ୍ଣେ ଗୁଣିଲେ ତନ୍ତ୍ର ସୂମନେ ସୀକାର ସରଳ ଦଏ କାମ । ଜୀବେଶ୍ୱର । ରସିକ ରସିକା ରସ ଭଲ । ଅତୃପ୍ତ ଉପଭୋଗରେ ମନ୍ଥିଯାନ୍ତି ପ୍ରମୋଦରେ ସୁରତ ଅନୁରାଗରେ ଝଲ । ୨୧ ।

ଯାଏ ଯେ ମୋର ଭେଳକ ମହତ ଦିଅଇ ଶଙ୍କ ପାନାପାନ ନ ଦଶେ ନୟନେ । ମୋ ଭକ୍ତ ଜାଣଇ ଛନ୍ଦ ନ ଭାବଇ ଭଲ ମନ୍ଦ କରେ ଅଙ୍ଗ ରଙ୍ଗ ଭମ ଗୁଣେ । ପ୍ରାଣେଶ୍ୱର ! ମୋର ସ୍ୱାଦ ବଡ଼େ ଦନ୍ଦୁଦନ । ଅତ ବଚନ ମାଦକ ଦ୍ରବେ କେଣେ ଶୋଷ ଭୋକ ଭୁଲିବ କେ ନ କହ ଭଜନ । ୨୨ ।

ସତ୍ୟଲୋକ ପରଯନ୍ତେ ଧ୍ୟାନ ଦିଅଇ ନାତ୍ୟୋ ପଦାଏ ପ୍ରାଣୀ ଭବବନ୍ଧନେ । ସାଲୋକ୍ୟ ସାର୍ଷ୍ଟି ସାମୀପ୍ୟ ସାଯୁଜ୍ୟରେ ନୋକହେ ଲୋପ ମୁକୁଳକ ନ ଗୁଡ଼େ ମୁଁ ଧନେ । ପ୍ରାଣେଶ୍ୱର । ପଞ୍ଚସ୍ଥାନେ ପଞ୍ଚବାଣ ଛନ୍ଦେ । ଫୁଲରେ ନିର୍ମିତ ବାଣ ବଜ୍ରରୁ ଅଧିକ ଗୁଣ ପଲକ ମାନଙ୍କେ ଜୀବେ ବାନ୍ଧେ । ୨୩ ।

ମୂଳାଧାରେ କୁଣ୍ଡଳିନୀ ସ୍ତମ୍ଭନ ବନ୍ଧନ ଜାଣି ପଡ଼ଇ ଦେବୀ ସେ ଚେଷ୍ଟାସ୍ଥାନେ । ସ୍ୱାଧିଷ୍ଠାନେ ମକରକୁ ବାନ୍ଧଦଏ ତାପନକୁ ରାକିନୀ ରହଇ ଅଚେତନେ । ମଣିପୁରୁ । ଶୋଷଣେ ବାରଦ ଯାଏ ଗଲ । ସିନ୍ଦୁରବର୍ଣ୍ଣା ଲାକିନୀ ମୋହ ଉଜଇ ଉଷଣି କାମପାବକ ଉଠଇ ଜଳ । ୨୪ ।

---

୨୦ ପଦ । ନିକେତନ—ଘର । ଅଗାର—ଘର । ବିପର୍ଯ୍ୟସ୍ତ—ଓଲଟା ।

୨୪ ପଦ—୨୮ ପଦ । ଏହି ପଦମାନଙ୍କରେ ନବଚକ୍ର ବର୍ଣ୍ଣିତ ହୋଇଅଛି ।

୧ମ ମୂଳାଧାର ଚକ୍ର— ଏହାର ଅନ୍ୟ ନାମ ଆଧାର ପଦ୍ମ । ଗୁହ୍ୟ ଦେଶର ଦୁଇଅଙ୍ଗୁଳ ଉପରରୁ ଓ ଲିଙ୍ଗ ମୂଳର ଦୁଇଅଙ୍ଗୁଳ ତଳେ ଚାରି ଅଙ୍ଗୁଳବିଶିଷ୍ଟ ଯେଉଁ ଯୋନିମଣ୍ଡଳ ଅଛି ତାହା ଉପରେ ଏହି ପଦ୍ମ ଅବସ୍ଥିତ । ଏହା ରକ୍ତବର୍ଣ୍ଣ ଓ ଚତୁର୍ଦ୍ଦଳ ବିଶିଷ୍ଟ । ଏହି ପଦ୍ମର କର୍ଣ୍ଣିକାରେ ପୃଥିବୀମଣ୍ଡଳ ଅଛି । ଏହାର ଗୋଟିଏ ପାଖରେ ପୃଥିବୀ ବୀଜ ଲଂ ଅଛି । ଏଥିରେ ଶ୍ୱେତହସ୍ତୀରେ ଇନ୍ଦ୍ର ଅଛନ୍ତି । ଇନ୍ଦ୍ରଙ୍କ କୋଳରେ ଶୈଶବାବସ୍ଥାରେ ସୃଷ୍ଟିକାରକ ଚତୁର୍ଭୁଜ ବ୍ରହ୍ମା ଅଛନ୍ତି । ବ୍ରହ୍ମାଙ୍କ କୋଳରେ ରକ୍ତବର୍ଣ୍ଣା ଚତୁର୍ଭୁଜା ଡାକିନୀ ନାମ୍ନୀ ତାହାଙ୍କର ଶକ୍ତି ଅଛି । ଲଂ ବୀଜର ଦକ୍ଷିଣରେ ଗୋଟିଏ ରକ୍ତବର୍ଣ୍ଣ ତ୍ରିକୋଣମଣ୍ଡଳ ଅଛି । ତହିଁ ମଧ୍ୟରେ ରକ୍ତବର୍ଣ୍ଣ କ୍ଲୀଂ ବୀଜରୂପ କନ୍ଦର୍ପ ନାମକ ଖୁବ୍ ସ୍ଥିର ପବନ ଅଛି । ତାହା ଭିତରେ ଠିକ୍ ବ୍ରହ୍ମନାଡ଼ୀର ମୁଖରେ ସ୍ୱୟମ୍ଭୂ ଲିଙ୍ଗ ଅଛି । ଏହି ଲିଙ୍ଗକୁ ତିନିବାର ବେଷ୍ଟନ କରି କୁଣ୍ଡଳିନୀ ଶକ୍ତି ଅଛି । ଏହି କୁଣ୍ଡଳିନୀର ଚତୁଷ୍କୃତ ଅଛି ।

୨ୟ ସ୍ୱାଧିଷ୍ଠାନଚକ୍ର—ଏହା ଲିଙ୍ଗ ମୂଳରେ ଅବସ୍ଥିତ । ଏ ପଦ୍ମ ଷଡ଼ଦଳ ବିଶିଷ୍ଟ । ଏହାର ଷଡ଼ଦଳ ଦଳରେ ଛଅଟି ବୃତ୍ତି ଅଛି । ଯଥା—ଅବଜ୍ଞା, ମୂର୍ଚ୍ଛା, ପ୍ରଶ୍ରୟ, ଅବିଶ୍ୱାସ, ସର୍ବନାଶ ଓ କ୍ରୂରତା । ଏହାର କର୍ଣ୍ଣିକାରେ ଅର୍ଦ୍ଧଚନ୍ଦ୍ର ଆକାରର ବରୁଣମଣ୍ଡଳ ଅଛି । ଏଥିରେ

କୃଷ୍ଣସାର ଅନାହତେ ଉନ୍ମାଦନ ବାଣଘାତେ ପଶୁତ ବହୁତ ହୁଏ ଖର । କାହାର୍ମା ତେଜଇ ଚେତା ବଢ଼ିଯାଏ ବିକଳତା ବିବେକ ସହଜେ ପଳା ଦୂର । ବିଶୁଦ୍ଧକୁ— ନିଷାଦ ଋଷଭ ଅଛ ଯହିଁ । ସମ୍ମୋହନ ଦିଏ ହାଣି କରି ଗୋଳାଇବ ଜାଣି ଶାକମ୍ଭୀ ନିଶ୍ଚେଷ୍ଟା ହୁଏ ତହିଁ । ୨୫ ।

ଏଣ ତେଜେ ଏକ ଶର ବିନ୍ଧ କରେ ଜର ଜର ଅଙ୍କୁ ପୀଡ଼ନ୍ତି ଏକ ଏକ । ସବୁ ଅସେ ଗୁଣ୍ଡ ଗୁଣ୍ଡ ରଜ ତମ ଯାଏ ବଢ଼ି ହିପୁରା କରେ ହଠ ଅନେକ । ଚାଞ୍ଚବୃତ୍ତି —ପଞ୍ଚ ପ୍ରାଣ ବାହ୍ୟ ପଞ୍ଚ ପ୍ରାଣ । ପଞ୍ଚ ଜ୍ଞାନେନ୍ଦ୍ରିୟ ସଙ୍ଗେ ପଞ୍ଚ କର୍ମେନ୍ଦ୍ରିୟ ରଙ୍ଗେ ହୁଅନ୍ତି ସହଜେ ମୋ ଅଧୀନ । ୨୬ ।

ନାହିଁ ଆଜ ମତେ ବେଳ ବର୍ଣ୍ଣିବାକୁ ମୋ କୌଶଳ ଯାଉଛୁ ମୁଁ ଅଙ୍ଗନ୍ଧ ପାଶେ । ଉଚ୍ଚାଟନ ଦେଇ ପ୍ରାଣ କରିବ ଅଜ ଦହନ ଘୁଞ୍ଚିବ କି ଏ ସୁଯୋଗ ଲେଶେ । ଫୁଲ ଧନୁ । ଦେଖ ଫୁଲେ କେମନ୍ତ ନିର୍ମାଣ । ହସି କହେ ରଙ୍ଗେ ରତ ନ ବିନ୍ଧ ମୋତେ ସମ୍ପ୍ରତି ବିରହେ ଜାଣେ ମୁଁ ତବ ଟାଣ । ୨୭ ।

ରତିକି ତେଜି ମଦନ ଗଲା ଘେନି ଫୁଲବାଣ ନିମିଷକେ ଅଙ୍ଗରାଜ ତଳ । ଶରଦ ନିଶି ମଞ୍ଜୁଳ ଧରଣୀ ଜ୍ୟୋତ୍ସ୍ନାଧବଳ ପଗ୍ରଚୀରେ ଶୋହେ ତାରାପଲ । ଗୁରୁଦେବ । ଶ୍ରୀ ଗୋଲୋକେ କୃପା ହେବ ସତେ । ଚନ୍ଦ୍ରାମଣୀଧାମେ ଚନ୍ଦ୍ରାମଣି ଚନ୍ତି ଯିବ ଚନ୍ତା ଶଙ୍କା ଭକ୍ତି କି ମୋ ହେବ ନିତ୍ୟେ । ୨୮ ।

---

ବରୁଣ ବୀଜ ବଂ ଅଛ । ଏହା ମଧ୍ୟରେ ମକରରେ ଦୁଇ ହାତ ଥିବା ଶ୍ୱେତବର୍ଣ୍ଣ ବରୁଣ ଦେବତା ଅଛନ୍ତି । ତାଙ୍କ କୋଳରେ ତରୁଣ ହରି ଅଛନ୍ତି । ହରିଙ୍କ କୋଳରେ ଗୌରବର୍ଣ୍ଣା ରାକିଣୀ ନାମ୍ନୀ ତାଙ୍କର ଶକ୍ତି ଅଛ ।

୩ୟ ମଣିପୁର ଚକ୍ର—ଏହା ନାଭିଦେଶରେ ଅବସ୍ଥିତ । ଏ ପଦ୍ମ ଦଶଦଳ ବିଶିଷ୍ଟ । ପ୍ରତ୍ୟେକ ଦଳରେ ୧୦ଟି ବୃତ୍ତି ଅଛ; ଯଥା—ଲଜ୍ଜା, ପିଶୁନତା, ଈର୍ଷା, ସୁଷୁପ୍ତି, ବିଷାଦ, କଷାୟ, ତୃଷ୍ଣା, ମୋହ, ଘୃଣା ଓ ଭୟ । ଏହି କର୍ଣ୍ଣିକାରେ ରକ୍ତବର୍ଣ୍ଣ ତ୍ରିକୋଣ ମଣ୍ଡଳ ଅଛ । ଏଥିରେ ବହ୍ନିବୀଜ ରଂ ଅଛ । ଏହା ମଧ୍ୟରେ ଅଗ୍ନିଦେବ ମେଷରେ ଅଧିଷ୍ଠିତ ହୋଇଅଛନ୍ତି । ତାଙ୍କ କୋଳରେ ତ୍ରିଭୁଜ ତ୍ରିନୟନ ରୁଦ୍ର ଅଛନ୍ତି । ରୁଦ୍ରଙ୍କ କୋଳରେ ଚତୁର୍ଭୁଜା ସିନ୍ଦୁରବର୍ଣ୍ଣା ଲାକିନୀ ନାମ୍ନୀ ତାଙ୍କର ଶକ୍ତି ଅଛ ।

୪ର୍ଥ ଅନାହତ ଚକ୍ର—ଏହା ହୃଦୟରେ ଅବସ୍ଥିତ । ଏ ପଦ୍ମ ଦ୍ୱାଦଶ ଦଳବିଶିଷ୍ଟ । ପ୍ରତ୍ୟେକ ଦଳରେ ୧୨ଟି ବୃତ୍ତି ଅଛ; ଯଥା—ଆଶା, ଚିନ୍ତା, ଚେଷ୍ଟା ମମତା, ଦମ୍ଭ, ବିକଳତା, ବିବେକ, ଅହଙ୍କାର, ଲୋଲତା, କପଟତା, ବିତର୍କ ଓ ଅନୁତାପ । ଏହି ପଦ୍ମର କର୍ଣ୍ଣିକା ଭିତରେ ସୂର୍ଯ୍ୟମଣ୍ଡଳ ଓ ଷଟ୍‌କୋଣ ବିଶିଷ୍ଟ ବାୟୁମଣ୍ଡଳ ଅଛ । ତାହାର ଗୋଟିଏ ପାଖରେ ବାୟବୀଜ ଯଂ ଅଛ । ଏହା ମଧ୍ୟରେ କୃଷ୍ଣସାରରେ ଚଢ଼ି ଚତୁର୍ଭୁଜ ବାୟୁଦେବ ଅଛନ୍ତି । ବାୟୁଦେବଙ୍କ କୋଳରେ ତ୍ରିଚକ୍ଷୁ ମୁଣ୍ଡମାଳାଧାରିଣୀ କାକିନୀ ଦେବୀ ଅଛନ୍ତି । [ଏହି ଚକ୍ରରେ ଶିବଙ୍କ ମସ୍ତକରେ ଥିବା ମଣିରେ ଯେଉଁ ତେଜୋମୟ ଜ୍ୟୋତି, ତାହା ଜୀବାତ୍ମା । ]

୫ମ ବିଶୁଦ୍ଧ ଚକ୍ର—ଏହା କଣ୍ଠଦେଶରେ ଅବସ୍ଥିତ । ଏ ପଦ୍ମ ଷୋଳ ଦଳ ବିଶିଷ୍ଟ । ପ୍ରତ୍ୟେକ ଦଳରେ ଷଡ଼୍‌ଜ ଧୈବତାଦି ସପ୍ତ ସ୍ୱର, ଓଁ, ହୁଂ, ଫଟ୍, ବୌଷଟ୍, ବଷଟ୍, ସ୍ୱଧା,

ସ୍ୱାହା, ନମଃ, ବଷ ଓ ଅମୃତାଦି ଅଛନ୍ତି । ଏହାର କର୍ଣ୍ଣିକାରେ ଚନ୍ଦ୍ରମଣ୍ଡଳରେ ଆକାଶ ବୀଜ ହଂ ଅଛି । ଏଥିରେ ଶ୍ୱେତ ହସ୍ତୀରେ ଚଢ଼ି ଚତୁର୍ଭୁଜ ଆକାଶ ଦେବତା ଅଛନ୍ତି । ଏହି ଆକାଶ ଦେବତାଙ୍କ କୋଳରେ ତ୍ରିଲୋଚନ, ଦଶଭୁଜ ଓ ପଞ୍ଚମୁଖସମନ୍ୱିତ ସଦାଶିବ ଅଛନ୍ତି । ତାହାଙ୍କ କୋଳରେ ତାଙ୍କର ଶକ୍ତି ରକ୍ତବର୍ଣ୍ଣ ଶାକିନୀ ଦେବୀ ଅଛନ୍ତି । ଏହି ଅର୍ଦ୍ଧାଙ୍ଗନାଶ୍ୱରଙ୍କ ନିକଟରେ ସମସ୍ତଙ୍କର ବୀଜମନ୍ତ୍ର ଅଛି ।

୬ଷ୍ଠ ଆଜ୍ଞା ଚକ୍ର—ଏହାର ଅନ୍ୟ ନାମ ଜ୍ଞାନପଦ୍ମ । ଏହା ଦୁଇ ଭ୍ରୂଲତାର ମଧ୍ୟରେ ଅବସ୍ଥିତ । ଏ ପଦ୍ମ ଦ୍ୱିଦଳ ବଶିଷ୍ଟ । ଏହାର କର୍ଣ୍ଣିକାରେ ଶରତ୍ ଚନ୍ଦ୍ରପରି ଉଜ୍ଜ୍ୱଳ ଶ୍ୱେତବର୍ଣ୍ଣ ତ୍ରିକୋଣମଣ୍ଡଳ ଅଛି । ଏହି ତ୍ରିକୋଣର ତିନି କୋଣରେ ସତ୍ତ୍ୱ, ରଜ, ତମ ଓ ତ୍ରିଗୁଣାନ୍ୱିତ ବ୍ରହ୍ମା, ବିଷ୍ଣୁ ଓ ଶିବ ଅଛନ୍ତି । ତ୍ରିକୋଣ ମଣ୍ଡଳରେ ଚନ୍ଦ୍ରବୀଜ ଠଂ ଅଛି । ତ୍ରିକୋଣର ଗୋଟିଏ ପାଖରେ ଗୋଟିଏ ଶ୍ୱେତବର୍ଣ୍ଣ ବିନ୍ଦୁ ଅଛି । ତାହାର ଗୋଟିଏ ପାଖରେ ଗୋଟିଏ ଦେବତା କୋଳରେ ଭଗବାନ ଶିବ ଅଛନ୍ତି । ଶିବଙ୍କ କୋଳରେ ହାକିନୀ ନାମ୍ନୀ ତାଙ୍କର ଶକ୍ତି (ଦେବୀ) ବିରାଜିତା । ଆଜ୍ଞାଚକ୍ର ଉପରେ ଇଡ଼ା, ପିଙ୍ଗଳା ଓ ସୁଷୁମ୍ନା ମିଳିତ ହୋଇଅଛି । ଏହା ତ୍ରିକୂଟ ବା ତ୍ରିବେଣୀ । ଏହି ତ୍ରିକୂଟର ଉପରକୁ ଅର୍ଦ୍ଧଚନ୍ଦ୍ରାକାର ଗୋଟିଏ ମଣ୍ଡଳ ଅଛି । ଅର୍ଦ୍ଧଚନ୍ଦ୍ର ଉପରକୁ ତେଜଃପୁଞ୍ଜସ୍ୱରୂପ ଗୋଟିଏ ବିନ୍ଦୁ ଅଛି । ଏହି ବିନ୍ଦୁର ଉପରେ ଓ ତଳେ ଗୋଟିଏ ତେଜର ରେଖା ଛଡ଼ା ହୋଇଥିବା ପରି ନାଦ ଅଛି । ଏହାର ଉପରେ ଗୋଟିଏ ଶ୍ୱେତବର୍ଣ୍ଣ ତ୍ରିକୋଣମଣ୍ଡଳ ଅଛି । ଏହିଠାରେ ବାୟୁର କ୍ରିୟା ଶେଷ । ଏ ପଦ୍ମର ଅଧିଷ୍ଠାତା ପରମାତ୍ମା ଓ ଇଚ୍ଛା ତାଙ୍କର ଶକ୍ତି । ଏହିଠାରେ ଆତ୍ମଜ୍ୟୋତି ବିରାଜିତ । ଉମ୍ବରୁ (ନାସା) ଓ ତାଳୁର ସାଧାରଣ ରନ୍ଧ୍ର ନିକଟରେ ଗୋଟିଏ ତ୍ରିକୋଣାକାର ମଣ୍ଡଳ ଅଛି । ସେଠାରେ ବୀଣା ଅଛି ଓ ସେ ବୀଣାକୁ ଆତ୍ମା ତ୍ରିପୁରା ଅଛନ୍ତି । ଯୋଗସିଦ୍ଧ ବ୍ୟତୀତ ଅନ୍ୟମାନଙ୍କୁ ତ୍ରିପୁରା ଆତ୍ମଜ୍ୟୋତି ଦର୍ଶନ କରାଇ ଦିଅନ୍ତି ନାହିଁ ।

୭ମ ଲଲନାଚକ୍ର—ଏ ୬୪ଦଳବିଶିଷ୍ଟ ପଦ୍ମ ତାଳୁ ମୂଳରେ ଅବସ୍ଥିତ । ଏଠାରେ ଶ୍ରଦ୍ଧା, ସନ୍ତୋଷ, ସ୍ନେହ, ଦମ, ମାନ, ଅପରାଧ, ଶୋକ, ଖେଦ, ଅରତି, ସମ୍ଭ୍ରମ, ଉର୍ମି ଓ ଶୁଦ୍ଧତା ଏହି ୧୨ଟି ବୃତ୍ତି ଓ ଅମୃତ ଥାଳୀ ଅଛି ।

୮ମ ଗୁରୁଚକ୍ର—ଏହାକୁ ଶକ୍ତିମଣ୍ଡଳ ବା ଶକ୍ତିପୀଠ କହନ୍ତି । ଏ ପଦ୍ମ ବ୍ରହ୍ମରନ୍ଧ୍ରରେ ଅବସ୍ଥିତ । ଏ ପଦ୍ମର କର୍ଣ୍ଣିକାରେ ଗୋଟିଏ ତ୍ରିକୋଣ ମଣ୍ଡଳ ଅଛି । ଏହା ମଧ୍ୟରେ ତେଜୋମୟ କାମକଳା ମୂର୍ତ୍ତିର ମସ୍ତକରେ ଗୋଟିଏ ତେଜୋମୟ ବିନ୍ଦୁ ଅଛି । ତାହା ଉପରେ ତେଜୋମୟ ଦଣ୍ଡାକାର ନାଦ ଅଛି । ନାଦ ଉପରେ ଅଗ୍ନିଶିଖା ପରି ତେଜଃପୁଞ୍ଜ ଅଛି । ତାହାର ଉପରେ ହଂସାକାର ତେଜୋମୟ ପୀଠ । ପୀଠ ଉପରେ ଗୋଟିଏ ଶ୍ୱେତ ହଂସ । ଏହି ହଂସର ଶରୀର ଜ୍ଞାନମୟ । ପକ୍ଷ ଦୁଇଟି ଆଗମ ଓ ନିଗମ । ଚରଣ ଦୁଇଟି ଶିବଶକ୍ତିମୟ । ଚଞ୍ଚୁପୁଟ ଓଁକାରସ୍ୱରୂପ ଏବଂ ନେତ୍ର ଓ କଣ୍ଠ କାମକଳା ସ୍ୱରୂପ । ଏହି ଶ୍ୱେତ ହଂସ ଗୁରୁଦେବଙ୍କର ପାଦ ପୀଠ । ହଂସ ଉପରେ ଗୁରୁବୀଜ ଐଂ ଅଛି । ଏହା ପାଖରେ କୋଟିସୂର୍ଯ୍ୟସମପ୍ରଭ ଗୁରୁଦେବ । ତାଙ୍କର ଗୋଟିଏ ହସ୍ତରେ ବର ଓ ଅନ୍ୟ ହସ୍ତରେ ଅଭୟ ଶୋଭା ପାଉଅଛି । ଗୁରୁଙ୍କ ବାମକୋଳରେ ଗୁରୁପତ୍ନୀ ବିରାଜିତା । ସେ ବାମ ହସ୍ତରେ ଗୋଟିଏ ପଦ୍ମ ଧରିଅଛନ୍ତି ଓ ଦକ୍ଷିଣ ହସ୍ତରେ ଗୁରୁଦେବଙ୍କୁ ବେଷ୍ଟନ କରି ବସିଅଛନ୍ତି । ସସ୍ତ୍ରୀକ ଗୁରୁଦେବଙ୍କୁ ଏହିଠାରେ ଧ୍ୟାନ କଲେ ସର୍ବସିଦ୍ଧି ହୁଏ ।

୯ମ ସହସ୍ରାର—ଏହାର ଅପର ନାମ ସହସ୍ରଦଳ ପଦ୍ମ । ଗୁରୁ ଓ ଗୁରୁପତ୍ନୀଙ୍କର ମସ୍ତକ ଉପରେ ଏହି ପଦ୍ମଟି ଛତ୍ର ପରି ଶୋଭା ପାଉଅଛି । ଏହି ପଦ୍ମରେ କଳ୍ପତରୁ ଅଛି । ପଦ୍ମର କର୍ଣ୍ଣିକା ଭିତରେ ତ୍ରିକୋଣ ଚନ୍ଦ୍ରମଣ୍ଡଳ ଅଛି । ଏହାର ଅନ୍ୟ ନାମ ଶକ୍ତିମଣ୍ଡଳ । ଏହା ଭିତରେ ଗୋଟିଏ ବିସର୍ଗାକାର ମଣ୍ଡଳ ଅଛି । ତାହା ମଧ୍ୟରେ ଗୋଟିଏ ବିନ୍ଦୁ ଅଛି । ସେ ବିନ୍ଦୁର ତେଜ

## ୨୩ତମ ଛାନ୍ଦ

### ରାଗ—ଶଙ୍କରାଭରଣ

ଶରତ ସନ୍ଧ୍ୟା ସୁନ୍ଦରୀ ପିନ୍ଧି ଶୁକ୍ଳ ଶାଢ଼ୀ । ଯେସନ ବଧୂ ମଥାମଣି ପ୍ରମୋଦକେଳି ବୃନ୍ଦ । କର ଚକୋର ନିଃସ୍ୱନ । କୁମାରୀଙ୍କି କହେ କର ଉତ୍ସବ ରଚନ । ୧ ।

ବିରହୀଙ୍କି କହେ ବିରହିଣୀ ସ୍ମର ଶରେ । ବିରହିଣୀଙ୍କି ପର୍ଯ୍ୟଙ୍କେ ଶାରୁ କି ତୋ କାନ୍ତେ । ଜୋଛି ଶୁକ୍ଳାଭିସାରିକା । କୁମୁଦ ଚହଟହାସେ ହସଇ ନାୟିକା । ୨ ।

ଗୃହେଁ ତା ସୁଷମା ମୁଗ୍ଧ ସଂଯୋଗୀ ଜଗତ । କୁମୁଦବନେ ଭ୍ରମରଗୁଞ୍ଜନ ସଙ୍ଗୀତ । କରେ ବିରହୀ ବିରସ । ଉତ୍ସୁକ ନାଦ କରଇ ସରସୀରେ ହଂସ । ୩ ।

ଏକାଳେ ଶିବିରେ ବସି ଅଙ୍ଗନରପତ । ଗୃହେଁ ଉଇ ଚନ୍ଦ୍ର ଜାଣି ବିହ୍ୱଳିତମତ । ଛତ୍ରେ ଚନ୍ଦ୍ରେ ପ୍ରାଣାଧିକା । କାମ ଉନ୍ମାଦନାଦୀପ୍ତ ସଙ୍ଗୀତ ଗାୟିକା । ୪ ।

କେବେ ହଜିଥିବ ବୁଝି ଉଜ୍ଜ୍ୱଳ ମୋତେ କାମେ । ସଙ୍ଗି ଯାଇଥିବ ପଣ୍ଡ ଖେଦେ କେଉଁ ଭ୍ରମେ । ହା ହା ଉଚାଟ ତୁଣ୍ଡରୁ । ଛାଡ଼ିଯାଉଥିବ ପ୍ରାଣ ବିଧୁରା ପିଣ୍ଡରୁ । ୫ ।

ସତେ କି ବାନ୍ଧବୀ ମୁଦ ତେଜିଥିବ ମନ୍ତ୍ର । ବ୍ରୀଡ଼ାବତୀଙ୍କ ମୋ ପୀଡ଼ା ଦେବନି ଅତନ୍ତ୍ର । ଗୃହେଁ କୁମୁଦମାବନ୍ଧୁ । ହୃଷ୍ଟ ସ୍ନେହ ବୁଡ଼ିଥିବ ପଣ୍ଡ କାମସିନ୍ଧୁ । ୬

ତାପସୀଦତ୍ତ ଉତ୍ପଳ ଧରି ଏହିକାଳେ । ବିଜୟୀ ଲକ୍ଷ୍ମୀ ପୂଜନେ ଚଳନ୍ତି ଚଞ୍ଚଳେ । କାମ ଅବଶ ଶରୀର । ଡୋଳାଇଲା ଭଳି ଚଳୁଥିଲା ନିରନ୍ତର । ୭ ।

ମନ ପିପ୍ପାପାଟଣ ଗତ କରୁଥିଲା ପାଦ । ଦାଣ୍ଡ ସାଧୁଥିଲା ହରପର ବନ୍ଧୁ ମଦ । ଯାଉଁ ଶିବିରକୁ ପଶି । ଦଣେ ପଲ୍ୟଙ୍କ ଅଙ୍କରେ ସୁପ୍ତା କେ ସୁକେଶୀ । ୮ ।

ଅଚମ୍ବିତେ ଦ୍ୱିଧା ବହୁ ଦେଲେ ତେଜି ଦୀପ । ଉତ୍କଣ୍ଠାକ୍ରମରେ ଗ୍ରନ୍ଥେ ମହେନ୍ଦ୍ର କଳାପ । ଅସ୍ୟବାସ ଥିଲା ଖସି । ଅସୁଥିଲା ସଜ ଅବ୍ଜବକ୍ତ୍ର କି ବିକସି । ୯ ।

---

କୋଟି ସୂର୍ଯ୍ୟତେଜରୁ ଅଧିକ । ଏହି ପରମେଶ୍ୱର ବା ପରମାତ୍ମା । ଏହି ବିନ୍ଦୁ ମଧ୍ୟରେ ଅମାକଳା ଅଛି । ଏହା ଆନନ୍ଦଭୈରବୀ । ଏହାର ମଧ୍ୟରେ ଅର୍ଦ୍ଧଚନ୍ଦ୍ରାକାର ନିର୍ବାଣ କାମକଳା ଅଛି । ଏହି ନିର୍ବାଣ କାମକଳା ସମସ୍ତଙ୍କର ଇଷ୍ଟଦେବତା । ତାହା ଭିତରେ ତେଜୋରୂପା ପରମ ନିର୍ବାଣଶକ୍ତି । ତା ପରେ ନିରାକାର ମହାଶୂନ୍ୟ । ଏହି ପଦ୍ମର ଚନ୍ଦ୍ରକାନ୍ତ ମଧ୍ୟରେ ପରମାତ୍ମା ଅଛନ୍ତି ଅର୍ଥାତ୍ ଏହିଠାରେହିଁ ଚିନ୍ତାମଣିଧାମରେ ଚିନ୍ତାମଣି········· ।

୨୬ ପଦ । (ଯୋଗସୂତ୍ର ଅନୁସାରେ) ଚିତ୍ତବୃତ୍ତି ୫ ପ୍ରକାର :—ପ୍ରମାଣ, ବିପର୍ଯ୍ୟୟ, ବିକଳ୍ପ, ନିଦ୍ରା, ସ୍ମୃତି । ମତାନ୍ତରରେ ୪ ପ୍ରକାର—ମୈତ୍ରୀ, କରୁଣା; ମୁଦିତା ଓ ଉପେକ୍ଷା । (ମନୋବୃତ୍ତି—ସ୍ମରଣ, ମନନ ଓ ଅନୁଧ୍ୟାନାଦି । )

ଏକ ପ୍ରାଣବାୟୁ ଭିନ୍ନ ଭିନ୍ନ ନାମ ପ୍ରାପ୍ତ ହୋଇଅଛି :—

ଅନ୍ତରସ୍ଥ ପଞ୍ଚବାୟୁ—ହୃଦୟରେ ପ୍ରାଣବାୟୁ, ଗୁହ୍ୟଦେଶରେ ଅପାନବାୟୁ, ନାଭି-ମଣ୍ଡଳରେ ସମାନ ବାୟୁ, କଣ୍ଠଦେଶରେ ଉଦାନବାୟୁ ଓ ସର୍ବ ଶରୀରରେ ବ୍ୟାନ ବାୟୁ ।

ବହିଃସ୍ଥ ପଞ୍ଚବାୟୁ—ନାଗ, କୂର୍ମ, କୃକର, ଦେବଦତ୍ତ ଓ ଧନଞ୍ଜୟ ।

---

ଅମୃତା ମାନଦା ପୂଷା ତୁଷ୍ଟି ପୁଷ୍ଟି ରତି । ଧୃତି ପୂର୍ଣ୍ଣା କାନ୍ତି ଜ୍ୟୋତ୍ସ୍ନା ଚନ୍ଦ୍ରିକା ଶ୍ରୀ ପ୍ରୀତି । ପୂର୍ଣ୍ଣାମୃତା ଅଙ୍ଗଦାର । ସଙ୍ଗେ ଶଶିଙ୍କ ଏ ଷୋଳ କଳା କି ବାହାର । ୧୦ ।

ପଲ୍ୟଙ୍କ ଅଙ୍କ ଝଟକ ପଡ଼ୁଥିଲା ଝଡ଼ । କନକଦୁର୍ଗା କି ରୂପାବାଡ଼େ ଥିଲା ଜଡ଼ି । କର ଗଣ୍ଡତଳ ଛବି । ଚନ୍ଦୁପକ୍ଷରେ ଶମ୍ଭ କି ଅସୁଥିଲା ଦ୍ରବି । ୧୧ ।

ସ୍ୱପ୍ନବଶେ ଭଦ୍ରା ଦଣ୍ଡେ ନାଗର ଭାବଇ । ସ୍ୱପନ କେ କଲା ସତ ମୋ ବଧୂର ଏହି । ଦେଇ କାନ୍ତକୁ ଝୁଲାଇ । 'ନାଥ ନାଥ' ଭାଷି ଚେତ ବସେ ଗୃହମୂର୍ଦ୍ଧି । ୧୨ ।

'ଭାଙ୍ଗିଲା ସ୍ୱପନ ଅଳି' । ଭାଷି ନିଦ୍ରାଳସୀ । ଦେଖିଲା ନାହିଁ ବୟସୀ ଉଭ ସୁଂସରଣୀ । ଶଙ୍କି ପରାଣନାୟକ । କି ରଙ୍ଗେ ଖେଳାଇନେଲା ଡୋଳା ଚଞ୍ଚଳ । ୧୩ ।

ଫୁଟି ପଡ଼ୁଥିଲା ହାସ ଜୁଟିଗଲା ଶଙ୍କା । ଲୁଟି ହେଲା ଧୈର୍ଯ୍ୟ ଚିନ୍ତା ଜାଟିଲରେ ଦେଖା । ତୁଟି କୁଟିଳକୁନ୍ତଳା । ରଟିଲା ଚତୁରେ ଲମ୍ପଟୀ କପଟୀ କେ ହେଲା । ୧୪ ।

ବୁଝିଲା ମନରେ ହେଜି ସୁକ୍ଷୀନବସନା । ବୁଝିଥିଲି ସ୍ନେହ ସୁଝି ଦେଲା ତପସ୍ୱିନୀ । ହଜି ଯାଇଥିଲା ଜ୍ଞାନ । ଖୋଜି ଯୋଗ କଲା ଆଜି ଅଭୂତ ମିଳନ । ୧୫ ।

ଲଜ୍ଜାରେ ସ୍ମିତକ୍ଷା ତାପସୀର ଚେତ ଧ୍ୱଂସ । ଲୋଭା ହୋଇ ବିଭାବତୀ ମିଳନେ ମାନସ । ଯାଉଁ ପଲ୍ୟଙ୍କରେ ଚଢ଼ି । ସଙ୍କୋଚ ପଙ୍କରେ ଗଲା ପଙ୍କଜାକ୍ଷୀ ଜଡ଼ି । ୧୬ ।

ଚେତାଇ ହୋଇ ଓହ୍ଲାଇ ପଡ଼ିଲା ସୁନ୍ଦରୀ । ଛିଡ଼ି ଘନୁ ବିଜୁଳି ଝଟକିଲା ପରି । କାନ୍ତେ ଓଳଗିଲା କାନ୍ତା । ମନ୍ଦ ବାତେ ଦୋହଲି କି ଗଲା ସ୍ୱର୍ଣ୍ଣଲତା । ୧୭ ।

ଝଟୁପଟୁ ବିଶ୍ୱମୋହିନୀଙ୍କ ପାଶେ ଅଣି । ବସାଇ ଲୋଚନ୍ତେ ଶୁଭ ମୃଦୁ ମଞ୍ଜୁ ବାଣୀ । ବାମା ଉତ୍ତର କେବଳ । ସ୍ମିତ ହାସ ହେଲା ଗଣ୍ଡେ ବିକଶି ଚଞ୍ଚଳ । ୧୮ ।

ରତିକୁଶଳାରେ ରତିକୁଶଳବିନୋଦୀ । ଗଲା ଭାଙ୍ଗି ବଳେ ବଳେ ଫୁଲବାଣ ଅଧି । ପିଇ ପ୍ରଣୟ ମଦିରା । ହେଲେ କାନ୍ତା କାନ୍ତ ମଧୁ ସୁରସ ବିଭୋର । ୧୯ ।

ଏକକୁ ଅନେକ ଭାବ ଜଣାଇ ମଧୁରେ । ନୋହେ ତୁଳା ଯେଉଁ ସୁଧା ସର ବିଧୁରେ । ହାସ ଶୋଭା ଲକ୍ଷ୍ମୀ ଧର । ଭାବାବ୍ଧିରୁ ଅସେ କି ସେ ନବେନ୍ଦୁ ବାହାର । ୨୦ ।

ଚନ୍ଦ୍ର ପିଇ ସୁଧା ବାନ୍ଧୁ ନ ମଳ୍ଲର ପର । ହରସୁତ ଥିଲା, ହର ଅସିଲେ ବାହାର । ଲଜ୍ଜିତ ଅସେ ତମ ବଳେ । ହର ହର ଧ୍ୱନି ଏଣେ ହେଲା ଶମ୍ଭୁଅଳେ । ୨୧ ।

ପ୍ରଭାତିଲା ବିଭାବରୀ ପଦ୍ମିନୀ ଫୁଟାଇ । ପଦ୍ମିନୀ ଫୁଟାଇ ରଙ୍ଗେ ଭ୍ରମରେ ଜୁଟାଇ । ପୁଣି ଲୁଟାଇ ତା ବାସେ । ହଟାଇ ଦେଇ ତା ଖେଦ ଭଟାକୁ ସରସେ । ୨୨ ।

ଡାକେ ଏଣେ ତାମ୍ରଚୂଡ଼ ଶିଖାଇଲା ରଙ୍ଗେ । ଉଠ ପ୍ରତ୍ୟୁଷରୁ କର ବାସ ବନ୍ଧୁ ସଙ୍ଗେ । ରଣ ଅବଳା ସଙ୍ଗରୁ । ହୋଇ ନିର୍ଭୀକ ମୋ ପରି ହୁଅ ରଣପଟୁ । ୨୩ ।

ତପସ୍ୱିନୀ ରସଲେଖା ଇନ୍ଦ୍ରଶ୍ରୀଙ୍କୁ ଘେନି । ଅସୁଁ ଯହିଁ ଇନ୍ଦୁରେଖା ବିଶ୍ୱବିମୋହିନୀ । ଯଥା ସ୍ନେହାଦର କରି । ବସାଇଲା ପାଶେ ତୋଷେ କନକଗଉରୀ । ୨୪ ।

ଇନ୍ଦ୍ରଶ୍ରୀର ପରଚ୍ୟ ଲଭି ବିଧୁମୁଖୀ । ଶୁଣୁଁ କଲ କେତେ ସୁଖୀ ହୋଇ ପ୍ରାଣସଖୀ । ହସି କହଇ ତାପସୀ । ବିଧୁରୀଙ୍କ ଦୁଃଖରାଶି ମିଶି ଗଲା ଭାସି । ୨୫ ।

---

୧୦ ପଦ । ଚନ୍ଦ୍ରର ଷୋଳକଳା ।

କେ ପଶୁରେ କହିବୁ କି ସତ ସଖି ! ମୋତେ ! ପୃଚ୍ଛାଇଲ୍ କିସି କେତେ ଟୋ କାନ୍ତ ସଙ୍ଗତେ । ଭଲ୍ କି ଗୀତ ଛଇଲା ! ଟେଣ୍ଟିଲାଇ ପତ ଗ୍ଲାଡକ ପଡ଼ିଲୁଙ୍କ ଜଳା । ୨୬ ।

କେ ପଶୁରେ ଅନ୍ତରେ କି ସ୍ନେହାଦର ଧର । ପରଖିଲ୍ କାନ୍ତମନ ଅଭିମାନ କର । ଶୁଣିବାକୁ ତାଙ୍କ ଗୃହୁଁ । ଚଖାଇବାକୁ ତୋ କାମ ନଂଷ-ପଞ୍ଚ-ଘଟୁଁ । ୨୭ ।

କେ ରସରଙ୍ଗିଣୀ ପୃଚ୍ଛେ କି ହେଲା ନିଶିରେ । ପ୍ରଦୀପ କି ନିଭାଇଲ୍ ଉର ମନ୍ଦାକ୍ଷରେ । ଥିଲା କି ରଜନୀକର । ନୟନେ ଫିଙ୍ଗି କି ହେଲ୍ ବନ୍ଧୁରେ ବନ୍ଧୁର । ୨୮ ।

କେ ପଶୁରେ ବନ୍ଧଛବି ଥିଲା କି ତୋ ମନେ । ନର୍ତ୍ତକୀ ବେଶେ କାନ୍ତଙ୍କ ମୋହିଲ୍ ସୁମନେ । କେଉଁ ଶୁଭଯୋଗ ତାଳେ । ପିଅଇ ପିଇଲ୍ ଗଣ୍ଡ ମନ୍ଦାକ୍ଷ ଭପଳେ । ୨୯ ।

କେ ବୋଲେ କହିବ ଯାହା ଜାଣିଥିବୁ ସଖି ! ମାନ ରଚିବ କେତେ କାଳ କାନ୍ତମୁଖ ଦେଖି । କାନ୍ତୁ ହେବ ମନ ମାର । ଗ୍ଲାନ ପନ୍ଥାଇବ କେତେ ମାରଭାପ ଧର । ୩୦ ।

କେ ବୋଲେ କାଲି ନିଶିରେ ହେଲା ଯାହା ଶୁଣ । କାନ୍ତ ରସାବେଶେ କଲେ ମନ ଅନମାନ । ସେ ତ ବଳଇ ପୀୟୂଷ ! ଜାଣିଲି ବିରହ ଅନ୍ତେ ପ୍ରେମ କି ସରସ । ୩୧ ।

ଶ୍ରୀଖଣ୍ଡଖଣ୍ଡ ମଳୟାଚଳ ପର ପାଇଁ । ପାସ୍ୱବାର ରଖିଥାଏ ଚନ୍ଦନ ଲୁଗୁଇ । ସେହିପର କାନ୍ତ ମୋର । ଥିଲେ ସଞ୍ଚି ସ୍ନେହ ଦେଲେ ତୋଷି ମୋ ଅନ୍ତର । ୩୨ ।

କେ ବୋଲେ ବନ୍ଧ ସଂଯୋଗେ କାନ୍ତ ହେଉଁ ବଶ । ତାଙ୍କ ଗୀତ ଗୃହୁଁ ହସୁଥାଇ ମୋ ମାନସ । ବଳେ କରୁଛୁ ପ୍ରାପତ । ମଣିଲି ପଲଙ୍କେ କୋଟି କୁବେର ସମ୍ପତ୍ତି । ୩୩ ।

କେ ବୋଲେ ସୁରତକାଳେ କଲି ଯେ ଅଳାପ । ପ୍ରଶଂସିଲେ କେତେମତେ ନାଗରକଲାପ । ସ୍ତମ୍ଭେ ମୁଖେ ଥାଏ ଗୃହିଁ । ମାତ୍ରେ ଯେବେ ଲଜ୍ଜ ଢାଏ ବଦନ କମ୍ପାଇ । ୩୪ ।

ଜଳ୍ପସ୍ୱଥିଲା ମୋ ଗ୍ଲାନ ରସରଙ୍ଗେ ମାତ । ନଟବର ମଦନକୁ ନ ଅଣ୍ଟିଲା ଗୀତ । କାମେ ହେଲି ମୁଁ ବାତୁଳୀ । ମଣିଲି ପ୍ରେମତରଙ୍ଗେ ଖେଳୁଛୁ କି ଦୋଳି । ୩୫ ।

କେ ବୋଲେ ହେଉଛୁ ମୋର ଏମନ୍ତ ସ୍ମରଣ । କୋଳେ ଧରି କଲେ ଯେବେ ହସି ଅଲିଙ୍ଗନ । ଅଙ୍ଗ ଥିଲା କି ମୋ ଜ୍ଞାନ । ସୀତ୍କାର ପୁଲକେ ହେଲା ଶରୀର କମ୍ପନ । ୩୬ ।

କେଳକୁ କେଳ ମାଦକ ହେଲା ସେ ସୁରତ । ଧେନୁ କ୍ଷୁବ୍ଧ ଜଳଣ୍ଡାରେ କଟିଗଲା ରାତ । ଅନ ଅଳାପ ପାଇଁକି । ମନେ କେଉଁ କଥା ଅସୁ ନ ଥିଲା କାହିଁକି । ୩୭ ।

ପ୍ରସଙ୍ଗାନ୍ତରକୁ ଗଲେ ଅଳାପେ ସୁମନା । ପ୍ରଶଂସି ସ୍ନେହବସ୍ତ୍ରଳକାନ୍ତଭୁ ନବୀନା । ଭବେ ଅପବର୍ଗ ସେହି । ପଞ୍ଚପ୍ରାଣୀ ପାଇଁ ପ୍ରୀତ ବସ୍ତ୍ରଳା କେ କହି । ୩୮ ।

କେ ବର୍ଣ୍ଣେ କାନ୍ତପୀରତି ସମ କାହିଁ ନାହିଁ । ସ୍ୱପ୍ନବେ ଯେ କାନ୍ତ କାନ୍ତ ପ୍ରୀତି ତା ବୋଲଇ । ଭ୍ରମୁଁ ପତିସେବା ମିଳେ । ପତି ବିନା ସତୀ ପାଇଁ ସୁଖ ନାହିଁ ଥିଲେ । ୩୯ ।

କେ ବୋଲଇ କାନ୍ତବାଣୀ ତୁଳିକ ପୀୟୂଷ । ସେ ତ ଅବତୀର୍ଣ୍ଣ ଈଶ କରୁଣା ଅଶେଷ । ହସ ହସ ମୁଖଚନ୍ଦ୍ର । ପତି ଅନୁଗତା ବାମା ନେକ ପୁଣ୍ୟପୁଞ୍ଜ । ୪୦ ।

ବନିତା-ଲତାର ସାହା କାନ୍ତ ସୁରତରୁ । ଅପବର୍ଗ ଫଳଦାତା କହେ କେ ବସ୍ତୋରୁ । ମତେ ବଇକୁଣ୍ଠ ଯେହ୍ନେ । ବଇକୁଣ୍ଠ ସୁଖ କାନ୍ତ ସେବାରେ ମିଳଇ । ୪୧ ।

ଅଖଣ୍ଡ ତପସ୍ୟା ଫଳେ ଜନ୍ମେ କେ ବନିତା । କାନ୍ତ ତୋଷି ସେବା କରେ ଯେ ପତିଦେବତା । ସେ ଯେ ଅବଳାପାବନୀ । ଭବେ ଅବତୀର୍ଣ୍ଣ ଈଶକୃପା-ସୁଚାଧନୀ । ୪୨ ।

ବର୍ଣ୍ଣୁ ବର୍ଣ୍ଣୁ ଏହ୍ନ ଭାବ କାହୁଁ ହେବ ଶେଷ । ଯଥାକାଳେ ନଟାଲ୍ଲାସେ ସର୍ବେ ଯେଝା ବାସ । ଗଲେ ହୋଇ ହୃଷ୍ଟମତି । ଇନ୍ଦୁରେଖା ଗଲା ଗୃହେ ଯହିଁ ଅଙ୍ଗପତି । ୪୩ ।

ଶ୍ରୀରାଧା କୃଷ୍ଣ ପଦ୍ମରେ ପଶଇ ଶରଣ । ଶ୍ୟାମାଭିଷ୍ଟ ଭ୍ରମନାରେ ସର୍ବପାଟ ଦାନ । ଭଣେ ଶ୍ରୀ ଗୋଲୋକ ଛନ୍ଦ । ନୀଳବସନା ଯେବାକୁ ହୋଇ କାନ୍ଦ କାନ୍ଦ । ୪୪ ।

## ୭୪ତମ ଛାନ୍ଦ

### ରାଗ ବସନ୍ତ—ଅଷାଢ଼ ଶୁକ୍ଳବାଣୀ

ସଙ୍ଗୀତ ସାହିତ୍ୟ-ରସିକଗଣ, ପିଅ ଏ ପୀୟୂଷ ହୋଇ ସୁମନ,
ରଙ୍ଗବଚନା ନ ଦେଖି ଶିଖରେ, ଅଙ୍ଗଇନ୍ଦ୍ର ଭାବେ ଚିନ୍ତଣେ ଖିହରେ ।
ଭଣେ ପରଗୃହ୍ମ । ସଙ୍ଗୀତଭବନେ ସକଳ ନାରୀ । ୧ ।
ଧପଟିକୁ ରଣ ରସଲମ୍ପଟ, ଚଳିଲେ ସଙ୍ଗୀତାଗାର ନିକଟ,
ପ୍ରବେଶଦରେ ଗୃହିଁ ସବନାରୀଙ୍କି, ଗବାକ୍ଷ ନିକଟେ ରହିଲେ ଛକି
କଉତୁକ ବହୁ । ଯୋଷାଙ୍କ ଗୀତକୁ ଦେଖିବା ପାଇଁ । ୨ ।
ଅଧମା ମଧ୍ୟମା ନାହାନ୍ତି କେଣେ ସକଳ ଉତ୍ତମା ଅତି ପ୍ରସନ୍ନେ,
କେହ୍ନ ମୁଗ୍ଧା ମଧ୍ୟା ପୌଢ଼ା ବା କେହ୍ନ, ଔଡ଼ବ ଷାଡ଼ବ ସମ୍ପୂର୍ଣ୍ଣ ଗାଇ,
ଉଲୁଟିକୁ ତୋଳି । ନାରୀମୁକୁଟ କରୁଛନ୍ତି କେଳି । ୩ ।
ଗମକ ମୂର୍ଚ୍ଛନା ରଚି ମଧୁରେ, ବଲ୍ଲକୀ ବାଇ କେ ଗାଏ ସୁସ୍ୱରେ
କେ ସୀତାରେ ରଙ୍ଗେ ଧରନ୍ତି ତାଳ, କୋମଳେ ତାଗ୍ରେ କେ ବାଏ ମର୍ଦ୍ଦଳ,
ସରସ୍ୱତୀ ସର । ଦଶନ୍ତି ସେକାଳେ ସକଳ ନାରୀ । ୪ ।
ପଞ୍ଚବାଣୁ ଲଘୁ ଆଳାପେ ଥକି, ଗଳପ ରଚିଲେ ସକଳ ସଖୀ,
ତାପସୀଙ୍କ ଇନ୍ଦୁରେଖା ପ୍ରଶଂସେ, ପ୍ରୀତ ହେଲୁ ତବ ସଙ୍ଗୀତରସେ,
ଶିଖିଲ ସଙ୍ଗୀତ । କାହୁଁ କେବେ ଭଣ ସଙ୍ଗୀତତତ୍ତ୍ୱ । ୫ ।

୪ ପଦ । ବଲ୍ଲକୀ—ବୀଣା ।

ଭଣିଲ ଚୋବଦାପଣେ ତାପସୀ ଅବଧାନ ହେଉ ଅଙ୍ଗମହର୍ଷି !
ବିବରଣ ମୋର ଅଛି ତ କହି, ଭ୍ରମୁଁ ଭ୍ରମୁଁ ଯେବେ ମିଳିଲି ଯାଇଁ,
ଚତୁର୍ଦ୍ଧ ମଣ୍ଡଳେ । ଅଖଣ୍ଡଳପୁର ସୁଷମା ଦଳେ । ୬ ।
କଞ୍ଚୁକୀଏ ଶଙ୍ଖ ପଦ୍ମ ତକ୍ଷକ, ମହାପଦ୍ମ କର୍କୋଟକ କୁଳିକ,
ଅନନ୍ତ ବାସୁକି ସମ ଦ୍ୱାରେ, ଜଗିଥାନ୍ତି ମଣି-ପ୍ରଦୀପ ଧରି,
ସୀମନ୍ତିନୀ ଯହିଁ । ସୁରବାଳାଧିକ ଦିଶନ୍ତି ଦହି । ୭ ।
ପାରିଜାତ ଶୁକ୍ତିମାନ ମହେନ୍ଦ୍ର, ହିମାଳୟ ଋକ୍ଷ ମଳୟ ବିନ୍ଧ୍ୟ,
ସହ୍ୟାଦ୍ରି ଏ ଅଷ୍ଟକୁଳ ଶଇଳ, ଭ୍ରମ ଦିଶନ୍ତି ଯହିଁ ଅଚଳମାଳ,
ରବି ରଥ ଅଶ୍ୱ । ଝାପୁଯାଡେ କ୍ଷୁବ୍ଧ ସାନୁପ୍ରଦେଶ । ୮ ।
ସେ ଦେଶ ଭୂପଙ୍କ ବଶ୍ୟ କରଣୀ, ସଂସାରେ କେ ସଂଖ୍ୟା କରିବ ପୁଣି,
ଐରାବଣ ପୁଷ୍ପଦନ୍ତ ବାମନ, ସାର୍ବଭୌମ ସୁପ୍ରତୀକ ଅଞ୍ଜନ,
ପୁଣ୍ଡରୀକ ସଙ୍ଗେ । କୁମୁଦ କୁମୁଦ ଲଭନ୍ତି ଦିଗେ । ୯ ।
ଶୁଭ୍ରଦନ୍ତୀ କେହି କେହି ପିଙ୍ଗଳା, କେ ଅଞ୍ଜନାବତୀ କେବା କପିଳା
କାଏ ଅନୁପମା କାଏ ଅଞ୍ଜନା, କେ ତାମ୍ରକର୍ଣ୍ଣୀ କେ ଅଭ୍ରମୁ ମନା,
କରଣୀ ହଟନ୍ତି । ଦିଗ ହସ୍ତିମାଙ୍କ ଦର୍ପ ଦଳନ୍ତି ୧୦ ।
ଇନ୍ଦ୍ର ଅଗ୍ନି ଯମ ବାୟୁ ନୈଋତ, ବରୁଣ କୁବେର ବ୍ରହ୍ମା ଅନନ୍ତ,
ଶିବାଦି ସକଳ ଦିଗ ପାଳନ୍ତି, ସେମାନଙ୍କ ସମ ରାଜ୍ୟ ଶାସନ୍ତି,
ପ୍ରଚଣ୍ଡଧିଗଣ । ବଭୁଧ-ମଘବା ଅଜ୍ଞା ଲଭିଣ । ୧୧ ।
ଶୂର କବି ଗୁରୁ ସଭାରେ ସ୍ଥିତ, ବବୁଧମଣ୍ଡଳ ଦଣ୍ଡୀ ରାଜିତ,
ବୃଷାଙ୍କ କୁମାର ପଦ୍ମଲାଞ୍ଛନ, ରତିମଦାପତି କେତେ ଶୋଭନ,
ଶକ୍ର ନୃପକୁଳ । କୁଅନ୍ତା ନ ଥିଲେ ନୟନମାଳ । ୧୨ ।
ଗଲି ସେ ସଭାକୁ, ଦେଖିଲି ଯାଇଁ, ମୂର୍ତ୍ତିମନ୍ତ ମାର କି ଅବା ସେହି,
ସାଧୁ ନୃପବଧୂ ମୁକୁଟମଣି, ଔଦାର୍ଯ୍ୟ ଗାମ୍ଭୀର୍ଯ୍ୟ ମାଧୁର୍ଯ୍ୟେ ପୁଣି,
ଗୁଣିକ ଚଳ୍ପିରୀ । ଦାତା ପଣେ ସମ ନ ଥିବେ ପରି । ୧୩ ।
ଅଚଳା ଭାରତୀ ରମା ଯା ପୁରେ, କେଉଁ କେଉଁ ଧାତା ବର୍ଣ୍ଣି ବା ପାରେ,
ତାଙ୍କ ସଭାରେ ଯା ଶୁଣିଛି ମୁହିଁ, କହିବି କହିତ ଯେବେ ସୁମୁହିଁ !
ସ୍ୱର ରାଗ ତତ୍ତ୍ୱ । ସଂସାରେ ଯେମନ୍ତ ସଙ୍ଗୀତ ଜାତ । ୧୪ ।

---

୬ ପଦ । ଅଖଣ୍ଡଳ—ଇନ୍ଦ୍ର । ୭ ପଦ । କଞ୍ଚୁକୀ—ସର୍ପ, ଅନ୍ତଃପୁରରକ୍ଷକ ପ୍ରହରୀ ।

୯ ପଦ । ଐରାବଣ—ଐରାବତ । ୧୧ ପଦ । ମଘବା—ଇନ୍ଦ୍ର ।

୧୨ ପଦ । ଶୂର—ଯୋଦ୍ଧା; ସୂର—ସୂର୍ଯ୍ୟଦେବତା । କବି—କାବ୍ୟର ଲେଖକ, ଶୁକ୍ରାଚାର୍ଯ୍ୟ । ବବୁଧ—ପଣ୍ଡିତ, ଦେବତା । ଦଣ୍ଡୀ—ସନ୍ନ୍ୟାସୀ, ଯମ । ବୃଷାଙ୍କ—ଧାର୍ମିକ ବ୍ୟକ୍ତି, ଶିବ । କୁମାର—ଅବିବାହିତ ଯୁବକ, କାର୍ତ୍ତିକ । ପଦ୍ମଲାଞ୍ଛନ—ରାଜା, ବ୍ରହ୍ମା । ରତିମଦାପତି—ରସିକାଙ୍କର ସ୍ୱାମୀ, ଅଶ୍ୱିନୀଙ୍କ ପତି ।

ଧାତା ହରି ହର କୈଳାସେ ବନେ, କଳ୍ପୁଥିଲେ ସୃଷ୍ଟି ବିଷୟ ମନେ,
ଅବିଦ୍ୟା ସତ୍ତ୍ୱର ହେଉଁ ପ୍ରବେଶ, ତାଙ୍କ ଶୋଭା ମୁଗ୍ଧ ହେଲେ ତ୍ରିଶେଷ,
ସେ ବୋଇଲେ ଶିବ । ଥିଲେ ପତ୍ନୀବାଞ୍ଛା ରଚ ତାଣ୍ଡବ । ୧୫ ।
ଉଦ୍ଦଣ୍ଡ ତାଣ୍ଡବ ରଚିଲେ ଶିବ, ଡିବି ଡିବି ଶୁଭେ ଡମରୁ ରବ,
ହର ଶିରୁ ଜଟା ପଡ଼ିଲା ଖସି, କମ୍ପିଲା ତ୍ରିପୁର ଭୟ ପ୍ରକାଶି,
ଦ୍ରବିଗଲେ ହରି । ସ୍ରବିଲେ କୈଳାସ ପ୍ଳାବନ କରି । ୧୬ ।
ଦେବୀଙ୍କ ଇଙ୍ଗିତେ ବିଧାତା ତୋଷେ, କମଣ୍ଡଳେ ଖରେ ରଖିଲେ ରସେ,
ତାଣ୍ଡବାନ୍ତେ ଶିବ ଡମରୁ ବହି, ଚତୁର୍ଦ୍ଦଶ ବାର ଦେଲେ ବଜାଇ,
ବିସର୍ଗାନୁସ୍ୱାର । ସଙ୍ଗେ ହେଲା ଜାତ ଚଉଦ ସ୍ୱର । ୧୭ ।
ଏ ସ୍ୱର ମିଶନ୍ତେ ବ୍ୟଞ୍ଜନ ସଙ୍ଗେ, ହେଲା ଭାଷା ସୃଷ୍ଟି ସଂସାରେ ରଙ୍ଗେ,
ତହୁଁ ସଙ୍ଗୀତର ହେଲା ଉତ୍ପତ୍ତି, ଅଧିଷ୍ଠାତ୍ରୀ ହେଲେ ଦେବୀ ଭାରତୀ,
ଏ ସଙ୍ଗୀତ ବିଦ୍ୟା । ଶିବଠାରୁ ଆଦ୍ୟେ ଲଭିଲେ ବେଧା । ୧୮ ।
ଭରତ ନାରଦ ରମ୍ଭା ତୁମ୍ବୁରୁ, ହୁହୁଙ୍କ ବିଧାତା ହୋଇଲେ ଗୁରୁ,
ସନକାଦି ଆଦ୍ୟେ ପ୍ରାପ୍ତ କେ ବୋଲେ, ପରେ ଋଷିଗଣ ଯୋଗେ ଜାଣିଲେ,
ଏ ସଙ୍ଗୀତକଳା । କ୍ରମେ କ୍ରମେ ତନ୍ନପୁର ମୋହିଲା । ୧୯ ।
ଉଚ୍ଚାରଣ ଇଚ୍ଛା ହୋଇଲେ ଜାତ, ଦେହ ତାପେ ହୋଏ ବେଗ ସମ୍ଭୂତ,
ସମାନ ପବନେ ବାଜନ୍ତେ ସେହି, ବେନି ସଂଘର୍ଷରୁ ନାଦ ସ୍ଫୁରଇ,
ଉଦାତ୍ତ ସ୍ୱରିତ । ଅନୁଦାତ୍ତ ସ୍ୱରେ ହୁଅନ୍ତି ଖ୍ୟାତ । ୨୦ ।
ବୈଦିକ ଏ ତିନି ସ୍ୱରେ କେ ଧୀର । କହଇ ଉଦାସ ମୁଦାର ତାର,
ହୃଦ ବାଟେ ମୂର୍ଦ୍ଧା କଣ୍ଠେ ବିଚର, ଜିହ୍ୱା ଦନ୍ତ ତାଳୁ ସଙ୍ଗତ କର,
ମନ୍ଦ୍ର ମଧ୍ୟ ତାର । ତ୍ରିବିଧ ଭେଦରେ ନାଦ ବାହାର । ୨୧ ।
ତିନି ସ୍ୱରୁ ସପ୍ତ ସ୍ୱର ଉତ୍ପତ୍ତି, ସା ରି ଗା ମା ପା ଧା ନି ଏ ବୋଲନ୍ତି,
ବୃଷଭ-ଋଷଭ କ୍ରୌଞ୍ଚ ମଧ୍ୟମ, ବିଷକଣ୍ଠ-ଷଡ୍ଜ ପିକ-ପଞ୍ଚମ,
ଧୈବତ ବାଜିର । ମାତଙ୍ଗ-ନିଷାଦ ଅଜ-ଗାନ୍ଧାର । ୨୨ ।
ସପ୍ତରୁ ଦ୍ୱାଦଶ ହୋଇଛନ୍ତି ପୁଣି, ଊନବିଂଶ ଦୁଇ ଏ ପରମାଣି,
ଛନ୍ଦ ଅଳଙ୍କାରେ ହେଲେ ଭୂଷିତ, ସ୍ୱର ରାଗାକାରେ ହୁଏ ବିଦିତ,
କର୍ଣ୍ଣେ ପଶି ସ୍ୱର । ରାଗ ଦେଇ ରାଗ ନାମ ଏହାର । ୨୩ ।
ମତଙ୍କେ ମତଙ୍କେ ଛ ରାଗ ଭିନ୍ନ, ବ୍ରହ୍ମାମତ ଏବେ କହିବା ଘେନ,
ଗ୍ରୀଷ୍ମେ ପଞ୍ଚମ ଶ୍ରୀରାଗ ଶୀତେ, ନଟନାରାୟଣ ଗେଲ୍ଲ ହେମନ୍ତେ,
ବସନ୍ତ ବସନ୍ତେ । ପ୍ରାବୃଟେ ମେଘ ଭୈରବ ଶରତେ । ୨୪ ।

---

୨୦ ପଦ । ସମାନ ପବନ—ନାଭିମଣ୍ଡଳରେ ଥିବା ପବନ ।
୨୨ ପଦ । ବାଜୀ—ଘୋଡ଼ା । ମାତଙ୍ଗ—ହସ୍ତୀ ।
୨୪ ପଦ । ପ୍ରାବୃଟ୍—ବର୍ଷା ।

ରାଗଙ୍କ ରାଗବେ ଷଡ଼ ରାଗିଣୀ,    ରାଗ ଅନୁଗତା ମନୋମୋହିନୀ,
ଧନ୍ୟା ରାଗି ଭିନ୍ନ ଭିନ୍ନ କାଳରେ,    ଗେୟ ଭିନ୍ନ ଭିନ୍ନ ଉପଲକ୍ଷରେ,
ପୁତ୍ରବଧୂ ପୁତ୍ର । ଅଛନ୍ତି ଅନେକ ନୋହେ ବିଚାର । ୨୫ ।
ମାଳଶ୍ରୀ ତ୍ରିବେଣୀ ମଧୁମାଧବୀ,    ପାହାଡ଼ିକା ଗୌରୀ କେଦାରୀ ଦ୍ରବି,
ଶ୍ରୀରାଗେ ଯୋଷାଏ ଅତ ଜନନ୍ତୀ    ବସନ୍ତର ବାମା ଦେଶୀ ଲଳିତା,
ତୋଡ଼ିକା ହିନ୍ଦୋଳୀ—ବରାଟୀ ଅଛନ୍ତି ତ ଦେବଗିରି । ୨୬ ।
ପଞ୍ଚମର ନାରୀ ପଟମଞ୍ଜରୀ,    ଭୂଲକୀ କର୍ଣ୍ଣାଟୀ ପୁଣି ଭୂପାଳୀ,
ବିଭାଷା ଅଛନ୍ତି ବଡ଼ହଂସିକା,    ଭୈରବର ରାମକିରୀ ରସିକା,
ଭୈରବୀ ଗୁର୍ଜ୍ଜରୀ । ବାଙ୍ଗାଳୀ ସଇନ୍ଧବୀ ଗୁଣ୍ଡକିରୀ । ୨୭ ।
ମେଘର ମଲ୍ଲାରୀ ହର ଶୃଙ୍ଗାରୀ,    ସୌରାଷ୍ଟ୍ରୀ କୌଶିକୀ ପୁଣି ସାବେରୀ,
ଗାନ୍ଧାରୀ ସହିତେ ଏ ଷଡ଼ ଧୀରୀ,    ନଟନାରାୟଣ ନଳହମ୍ବିରି,
କାମୋଦୀ ସାରଙ୍ଗୀ । କଲ୍ୟାଣୀ ଅଭୀରୀ ନାଟିକା ସଙ୍ଗୀ । ୨୮ ।
କେତେ ଏକ କେତେ ଅଧିକ ନାମ,    ଷଡ଼ବିଂଶ ବାମା ଲବଣ୍ୟଧାମା,
ପଞ୍ଚସ୍ୱରେ ରାଗ ବୋଲି ଓଡ଼ବ,    ଷଡ଼ସ୍ୱର ସମନ୍ୱିତେ ଷାଡ଼ବ,
ମିଶି ସପ୍ତସ୍ୱର । ସମ୍ପୂର୍ଣ୍ଣ ବୋଲାଏ ଅତି ମଧୁର । ୨୯ ।
ମୀରବୁଁ ତାପସୀ ପୁଚ୍ଛେ ଇନ୍ଦିରା,    ଅନ ଅନ ମତ କହିବ ପରା ?
ଶୁଣି ଇନ୍ଦୁରେଖା ଭଣେ ଚଞ୍ଚଳ    ଦୀପକ ମାଳବ-କୋଷ ହିନ୍ଦୋଳ,
ଭୈରବ ଶ୍ରୀ ମେଘ । ନାମେ ତାଙ୍କ ହନୁ ସେ ରାଗଓଘ । ୩୦ ।
ହନୁମାନ ମତ ଭରତେ ମେଳ,    ସୋମେଶ୍ୱର ମତେ ଶୁଣ ହିନ୍ଦୋଳ,
ଭୈରବ ମାଳବ ଦୀପକ ମେଘ,    ଶ୍ରୀନାମେ ରାଗକୁ କରନ୍ତି ଶ୍ଳାଘ୍ୟ,
ମତାନ୍ତରେ ଯେତେ । ନାମ ରାଗଙ୍କର କହିବା କେତେ । ୩୧ ।
ରାଗିଣୀଙ୍କ ନାମ ଅଛି ଅନେକ,    ପୁତ୍ର ପୁତ୍ରବଧୂ କହନ୍ତି ଠିକ,
ଦେଶ ନାମେ କେ ଯେ ବୋଲାଏ ଔଡ୍ରୀ, କାବେରୀ କଳିଙ୍ଗୀ କାମୋଦୀ ଗୌଡ଼ୀ,
ବର୍ଣ୍ଣିବେ ବା କେତେ । ଥକି ପଡ଼ିଲେଣି ତାପସୀ ଏଥେ । ୩୨ ।
ଏକାଳେ ଗବାକ୍ଷେ ଚନ୍ଦ୍ରବଦନା,    ଗୃହୁଁ ବିଲୋକିଲ ନାଗରମଣି,
ସ୍ମିତହାସୀହୋଇ ପୋତନ୍ତେ ମୁଖ,    ଶିବିରେ ଚଳିଲେ ନୃପତିଳକ,
ବାମା ଗଲେ ବାସ । ଇନ୍ଦୁରେଖା ହସି ଭେଟେ ନରେଶ । ୩୩ ।
ନାଦ ପ୍ରାଣିଭବ ଅପ୍ରାଣିଭବ,    ଜଡ଼ଯନ୍ତ୍ର ସମ୍ଭବେ ତାର ଉଦ୍ଭବ,
ନାଦ୍ୟନାଦାତ୍ମକ ଜାଣି ଜଗତ,    ଧ୍ୟାୟନ୍ତି ଶୁଣି ଅନାହତ ଅହତ,
ନାଦପରେ ଜ୍ୟୋତି । ଶ୍ରୀ ଗୋଲୋକ ନାଥ ହୃଦରେ ଚିନ୍ତ । ୩୪ ।

---

୩୦ ପଦ । ଓଘ—ସମୂହ । ୩୩ ପଦ । ବାସ—ଗୃହ ।

# ୭୫ତମ ଛାନ୍ଦ

## ରାଗ—ନଳିନୀଗୌଡ଼ା

ମଣ୍ଡନ୍ତି ଯେ ଅଙ୍ଗ ଅଙ୍ଗ ଅଙ୍ଗନା ସଙ୍ଗତ
ବାହୁଡ଼ା ସନ୍ଦେଶ ଦେଶ ଦେଶରେ ପ୍ରଖ୍ୟାତ । ୧ ।
ପ୍ରବର୍ତ୍ତିତ ବାନ ବାନ ବାଣ ଅଗଣନେ
ନଭେ ଉଷାକୃତ କୃତ କୃତିତ୍ୱ ବଖାଣେ । ୨ ।
ଖସ୍ରେଲେ ଭୂଧର ଧର ଧରଣୀ କମ୍ପନ
ଶୁଭେ ଯଥା ଘନଘନ ଘନ ଗରଜନ । ୩ ।
ଚାଲିଅଛନ୍ତି ତୁରଙ୍ଗ ରଙ୍ଗ ରଙ୍ଗ ଢଙ୍ଗେ
ସୁମନ୍ତର କର କସି କରଣୀ ସଙ୍ଗତେ । ୪ ।
ଧାଉଁଛନ୍ତି ଭଲ ଭଲ୍ଲ ଭଲ ଧର ମଲ୍ଲ
ସୁଷମ ସମ ଶମନ ଅଗଣିତ ବଳ । ୫ ।
ନୃହଇ ସବାର ବାର ବାରଙ୍ଗାଷୀ ଯହିଁ
ସେ କି ସ୍ୱର୍ଣ୍ଣ ଘନଘନ ଘନବିଦ୍ୟୁ ବହି । ।
ଦେଖି ସେ ମୂରତି ରତି ରତି ସମ ହେବ
ଫୁଲଶର ଶର ସରସରେ ଫିଙ୍ଗିଦେବ । ୭ ।
ଭାବେ ଦେବ ଦେବ 'ଦେବ ପ୍ରୀତକ' ଜପିବେ
କୁମାର ମାର ମାରଣ ସହି ନ ପାରିବେ । ୮ ।
ସୁମୁଖୀ ଙ୍କ ଧନମଣି ମଣି ମଣି ସ୍ନେହେ
ବଢ଼ାଇବେ କର କରକ-ରଦନୀ ଦେହେଁ । ୯ ।
ବେଢ଼ି ନାଗ୍ରବର ବର ବରଣୀ ଅନେକ
କରେ ପ୍ରମୀଳା ବାହିନୀ ଲକ୍ଷ ଲକ୍ଷ ଲକ୍ଷ । ୧୦ ।
ଅରତ୍ରା ନିନ୍ଦବେ ମୁଖେ ଚାହିଁ ଦରପଣେ
ଅରତ୍ରା ବନ୍ଦବେ ମୁଖେ ଚାହିଁ ଦରପଣେ । ୧୧ ।
ରୋହିଣୀ ନିନ୍ଦ ପତିଙ୍କ ବନ୍ଦବେ ପତିଙ୍କ
ଚାହିଁବେ ଭ୍ରମେ ଗତିଙ୍କ ନ ଚାହିଁ ଗତିଙ୍କ । ୧୨ ।

---

୧ ପଦ । ଅଙ୍ଗ—ଅଙ୍ଗଦେଶ, ଦେହ ।

୪ ପଦ । ତୁରଙ୍ଗ — ଘୋଡ଼ା । ୫ ପଦ । ଶମନ — ଯମ । ୭ ପଦ । ଦେବଦେବ—ମହାଦେବ । ୧୦ ପଦ । ପ୍ରମୀଳା—ମହାଭାରତବର୍ଣ୍ଣିତ ପ୍ରମୀଳା ।

୧୧ ପଦ । ଅରତ୍ରା—ନକ୍ଷତ୍ରବିଶେଷ, ବଗଳତା । ଦରପଣେ—ଅଇନାରେ, ଦର୍ପଣରେ ।

୧୨ ପଦ । ନିନ୍ଦ—ଚନ୍ଦ୍ରଠାରୁ ମୁଖ ସୁନ୍ଦର ବୋଲି ଚନ୍ଦ୍ରଙ୍କୁ ନିନ୍ଦା କରିବେ । ବନ୍ଦିବେ—ତାର ଅସନ୍ତରେ ନ ପଡ଼ିବା ପାଇଁ ନିଜର ସ୍ନେହ ଦେଖାଇ ବନ୍ଦନା କରିବେ । ଗତି—ମୁକ୍ତି, ଗମନ ।

ସତକ୍କତେ ଶଚୀ ଭାବ ଅହଲ୍ୟାଗତଙ୍କ ?
ଭାବୀ କ ମାଗିବେ ପତ ଅହଲ୍ୟାଗତଙ୍କ । ୧୩ ।
ଦ୍ରବାଣିବେ ସ୍ୱାହା ହାହା ହାହା ହାହା ଧନୀ
ପତଙ୍କ ଭ୍ରଷିବ 'ବ ବ ବ ବ' ସୀମନ୍ତିନୀ । ୧୪ ।
ଦେପଥୁରେ ସବେ୍ସ୍ୱୟରେ ମନ୍ଥତ ଜଳିବ
'ବାଞ୍ଛା ବାମାପ୍ରଭାବ ଧ୍ରାମ ପ୍ରେମଭାବ' । ୧୫ ।
ଜବ ଭାରତୀଙ୍କ ଅଗୋଚର ଛନ୍ଦ ଯାର
ଜନ୍ମ ଭାରତୀଙ୍କ ଅଗୋଚର ଛନ୍ଦ ତାର । ୧୬ ।
ସାର ସୁନ୍ଦରୀ ଏମନ୍ତ ନ ଥିବେ ସଂସାର
ସାରସାକ୍ଷୀ ହେବ କାର୍ତ୍ତେ ବ୍ରହ୍ମାଣ୍ଡରେ ସାର । ୧୭ ।
ସେ ସୁନ୍ଦରୀ ଶିରୋମଣି ସଙ୍ଗେ ନୃପମଣି
ମଣି ଧନ୍ୟ ଭଙ୍ଗେ ବଜେ ସୀତା ରଘୁମଣି । ୧୮ ।
ମଣି ସୁଶୋଭିତା ଭୀତା ସୀତା ମାତା କର
ଜର କୋଳାହଳ ଗୃଲେ ସୈନ୍ୟ ବାଜି କରୀ । ୧୯ ।
ବାହ ବାହକ ରବରେ ଜରଥର ଥର
ପ୍ରତିଧ୍ୱନିଚ୍ଛଳେ ସ୍ତବ ଦେଲ ଗିରିଦରୀ । ୨୦ ।
ଅତଙ୍କ ଗଣିଲେ ଜନପଦବାସୀ ଶୂରେ
ଅତଙ୍କ ଗଣନ୍ତି ଯଥା ଦୈତ୍ୟଭୟେ ସୁରେ । ୨୧ ।
ନୃପ ଅଗେ ଗୃଲେ ବନ୍ଦ ବନ୍ଦ ବନ୍ଦୀ ଗରେ
ମହିମା ମହିମା ସ୍ତବ ଶୁଭଇ ବାଥିରେ । ୨୨ ।
କରଦ ସାମନ୍ତ ଛେତେ ଯୋଦ୍ଧ ବେନକର
ହେଉଛନ୍ତି ନୃପପଛେ ପଛେ ଅଗ୍ରସର । ୨୩ ।
ବଦେଶୀ ନୃପମଣ୍ଡଳୀ ହୋଇଣ କୁଣ୍ଡଳି
ଭେଟୁଛନ୍ତି ଗଦବଣ ଯେସନ କୁଣ୍ଡଳୀ । ୨୪ ।
ଗିରିବନ ମାଡ଼ି ଥାଟ ଗୃଲଇ ସତ୍ୱର
ସେନା ମଧ୍ୟେ ହାଦୋଳାରେ ବଜେ ନୃପବର । ୨୫ ।
ରମା କ୍ଷମା ସମା ଗ୍ରମା ଅଣିମା ଲଘିମା
ଚନ୍ଦ୍ରମା ସୁଷମା ସୀମା ମଣିମା ଗରମା । ୨୬ ।

---

୧୩ ପଦ । ଅହଲ୍ୟାଗତଙ୍କ—ଅହଲ୍ୟା ଯାଉଛନ୍ତି କ, ପଥର ହେବାପାଇଁ ।

୧୪ ପଦ । ସ୍ୱାହା—ଅଗ୍ନିପତ୍ନୀ । ହାହା—ଗନ୍ଧର୍ବବଶେଷ । ବ ବ—ବସ ବସ, କରଣବଶେଷ ।

୧୬ ପଦ । ଜନ୍ମ—ସୃଷ୍ଟି, କାବ୍ୟରଚନ । ୨୦ ପଦ । ଦରୀ—ଗୁହା ।

୨୧ ପଦ । ଶୂରେ—ଯୋଦ୍ଧାମାନେ; ସୁରେ—ଦେବତାମାନେ ।

୨୪ ପଦ କୁଣ୍ଡଳୀ—ମଣ୍ଡଳାକାର; କୁଣ୍ଡଳୀ—ସର୍ପ ।

ସ୍ୱପ୍ରତୀବ ଶତ ଶତ ନକ୍ଷତ୍ର ଏକତ୍ର
ଅଦତ୍ୟ ଉଦିତ ବତ ନୃପତ୍ତ୍ୱ ବିଦିତ । ୨୭ ।
ପୁରବାସିନୀଏ ଗୃହେଁ ନୃପତି ଛବିକି
ପଶୁରନ୍ତି ସମ ଅବା କାମ ହେବେ ଏ କି ? ୨୮ ।
ଅପାଙ୍ଗ ଭାଳି ଅଙ୍ଗନା ଲୋଟନ୍ତି ଧରଣୀ
ମଣିହରା ଫଣୀ ପରା ହୋଇ ବିରହିଣୀ । ୨୯ ।
ସଖୀ ସଙ୍ଗାତକୁ ଗୃହେଁ କେ କହେ ବିକଳେ
ଦହିବାକୁ ଅଜୁ ବିହି ଲେଖିଲା କପାଳେ । ୩୦ ।
ଅହା କେଡ଼େ ଭାଗ୍ୟବତୀ ସେ ବରଯୁବତୀ
ଧନ୍ୟ ଲଭିଲା ଏମନ୍ତ ନାଗର ପୀରତି । ୩୧ ।
ସୁରନାରୀ ଇଚ୍ଛିବେ ଯା ରୂପ ହୋଇ ପ୍ରୀତ
ପୁରନାରୀ ଧୈର୍ଯ୍ୟ ଜୁର ଏ ନୋହେ ବିଚିତ୍ର । ୩୨ ।
ସେ ରୂପ ମାଧୁରୀ ନେତ୍ର ପିଇବାକୁ ନିତ
ଖୋଜିଲାଣି ଅଭି କାହିଁ ଲଭିବ ତୃପତ । ୩୩ ।
ଆନ କହେ ସତେ ମୁଁ କି ଦେଖିଲି ସ୍ୱପନ
ସ୍ମରିଲେ ସେ ଛବି ହୁଏ ହୃଦୟୁ କମ୍ପନ । ୩୪ ।
ପଥିକବଧୂ କେ କହେ ବୀଥିକି ଅନାଇ
ସାଥି ନେବା ଭୁଲ ମନ୍ତ୍ରପୋଥିକି ଧରାଇ । ୩୫ ।
ସ୍ୱରଭଙ୍ଗେ କହେ ବାମା କେ ବହି ପୁଲକ
ସ୍ୱଛୁର କରଇ ମନମଥ ଦକ ଦକ । ୩୬ ।
ଅବର ସ୍ତମ୍ଭନ ବଶ ଭରଇ ଅବଶ
ଆକର୍ଷଇ ବଦନ କମଳ ହସହସ । ୩୭ ।
ଧନ୍ୟ ବସୁମତୀ ଧନ୍ୟ ବସୁମତୀରେ ଏ ।
ସ୍ୱରଭଙ୍ଗାକଣେ 'ଧବ ଧବ' ବୋଲେ କିଏ । ୩୮ ।
ମୁଗ୍ଧାନନା 'ଧର ଧର' ଡାକି କେ ଲୋଲୁପେ
କମେ ଅଦ୍ୟାନ୍ତ ଅଭି ନ ଜାଣରେ ପ୍ରଳାପେ । ୩୯ ।
'ମାଧବ ହେ ତବ ରଙ୍ଗ ଅହା କି ମଧୁର
ମାନସରେ ଚିନ୍ତି କ୍ଷଣେ ସୁଷମା ବିଧୁର । ୪୦ ।

---

୨୭ ପଦ । ଅଣିମା, ଲଘିମା—ଶିବଙ୍କର ଅଷ୍ଟ ବିଭୂତି ମଧ୍ୟରୁ ଦୁଇଟି ।

୩୮ ପଦ । 'ନ୍ୟ ଓ ସୁମତୀ ଏବଂ ନ୍ୟ ଓ ସୁମତୀରେ ଏ' ଶ୍ଳେଷ ହୋଇଥିବାରୁ 'ଧବ ଧବ' କହେ ।

୩୯ ପଦ । ଧର ଧର, ଧରର ଦ୍ୱିରୁକ୍ତି; ଶ୍ରୀକୃଷ୍ଣ ମନ୍ଦର ଧାରଣକରିଥିବାରୁ ।

୪୦ ଓ ୪୧ ପଦ । ଏ ପ୍ରତ୍ୟେକ ପଦର ଏକ ଏକ ପାଦ ଗୃହ ଗୃହ ପାଦ ଗୀତ ହେବ । ପ୍ରଥମ ୧୪ ଅକ୍ଷରୀ ଗୀତ (କଳାଶଗୌଡ଼ା ରାଗ) କୃଷ୍ଣଙ୍କ ଅର୍ଥରେ ହେବ । ୨ୟରେ ପାଦ-

ପରମ ତୁମ୍ଭେ ହେ ବର କଶୋସ୍ତ ଧୀର
ପରଶି ପଥରେ ଦଅ ଗତି ଭ୍ରମିତ୍ୱର । ୪୧ ।
ପୁଣି ମଧ୍ୟବର୍ତ୍ତେ ତୁଣ୍ଡ ନ ହେଜ୍ ବାହାର
ଜଡ଼ତାରେ ଭ୍ରମେ ମାର ମାର୍ ପର ପର । ୪୨ ।
ମନ୍ଦାକ୍ଷ ସଖଙ୍କେ ଠାବ୍ କେ କୁଳକାମିନୀ
ମଧ୍ୟାନ୍ତଲିପିରେ କହେ ବୟସୀଙ୍କ ବାଣୀ । ୪୩ ।
ମୋ ଦେ ଲତାକୁଞ୍ଜେ ଦ୍ୱନ୍ଦ୍ୱପକ୍ଷୀ ଦେଖ ସଖି !
ସ୍ନେ ହ କର କେତେ ଆସି ଦେଖେ ହରଣାକ୍ଷୀ । ୪୪ ।
ବା ଦେ ତାକୁ ସଖି ! ଘଉଡ଼ାଇ ଦେବ ନାହିଁ
ଭ୍ର ବ ମୋ ପ୍ରୀତିକେ ନାହିଁ ତାଙ୍କ ବିନା କାହିଁ । ୪୫ ।
ଧାବ ଧାବ ଗମ ଗମ ରହ ରହ ହେ ହେ
ଶୁଭେ ସୈନ୍ୟେ ଯଥାକାଳେ ସେନାପତି କହେ । ୪୬ ।
ଥାଟେ ଗୃହିଁ ବଣ୍ଟରନ୍ତି ଜନେ ଦୂରେ ଥିବା
ପ୍ରଳୟେ ସମୁଦ୍ରନୀର ମାଡ଼ିଅଛେ କିବା ? । ୪୭ ।
ପଦକ୍ଷେପେ ଧ୍ୱଣେ ଦଣେ ଉଷ୍ଣୀଶଲହସ୍ତ
ଖେଳଇ ବନ୍ଧୁକ ବର୍ଛା ମଙ୍କର ମକସ୍ତ । ୪୮ ।
ଦର୍ପଭରେ ସୈନ୍ୟଶ୍ରେଣୀ କର ହଲାଇବା
ଭ୍ରବନ୍ତି ଉପୃଷ୍ଠ ତରୁ ଭ୍ରସି ଅସେ ଅବା । ୪୯ ।
ହାଦୋଳା ସବାର ମଣି ଜଳବାଜୀ କସ୍ତ
ବାହକ ଶବଦ ଦୂରୁ କୁମ୍ଭୀର ସୁସ୍ୱର । ୫୦ ।
ଶକଟ ସ୍ୟନ୍ଦନ ଦେଖି ବଶ୍ୱରନ୍ତି ମନେ
ମଗନ ବୋଇତ ଭାସେ ପ୍ରଳୟ ଜୀବନେ । ୫୧ ।
ଗିରି ଅରୋହଣ ଆଶା ଧରିଲେ ମାନସେ
କେହି ଇଷି କେହି ଅବା ଇଣ ଈଶ ଭ୍ରମେ । ୫୨ ।
ସ୍ନେହଶୀଳା ଅଙ୍ଗନା କେ ପତମୁଖ ଗୃହିଁ
ଅଦ୍ୟ ନ ଅସିବା ଅଗୁ ହାସ ଦେବ କହି । ୫୩ ।

---

ମାନଙ୍କର ପ୍ରଥମ ଅକ୍ଷରମାନ ଚ୍ୟୁତ କଲେ ୧୩ ଅକ୍ଷରୀ ଗୀତ (ଚନ୍ଦ୍ରାଦେଶାକ୍ଷ ରାଗ) କୃଷ୍ଣଙ୍କ ଅର୍ଥରେ ହେବ । ୩ୟରେ ଚ୍ୟୁତ ହୋଇଥିବା ଅକ୍ଷରମାନଙ୍କୁ ଯଥାସ୍ଥାନରେ ରଖି ଆଦର ପ୍ରାନ୍ତ ଅକ୍ଷରମାନ ଚ୍ୟୁତ କଲେ ୧୩ ଅକ୍ଷରୀ ଗୀତ (ଚନ୍ଦ୍ରାଦେଶାକ୍ଷ ରାଗ) ପୁରୁଷ ପ୍ରତି କଣୀଭୂତା ନାୟିକାର ଅନୁନୟ ହେବ । ୪ର୍ଥରେ ପ୍ରାନ୍ତରୁ ଚ୍ୟୁତ ହୋଇଥିବା ଅକ୍ଷରମାନଙ୍କୁ ଯଥାସ୍ଥାନରେ ରଖି ପାଦମାନଙ୍କର ଆଦ୍ୟ ଓ ପ୍ରାନ୍ତ ଅକ୍ଷରଟିମାନ ଚ୍ୟୁତ କଲେ ୧୨ ଅକ୍ଷରୀ ଗୀତ (ଭୁପାଳ ରାଗ) ହେବ । ଏଥିରେ ପୁରୁଷ ପ୍ରତି ବଶୀଭୂତା ନାୟିକାର ଭାବ ।

୪୬ ଓ ୪୫ ପଦ । ମଧ୍ୟାନ୍ତଲିପିରେ ଅର୍ଥାତ୍ ପାଦମାନଙ୍କର ୨ୟ ଅକ୍ଷରମାନ ଓ ପାଦମାନଙ୍କର ୧୧ଶ ଅକ୍ଷରମାନଙ୍କୁ ପଢ଼ିଲେ 'ଦେହ ଦେହ' 'ଦେହ ଦେହ' ହେବ ।

ଅତି ଖେଦେ ପତି ପାଶୁ ନିଅଇ ବିଦାୟ
ନ ଅଣ୍ଟିଲା ଭାଷି ମୋର ସୁଖକୁ ସମୟ । ୫୪ ।
କାନ୍ତ ଭାଷେ ହୁଏ ଯେବେ ମଙ୍ଗଳ ସମୟ
ଜୀବନ ଦିଅଇ କାହିଁ; ବିଧି ଗୋ ନିର୍ଦ୍ଦୟ । ୫୫ ।
କାନ୍ତେ କୋଳେ ଧରି ବସେ ତେ କୁଞ୍ଚିତକେଶୀ
ଚନ୍ଦ୍ର ଅଗେ ଯାଉ ଜୀବ ଗ୍ରହି ମୁଖଶଶୀ । ୫୬ ।
ପତିବିଧୁରା ଟେକ ତାହେ ପତି ଝୁରି ଝୁରି
ଜୀବ ଯିବାକାଳେ ହେଲା ବିଧାତା ଭଗାରି । ୫୭ ।
ଝୁରୁଥାନ୍ତି ଏ ଭାବେ କୁଳାଙ୍ଗନା ଯେତେ
କବି ଭାରତୀରେ ଅବା ବର୍ଣ୍ଣି ପାରେ କେତେ । ୫୮ ।
କହୁଁ କହୁଁ ହେଲା ଥାଟ ଅଙ୍ଗରେ ପ୍ରବେଶ
ଅଙ୍ଗବାମା ଧରିଅଛନ୍ତି ଅଜି ନବ ବେଶ । ୫୯ ।
ରମ୍ଭାକାନ୍ତ କୁମ୍ଭସ୍ତନ ନାଗରୀ ଶୋଭିଲ
ଦାଣ୍ଡେ ଦାଣ୍ଡେ ଗୃଣ୍ଡେ ଅଙ୍ଗପତି ଅଛନ୍ତି ଗ୍ରହି । ୬୦ ।
ପଣତ ପତାକା ରଙ୍ଗେ ଖେଳଇ ସମୀରେ
ପ୍ରସନ୍ନ ଶାନ୍ତିରେ ବାମା ହସଇ ମଧୁରେ । ୬୧ ।
ପତି ଅବାହନେ କରି ହୁଳହୁଳି ନାଦ
ବନ୍ଦାଇଲା ମଧୁ ମିଳନରେ ବହୁ ମୁଦ । ୬୨ ।
ରାଣୀହଂସପୁରୁ ଅସି ବରାଙ୍ଗନା ହେତେ
ବନ୍ଦାଇ ନେଲେ ମହିଷୀ ତୋଷ ବହୁ ଚିତ୍ତେ । ୬୩ ।
ଅଭିନବ କୋଳାହଳ ସୁଖାମୋଦେ ଭରି
ମହା ମହୋତ୍ସବେ ମତ୍ତ ଅଙ୍ଗରାଜପୁରୀ । ୬୪ ।
ଶ୍ରୀ ରାଧାରମଣ ଦେବ ଭକ୍ତିଦାତା ମଣି
ଶ୍ରୀ ଗୋଲୋକଚନ୍ଦ୍ର ତୋଷେ ଶେଷ ଛାନ୍ଦ ଭଣି । ୬୫ ।

---

୫୫ ପଦ । ମଙ୍ଗଳ—ଶୁଭ, ମଙ୍ଗଳଗ୍ରହ । ଜୀବନ—ଜଳ; ପ୍ରାଣ ।

## ୭୭ ଛାନ୍ଦ

ଲୀଳାବତୀ ସତୀ ପତି ତୃପତି — ଅବ୍ୟକ୍ତ ମଧୁର ରସ ସମ୍ପତ୍ତି
ପ୍ରେମବଲ୍ଲରୀ । ୧ ।

ଔଦାର୍ଯ୍ୟ ଗାମ୍ଭୀର୍ଯ୍ୟ ମାଧୁର୍ଯ୍ୟମୟୀ — ମୃଦୁ ମଞ୍ଜୁହାସୀ ଅମିୟଦାୟୀ
ପ୍ରେମବଲ୍ଲରୀ । ୨ ।

କାନ୍ତ ପୂର୍ବଜନ୍ମ ତପସ୍ୟାଫଳ — ପୁଣ୍ଡୀଭୂତ ଇହ ପୁଣ୍ୟ ସକଳ
ପ୍ରେମବଲ୍ଲରୀ । ୩ ।

ବିଷାଦ ସାନ୍ତ୍ୱନା ମଧୁ ବଚନ — ତାପବିନାଶନ ହରିଚନ୍ଦନ
ପ୍ରେମବଲ୍ଲରୀ । ୪ ।

ନିସର୍ଗ କୁଅଳ୍ପ ତୋଷବିଧାନୀ — ପତି ପ୍ରେମାନନ୍ଦ ବିଶ୍ୱକାରିଣୀ
ପ୍ରେମବଲ୍ଲରୀ । ୫ ।

ସତୀ ସୀମନ୍ତିନୀ-କୁଳ-ଅଳକା — ସୁରତରଙ୍ଗିଣୀ ସୁର ଦୀର୍ଘିକା
ପ୍ରେମବଲ୍ଲରୀ । ୬ ।

ଅଯାଚିତ ତୃପ୍ତି ଶାନ୍ତିଦାୟିନୀ — ଅନାବିଳ ସ୍ୱଚ୍ଛ ପ୍ରୀତିରୂପିଣୀ
ପ୍ରେମବଲ୍ଲରୀ । ୭ ।

ପ୍ରଣୟୀ-ନିଷେଧ-ଇଟ-ବୈଦର୍ଭୀ — ମଧୁପ୍ରେମ ଯଜ୍ଞେ ସ୍ୱାହା ସୁରଭି
ପ୍ରେମବଲ୍ଲରୀ । ୮ ।

ପ୍ରେମମାର୍ଗପ୍ରଦର୍ଶିନୀ ତାପିନୀ — ଅହ୍ଲାଦ ପ୍ରଧାନେ ସ୍ୱୟଂ ହ୍ଲାଦିନୀ
ପ୍ରେମବଲ୍ଲରୀ । ୯ ।

କାନ୍ତ ହୃଦ ମଞ୍ଜୁ କୁଞ୍ଜନାୟିକା — ସୁଖ ସଞ୍ଜୀବନୀ ଭବ ଅଳକା
ପ୍ରେମବଲ୍ଲରୀ । ୧୦ ।

କାଳେ କଲ୍ପ ଜାତ ସେ ସତୀ ଧନ୍ୟା—କାଞ୍ଚନପ୍ରତିମା ଶୋଭନା କନ୍ୟା
ପ୍ରେମବଲ୍ଲରୀ । ୧୧ ।

ଦେବେନ୍ଦ୍ରପ୍ରତିଭାନ୍ୱିତ କୁମର — ତଦନ୍ତେ ବହ୍ନିଲ ନାଗରୀବର
ପ୍ରେମବଲ୍ଲରୀ । ୧୨ ।

କାନ୍ଦ କାନ୍ଦ ହୋଇ ବାନ୍ଧବୀ ଧାୟି — ଭବ ପାରାବାରେ କର ଭ୍ରାସର
ରାଧାଗୋବିନ୍ଦ । ୧୩ ।

ନ ଦଅ ନିତାପେ ଅନ୍ୟ ଜନକୁ — ଦାସୀ ଦାସ କର ନିତ୍ୟ ଦାସକୁ
ରାଧାଗୋବିନ୍ଦ । ୧୪ ।

କୃପାନିଧି କର ବାନ୍ଧବୀ ଗତି — ଦନ୍ତେ ତୃଣ ଧରି କରେ ବିନତି
ରାଧାଗୋବିନ୍ଦ । ୧୫ ।

ମଞ୍ଜରୀଙ୍କ ଦାସୀ ଥିବ ଭାମିନୀ — ସତେ କି ଏ କୃପା ଦର୍ଶିବ ପୁଣି
ରାଧାଗୋବିନ୍ଦ । ୧୬ ।

ଜୀବନ ମରଣ ସମାନ ହେଉ     ତବ ଭାବନାରେ ଜୀବନ ଯାଉ
ରାଧାଗୋବିନ୍ଦ । ୧୭ ।

ଗୁରୁ ବୈଷ୍ଣବ ପଦ୍ମର ରଜ     ମିଳିବାକୁ ଦାସେ ହେଉ ସହଜ
ରାଧାଗୋବିନ୍ଦ । ୧୮ ।

ତୁମ୍ଭ ବିନୁ ନାହିଁ କେହୁ ସଂସାରେ     ଭିତରେ ବାହାରେ ସକଳଠାରେ
ରାଧାଗୋବିନ୍ଦ । ୧୯ ।

ଗୋଲୋକ ପତିଙ୍କ ପାଦେ ଶରଣ     ଯାହା ଇଚ୍ଛା ତାହା କର ମୋହନ
ରାଧାଗୋବିନ୍ଦ । ୨୦ ।

ପରମାତ୍ମା ବୋଲି ଯୋଗୀ ଯା ଚିନ୍ତେ ସେ ତବ ବିଭୂତି ଜାଣେ ଯୁକତେ
ରାଧାଗୋବିନ୍ଦ । ୨୧ ।

ବ୍ରହ୍ମଜ୍ଞାନୀ ଯାହା ବ୍ରହ୍ମ ଭାବଇ     ଅଙ୍ଗ ପ୍ରଭା ବିନୁ ଆନ ନୁହଇ
ରାଧାଗୋବିନ୍ଦ । ୨୨ ।

ବିରାଟ ପୁରୁଷ ତୁମ୍ଭର କଳା     ରାଧାକୃଷ୍ଣ ନିତ୍ୟେ କରୁଛ ଲୀଳା
ରାଧାଗୋବିନ୍ଦ । ୨୩ ।

କାରଣ କାରଣ ସକଳ ଗତି     କୃପା ହେଉ ପଦ୍ମ ପାଦେ ଭକତି
ରାଧାଗୋବିନ୍ଦ । ୨୪ ।

ବ୍ରଜ ବୃନ୍ଦାବନ କୁଞ୍ଜବିହାରୀ     କହୁଁ କହୁଁ ଜୀବ ଯାଉ ବାହାରି
ରାଧାଗୋବିନ୍ଦ । ୨୫ ।

ସମାପ୍ତ ।

ମୁଦ୍ରାକର—ଶ୍ରୀ ରବୀନ୍ଦ୍ରନାଥ ମହାନ୍ତି, କଟକ ପବ୍ଲିଶିଂ ପ୍ରେସ, କଟକ—୧୯୭୨